

ଓଡ଼ିଶା ବିଧାନ ସଭା



ରାଜ୍ୟ ସଚିବାଳୟ

# ଉତ୍କଳ ପ୍ରସଙ୍ଗ

୫୪ ଭାଗ    ୧ମ ସଂଖ୍ୟା    ଶ୍ରାବଣ-ଭାଦ୍ରବ    ୧୯୧୯ ଶକାବ୍ଦ    ଅଗଷ୍ଟ ୧୯୯୭

**ଶ୍ରୀ ରାମ୍ ବେହେରା**
କମିଶନର ତଥା ଶାସନ ସଚିବ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା

**ଶ୍ରୀ ଶଶଧର ପାଣିଗ୍ରାହୀ**
ନିର୍ଦ୍ଦେଶକ

ସମ୍ପାଦନା ମଣ୍ଡଳୀ
**ଶ୍ରୀ ମହେଶ୍ୱର ମୁଦୁଳି**
କାର୍ଯ୍ୟନିର୍ବାହୀ ସମ୍ପାଦକ

**ଶ୍ରୀ ଶରତଚନ୍ଦ୍ର ସାମନ୍ତରାୟ**
ସମ୍ପାଦନା ସହଯୋଗୀ

ପ୍ରଚ୍ଛଦପଟ
ଶ୍ରୀ ମାନସ ନାୟକ

କମ୍ପ୍ୟୁଟର ଓ ଟାଇପ୍ ସେଟିଂ
ସୂଚନା ଓ ଲୋକ ସମ୍ପର୍କ ବିଭାଗ

''ଉତ୍କଳ ପ୍ରସଙ୍ଗ'' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ବିଚାରଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ ରେ ମୁଦ୍ରିତ ।

**ବାର୍ଷିକ ଦେୟ : ଟ ୨୦.୦୦**
**ପ୍ରତିଖଣ୍ଡ : ଟ ୨.୦୦**

## ସୂଚୀ

# ସମ୍ପାଦକୀୟ

## ସୁବର୍ଣ୍ଣ ଜୟନ୍ତୀର ସନ୍ଦେଶ

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ଅଗ୍ରଣୀ ଭୂମିକା ଗ୍ରହଣ କରି ଆସିଥିଲା । ଭାରତରେ ବ୍ରିଟିଶରାଜ ପ୍ରତିଷ୍ଠା କ୍ଷେତ୍ରରେ ଓଡ଼ିଶା ହେଉଛି ସର୍ବଶେଷ ରାଜ୍ୟ । ୧୮୫୭ ମସିହା ପ୍ରଥମ ସ୍ୱାଧୀନତା ସଂଗ୍ରାମର ୯୦ ବର୍ଷ ପୂର୍ବରୁ ୧୭୬୭ ମସିହାରେ ବ୍ରିଟିଶ ଶାସନ ବିରୁଦ୍ଧରେ ସର୍ବପ୍ରଥମେ ସଶସ୍ତ୍ର ସଂଗ୍ରାମର ଶଙ୍ଖନାଦ କରିଥିଲା, ପାରଳାଖେମୁଣ୍ଡି, ଘୁମୁସର ଓ ମୟୁରଭଞ୍ଜ । ଏହି ବିଦ୍ରୋହର ସୂତ୍ରଧର ଥିଲେ, ରାଜା କୃଷ୍ଣଚନ୍ଦ୍ର ଭଞ୍ଜ, ବିକ୍ରମ ଭଞ୍ଜ; ଶ୍ରୀକର ଭଞ୍ଜ, ଧନଞ୍ଜୟ ଭଞ୍ଜ, ନାରାୟଣ ରାଓ, ଗଜପତି ଦେଓ, ଦାମୋଦର ଭଞ୍ଜ ପ୍ରମୁଖ ରାଜନ୍ୟମଣ୍ଡଳୀ । ୧୮୩୫ ରୁ ୧୮୫୬ ପର୍ଯ୍ୟନ୍ତ ଘୁମୁସରରେ ଦୋରା ଓ ଚକରା ବିଶୋୟୀ ଇଂରେଜ ସେନାବାହିନୀକୁ ଅସ୍ତବ୍ୟସ୍ତ କରି ପକାଇଥିଲେ ।

ଖୋର୍ଦ୍ଧାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୭ ର ପାଇକ ବିଦ୍ରୋହ ବୀର ଓଡ଼ିଆମାନଙ୍କର ପ୍ରଥମ ସଂଗଠିତ ସଂଗ୍ରାମ । ବ୍ରିଟିଶ ସରକାର ୧୮୫୯ ମସିହା ସୁଦ୍ଧା ସିପାହୀ ବିଦ୍ରୋହ ଦମନ କରିଥିଲେ ମଧ୍ୟ ବୀର ସୁରେନ୍ଦ୍ର ସାଏ ୧୮୬୪ ମସିହା ପର୍ଯ୍ୟନ୍ତ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ କରି ରଖିଥିଲେ । ଆଦିବାସୀମାନଙ୍କର ରକ୍ତ ରଞ୍ଜିତ ସ୍ୱାକ୍ଷରରେ ଅଙ୍କିତ ହୋଇଛି, ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଆଦ୍ୟ ଅଧ୍ୟାୟ । ଏହି ବିଦ୍ରୋହରେ ସେମାନେ ଅପୂର୍ବ ସାହସ ଓ ବୀରତ୍ୱ ପ୍ରଦର୍ଶନ କରି ବ୍ରିଟିଶ ସାମ୍ରାଜ୍ୟର ଭିତ୍ତିକୁ ଦୋହଲାଇ ଦେଇଥିଲେ । ସେମାନଙ୍କ ଅତୁଳନୀୟ ଦେଶଭକ୍ତି ଓ ଆତ୍ମତ୍ୟାଗ ମୁକ୍ତି-ସଂଗ୍ରାମର ଇତିହାସକୁ ସମୁଜ୍ଜ୍ୱଳ କରି ରଖିଥିବ ।

୧୮୬୨ ରୁ ୧୯୨୦ ମସିହା ମଧ୍ୟରେ ଓଡ଼ିଶାରେ ରାଜନୈତିକ ଜାଗରଣ ଜାତୀୟ ସଂଗ୍ରାମ ପାଇଁ ପଥ ଉନ୍ମୁକ୍ତ କରି ଦେଇଥିଲା । ଉତ୍କଳସଭା, ବାଲେଶ୍ୱର ପିପୁଲସ ଆସୋସିଏସନ, ଗଞ୍ଜାମର ଉତ୍କଳ ହିତୈଷିଣୀ ସମାଜ ଆଦି ରାଜନୈତିକ ସଂଗଠନଗୁଡ଼ିକ ଥିଲା, ଜାତୀୟ ଜାଗରଣର ପ୍ରାଣକେନ୍ଦ୍ର । ଏହିସବୁ ସଂଗଠନର କର୍ଣ୍ଣଧାର ଥିଲେ, ମଧୁସୂଦନ ଦାସ, ଗୌରୀଶଙ୍କର ରାୟ, ଜଗବନ୍ଧୁ ସିଂହ, ରାମଶଙ୍କର ରାୟ, ଶ୍ୟାମସୁନ୍ଦର ରାଜଗୁରୁ, ବୈକୁଣ୍ଠନାଥ ଦେ, ଜାନକୀନାଥ ବୋଷ ପ୍ରମୁଖ । ଏହି ଜାତୀୟତା ଭାବ ଓ ରାଜନୈତିକ ଚେତନାର ବିକାଶ ୧୮୯୫ ରୁ ୧୯୧୨ ମସିହା ପର୍ଯ୍ୟନ୍ତ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଓଡ଼ିଆମାନଙ୍କୁ ସଂଗଠିତ କରିଥିଲା । ଏହାର ନେତୃତ୍ୱ ନେଇଥିଲା ଓଡ଼ିଶାର ସର୍ବପ୍ରଥମ ପ୍ରତିନିଧିମୂଳକ ସଂଗଠନ ଉତ୍କଳ ସମ୍ମିଳନୀ ।

୧୯୨୦ ମସିହାରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସ ମହାସ୍ରୋତରେ ଓଡ଼ିଶା ସାମିଲ ହୋଇଯିବା ପରେ ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ ଓ ଭାରତଛାଡ଼ ଆନ୍ଦୋଳନରେ ମହତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏହି ଆନ୍ଦୋଳନର ପୁରୋଭାଗରେ ଥିଲେ, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ହୋତା, ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ଗୋପବନ୍ଧୁ ଚୌଧୁରୀ, ନିରଞ୍ଜନ ପଟ୍ଟନାୟକ, ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନଗୋ, ରାଜକୃଷ୍ଣ ବୋଷ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ରମା ଦେବୀ, ସାରଳା ଦେବୀ, ମାଳତୀ ଚୌଧୁରୀ, ଜାତୀୟକବି ବୀରକିଶୋର ଦାସ, ବାଞ୍ଛାନିଧି ମହାନ୍ତି ପ୍ରମୁଖ ଜନନେତାଗଣ । ପ୍ରଜାମଣ୍ଡଳ ଆନ୍ଦୋଳନ ମୁକ୍ତି ସଂଗ୍ରାମକୁ ଆହୁରି ତେଜିୟାନ କରିଥିଲା । ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାବାସୀ କେବଳ ବ୍ରିଟିଶ ଶାସନ ବିରୁଦ୍ଧରେ ଲଢ଼େଇ କରି ନଥିଲେ, ପ୍ରଜାପୀଡ଼କ ଓ ଇଂରେଜ ଅନୁଗତ ରାଜା, ଜମିଦାର, ରାଜକର୍ମଚାରୀ ଓ ଦେଶଦ୍ରୋହୀମାନଙ୍କ ଷଡ଼ଯନ୍ତ୍ର ଓ ନିର୍ମମ ଅତ୍ୟାଚାରର ମଧ୍ୟ ଏମାନଙ୍କୁ ମୁକାବିଲା କରିବାକୁ ପଡ଼ିଥିଲା ।

ପରାଧୀନତାରୁ ମୁକ୍ତି ସମସ୍ତଙ୍କର ସଂଗଠିତ ଶକ୍ତି ଓ ସଂଗ୍ରାମର ପରିଣତି । ଅରଣ୍ୟ ପର୍ବତର ଆଦିବାସୀଙ୍କ ଠାରୁ ଆରମ୍ଭ କରି ସହରର ଶିକ୍ଷିତ ବୁଦ୍ଧିଜୀବୀଙ୍କ ପର୍ଯ୍ୟନ୍ତ, ଅବୋଧ ବାଳକ ଠାରୁ ନିରୀହ ଚାଷୀ, ମୂଲିଆ ପର୍ଯ୍ୟନ୍ତ, ନାରୀ, ପୁରୁଷ, ଛାତ୍ର, ଯୁବକ, କବି, କୋବିଦ, ସାମ୍ବାଦିକ-ସମସ୍ତଙ୍କର ଏହି ମୁକ୍ତି- ସଂଗ୍ରାମରେଅମ୍ଳାନ ଅବଦାନ ରହିଛି । ଏହି ସଂଗ୍ରାମରେ କେତେ ବିପ୍ଳବୀ ଓ ବୀରପୁରୁଷ ଅପୂର୍ବ ସାହସ ଓ ବୀରତ୍ୱ ପ୍ରଦର୍ଶନ କରିଛନ୍ତି । ଅସୀମ ଦୁଃଖ ଯନ୍ତ୍ରଣା ଓ ନିର୍ଯ୍ୟାତନା ସହିଛନ୍ତି । ଚରମ ତ୍ୟାଗ ବରଣ କରିଛନ୍ତି । ଜୟୀ ରାଜଗୁରୁ, ରଘୁ, ଦିବାକାର, ଲକ୍ଷ୍ମଣ ନାୟକଙ୍କ ଭଳି ବରପୁତ୍ରମାନେ ହସି ହସି ଫାଶୀଖୁଣ୍ଟରେ ଆତ୍ମବଳୀ ଦେଇଛନ୍ତି । ଦେଶମାତୃକାର ମୁକ୍ତି ପାଇଁ ସେମାନଙ୍କ ତ୍ୟାଗର ପଟାନ୍ତର ନାହିଁ । ସେମାନେ ଏ ଜାତିର ନମସ୍ୟ । ଆଜି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ସେହି ଅମର ଶହୀଦ, ମହାନ ବିପ୍ଳବୀ ଓ ସଂଗ୍ରାମୀମାନଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ । ସେମାନଙ୍କ ସଂଗ୍ରାମମୟ ଜୀବନର ଆଲେଖ୍ୟ ଓ ଆଦର୍ଶ ଆମ ଯାତ୍ରାପଥର ପାଥେୟ ଓ ପ୍ରେରଣାର ଉତ୍ସ ହୋଇ ରହିବ ।

ସ୍ୱାଧୀନତା ପରେ ଆମେ ନୂତନ ରାଷ୍ଟ୍ର ନିର୍ମାଣର ଦାୟିତ୍ୱ ବହନ କରିଛୁ । ଭାରତର ପ୍ରଗତିର ଧାରା ସହିତ ସମତାଳରେ ଆମକୁ ଗତି କରିବାକୁ ହେଉଚି । ବିଗତ ପଚାଶ ବର୍ଷ ମଧ୍ୟରେ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାର ବିପୁଳ ବିକାଶ ସାଧିତ ହୋଇଚି । ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଉତ୍କଳକେଶରୀ ହରେକୃଷ୍ଣ ମହତାବ ଆଧୁନିକ ଓଡ଼ିଶା ନିର୍ମାଣର ଯେଉଁ ଭିତ୍ତି ସ୍ଥାପନ କରିଥିଲେ, ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ତୃତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହୋଇ ତାକୁ ପୂର୍ଣ୍ଣାଙ୍ଗ କରିବାକୁ ସମର୍ଥ ହୋଇଛନ୍ତି । ଦୀର୍ଘ ଏକ ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ କଂଗ୍ରେସ ମୁଖ୍ୟମନ୍ତ୍ରୀ ଭାବରେ ଶାସନ ଦାୟିତ୍ୱରେ ରହିବାରେ ସେ ହେଉଛନ୍ତି ସାରା ଭାରତରେ ଏକ ବ୍ୟତିକ୍ରମ । ଏକ ସ୍ଥିର ଓ ଗତିଶୀଳ ଶାସନ ଯୋଗୁଁ ଆଜି ରାଜ୍ୟର ଅର୍ଥନୈତିକ, ସାଂସ୍କୃତିକ ଓ ବୈଷୟିକ ବିକାଶ ସମ୍ଭବ ହୋଇପାରିଚି । କୃଷି, ଶିଳ୍ପ, ଶିକ୍ଷା, ପରିବହନ, ପର୍ଯ୍ୟଟନ, କଳା-ସାହିତ୍ୟର ଉନ୍ନତି ପାଇଁ ବଳିଷ୍ଠ ପଦକ୍ଷେପମାନ ଗ୍ରହଣ କରାଯାଉଚି । ରାଜ୍ୟରୁ ଦାରିଦ୍ର୍ୟ ଓ ବେକାରୀ ଦୂରୀକରଣ ଏବଂ ଲୋକଙ୍କୁ ସାମାଜିକ ନ୍ୟାୟ ପ୍ରଦାନ ଦିଗରେ ବହୁ ପ୍ରଗତିଶୀଳ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଚି । ଆଗାମୀ ଶତାବ୍ଦୀରେ ଓଡ଼ିଶାକୁ ଭାରତର ଏକ ଅଗ୍ରଗାମୀ ରାଜ୍ୟରେ ପରିଣତ କରିବାକୁ ମୁଖ୍ୟମନ୍ତ୍ରୀ ଅଙ୍ଗୀକାରବଦ୍ଧ ।

ଏକ ସମୃଦ୍ଧ ଭାରତ ଦେଖିବା ପାଇଁ ସ୍ୱାଧୀନତା ସଂଗ୍ରାମୀମାନେ ଯେଉଁ ସ୍ୱପ୍ନ ଦେଖିଥିଲେ, ପ୍ରାଣପାତ ସଂଗ୍ରାମ କରି ଦେଶ ପାଇଁ ଜୀବନ ଦାନ ଦେଇଥିଲେ, ତାହା ବ୍ୟର୍ଥ ଓ ଅକାରଣ ନହେଉ । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମୃଦ୍ଧିର ସ୍ୱର୍ଣ୍ଣ ଯୁଗ ରୂପେ ଜାଜ୍ୱଲ୍ୟମାନ ହୋଇ ଉଠୁ । ଏକ ସଂକଳ୍ପ ଓ ସମର୍ପିତ ଭାବନା ନେଇ ସେମାନଙ୍କର ସେ ସ୍ୱପ୍ନ, ତ୍ୟାଗ ଓ ତପସ୍ୟା ସାକାର ଓ ସାର୍ଥକ କରେ, ସେହି ଅମର ଆତ୍ମା ପ୍ରତି ତାହାହିଁ ହେବ ଏ ଜାତିର ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।

# ଜାତୀୟ ସଙ୍ଗୀତ



"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"



୧୯୯୮ ଅଗଷ୍ଟ ମାସ ପର୍ଯ୍ୟନ୍ତ ପ୍ରକାଶ ପାଇବାକୁ ଥିବା **'ଉତ୍କଳ ପ୍ରସଙ୍ଗ'**ର ସଂଖ୍ୟାଗୁଡ଼ିକ ବିଶେଷ ସଂଖ୍ୟାଭାବେ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ଘଟଣା ପ୍ରବାହ ଏବଂ ସଂଗ୍ରାମୀମାନଙ୍କ ଜୀବନାଲେଖକୁ ନେଇ ସମୃଦ୍ଧ ହେବ ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ
ଅବସରରେ ଆମର ଶ୍ରଦ୍ଧାଞ୍ଜଳି



ଜାତିର ଜନକ



ଡକ୍ଟର ରାଜେନ୍ଦ୍ର ପ୍ରସାଦ
ପ୍ରଥମ ରାଷ୍ଟ୍ରପତି



ପଣ୍ଡିତ ଜବାହରଲାଲ ନେହେରୁ
ପ୍ରଥମ ପ୍ରଧାନମନ୍ତ୍ରୀ

# ୫୧ତମ ସ୍ୱାଧୀନତା ଦିବସ ଉପଲକ୍ଷେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍‌ଙ୍କ ବାର୍ତ୍ତା



*ପ୍ରିୟ ଭଉଣୀ ଓ ଭାଇମାନେ,*

୧୯୯୭ ମସିହା ଅଗଷ୍ଟ ୧୫ ତାରିଖରେ ପାଳିତ ହେଉଥିବା ଆମ ଦେଶର ୫୧ ତମ ଐତିହାସିକ ସ୍ୱାଧୀନତା ଦିବସ ଉପଲକ୍ଷେ ମୁଁ ଓଡ଼ିଶାବାସୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ତଥା ଶୁଭେଚ୍ଛା ଜଣାଉଛି । ଆମେ ଆଜି ଏହି ସ୍ମରଣୀୟ ଦିବସ ପାଳନ କରୁଥିବା ବେଳେ ଏବଂ ସ୍ୱାଧୀନତା ପାଇଁ ତ୍ୟାଗ ସ୍ୱୀକାର କରିଥିବା ଅଗଣିତ ସ୍ୱାଧୀନତା ସଂଗ୍ରାମୀଙ୍କୁ ସ୍ମରଣ କରୁଥିବା ବେଳେ, ନିଃସ୍ୱାର୍ଥପର ଉତ୍ସାହ ଓ ଅନୁରାଗ ସହିତ ସେମାନଙ୍କର ସ୍ୱପ୍ନର ରାଷ୍ଟ୍ର ଗଠନର ଗୁରୁଦାୟିତ୍ୱ ସମ୍ପାଦନ କରିବା ପାଇଁ ମଧ୍ୟ ନିଜକୁ ପୁନଃ ଉତ୍ସର୍ଗ କରିବା ।

କାଳଜୟୀ ଦେଶପ୍ରେମୀଗଣ ବହୁ ଦଶନ୍ଧି ଧରି ଅସୀମ ସାହସ ଓ ଧୈର୍ଯ୍ୟ ସହିତ ସଂଗ୍ରାମରତ ରହି ଆମକୁ ଉତ୍ତରାଧିକାର ସୂତ୍ରରେ ମହାର୍ଘ ସ୍ୱାଧୀନତା ଦେଇଛନ୍ତି । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଆମର ସ୍ୱାଧୀନତା ସଂଗ୍ରାମ ସତ୍ୟାଗ୍ରହ ଓ ଅହିଂସା ଉପରେ ପର୍ଯ୍ୟବସିତ ଥିବାରୁ, ଏହା ମାନବଜାତିର ଇତିହାସରେ ଅଦ୍ୱିତୀୟ ଘଟଣା ହୋଇ ରହିଛି । ଓଡ଼ିଶାର ଜନସାଧାରଣ ମଧ୍ୟ ଏହି ଜାତୀୟ ଆନ୍ଦୋଳନର ପୁରୋଭାଗରେ ଥିଲେ । ମହାତ୍ମା ଗାନ୍ଧୀଙ୍କର ଐତିହାସିକ ପଦଯାତ୍ରା ପୁରୀଠାରୁ ଆରମ୍ଭ ହୋଇଥିଲା । ଭଦ୍ରକ ଜିଲ୍ଲାର 'ଇରମ' ଠାରେ ବ୍ରିଟିଶ ଶାସକଙ୍କ ଦ୍ୱାରା ସଂଘଟିତ ଗଣହତ୍ୟା, ଯେଉଁଠି ୨୯ ଜଣ ସାଧାରଣ ନାଗରିକ ସ୍ୱାଧୀନତା ପାଇଁ ପ୍ରାଣପାତ କରିଥିଲେ, ତାହା ଇତିହାସରେ ଲିପିବଦ୍ଧ ହୋଇ ରହିଛି । ଏହି ସଂଗ୍ରାମରେ ଅସଂଖ୍ୟ ବୀର-ଯୋଦ୍ଧାଙ୍କ ବ୍ୟତୀତ, ଓଡ଼ିଶାର ଅଗଣିତ ପୁତ୍ର କନ୍ୟା ନିଜର ସର୍ବସ୍ୱ ତ୍ୟାଗ କରିଥିଲେ । ସେମାନଙ୍କର ଆଦର୍ଶ ଆଗାମୀ ବଂଶଧରମାନଙ୍କୁ ଅବିରତ ପ୍ରେରଣା ଯୋଗାଉଥିବ ।

ମାତୃଭୂମିର ସେବାରେ ଯେଉଁମାନଙ୍କ ତ୍ୟାଗ ଯୋଗୁଁ ଆମେ ସ୍ୱାଧୀନତା ହାସଲ କରିପାରିଛୁ, ଆସନ୍ତୁ, ଆଜି ସେମାନଙ୍କ ପ୍ରତି ଆମର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା । ୧୯୪୭ ଅଗଷ୍ଟ ୧୫ ତାରିଖରେ ଆମେ ଯେଉଁ ସ୍ୱାଧୀନତା ହାସଲ କରିଥିଲେ, ତାହା ଥିଲା ଅଗ୍ରମାରମ୍ଭ ମାତ୍ର । ଏହି ସ୍ୱାଧୀନତା ଆମ ନିଜର ଭାଗ୍ୟ ନିର୍ଦ୍ଧାରଣ ତଥା ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ଚରିତାର୍ଥ କରିବା ପାଇଁ ସୁଯୋଗ ଦେଇଥିଲା । ଆଜି ସେହି ସ୍ୱାଧୀନତାର ସୁରକ୍ଷା ପାଇଁ, ଆମର ଜନସାଧାରଣଙ୍କ ଜୀବନକୁ ସମୃଦ୍ଧ କରିବା ପାଇଁ ଏବଂ ସାଧାରଣ ମଣିଷର ସ୍ୱପ୍ନକୁ ସାର୍ଥକ କରିବା ପାଇଁ ବିଜ୍ଞତା, ଦୂରଦୃଷ୍ଟି ଓ ସାହସର ସହିତ ଆମକୁ ଦେଶ ଗଠନର ଗୁରୁଦାୟିତ୍ୱର ଆହ୍ୱାନକୁ ଗ୍ରହଣ କରିବାକୁ ପଡ଼ିବ । ଆମକୁ ସାମ୍ୟ ଓ ସାମାଜିକ ସଂହତି ରକ୍ଷାପୂର୍ବକ ପ୍ରଗତି ଓ ସମୃଦ୍ଧି ହାସଲ କରିବାକୁ ହେବ ।

ଚଳିତ ବର୍ଷ ଆମେ ଆମର ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ପାଳନ କରୁଥିବାରୁ, ଏ ପର୍ଯ୍ୟନ୍ତ ଯେଉଁ ସଫଳତା ହାସଲ କରିଛୁ, ସେ ବିଷୟରେ ଆତ୍ମସମୀକ୍ଷା କରିବା ପାଇଁ ଆମକୁ ସୁଯୋଗ ମିଳିଛି । ଆମର ଜାତୀୟ କାର୍ଯ୍ୟସୂଚୀକୁ ଅଗ୍ରାଧିକାର ଭିତ୍ତିରେ ପୁନର୍ବିନ୍ୟାସ କରିବାକୁ ସୁଯୋଗ ଆସିଛି । ଏହାଦ୍ୱାରା ଜନସାଧାରଣଙ୍କର ଶ୍ରଦ୍ଧା ଓ ଆଶା ଆକାଂକ୍ଷା ପ୍ରତିଫଳିତ ହୋଇ ପାରିବ । ଜନସଂଖ୍ୟା ନିୟନ୍ତ୍ରଣ, ବେକାରୀ, ଉତ୍ପାଦିକା ଶକ୍ତି ଓ ଗୁଣାତ୍ମକ ମାନ ବୃଦ୍ଧି, ନିର୍ଦ୍ଧାରିତ ସ୍ୱଳ୍ପ ସମୟ ମଧ୍ୟରେ ଯୋଗାଣ, ସମସ୍ତଙ୍କ ପାଇଁ ଶିକ୍ଷାର ସୁଯୋଗ, ସଂପଦର ସମବଣ୍ଟନ, ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ସମାନ ସୁଯୋଗ ପ୍ରଦାନ ପ୍ରଭୃତି କେତେକ ଜରୁରୀ ବିଷୟ ପ୍ରତି ଆମେ ଗୁରୁତ୍ୱ ସହକାରେ ଧ୍ୟାନ ଦେବା ଆବଶ୍ୟକ ।

ଆମ ଦେଶ ତଥା ରାଜ୍ୟ ବହୁ କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଥିଲେ ସୁଦ୍ଧା, ଆମେମାନେ ଆମର ଲକ୍ଷ୍ୟସ୍ଥଳଠାରୁ ବହୁ ଦୂରରେ ରହିଛୁ । ଭାରତର ପ୍ରଥମ ବହୁମୁଖୀ ନଦୀବନ୍ଧ ଯୋଜନା ହୀରାକୁଦଠାରେ ନିର୍ମାଣ କରାଯାଇଛି ।

ରାଉରକେଲାଠାରେ ପ୍ରଥମ ରାଷ୍ଟ୍ରାୟତ୍ତ ଇସ୍ପାତ କାରଖାନା, ପାରାଦୀପଠାରେ ବୃହତ୍ ବନ୍ଦର ପ୍ରତିଷ୍ଠା ଏବଂ ଗୋପାଳପୁର ବନ୍ଦରକୁ ସବୁଦିନିଆ ବୃହତ ବନ୍ଦରରେ ପରିଣତ କରିବା, ଅନୁଗୁଳ ଓ ଦାମନଯୋଡ଼ିଠାରେ ଜାତୀୟ ଆଲୁମିନିୟମ କାରଖାନା, ପାରାଦୀପ, ରାଉରକେଲା ଏବଂ ତାଳଚେରଠାରେ ସାର କାରଖାନା, ମଞ୍ଚେଶ୍ୱରଠାରେ ରେଳଡବା ମରାମତି କାରଖାନା, ଛତ୍ରପୁରଠାରେ ଭାରତୀୟ ବିରଳ ମୃତ୍ତିକା ପ୍ରତିଷ୍ଠାନ, ସୁନାବେଡ଼ାଠାରେ ମିଗ ବିମାନ କାରଖାନା, ସର୍ଗିତଳାଠାରେ ପ୍ରତିରକ୍ଷା ବିଭାଗର ଗୋଳା ବାରୁଦ କାରଖାନା ପ୍ରଭୃତି ବିଗତ ପାଞ୍ଚ ଦଶନ୍ଧି ମଧ୍ୟରେ ଆମ ସଫଳତାର ମାଇଲଖୁଣ୍ଟ ।

ଓଡ଼ିଶାରେ ଅଧିକ ସଂଖ୍ୟକ ଇସ୍ପାତ କାରଖାନା, ତୈଳ ବିଶୋଧନାଗାର, ପେଟ୍ରୋଲ ଜାତୀୟ ରାସାୟନିକ କାରଖାନା, ଚିନିକଳ, ଆଲୁମିନିୟମ ପ୍ଲାଣ୍ଟ ଓ ସିମେଣ୍ଟ କାରଖାନା ସ୍ଥାପନ କରିବା ଉଦ୍ଦେଶ୍ୟରେ ବହୁ ଶିଳ୍ପୋଦ୍ୟୋଗୀଙ୍କୁ ଆକୃଷ୍ଟ କରିବାପାଇଁ ଏକ ଅନୁକୂଳ ଶିଳ୍ପ ବାତାବରଣ ସୃଷ୍ଟି କରାଯାଇଛି । ଏସବୁ ପ୍ରଗତି ଆମ ରାଜ୍ୟକୁ ଜାତୀୟ ସମୃଦ୍ଧି ପଥରେ ଅଗ୍ରଗାମୀ କରାଇବ । ଆମ ସରକାର ଶକ୍ତି ଉତ୍ପାଦନର ଘରୋଇକରଣ ଓ ବିଦ୍ୟୁତ ଶକ୍ତିର ବଣ୍ଟନ, ଉପଭୋକ୍ତାମାନଙ୍କର ଗ୍ରାହକ ସେବା ଯୋଗାଇ ଦେବା ନିମନ୍ତେ ଗ୍ରୀଡକୋ ଗଠନ, ୩,୯୬୦ ମେଗାୱାଟ୍ ଶକ୍ତିସଂପନ୍ନ ଏକ ବିଦ୍ୟୁତ୍ ପ୍ରକଳ୍ପ ପ୍ରତିଷ୍ଠା କରିବା ପାଇଁ ହଂକଂସ୍ଥିତ "ସେପା" ସହିତ ବୁଝାମଣାପତ୍ର ସ୍ୱାକ୍ଷର, ଜାତୀୟ ତାପଜ ବିଦ୍ୟୁତ ନିଗମର ବର୍ତ୍ତମାନ କ୍ଷମତାର ସଂପ୍ରସାରଣ ତଥା ଓଡ଼ିଶା ଶକ୍ତି ଉତ୍ପାଦନ ନିଗମ ପ୍ରତିଷ୍ଠା ପ୍ରଭୃତି କ୍ଷେତ୍ରରେ ଆଗୁଆ ପଦକ୍ଷେପମାନ ଗ୍ରହଣ କରିଛନ୍ତି ।

ବିଗତ ପଚାଶ ବର୍ଷ ମଧ୍ୟରେ ଆମର ଜାତୀୟ ସଫଳତା ସନ୍ତୋଷଜନକ ତଥା ବହୁମୁଖୀ ହୋଇ ପାରିଛି । ଆମେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲେ ସୁଦ୍ଧା, ଦେଶର କେତେକ ନିରାଶାବାଦୀ ଅଯଥାରେ ଆମର ସଫଳତାଗୁଡ଼ିକୁ ତୁଚ୍ଛ ଜ୍ଞାନ କରୁଛନ୍ତି । ଏହି ଲୋକମାନେ ମନେ ରଖିବା ଉଚିତ ଯେ ସ୍ୱାଧୀନତା ପୂର୍ବରୁ ସାମାନ୍ୟ ପିନ୍ କଣ୍ଟାଟିଏ ମଧ୍ୟ ଆମକୁ ବିଦେଶରୁ ଆମଦାନୀ କରିବାକୁ ପଡୁଥିଲା, କାରଣ ଆମକୁ ତାହା ଉତ୍ପାଦନ କରିବା ପାଇଁ ଅନୁମତି ମିଳୁ ନ ଥିଲା । ଆଜି ସ୍ୱଦେଶୀୟ ବୈଷୟିକ ଦକ୍ଷତା ସହିତ ଆମେ ବିମାନ ନିର୍ମାଣ କରୁଛୁ, ଅନ୍ତରୀକ୍ଷରେ ଉପଗ୍ରହ ସ୍ଥାପନ କରୁଛୁ, ଲକ୍ଷ୍ୟଭେଦୀ କ୍ଷେପଣାସ୍ତ୍ର ନିର୍ମାଣ କରୁଛୁ, ଯେଉଁଥିପାଇଁ, ଯେ କୌଣସି ଦେଶ ଗର୍ବ ଅନୁଭବ କରିପାରିବ । ଏ ସମସ୍ତ ସଫଳତା ହାସଲ ସତ୍ତ୍ୱେ, ଆହୁରି ଅନେକ କିଛି କରିବାକୁ ବାକି ରହିଛି ବୋଲି ଆମେ ଅନୁଭବ କରୁଛୁ । ଆଜି ଭାରତବର୍ଷ ସମଗ୍ର ଏସିଆ ଭୂ-ଖଣ୍ଡରେ ଏକ ବିକାଶୋନ୍ମୁଖୀ ଅର୍ଥନୈତିକ ଶକ୍ତି ରୂପେ ସ୍ୱତନ୍ତ୍ର ସ୍ୱୀକୃତି ଲାଭ କରିପାରିଛି । ଆମ ଦେଶର ଜନସାଧାରଣଙ୍କ ପାଇଁ ଯେ କେବଳ ଯଥେଷ୍ଟ ପରିମାଣର ଖାଦ୍ୟଶସ୍ୟ ରହିଛି, ତା ନୁହେଁ ବରଂ ବଳକା ଖାଦ୍ୟଶସ୍ୟ ରପ୍ତାନି କରିବା ପାଇଁ ମଧ୍ୟ "ସବୁଜ ବିପ୍ଳବ" ଏକ ସଫଳ ଅଭିଯାନ ହୋଇ ପାରିଛି । ବର୍ତ୍ତମାନ ଆମେ ଆଖୁ, ଚିନାବାଦାମ, ତୈଳବୀଜ ଓ ତୁଳା ପ୍ରଭୃତି ଭଳି ଆୟକାରୀ ଶସ୍ୟଗୁଡ଼ିକ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛୁ । ମରୁଡ଼ି ପ୍ରତିରୋଧର ଅନ୍ୟତମ କୌଶଳ ରୂପେ, ଜଳସେଚନ କ୍ଷେତ୍ରରେ ବିପୁଳ ଅର୍ଥ ବିନିଯୋଗ କରାଯାଇଛି ।

"ଶ୍ୱେତ ବିପ୍ଳବ"କୁ ଆଗେଇ ନେବା ପାଇଁ, ଗ୍ରାମାଞ୍ଚଳର ୪୦,୦୦୦ ମହିଳାଙ୍କ ନିମନ୍ତେ ଗୋପାଳନ ଜରିଆରେ କର୍ମନିଯୁକ୍ତି ସୃଷ୍ଟି ଦିଗରେ ପଦକ୍ଷେପମାନ ନିଆଯାଇଛି । ଏତଦ୍‌ବ୍ୟତୀତ, ଆଦିବାସୀ ଓ ହରିଜନଙ୍କ ସମେତ ଗରିବ, ଅବହେଳିତ ତଥା ପଛୁଆବର୍ଗ ଲୋକମାନଙ୍କ ଉନ୍ନତି ନିମନ୍ତେ ସରକାର ବିଭିନ୍ନ କଲ୍ୟାଣକର ପରିକଳ୍ପନା କାର୍ଯ୍ୟକାରୀ କରିଛନ୍ତି । ସରକାର ଅନୁସୂଚିତ ଅଞ୍ଚଳ ଓ ମରୁଡ଼ିପ୍ରବଣ ଗୋଷ୍ଠୀ ଉନ୍ନୟନ ବ୍ଲକ୍‌ଗୁଡ଼ିକରେ କିଲୋପ୍ରତି ୨ ଟଙ୍କା ଦରରେ ଚାଉଳ ଯୋଗାଇ ଦେଉଛନ୍ତି । ମୋ ସରକାର, ଆଗୁଆ ପଦକ୍ଷେପ ସ୍ୱରୂପ କୃଷିକୁ ଶିଳ୍ପର ମାନ୍ୟତା ପ୍ରଦାନ କରିଛନ୍ତି ।

ଏକବିଂଶ ଶତାବ୍ଦୀ ଆଡକୁ ଦେଶ ଆଗେଇବା ବେଳେ ଏବଂ ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ପାଳନ ଅବସରରେ ଆସନ୍ତୁ, ଆମ ଦେଶର ଗୌରବମୟ ପରମ୍ପରା ତଥା ମହାନ୍ ଐତିହ୍ୟକୁ ସ୍ମରଣ କରି ଆନନ୍ଦିତ ହେବା ।

ଆମ ସମସ୍ତଙ୍କର ଅତି ପ୍ରିୟ ଏ ଦେଶର ପ୍ରଗତି ପାଇଁ ଆସନ୍ତୁ, ନିଜକୁ ପୁନଃ ଉତ୍ସର୍ଗ କରିବା । ଦେଶକୁ ସର୍ବୋଚ୍ଚ ଆସନରେ ଅଧିଷ୍ଠିତ କରାଇବା ସଙ୍ଗେସଙ୍ଗେ ଏକ ସମୃଦ୍ଧ ଭାରତ ଗଠନ ନିମନ୍ତେ ଆନନ୍ଦ ଚିତ୍ତରେ ତ୍ୟାଗ ସ୍ୱୀକାର କରିବା ।

ଅବିରାମ, ଅବିଚଳିତଭାବେ ଆସନ୍ତୁ, ଆଗେଇଯିବା ।

ଜୟହିନ୍ଦ୍



# ଭାରତ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବାର୍ତ୍ତା

ଆଜି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ମୁଁ ଆପଣମାନଙ୍କୁ ମୋ ପକ୍ଷରୁ ଓ ରାଜ୍ୟ ସରକାରଙ୍କ ପକ୍ଷରୁ ଆନ୍ତରିକ ଅଭିନନ୍ଦନ ଜଣାଉଅଛି । ଏହି ପଚାଶ ବର୍ଷ ସ୍ୱାଧୀନତା ମଧ୍ୟରେ ଭାରତବର୍ଷ ପୃଥିବୀରେ ଏକ ଶକ୍ତିଶାଳୀ, ସମ୍ମାନିତ ରାଷ୍ଟ୍ର ରୂପେ ଦେଖାଦେଇପାରିଛି ଏବଂ ଯେଉଁମାନେ ଭାରତବର୍ଷର ସ୍ୱାଧୀନତା ପାଇଁ ସ୍ୱପ୍ନ ଦେଖିଥିଲେ, ସ୍ୱାଧୀନ ଭାରତ କ'ଣ ହେବ ସେଥିପାଇଁ ସ୍ୱପ୍ନ ଦେଖିଥିଲେ, ସ୍ୱାଧୀନ ଭାରତବର୍ଷର ପ୍ରଥମାବସ୍ଥାରେ ଏ ଦେଶକୁ ନିର୍ମାଣ କରିବା ପାଇଁ ଯେଉଁମାନେ କାର୍ଯ୍ୟ କରିଥିଲେ, ଆଜି ସେମାନଙ୍କର ସ୍ୱପ୍ନ, ସେମାନଙ୍କର କାର୍ଯ୍ୟ ପ୍ରାୟ ସାର୍ଥକ ହୋଇଛି । ଆଜିର ଏହି ପବିତ୍ର ଦିନରେ ଆମେ ବିଶେଷ ଭାବରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କୁ ସ୍ମରଣ କରିବା । କାରଣ ସ୍ୱାଧୀନତା ପାଇଁ ବହୁ ଶକ୍ତି ଚେଷ୍ଟା କରିଛନ୍ତି । ବହୁ ଯୁବକ ପ୍ରାଣବଳି ଦେଇଛନ୍ତି । ସ୍ୱାଧୀନତା ଆଣିବା ପାଇଁ ବହୁ ହିଂସାତ୍ମକ କାର୍ଯ୍ୟକ୍ରମ ମଧ୍ୟ ଦେଶରେ ହୋଇଛି । ସମସ୍ତଙ୍କର ଦାନ, ସମସ୍ତଙ୍କର ବଳିଦାନ ଆମେ ସ୍ମରଣ କରିବା । ଯେଉଁମାନେ ବଙ୍ଗଭଙ୍ଗ ଆନ୍ଦୋଳନଠାରୁ ଆରମ୍ଭ କରି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ସାମରିକ ଅଭିଯାନ ପର୍ଯ୍ୟନ୍ତ ଦେଶର ସ୍ୱାଧୀନତା ପାଇଁ ଆତ୍ମବଳି ଦେଇଛନ୍ତି, ସେମାନେ ସମସ୍ତେ ଆମର ନମସ୍ୟ ଏବଂ ବନ୍ଦନୀୟ । ଗୀତାରେ ଗୋଟିଏ କଥା କୁହାଯାଇଛି ଯେ କୌଣସି କାର୍ଯ୍ୟ ହେବାକୁ ହେଲେ ତା' ଭିତରେ ପାଞ୍ଚଟି କାରଣ ଥାଏ । ପାଞ୍ଚଟି କାରଣ ଭିତରେ ଗୋଟିଏ ପ୍ରଧାନ କାରଣ ଥାଏ । ସେହିପରି ବିଭିନ୍ନ କାରଣ ଯୋଗୁଁ ଭାରତର ସ୍ୱାଧୀନତା ଲାଭ ହୋଇଥିଲେ ମଧ୍ୟ ପ୍ରଧାନ କାରଣ ମହାତ୍ମାଗାନ୍ଧୀଙ୍କର ନେତୃତ୍ୱ ଏବଂ ଅହିଂସ ଆନ୍ଦୋଳନ । ଏହା ଆମ ଦେଶର ସ୍ୱାଧୀନତା ପାଇଁ ବିଶେଷ ଭାବରେ ଦାୟୀ । ମହାତ୍ମାଗାନ୍ଧୀ ଆଜି କେବଳ ଭାରତବର୍ଷର ନେତା ନୁହଁନ୍ତି, ସାରା ବିଶ୍ୱ ଆଜି ମହାତ୍ମାଗାନ୍ଧୀଙ୍କ ଅହିଂସାର ଆଦର୍ଶ ଓ ଦର୍ଶନରେ ସମ୍ପୂର୍ଣ୍ଣ ଅନୁପ୍ରାଣିତ । ଆଜି ବିଶ୍ୱଶାନ୍ତି ଓ ସମ୍ପୂର୍ଣ୍ଣ ନିରସ୍ତ୍ରୀକରଣ ପାଇଁ ଉଦ୍ୟମ କରାଯାଉଛି । ତା' ପଛରେ ମହାତ୍ମାଗାନ୍ଧୀଙ୍କର ଦର୍ଶନ ଓ ଅହିଂସ ଆନ୍ଦୋଳନ ବିଶେଷ ଭାବରେ ରହିଛି । ସେ ଭାରତବର୍ଷକୁ ବିଶ୍ୱଶାନ୍ତିର ପ୍ରତୀକ ରୂପେ ଗ୍ରହଣ କରିଥିଲେ ଏବଂ ଆଗାମୀ ବିଶ୍ୱରେ ଏକ ଅହିଂସ ଶାନ୍ତିପୂର୍ଣ୍ଣ ସମାଜ ପ୍ରତିଷ୍ଠିତ ହେବ ବୋଲି ସ୍ୱପ୍ନ ଦେଖିଥିଲେ । ଆଜି ସେ ବିଶ୍ୱ ସେ ଆଡ଼କୁ ଯାଉଛି, ସେଥିପାଇଁ ଭାରତବର୍ଷର ଏହି ମହାନ୍ ନେତା ମହାତ୍ମାଗାନ୍ଧୀଙ୍କ ପ୍ରତି ଆଜି ଆମେ ସଭକ୍ତି ପ୍ରଣାମ ଏବଂ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ।

ଏ ଦେଶର ସ୍ୱାଧୀନତା ପାଇଁ ଯେଉଁମାନେ ବିଶେଷ ଭାବରେ ଦେଶର ଜନସାଧାରଣଙ୍କୁ ଅନୁପ୍ରାଣିତ କରିଥିଲେ, କେବଳ ଦେଶାତ୍ମବୋଧରେ ନୁହେଁ, ଆଧ୍ୟାତ୍ମିକତାରେ ମଧ୍ୟ, ସେମାନଙ୍କ ମଧ୍ୟରୁ ଶ୍ରୀ ଅରବିନ୍ଦ ଏବଂ ସ୍ୱାମୀ ବିବେକାନନ୍ଦ ବିଶେଷ ଭାବରେ ଆମର ସ୍ମରଣୀୟ । ସେମାନଙ୍କର ଅମୂଲ୍ୟ ଦର୍ଶନ, ଅମୂଲ୍ୟ ନେତୃତ୍ୱ ଆଧ୍ୟାତ୍ମିକତା କ୍ଷେତ୍ରରେ ଭାରତବାସୀଙ୍କୁ ଯେ ଅତୀତରେ ଅନୁପ୍ରାଣିତ କରିଛି ତା' ନୁହେଁ, ଭବିଷ୍ୟତରେ ମଧ୍ୟ ବହୁକାଳ ପାଇଁ ଅନୁପ୍ରାଣିତ କରିବ । ପଣ୍ଡିତ ଜବାହରଲାଲ ନେହେରୁ ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଦେଶର କିପରି ନିର୍ମାଣ ହେବ ଓ ଦେଶ କିପରି ଭାବରେ ଶାସିତ ହେବ, ସେ ସମ୍ପର୍କରେ ନିର୍ଦ୍ଦେଶ ଦେଇଥିଲେ ଏବଂ ନେତୃତ୍ୱ ଦେଇଥିଲେ । ଦେଶର ଯେଉଁ ସମ୍ବିଧାନ ଅନୁସାରେ ଆମେ ଆଜି କାର୍ଯ୍ୟ କରୁଛୁ, ସେ ସମ୍ବିଧାନ ହେଉଛି ପଣ୍ଡିତ ଜବାହରଲାଲ ନେହେରୁଙ୍କର ଆଦର୍ଶରେ ଗଠିତ ସମ୍ବିଧାନ । ଏ ସମ୍ବିଧାନ ହେଉଛି ଏକ ଗଣତାନ୍ତ୍ରିକ ସମ୍ବିଧାନ । ପୃଥିବୀର ସମସ୍ତ ବିଶିଷ୍ଟ ଗଣତନ୍ତ୍ରକୁ ଲକ୍ଷ୍ୟରେ ରଖି ଏ ସମ୍ବିଧାନ ରଚନା କରାଯାଇଛି । ଏ ସମ୍ବିଧାନ ପ୍ରଚଳିତ ହେବାର ଆଜି ଯେତେବର୍ଷ ହୋଇଗଲା, ତା' ମଧ୍ୟରେ ଏ ସମସ୍ତ ପରୀକ୍ଷାର ସମ୍ମୁଖୀନ ହୋଇ ସମୁଜ୍ଜ୍ୱଳ ଭାବରେ ଦେଖାଦେଇଛି ଓ ଦଣ୍ଡାୟମାନ ହୋଇ ରହିଛି । ତେଣୁ ତାଙ୍କୁ ଭାରତୀୟ ସମ୍ବିଧାନର ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ପଣ୍ଡିତ ଜବାହରଲାଲ ନେହେରୁ ଭାରତୀୟ ଗଣତନ୍ତ୍ରର ଜନକ ଭାବରେ ଆମର ନମସ୍ୟ । ଭାରତକୁ ଯୋଜନାବଦ୍ଧ ଭାବରେ ପୃଥିବୀରେ ଆଗେଇ ନେବା ପାଇଁ ତାଙ୍କର ପରିକଳ୍ପନା ଯୋଗୁଁ ସେ ଆଜି ଭାରତବାସୀଙ୍କର ସ୍ମରଣୀୟ । ଜନସାଧାରଣଙ୍କୁ ସେ ଯେପରି ଭାବରେ ଉଦ୍‌ବୁଦ୍ଧ କରିଥିଲେ ଭାରତବର୍ଷ ନିର୍ମାଣରେ, ଏକ ଧର୍ମ ନିରପେକ୍ଷ ସମାଜ ରଚନା କରିବାରେ ଏବଂ ଜନସାଧାରଣଙ୍କୁ ଅନୁପ୍ରାଣିତ କରିବାରେ, ତାଙ୍କର ଉଦ୍ୟମ ଭାରତର ଅଗ୍ରଗତି, ଶିଳ୍ପନୀତି, ଯୋଜନା ନୀତିରେ ପ୍ରତିଫଳିତ ହୋଇଛି । ସେହିପରି ଭାବରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ମଧ୍ୟ ଗରିବ ଲୋକଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ସ୍ୱପ୍ନ ଦେଖିଥିଲେ । ଭାରତର ଐକ୍ୟ ଓ ସଂହତି ପାଇଁ ସେ କାର୍ଯ୍ୟ କରିଥିଲେ ଏବଂ ଭାରତର ଏକତା ସହିତ କେବେହେଲେ ସମଝୋତା କରିନଥିଲେ । ସେଥିପାଇଁ ତାଙ୍କୁ ଆମେ ବିଶେଷ ଭାବରେ ମନେ ପକାଇବା । ଯେତେବେଳେ ଘୋର ସଂକଟ ମଧ୍ୟରେ ଦେଶ ଗତି କରୁଥିଲା ଏବଂ ଭାରତର ସ୍ୱାଧୀନତା ବିପନ୍ନ ହୋଇ ରହିଥିଲା, ସେହି ସମୟରେ ସେ ଦେଶକୁ ଶକ୍ତିଶାଳୀ କରିଥିଲେ ଏବଂ ଦେଶର ସାମରିକ ଶକ୍ତିକୁ ଅଭିବୃଦ୍ଧି

କରାଇ ବିଶ୍ୱରେ ଭାରତକୁ ଏକ ପ୍ରଧାନ ରାଷ୍ଟ୍ର ରୂପେ ଗଠନ କରିଥିଲେ । ତେଣୁ ପୃଥିବୀର ଶ୍ରେଷ୍ଠ ନେତା ଓ ନେତ୍ରୀମାନଙ୍କ ମଧ୍ୟରେ ସେ ଚିରଦିନ ବନ୍ଦନୀୟା ହୋଇ ରହିବେ, ଏଥିରେ କୌଣସି ସନ୍ଦେହ ନାହିଁ । ବିଶେଷ ଭାବରେ ନାରୀ ଶକ୍ତିର ଜାଗରଣର ସେ ଅନନ୍ୟ ପ୍ରତୀକ ଭାବରେ ଆମର ଚିରସ୍ମରଣୀୟା ହୋଇ ରହିବେ ।

ଅବ୍ୟାହତ ଭାବେ, ଅବିଚ୍ଛିନ୍ନଭାବେ ଯେତେଦିନ ଧରି ଭାରତର ଗଣତନ୍ତ୍ର ଚାଲି ଆସିଛି, ସେଥିପାଇଁ ଭାରତର ଜନସାଧାରଣ ବିଶେଷ ଭାବରେ ଆଜି ଅଭିନନ୍ଦିତ ହେବାର କଥା । ସେମାନଙ୍କର ସାଧାରଣ ବୁଦ୍ଧି ଅତ୍ୟନ୍ତ ବେଶୀ ଏବଂ ସେମାନେ ଆଜି ଗଣତନ୍ତ୍ରକୁ ରକ୍ଷା କରିଛନ୍ତି । ଆଜିର ଦିନରେ ଆମେ ବିଶେଷ ଭାବରେ ଭାରତର ଜନସାଧାରଣଙ୍କୁ ଅଭିନନ୍ଦିତ କରିବା ଉଚିତ୍ ।

ବନ୍ଧୁଗଣ, ଭାରତବର୍ଷ ଭିତରେ ଓଡ଼ିଶା ଏକ ଅନ୍ୟତମ ବିଶିଷ୍ଟ ରାଜ୍ୟ । କବି ରାଧାନାଥ ରାୟ ଯେତେବେଳେ ଭାରତ-ଗୀତିକା ରଚନା କରିଥିଲେ, ସେତେବେଳେ ଓଡ଼ିଶାକୁ ଭାରତ - ପଦ୍ମଫୁଲର ପାଖୁଡ଼ା ରୂପରେ ଚିତ୍ରଣ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ ଭାରତ-ପଦ୍ମଫୁଲର କେଶର ଭାବରେ ଓଡ଼ିଶାକୁ କଳ୍ପନା କରିଥିଲେ । ଆଜି ସେ ଓଡ଼ିଶା, ଯେ କି ଭାରତରେ ଶ୍ରେଷ୍ଠ ରାଜ୍ୟରେ ପରିଣତ ହେବା ପାଇଁ ବିଭିନ୍ନ କବି ଏବଂ ନେତୃତ୍ୱର ସ୍ୱପ୍ନର ବିଷୟ ଥିଲା, ଆଜି ତାକୁ କାର୍ଯ୍ୟକାରୀ କରିବା ସମୟ ଆମ ପାଇଁ ଆସିଛି । ବିଶେଷ ଭାବରେ ଆଜି ସ୍ୱାଧୀନତା ଦିବସରେ ସେଥିପାଇଁ ଆମେ ସଂକଳ୍ପବଦ୍ଧ ହେବା ଉଚିତ୍ ।

ଓଡ଼ିଶାରେ ସବୁ କିଛି ଅଛି, ଯାହାକିଛି ଗୋଟିଏ ଜାତିକୁ ନିର୍ମାଣ କରିବା ପାଇଁ ଦରକାର । ଉଦାହରଣ ସ୍ୱରୂପ-ଓଡ଼ିଶାର ଖଣିଜ ସମ୍ପଦ ଭାରତରେ ଅଦ୍ୱିତୀୟ । ଓଡ଼ିଶାର ଜଙ୍ଗଲ ସମ୍ପଦ, ଜଳ ସମ୍ପଦ, ସୁଦୀର୍ଘ ସମୁଦ୍ର ଉପକୂଳ ଏବଂ ଓଡ଼ିଶାର ବୁଦ୍ଧିମାନ ଓ ପରିଶ୍ରମୀ ଜନସାଧାରଣ, ଯାହାସବୁ ମିଶିଲେ ଗୋଟିଏ ଜାତି ବଡ଼ ଜାତି ହୁଏ, ଗୋଟିଏ ଜାତି ତାର ଅତୀତର ଗୌରବ ଓ ଗରିମା ଫେରିପାଏ, ତାହା ସବୁ ଆଜି ଓଡ଼ିଶାରେ ଅଛି । ବିଶେଷ ଭାବରେ ଆଜି ଓଡ଼ିଶାରେ ଏକ ପ୍ରତିଷ୍ଠିତ, ସ୍ଥିର ଓ ସଂକଳ୍ପବଦ୍ଧ ଶାସନ ରହିଛି । ଯେଉଁ ଶାସନ ଚାହେଁ, ଓଡ଼ିଶାକୁ ଆଗେଇ ନେବା ପାଇଁ । ଓଡ଼ିଶାକୁ ଆଗେଇ ନେବା ପାଇଁ ଯେଉଁ ସମୟ ଦରକାର, ସେ ସମୟ ଆଜି ଉପସ୍ଥିତ । ଶ୍ରୀ ଅରବିନ୍ଦ କହିଥିଲେ - ଗୋଟିଏ ଗୋଟିଏ ମୁହୂର୍ତ୍ତ ଜୀବନରେ ଆସେ, ଯେଉଁ ମୁହୂର୍ତ୍ତକୁ ଯଦି ଧରି ରଖାଯାଇପାରେ ଓ ତାହାର ସଦୁପଯୋଗ କରାଯାଇପାରେ, ତା'ହେଲେ ଯାହାକିଛି ଜୀବନର ଲକ୍ଷ୍ୟ ଓ ସ୍ୱପ୍ନ ସାର୍ଥକ ହୁଏ । ଯଦି ସେ ମୁହୂର୍ତ୍ତଟି ଚାଲିଯାଏ ତା'ହେଲେ ଆଉ ଫେରିବ ନାହିଁ । ଆଜି ଓଡ଼ିଶାର ଇତିହାସରେ ସେହି ମୁହୂର୍ତ୍ତ ଆସିଛି, ଯେଉଁଟିକି ଆମେ ସଦୁପଯୋଗ କରିପାରିଲେ ପ୍ରାଚୀନ କଳିଙ୍ଗର ପୂର୍ବ ଗୌରବ ଆମେ ପୁନରୁଦ୍ଧାର କରିପାରିବା । ଓଡ଼ିଶାର ସୁଦୀର୍ଘ ଉପକୂଳ ଅତୀତରେ ଭାରତୀୟ ନୌବାହିନୀର ପ୍ରଧାନ ଅଞ୍ଚଳ ଥିଲା । ଆଜି ଓଡ଼ିଶାର ସେହି ଉପକୂଳରେ ତିନୋଟି ବଡ଼ ବଡ଼ ବନ୍ଦର ଗଢ଼ି ଉଠୁଛି । ପାରାଦୀପ ବନ୍ଦରର ସଂପ୍ରସାରଣ ସାଙ୍ଗକୁ ଗୋପାଳପୁର ବନ୍ଦର ଏକ ପ୍ରଧାନ ବନ୍ଦରରେ ପରିଣତ ହେଉଛି ଏବଂ ଧାମରାଠାରେ ମଧ୍ୟ ଅନ୍ୟଏକ ପ୍ରଧାନ ବନ୍ଦର ନିର୍ମାଣ କରାଯାଉଛି । ଆମେ ଏହାରି ଜରିଆରେ ଅତୀତ ନୌବାଣିଜ୍ୟ ଗୌରବର ପୁନରୁଦ୍ଧାର କରିପାରିବା । କଳିଙ୍ଗ ଯେଉଁଥିପାଇଁ ପ୍ରସିଦ୍ଧ, ସେ ପ୍ରସିଦ୍ଧିର ପୁନରୁଦ୍ଧାର କରିପାରିବା ।

ଏହା ସହିତ ଓଡ଼ିଶାରେ ଶିଳ୍ପର ଜାଗରଣ ପାଇଁ ଆଜି ଯେଉଁ ଉଦ୍ୟମ ଆରମ୍ଭ ହୋଇଛି, ତାହାଫଳରେ ବହୁ ସଂଖ୍ୟାରେ ଇସ୍ପାତ କାରଖାନା, ଆଲୁମିନିୟମ ଓ ଆଲୁମିନା କାରଖାନା, ରାସାୟନିକ କାରଖାନା, ତୈଳ ବିଶୋଧନାଗାର ଓ ବିଭିନ୍ନ କଳକାରଖାନା ଆଦି ଆସୁଛି । ଏକ ଲକ୍ଷ କୋଟି ଟଙ୍କା ଓଡ଼ିଶାର ଶିଳ୍ପକ୍ଷେତ୍ରରେ ବିନିଯୋଗ ହେବା ପାଇଁ ଯାଉଛି । ଏସବୁ କାର୍ଯ୍ୟକାରୀ ହେଲେ ଓଡ଼ିଶାର ଅବସ୍ଥାର ପରିବର୍ତ୍ତନ ହୋଇଯିବ । ବେକାର ସମସ୍ୟା ସମାଧାନର ଅନ୍ୟ ଉପାୟ ନାହିଁ । ଯେଉଁ ଦ୍ରୁତ ଶିଳ୍ପାୟନର କଳ୍ପନା କରାଯାଉଛି, ସେଥିରେ ଓଡ଼ିଶାର ଯୁବଶକ୍ତିକୁ ସମ୍ପୂର୍ଣ୍ଣଭାବେ ଆମେ ନିୟୋଜିତ କରିପାରିବା । ଏହା ସହିତ ଓଡ଼ିଶାର ଯେଉଁ ପର୍ଯ୍ୟଟନ କେନ୍ଦ୍ର ରହିଛି, ତାକୁ ମଧ୍ୟ ଆମେ ପ୍ରସାରିତ କରିପାରିବା । ସେଥିପାଇଁ ଏକ ପ୍ରଗାଢ଼ ପ୍ରଚେଷ୍ଟା ରାଜ୍ୟ ସରକାରଙ୍କ ପକ୍ଷରୁ ଆରମ୍ଭ କରାଯାଉଛି । ପର୍ଯ୍ୟଟନ, ଶିଳ୍ପ ଏବଂ କୃଷି ଉପରେ, ସରକାର ପ୍ରକୃତ ଗୁରୁତ୍ୱ ଆରୋପ କରୁଛନ୍ତି । ଆମର ଅର୍ଥନୀତି କୃଷି ପ୍ରଧାନ ଏବଂ ଓଡ଼ିଶାରେ ଏପରି ଭାବରେ କୃଷିକୁ ଆମେ ନେଇଯିବା ଦରକାର, ଯାହାଫଳରେ ପ୍ରତ୍ୟେକ କୃଷକ ସମୃଦ୍ଧିଶାଳୀ ହୋଇପାରିବ । ପ୍ରତ୍ୟେକ କୃଷକର ଆୟ ଅନ୍ତତଃ ପକ୍ଷେ ଦୁଇଗୁଣ ବଢ଼ିପାରିବ । ଆମେ ଓଡ଼ିଶାର ସଂସ୍କୃତି କ୍ଷେତ୍ରରେ ମଧ୍ୟ ବହୁ କାର୍ଯ୍ୟ କରିବା ପାଇଁ ବଦ୍ଧପରିକର । ତେଣୁ ଶିଳ୍ପ, ସଂସ୍କୃତି, କୃଷି ଓ ପର୍ଯ୍ୟଟନ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାକୁ ଆଗେଇ ନେବା ହେଉଛି, ଆଜି ଆମର ସ୍ୱପ୍ନ ଏବଂ ଜନସାଧାରଣ ଏହି ସ୍ୱପ୍ନରେ ଅଂଶୀଦାର ହୋଇ ଓଡ଼ିଶାକୁ ଆଗେଇନେବା ପାଇଁ ବାହାରି ଆସିବା ଉଚିତ୍ ।

ଓଡ଼ିଶାରେ ସମସ୍ତେ ଶ୍ରୀଜଗନ୍ନାଥଙ୍କୁ ତାଙ୍କର ଇଷ୍ଟଦେବତା ବୋଲି ଗ୍ରହଣ କରନ୍ତି । ଜଗନ୍ନାଥଙ୍କ ରଥଯାତ୍ରା ଯେତେବେଳେ ହୁଏ, ସେତେବେଳେ କେବଳ ପଣ୍ଡା ଓ ପୂଜକମାନେ ରଥର ଦଉଡ଼ି ଟାଣିଲେ ରଥ ଚାଲେ ନାହିଁ । ରଥ ଟାଣିବାକୁ ହେଲେ ସମସ୍ତଙ୍କ ହାତ ସେଥିରେ ଲାଗିବା ଦରକାର । ଆଜି ଓଡ଼ିଶାରେ ପ୍ରଗତିର ଯେଉଁ ଅଭିଯାତ୍ରା ଆରମ୍ଭ ହୋଇଛି, ଓଡ଼ିଶାକୁ ଆଗେଇ ନେବା ପାଇଁ ଯେଉଁ ବିଶାଳ ଯାତ୍ରା ଆଜି ଆରମ୍ଭ ହୋଇଛି ସେ ଯାତ୍ରାରେ ସହଯୋଗ କରିବା ଦରକାର । ଜନସାଧାରଣଙ୍କର ପୂର୍ଣ୍ଣ ସହଯୋଗ ରହିବା ଦରକାର । ତା'ହେଲେ ଆମେ ଯାଇ ଆମ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା । ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିପାରିବା । ଆଜି ଏହି ଅବସରରେ ଭାରତମାତାଙ୍କୁ ବନ୍ଦନା କରିବା ସଙ୍ଗେ ସଙ୍ଗେ ମୁଁ ଉତ୍କଳ ଜନନୀଙ୍କୁ ମଧ୍ୟ ପ୍ରଣାମ ଜଣାଉଛି ।

ବନ୍ଦେ ଭାରତମାତା
ବନ୍ଦେ ଉତ୍କଳଜନନୀ



୫୧ ତମ ସ୍ୱାଧୀନତା ଦିବସ ପାଳନ ଉପଲକ୍ଷେ

## ମାନ୍ୟବର ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ

# ଶ୍ରୀ ନେତ୍ରାନନ୍ଦ ମଲ୍ଲିକଙ୍କ

# ବାର୍ତ୍ତା

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଓଡ଼ିଶାବାସୀ ପ୍ରିୟ ଭାଇ ଭଉଣୀମାନଙ୍କୁ ମୁଁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି । ଆଜିର ଏହି ପବିତ୍ର ଦିବସରେ ସ୍ୱାଧୀନତା ସଂଗ୍ରାମର ଯେଉଁ ମହାନ ସଂଗ୍ରାମୀମାନଙ୍କର ଅସୀମ ଧୈର୍ଯ୍ୟ, ଅତୁଳନୀୟ ତ୍ୟାଗ, ଦୃଢ଼ ସଂକଳ୍ପ ଓ ସାଲିସବିହୀନ ସଂଗ୍ରାମ ଫଳରେ ପରାଧୀନତାର ଶୃଙ୍ଖଳରୁ ଭାରତ ମୁକ୍ତି ଲାଭ କଲା, ଭାରତମାତାର ସେହି ସୁଯୋଗ୍ୟ ସନ୍ତାନମାନଙ୍କୁ ମୁଁ ମୋର ଗଭୀର ଶ୍ରଦ୍ଧାଂଜଳି ଅର୍ପଣ କରୁଅଛି ।

ଭାରତର ସ୍ୱାଧୀନତା ସଂଗ୍ରାମ ବିଶ୍ୱ ଇତିହାସରେ ଅନନ୍ୟ । ଅହିଂସା ଓ ସତ୍ୟ ଏହି ଦୁଇଟି ଅସ୍ତ୍ରକୁ ପାଥେୟ କରି ଏ ଜାତି ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ନିରବଚ୍ଛିନ୍ନ ସଂଗ୍ରାମ କରି ପରାକ୍ରମଶାଳୀ ବ୍ରିଟିଶ ସାମ୍ରାଜ୍ୟର ପତନ ଘଟାଇଥିଲା । ସ୍ୱାଧୀନତା ଆମର ମୁକ୍ତି ସଂଗ୍ରାମର ଏକମାତ୍ର ଲକ୍ଷ୍ୟ ନଥିଲା । ନୈତିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ଏକ ଶୋଷଣମୁକ୍ତ, ପ୍ରଗତିଶୀଳ ସମାଜ ପ୍ରତିଷ୍ଠା ନିମନ୍ତେ ସ୍ୱାଧୀନତା ଥିଲା ପ୍ରାଥମିକ ଆବଶ୍ୟକତା । ଆମର ଏହି ଲକ୍ଷ୍ୟ ପୂରଣ ଦିଗରେ ଆମେମାନେ କେତେଦୂର ଅଗ୍ରସର ହୋଇଛୁ, ତାହା ଆଜି ଆମେ ଆତ୍ମସମୀକ୍ଷା କରିବା ଆବଶ୍ୟକ । ସାମାଜିକ ନ୍ୟାୟ ଓ ବିକାଶର ସୁଫଳ ସମାଜର ଦରିଦ୍ରତମ ବ୍ୟକ୍ତି ନିକଟରେ ପହଞ୍ଚାଇବା ଆମର ଲକ୍ଷ୍ୟ । ତେଣୁ ଆସନ୍ତୁ, ଆଜି ପରସ୍ପର ଭିତରେ ଥିବା ଭେଦଭାବ ଭୁଲି ଯାଇ ଆମର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏକ ସ୍ୱାବଲମ୍ବୀ, ଶୋଷଣମୁକ୍ତ, ପ୍ରଗତିଶୀଳ ସମାଜ ଗଠନ ଦିଗରେ ନିଜକୁ ଉତ୍ସର୍ଗ କରିବା ।

ଜୟହିନ୍ଦ



ଶ୍ରୀ କେ: ଆର: ନାରାୟଣନ୍
ମାନ୍ୟବର ରାଷ୍ଟ୍ରପତି



ଶ୍ରୀ ଗୋପାଳ ରାମାନୁଜମ୍
ମାନ୍ୟବର ରାଜ୍ୟପାଳ, ଓଡ଼ିଶା



ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ମୁଖ୍ୟମନ୍ତ୍ରୀବୃନ୍ଦ



ଶ୍ରୀ ହରେକୃଷ୍ଣ ମହତାବ
ପ୍ରଧାନମନ୍ତ୍ରୀ : ୨୩-୪-୧୯୪୬ – ୧୫-୦୮-୧୯୪୭
ମୁଖ୍ୟମନ୍ତ୍ରୀ-୧୫-୦୮-୧୯୪୭- ୧୨-୫-୧୯୫୦,
୧୯-୧୦-୧୯୫୬-୪-୩-୧୯୫୭, ୬-୪-୧୯୫୭-୨୨-୫-୧୯୫୯



ଶ୍ରୀ ନବକୃଷ୍ଣ ଚୌଧୁରୀ
୧୨-୫-୧୯୫୦ – ୨୦-୨-୧୯୫୨
୨୦-୨-୧୯୫୨-୧୯-୧୦-୧୯୫୬



ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ
୨୩-୬-୧୯୬୧ – ୨-୧୦-୧୯୬୩
୫-୩-୧୯୯୦ – ୧୫-୩-୧୯୯୫



ଶ୍ରୀ ବିରେନ୍ ମିତ୍ର
୨-୧୦-୧୯୬୩ – ୨୧-୨-୧୯୬୫



ଶ୍ରୀ ସଦାଶିବ ତ୍ରିପାଠୀ
୨୧-୨-୧୯୬୫ – ୮-୩-୧୯୬୭



ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ
୮-୩-୧୯୬୭ – ୯-୧-୧୯୭୧



ଶ୍ରୀ ବିଶ୍ୱନାଥ ଦାସ
୩-୪-୧୯୭୧ – ୧୪-୬-୧୯୭୨



ଶ୍ରୀମତୀ ନନ୍ଦିନୀ ଶତପଥୀ
୧୪-୬-୧୯୭୨ – ୩-୩-୧୯୭୩,
୬-୩-୧୯୭୪ – ୧୬-୧୨-୧୯୭୬



ଶ୍ରୀ ବିନାୟକ ଆଚାର୍ଯ୍ୟ
୨୯-୧୨-୧୯୭୬ – ୩୦-୪-୧୯୭୭



ଶ୍ରୀ ନୀଳମଣି ରାଉତରାୟ



ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



ଶ୍ରୀ ହେମାନନ୍ଦ ବିଶ୍ୱାଳ

# ଆଜିର ଆହ୍ୱାନ : ଅତୀତ ଗୌରବର ପୁନରୁତ୍ଥାନ

*ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ*

ସ୍ୱାଧୀନତାର ୫୦ ବର୍ଷରେ ଆମେ ପଦାର୍ପଣ କରିଛେ । କୌଣସି ଜାତିର ଯଦି ସବୁଠାରୁ କିଛି ମୂଲ୍ୟବାନ ବସ୍ତୁ ଥାଏ ତା'ହେଲେ ତା'ର ସ୍ୱାଧୀନତା । ଏ ସ୍ୱାଧୀନତା ଆନ୍ଦୋଳନ ପାଇଁ ଯେଉଁମାନେ ଜୀବନ ବଳିଦାନ କରିଛନ୍ତି, ଯେଉଁମାନେ ଅସହନୀୟ ଦୁଃଖ କଷ୍ଟ ଭୋଗ କରିଛନ୍ତି, କାରାବରଣ କରିଛନ୍ତି, ଆଜି ସେମାନଙ୍କୁ ଆମେ ସ୍ମରଣ କରିବାର କଥା । ଯେଉଁମାନେ ଏ ସ୍ୱାଧୀନତାର ସ୍ୱପ୍ନ ଦେଖି ଭାରତବର୍ଷର ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିଛନ୍ତି, ଆଜି ସେମାନଙ୍କୁ ମଧ୍ୟ ବିଶେଷ ଭାବରେ ମନେ ପକାଇବା ଦରକାର । ଜାତିର ପିତା ମହାତ୍ମାଗାନ୍ଧୀ ଏକ ମହାନ୍ ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ଏ ଦେଶକୁ ଉଦ୍‌ବୁଦ୍ଧ କରିଥିଲେ ସ୍ୱାଧୀନତାର ମନ୍ତ୍ରରେ, ଅହିଂସାର ମନ୍ତ୍ରରେ । ଆଜି ସେ ସ୍ୱାଧୀନତାର ଅଗ୍ନି ମନ୍ତ୍ରଦାତା, ଅହିଂସା ମନ୍ତ୍ରର ପ୍ରବର୍ତ୍ତକ ଏବଂ ସାରା ପୃଥିବୀରେ ମହାନ୍ ବିପ୍ଳବୀ ରୂପେ ପରିଚିତ ମହାତ୍ମାଗାନ୍ଧୀଙ୍କୁ ଆମେ ପ୍ରଣାମ ଜଣାଉଛେ । କାରଣ ତାଙ୍କର ଆବିର୍ଭାବ ଦ୍ୱାରା ହିଁ ଭାରତବର୍ଷର ସ୍ୱାଧୀନତା ସମ୍ଭବ ହେଲା ଏବଂ ଭାରତବର୍ଷର ସ୍ୱାଧୀନତା ସହିତ ବିଶ୍ୱର ବହୁ ଦେଶ ସ୍ୱାଧୀନ ହୋଇଗଲେ । ଯେପରି ଗୋଟିଏ ଶୃଙ୍ଖଳର କଡ଼ି ଛିଡ଼ିଗଲେ ସବୁ ଶୃଙ୍ଖଳର କଡ଼ି ଛିଡ଼ିଯାଏ, ସେହିପରି ଭାବରେ ଯେଉଁମାନେ ପରାଧୀନ ହୋଇ ରହିଥିଲେ, ସମଗ୍ର ଦକ୍ଷିଣପୂର୍ବ ଏସିଆର ଦେଶ, ଆଫ୍ରିକାର ଦେଶ, ସେମାନେ ସମସ୍ତେ ସ୍ୱାଧୀନ ହେଲେ ଭାରତର ସ୍ୱାଧୀନତା ପରେ ପରେ । ପୃଥିବୀର ଇତିହାସରେ ଏହି ଘଟଣା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । କାରଣ ଭାରତ ହେଉଛି ପୃଥିବୀର ଏକ କେନ୍ଦ୍ରବିନ୍ଦୁ, ଏସିଆର ଏକ କେନ୍ଦ୍ରବିନ୍ଦୁ ଏବଂ ପୃଥିବୀର ଯେତେ ଜନସାଧାରଣ, ଦଳିତ ମଥିତ, ସେମାନଙ୍କର ନେତା ହେଉଛି ଭାରତବର୍ଷ । ସେମାନଙ୍କ ମୁକ୍ତିଦାତା ଭାରତବର୍ଷ ଏବଂ ମହାତ୍ମାଗାନ୍ଧୀ ।

ଆମେ ଆଜି ସ୍ମରଣ କରିବା ଶ୍ରୀ ଅରବିନ୍ଦଙ୍କୁ । ସେ ତାଙ୍କ ସାଧନା ଦ୍ୱାରା ଏକ ମହାନ୍ ଭାରତର ସ୍ୱପ୍ନ ଦେଖିଥିଲେ । ସେ ସ୍ୱପ୍ନ ଦେଖିଥିଲେ ଯେ ବିଭକ୍ତ ଭାରତବର୍ଷ ଦିନେ ଏକ ହୋଇଯିବ । ଭାରତବର୍ଷର ଇତିହାସ ଯଦି ଆମେ ଦେଖିବା, ଏ ଇତିହାସରେ ହୁଏତ ରାଜନୈତିକ ଏକତା କେତେବେଳେ ଆସିଛି, କେତେବେଳେ ଆସି ନାହିଁ କିନ୍ତୁ ସାଂସ୍କୃତିକ ଏକତା ଭାରତବର୍ଷରେ ଅନ୍ତଃସଲିଳା ଫଲ୍‌ଗୁ ଭଳି ପ୍ରବାହିତ ହୋଇ ଆସିଛି ହଜାର ହଜାର ବର୍ଷ ଧରି । ଆମର ଜନସାଧାରଣ, ମୁନିଋଷି, କବି, ନେତା, ଶାସକମାନେ ସମସ୍ତେ ସବୁବେଳେ ସାଂସ୍କୃତିକ ଏକତାର ସ୍ୱପ୍ନ ଦେଖି ଆସିଛନ୍ତି । ଆଜି ସେହି ରାଜନୈତିକ ଏକତା ସମ୍ଭବ ହୋଇଛି ।

ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ବିଶେଷ ଭାବରେ ମନେ ପକାଇବାର କଥା । କାରଣ ସେ ଆମକୁ ଏକ ସାଧାରଣତନ୍ତ୍ର ଦେଇଛନ୍ତି । ଗଣତନ୍ତ୍ର ଦେଇଛନ୍ତି । ଏ ଭାରତବର୍ଷର ସେ ପ୍ରଥମ ନିର୍ମାତା । ଭାରତରେ ନିଅଁ ସେ ପକେଇଛନ୍ତି । ଆଜି ଆମେ ଯେଉଁ ନିଅଁ ଉପରେ ନିର୍ମିତ ଏକ ସୌଧରେ ଅବସ୍ଥାନ କରିଛେ ଏବଂ ସାରା ପୃଥିବୀକୁ ଗର୍ବର ସହିତ ଦେଖୁଛେ, ତା'ର ପ୍ରବକ୍ତା ହେଉଛନ୍ତି ପଣ୍ଡିତ ଜବାହରଲାଲ ନେହେରୁ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ବିରୋଧ କରୁଥିଲେ, କଂଗ୍ରେସର ବିରୋଧ କରୁଥିଲେ, ସେ ସମସ୍ତଙ୍କୁ ନେଇ ସମ୍ବିଧାନ ପ୍ରଣୟନ କରିଥିଲେ । ଯେଉଁ ଆମ୍ବେଦକର ଗାନ୍ଧିଜୀଙ୍କର ବିରୋଧୀ ଥିଲେ ଏବଂ କଂଗ୍ରେସର ବିରୋଧୀ ଥିଲେ, ସେ ଆମର ସମ୍ବିଧାନର ପ୍ରଣେତା । ଆଜି ଏ ସମ୍ବିଧାନ ସାରା ପୃଥିବୀରେ ଏକ ମହାନ୍ ସମ୍ବିଧାନ ରୂପେ ପରିଗଣିତ ହୋଇଛି । ୫୦ ବର୍ଷ ଭିତରେ ବହୁ ଝଡ଼ଝଞ୍ଜା ବହିଯାଇଛି । ବହୁ ସମୟରେ ଆମେ ସଙ୍କଟର ସମ୍ମୁଖୀନ ହୋଇଛେ । ଅନେକ ସମୟରେ ଆମେ ଗୋଟିଏ ଦଳର ସରକାର ଚିନ୍ତା କରିଥିଲେ । ହୁଏତ ଗୋଟିଏ ଦଳ ସରକାର ଗଢ଼ିବା ପାଇଁ ଆମେ ସମର୍ଥ ହୋଇ ପାରିନାହୁଁ । କିନ୍ତୁ ଭାରତର ସମ୍ବିଧାନ ଅତୁଟ ରହିଛି । ନିରବଚ୍ଛିନ୍ନ ଭାବରେ ଗୋଟିଏ ନା ଗୋଟିଏ ସରକାର ଭାରତବର୍ଷରେ ରହି ଆସିଛି । ଆଜି ତା'ର ଏକ ଅଦ୍ଭୁତ ପ୍ରୟୋଗ ଭାରତବର୍ଷରେ କାର୍ଯ୍ୟକାରୀ ହୋଇଛି । ସେ ପ୍ରୟୋଗ ହେଉଛି, ବହୁଦଳ ଏକତ୍ର ହୋଇ ଗୋଟିଏ ସରକାର ଗଠନ କରିବା । ବହୁ ପ୍ରାଦେଶିକ ଦଳ ଏକତ୍ର ହୋଇ ଆଜି ସରକାର ଗଠନ କରିଛନ୍ତି ଏବଂ ସେ ସରକାରକୁ ଏକ ପ୍ରଧାନ ଦଳ ହିସାବରେ କଂଗ୍ରେସ ସମର୍ଥନ କରୁଛି । ଏ ପରୀକ୍ଷା ମଧ୍ୟ ଚାଲୁ ରହିବ । ଗଣତନ୍ତ୍ର ଯେତେଦିନ ପର୍ଯ୍ୟନ୍ତ ଥିବ, ସେତେଦିନ ପର୍ଯ୍ୟନ୍ତ ଭାରତବର୍ଷର ସ୍ୱାଧୀନତା ଅକ୍ଷୁଣ୍ଣ ରହିବ । ସେତେଦିନ ପର୍ଯ୍ୟନ୍ତ ଭାରତବର୍ଷରେ ନୂତନ ନୂତନ ପରୀକ୍ଷା କରିବାରେ ଜନସାଧାରଣ ସେମାନଙ୍କର ଅଗ୍ରଗତି ବଜାୟ ରଖିବେ । ଏ ହେଉଛି ସ୍ୱାଧୀନତା ଦିବସର ବାର୍ତ୍ତା ।

ରବୀନ୍ଦ୍ରନାଥ ଠାକୁରଙ୍କର ଆଜି ଜୟଗାନ କରିବା । ବିଭିନ୍ନ ଜାତିର ଯେତେ କବି ଭାରତବର୍ଷରେ ଜନ୍ମଲାଭ କରିଛନ୍ତି, ସେମାନେ ସମସ୍ତେ ଭାରତବର୍ଷର ଜୟଗାନ କରିଛନ୍ତି । ରବୀନ୍ଦ୍ରନାଥ କହିଛନ୍ତି – ଏ ଭାରତବର୍ଷକୁ ସବୁ ଶ୍ରେଣୀର ଲୋକ ଆସିଛନ୍ତି । ଶକ, ହୁନ, ମୋଗଲ, ପଠାଣ, ଚୀନା, ସବୁ ଲୋକ ଆସିଛନ୍ତି କିନ୍ତୁ ଭାରତବର୍ଷର ମହାସାଗର ଭିତରେ ସମସ୍ତେ ଲୀନ ହୋଇ ଯାଇଛନ୍ତି । ଏକ ମହାନ୍ ଭାରତବର୍ଷର ଜାତୀୟତା ଗଢ଼ି ଉଠିଛି । ସେହିପରି ଭାବରେ ଆମର ବରେଣ୍ୟ କବି ରାଧାନାଥ ରାୟ । ଯେଉଁଦିନ ଓଡ଼ିଶାର ସମସ୍ତେ ମିଶି ଉତ୍କଳ ସମ୍ମିଳନୀ କରିଥିଲେ ସେଦିନ ତାଙ୍କୁ କବିତା ଲେଖିବା ପାଇଁ କୁହାଯାଇଥିଲା । ସେ ଯେଉଁ କବିତା ଲେଖିଥିଲେ ସର୍ବେଷାଂ ଜନନୀ ଭାରତ, ସେଥିରେ ସର୍ବେଷାଂ ଜନନୀ ଉତ୍କଳ ନାହିଁ, ଅଛି ସର୍ବେଷାଂ ଜନନୀ ଭାରତ । ସେଥିରେ ଭାରତବର୍ଷର ଜୟଗାନ କରାଯାଇଛି । କୁହାଯାଇଛି ,ଭାରତ ପଙ୍କଜ ଦଳମିବ ଉତ୍କଳମ୍ । ଏହି ଭାରତ ପଙ୍କଜର ଉତ୍କଳ

ହେଉଛି ଗୋଟିଏ ପାଖୁଡ଼ା । ଏ ମହାନ୍ ଜାତୀୟତାର ଯେଉଁମାନେ ଜୟଗାନ କରିଛନ୍ତି, ଆଜି ବିଶେଷ ଭାବରେ ସେମାନଙ୍କୁ ସ୍ମରଣ କରିବା । ଭାରତବର୍ଷର ଜାତୀୟତାରେ ଆମେ ଗର୍ବ ଓ ଗୌରବ ଅନୁଭବ କରିବା କଥା ।

ସ୍ୱାଧୀନତାର ୫୦ ବର୍ଷ ଭିତରେ ଭାରତବର୍ଷର ଯଥେଷ୍ଟ ଅଗ୍ରଗତି ହୋଇଛି । ଆଜି ନୈରାଶ୍ୟର ପ୍ରଶ୍ନ ଉଠୁନାହିଁ । ଅନେକଙ୍କ ମନ ଭିତରେ ଅନେକ ସମୟରେ ନିରାଶାର ଭାବ ଜାଗ୍ରତ ହୁଏ । ଆମେ ଅନେକ ସମୟରେ ଭାବୁ ଯେ ୫୦ ବର୍ଷ ଧରି ଭାରତର ସ୍ୱାଧୀନତା ହେଲା ତଥାପି କୋଟି କୋଟି ଲୋକ ଦରିଦ୍ର ଅବସ୍ଥାରେ ରହିଛନ୍ତି । ଆଜି ଭାରତବର୍ଷ ପ୍ରାୟ ୧୦୦ କୋଟି ଲୋକଙ୍କର ଦେଶ ହେବା ପାଇଁ ଯାଉଛି । ତା' ଭିତରେ ପ୍ରାୟ ୩୦ କୋଟି ଲୋକ ଗରିବ । ଓଡ଼ିଶାର ପ୍ରାୟ ଦେଢ଼ କୋଟି ଲୋକ ଗରିବ ଅବସ୍ଥାରେ ଅଛନ୍ତି । କିନ୍ତୁ ଯେଉଁସବୁ ଅଗ୍ରଗତି ହୋଇଛି, ସେ ଅଗ୍ରଗତିକୁ ଆମେ ମନେ ରଖିବାର କଥା ଏବଂ ଯାହା କିଛି ଗ୍ଲାନି ରହିଯାଇଛି, ଯାହା କିଛି ଅଭାବ ରହିଯାଇଛି, ସେ ଅଭାବକୁ ଦୂର କରିବା ପାଇଁ ଆମେ ଆଜି ସଂକଳ୍ପବଦ୍ଧ ହେବାର କଥା । ସ୍ୱାଧୀନତା ପରେ ଆମର ଖାଦ୍ୟ ନଥିଲା । ଦୁନିଆଁରେ ଭିକ୍ଷାଥାଳି ଧରି ବୁଲୁଥିଲେ ଖାଦ୍ୟ ପାଇଁ । କିନ୍ତୁ ଆଜି ଯଥେଷ୍ଟ ଖାଦ୍ୟଶସ୍ୟ ଭାରତବର୍ଷରେ ଉତ୍ପାଦନ ହୋଇଛି । ଖାଦ୍ୟଶସ୍ୟ ରଖିବା ପାଇଁ ଆଜି ଦେଶରେ ଖାଦ୍ୟ ଭଣ୍ଡାର ନାହିଁ । ପୃଥିବୀର ଅନ୍ୟାନ୍ୟ ଦେଶମାନେ ଭାରତବର୍ଷକୁ ଅପେକ୍ଷା କରି ରହିଛନ୍ତି । ଭାରତରୁ ଖାଦ୍ୟ ଯାଉଛି ବିଭିନ୍ନ ଦେଶକୁ, ଆଫ୍ରିକା, ଏସିଆ, ସୋଭିଏତ ୟୁନିଅନ ପ୍ରଭୃତି ବିଭିନ୍ନ ଦେଶକୁ । ଆମେ ଖାଦ୍ୟଶସ୍ୟରେ ସ୍ୱାବଲମ୍ବୀ ହୋଇଛେ । ଶିଳ୍ପ କ୍ଷେତ୍ରରେ ଭାରତର ଯେଉଁ ଅଗ୍ରଗତି ହୋଇଛି, ତାକୁ ବିଶେଷ ଭାବରେ ସ୍ମରଣ କରିବାର କଥା । ଭାରତରେ ଯେତେ ବିଶେଷଜ୍ଞ, କାରିଗର ଅଛନ୍ତି ପୃଥିବୀର କୌଣସି ଦେଶରେ ନାହାନ୍ତି । ସେମାନେ ଆମେରିକା, ୟୁରୋପ ଆଦି ପୃଥିବୀର ବିଭିନ୍ନ ଦେଶରେ କାମ କରୁଛନ୍ତି । ଯେଉଁସବୁ ଦେଶ ଉନ୍ନତ ଦେଶ ଭାବେ ପରିଚିତ, ଯଦି ଭାରତର ବିଶେଷଜ୍ଞ ଓ କାରିଗରମାନେ ସେଠୁ ଚାଲିଆସନ୍ତି, ସେସବୁ ଦେଶରେ ଆଜି ସଙ୍କଟ ଦେଖାଦେବ । ଏତେ ସଂଖ୍ୟାରେ ବିଶେଷଜ୍ଞ, ବୈଜ୍ଞାନିକ, କାରିଗରମାନେ ଏ ଦେଶରେ ଜନ୍ମଲାଭ କରି ଦେଶମାତୃକାକୁ ଧନ୍ୟ କରିଛନ୍ତି ।

ଆମେ ସାମରିକ କ୍ଷେତ୍ରରେ ପୃଥିବୀର ଯେ କୌଣସି ଶକ୍ତି ସହିତ ସାମନା କରିବା ପାଇଁ ସମର୍ଥ । କେହି କେବେ ଭାରତବର୍ଷ ଉପରେ ତା'ର ମନ୍ଦଦୃଷ୍ଟି ପକାଇ ଯାଇପାରିବ ନାହିଁ, କାରଣ ଭାରତବର୍ଷ ତା'ର ଉଚିତ ଜବାବ ଦେବା ପାଇଁ ଆଜି ପ୍ରସ୍ତୁତ । ବିଭିନ୍ନ କ୍ଷେତ୍ରରେ ଭାରତବର୍ଷର ଅଗ୍ରଗତି ସମ୍ଭବ ହୋଇଛି । ଯେଉଁ ଦାରିଦ୍ର୍ୟର ଅଭିଶାପ ରହିଛି, ତାକୁ ଦୂର କରିବା ପାଇଁ ଆମେ ସଂକଳ୍ପବଦ୍ଧ ହେବା ଦରକାର । କାରଣ ଜଣେ ସଂସ୍କୃତ କବି କହିଥିଲେ-

''ଦାରିଦ୍ର୍ୟ ଦୋଷ ଗୁଣ ରାଶି ନାଶି'' ।

ସମସ୍ତ ପ୍ରକାର ଗୁଣ ଥାଇପାରେ, କିନ୍ତୁ ଯଦି ଦାରିଦ୍ର୍ୟ ଦୋଷ ଥାଏ, ସେ ସବୁ ଗୁଣକୁ ନଷ୍ଟ କରିଦିଏ । ସେଥିପାଇଁ ଭାରତବର୍ଷରୁ ଦାରିଦ୍ର୍ୟ ଦୂର କରିବା ପାଇଁ ବହୁ କାର୍ଯ୍ୟକ୍ରମ ଲୋକଙ୍କ ପାଖରେ ପହଞ୍ଚିବା ଆବଶ୍ୟକ । ଲୋକେ ତା'ର ସୁଫଳ ଅନୁଭବ କରିବା ଦରକାର । ଓଡ଼ିଶାରେ ଆମେ ଆଜି ଏକ ମହାନ୍ ଆହ୍ୱାନର ସମ୍ମୁଖୀନ ହୋଇଛେ । ଏକ ସମୟରେ ଓଡ଼ିଶା ଥିଲା, ଭାରତବର୍ଷରେ ଏକ ଶ୍ରେଷ୍ଠ ରାଜ୍ୟ । କଳିଙ୍ଗ ଶବ୍ଦ ଆଜି ପୃଥିବୀର ବିଭିନ୍ନ ଦେଶର ଇତିହାସରେ ଖୋଜିଲେ ମିଳିବ । ଯଦି ଆମେ ଇଣ୍ଡୋନେସିଆ ଯିବା, ସେଠାରେ ସେମାନଙ୍କର ପ୍ରଥମ ଅଧିବାସୀ କଳିଙ୍ଗ ବୋଲି ଗର୍ବ କରନ୍ତି । କଳିଙ୍ଗ ରାଜବଂଶ ଶହ ଶହ ବର୍ଷ ଧରି ସିଂହଳରେ ରାଜତ୍ୱ କରୁଥିଲେ । କଳିଙ୍ଗର ନାମ ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶରେ ଖୋଜିଲେ ମିଳିବ । ଏକ ସମୟରେ ନୌ-ବାଣିଜ୍ୟ କ୍ଷେତ୍ରରେ ଭାରତବର୍ଷରେ କଳିଙ୍ଗମାନେ ଅଗ୍ରଣୀ ଥିଲେ । ତେଣୁ ଓଡ଼ିଶାର ସେହି ମହାନ୍ ପରମ୍ପରା ଓ ଗୌରବର ପୁନରୁଦ୍ଧାର କରିବା ଆମ ଦାୟିତ୍ୱ । ସେ ଗୌରବର ପୁନରୁଦ୍ଧାର କରିବାକୁ ହେଲେ ଓଡ଼ିଶାକୁ ଶିଳ୍ପ କ୍ଷେତ୍ରରେ, କୃଷି କ୍ଷେତ୍ରରେ ଆଗେଇ ନେବା ପାଇଁ ପଡ଼ିବ । ଓଡ଼ିଶାର ଯେଉଁ ବିରାଟ ଉପକୂଳ ରହିଛି, ସେଥିରେ ଗୋଟିଏ ବନ୍ଦର ନୁହେଁ, ଅନେକ ବନ୍ଦର ହେବ । ଗୋଟିଏ ପାରାଦ୍ୱୀପ ବନ୍ଦର କରି ଆମେ ଗହଣା ଭିତରେ ନିମ୍ବକାଠି ବୋଲି ଗର୍ବ କରୁଥିଲେ । ତିନି ଚାରି ବର୍ଷ ମଧ୍ୟରେ ଗୋପାଳପୁରରେ ଏକ ପ୍ରଥମ ଶ୍ରେଣୀର ବନ୍ଦର ହେବା ପାଇଁ ଯାଉଛି । ବାଲେଶ୍ୱରର ଧାମରା ପାଖରେ ଆଉ ଏକ ବନ୍ଦର ହେବା ପାଇଁ ଯାଉଛି । ଏହାଛଡ଼ା ଅସ୍ତରଙ୍ଗ ପାଖରେ, ବାଲିହରଚଣ୍ଡୀ ପାଖରେ ଏବଂ ଅନ୍ୟାନ୍ୟ ଜାଗାରେ ଅନେକ କ୍ଷୁଦ୍ର ବନ୍ଦର ହେବ । ୫ ବର୍ଷ ଭିତରେ ଓଡ଼ିଶାର ଉପକୂଳ ପୁଣି ନୌ-ବାଣିଜ୍ୟରେ ମୁଖର ହୋଇଯିବ । ଓଡ଼ିଶା ଭାରତବର୍ଷର ଏକ ଅଗ୍ରଣୀ ରାଜ୍ୟ ହେବ ନୌ-ବାଣିଜ୍ୟର କ୍ଷେତ୍ରରେ । ଆମର ସ୍ୱପ୍ନ ଆଜି କାର୍ଯ୍ୟକାରୀ ହେବା ପାଇଁ ଯାଉଛି । କାରଣ ଆଜି ଅର୍ଥର ଅଭାବ ନାହିଁ । ପୂର୍ବର ପ୍ରଧାନମନ୍ତ୍ରୀ ନରସିଂହ ରାଓ ଯେଉଁ ଉଦାରୀକରଣ ନୀତି ପ୍ରବର୍ତ୍ତନ କରିଥିଲେ, ତା'ର ଉଦ୍ଦେଶ୍ୟ ହେଉଛି ଏଇଆ - ବର୍ତ୍ତମାନ ସବୁ ଟଙ୍କା ରାଷ୍ଟ୍ରର ନାହିଁ । ସବୁ ପୁଞ୍ଜି ରାଷ୍ଟ୍ର ପାଖରେ ନାହିଁ । ସବୁଆଡ଼େ କଳକାରଖାନା କରିବା ପାଇଁ, ବନ୍ଦର କରିବା ପାଇଁ ସରକାରର ଅର୍ଥ ନାହିଁ । ତାକୁ ନିର୍ଭର କରିବାକୁ ପଡ଼ିବ ଅନ୍ୟମାନଙ୍କ ଉପରେ । ସେଥିପାଇଁ ଉଦାରୀକରଣ ନୀତି ହେଉଛି । ଯାହା ପାଖରେ ପୁଞ୍ଜି ଅଛି, ସେ କମ୍ପାନୀ ହେଉ, ବ୍ୟକ୍ତି ହେଉ ତାକୁ ଖଟାଉ ରାଜ୍ୟର ଉନ୍ନତି କରିବା ପାଇଁ, ଦେଶର ଉନ୍ନତି କରିବା ପାଇଁ । ସେଥିପାଇଁ ଆଜି ଓଡ଼ିଶାରେ ଲକ୍ଷେ କୋଟି ଟଙ୍କାର ପୁଞ୍ଜି ଖଟାଇବା ଲକ୍ଷ୍ୟ ଆମେ ରଖିଛେ ଏବଂ ସେ ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବା ପାଇଁ ବହୁ ଶିଳ୍ପୋଦ୍ୟୋଗୀ, ବହୁ ଶିଳ୍ପପତି ଆଜି ଓଡ଼ିଶାକୁ ଆଗେଇ ଆସିଛନ୍ତି । ଏକ ସମୟ ଥିଲା ଯେତେବେଳେ ଓଡ଼ିଶାକୁ କେହି ଆସୁନଥିଲେ, କିନ୍ତୁ ଆଜି ଯେତେ ଶିଳ୍ପପତି, ଶିଳ୍ପୋଦ୍ୟୋଗୀ ଅଛନ୍ତି, ସମସ୍ତଙ୍କର ଧାଡ଼ି ଲାଗିଛି ଓଡ଼ିଶାକୁ । କାରଣ ଓଡ଼ିଶାରେ ସବୁ କିଛି ଅଛି । ଯେଉଁ କଞ୍ଚାମାଲ ଦରକାର କଳକାରଖାନା ପାଇଁ, ସେ କଞ୍ଚାମାଲ ଓଡ଼ିଶାରେ ଅଛି । ଯେଉଁ ସବୁ ବୁଦ୍ଧିମାନ୍, ପରିଶ୍ରମୀ ଲୋକ ଦରକାର, ସେ ଲୋକଶକ୍ତି ଓଡ଼ିଶାରେ ଅଛି । ଆଜି ଆମେ ତାକୁ କିପରି ଭାବରେ କାର୍ଯ୍ୟକାରୀ କରିବା । ସେଥିପାଇଁ ଆମର ବନ୍ଦର ଦରକାର । ରେଳଲାଇନ୍ ଦରକାର, ପ୍ରଧାନ ସଡ଼କ ଦରକାର । ଏ ସବୁ କାମରେ ଖଟେଇବା ପାଇଁ ମଧ୍ୟ ବର୍ତ୍ତମାନ ବିଦେଶୀ ପୁଞ୍ଜି ପ୍ରସ୍ତୁତ ହୋଇ ରହିଛି । ଆମେ ଜାଣୁ ଲେଣ୍ଡବାଲର ପୁଞ୍ଜି ନାହିଁ । ଗୋଟିଏ ଲୋନ୍ ଖାଲି କରିଦେଲେ ହେବ ନାହିଁ । ଲୋନ ହେବା ଉଚିତ୍ । ଯଦି ଓଡ଼ିଶାରେ ଜାଲ ଛନ୍ଦିଲା ଭଳିଆ ରେଳଲାଇନ ନହୁଏ, ଓଡ଼ିଶାର ଉପକୂଳରୁ ପଶ୍ଚିମ ପର୍ଯ୍ୟନ୍ତ, ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ବିଭିନ୍ନ ରେଳପଥର ନିର୍ମାଣ ଶେଷ କରା ନଯାଏ, ତା'ହେଲେ ଓଡ଼ିଶାର ଦ୍ରୁତ ଉନ୍ନତି ସମ୍ଭବ ହେବ ନାହିଁ । ସେଥିପାଇଁ ଜାପାନୀ ଏକଜିମ ବ୍ୟାଙ୍କ ପ୍ରସ୍ତୁତ ଅଛନ୍ତି ଓଡ଼ିଶାରେ ହଜାରହଜାର କୋଟି ଟଙ୍କାର ପୁଞ୍ଜି ଖଟେଇବା ପାଇଁ । ଅନ୍ୟାନ୍ୟ ଦେଶର ପୁଞ୍ଜିପତିମାନେ ମଧ୍ୟ ପ୍ରସ୍ତୁତ ଅଛନ୍ତି ପୁଞ୍ଜି ବିନିଯୋଗ କରିବା ପାଇଁ । ତେଣୁ ଯୋଜନାବଦ୍ଧ ଓ ଐକ୍ୟବଦ୍ଧ ଭାବରେ ଉଦ୍ୟମ କଲେ ଓଡ଼ିଶାକୁ ଆମେ ଭାରତରେ ଏକ ଆଗୁଆ ରାଜ୍ୟ ରୂପେ

ପରିଣତ କରିପାରିବା । ସେଥିପାଇଁ ଦରକାର ଜନସାଧାରଣଙ୍କର ସଂକଳ୍ପ । ଜଣେ ବ୍ୟକ୍ତି କରି ପାରିବ ନାହିଁ । ଗୋଟିଏ ଦଳ କରିପାରିବ ନାହିଁ, ସରକାର କରିପାରିବ ନାହିଁ, ଜନସାଧାରଣଙ୍କ ଭିତରେ ଯଦି ଏ ଚେତନା ନ ଆସିବ, ସେମାନଙ୍କ ଭିତରେ ଯଦି ସଂକଳ୍ପ ନଆସିବ । ଆମେ ଓଡ଼ିଆ ବୋଲି କହି, ଖାଲି ପ୍ରାଚୀନର କଥା କହି ଗର୍ବ କରୁଥିଲେ । ଆଜି ସେ ପ୍ରାଚୀନକୁ ଆଧୁନିକରେ ପରିଣତ କରିବା ପାଇଁ ସୁଯୋଗ ଆସିଛି । ସ୍ୱପ୍ନକୁ ସାର୍ଥକ କରିବା ପାଇଁ ସମୟ ଆସିଛି । ସେ ସମୟ ଓ ସୁଯୋଗକୁ ଆମେ ପୁରା ସଦୁପଯୋଗ କରିବା ।

ଗରିବ ଲୋକମାନଙ୍କ ପାଇଁ ଯେଉଁ ନୂତନ କାର୍ଯ୍ୟକ୍ରମ ଚାଲିଛି, ସେ କାର୍ଯ୍ୟକ୍ରମକୁ ଆମେ ବଢ଼େଇ ବଢ଼େଇ ଚାଲିବା । ଯେତେବେଳେ ସରକାର ପ୍ରଥମେ ଆସିଲା, ସେତେବେଳେ ଅନେକ ଆଦିବାସୀ ଓ ଗରିବ ଲୋକ ଅନାହାରରେ ସଢ଼ୁଥିଲେ । ସେମାନଙ୍କର ଖାଇବାକୁ ନଥିଲା । କୋରାପୁଟ ଜିଲ୍ଲା ସମେତ ବିଭିନ୍ନ ଜିଲ୍ଲାରେ ପ୍ରାୟ କୋଟିଏ ଲୋକଙ୍କୁ ଦୁଇ ଟଙ୍କା କିଲୋ ଚାଉଳ ଦିଆଗଲା । ୨୦୦୦୦ ଦୁଃସ୍ଥ ଲୋକଙ୍କୁ ମାଗଣା ଖାଇବାକୁ ଦିଆଗଲା । ଆଜି ୬୦୦୦୦ ଲୋକଙ୍କୁ ମାଗଣା ଖାଇବାକୁ ଦିଆଯାଉଛି । ଅସହାୟ ଭାବରେ ଯେଉଁମାନେ ଗାଁ ଗଣ୍ଡାରେ ରହିଛନ୍ତି, ସେମାନଙ୍କର କେହି ନାହାନ୍ତି, କାମ କରିପାରିବେ ନାହିଁ, ସେହିଭଳି ଦୁଇଲକ୍ଷ ଲୋକଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଦିଆଗଲା । ଆଜି ଓଡ଼ିଶାର ଚାରିଆଡ଼େ ବିଭିନ୍ନ ସ୍କୁଲରେ କୋଟିଏ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯାଉଛି । ଏ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଅବ୍ୟାହତ ଭାବରେ ଚାଲିବ ।

ଏଥିଛଡ଼ା ଗାଁ ଗଣ୍ଡାରେ ଯେଉଁ ମୂଲିଆମାନେ ଅବହେଳିତ ଅବସ୍ଥାରେ ରହିଛନ୍ତି, ସେମାନଙ୍କ ମଜୁରି ହାର ୩୦ ଟଙ୍କାକୁ ବଢ଼େଇ ଦିଆଗଲା । ଏହାଠାରୁ ଅଧିକ ମଜୁରି ହାରର ୩୦ ଟଙ୍କାକୁ ବଢ଼େଇ ଦିଆଗଲା । ଏହାଠାରୁ ଅଧିକ ମଜୁରି ଯେମିତି ସେମାନେ ପାଇପାରିବେ ତାହା ଦେଖିବା ହେଉଛି ଆମର କର୍ତ୍ତବ୍ୟ । ସବୁ ସରକାରୀ ସଂସ୍ଥା ବର୍ତ୍ତମାନ ୩୦ ଟଙ୍କା ମଜୁରି ଦେବା ପାଇଁ ବାଧ୍ୟ ଏବଂ ଯେଉଁମାନେ ଆସି କାମ କରୁଛନ୍ତି ସେମାନେ ୩୦ ଟଙ୍କା ଦାବୀ କରିବା ଦରକାର । ତା' ସଙ୍ଗେ ସଙ୍ଗେ ୩୦ ଟଙ୍କାରୁ ଅଧିକ ଦେବା ଭଳି ଶକ୍ତି ଅନେକଙ୍କର ଅଛି । ସେମାନେ ତାହା ଦେବା ଦରକାର । ଯେଉଁମାନେ ମୂଲିଆ, ଯେଉଁମାନଙ୍କର ଅବସ୍ଥା ସବୁଠାରୁ ଖରାପ, ସେମାନଙ୍କର ଅବସ୍ଥାର ପରିବର୍ତ୍ତନ ନହେଲେ କେବେହେଲେ ସମାଜର ପରିବର୍ତ୍ତନ ହେବନାହିଁ ।

ରାଜ୍ୟ ସରକାର ନିଷ୍ପତ୍ତି କରିଛନ୍ତି ଯେ, ଗାଁ ଗଣ୍ଡାରେ ସମସ୍ତଙ୍କ ପାଇଁ ଘରର ବ୍ୟବସ୍ଥା କରାଯିବ । ଅନେକ ଗରିବ ଲୋକ ଅଛନ୍ତି ଯାହାଙ୍କର ଘର ନାହିଁ । ଘର ବୋଲି ଯାହାକୁ କୁହାଯାଉଛି ବର୍ଷାଦିନେ ସେଥିରେ ପାଣି ଗଳୁଛି । କାନ୍ଥ ନାହିଁ । ଏଭଳି ଅସହାୟ ଅବସ୍ଥାରେ ଲୋକ ରହିଛନ୍ତି । ତେଣୁ ଯେତେ ଗୃହହୀନ ଲୋକ ଅଛନ୍ତି, ସମସ୍ତଙ୍କୁ ଇନ୍ଦିରା ଆବାସ ଘର ଦେବା ପାଇଁ ସରକାର ସଂକଳ୍ପବଦ୍ଧ । ଏ ୪ ବର୍ଷ ଭିତରେ ଓଡ଼ିଶାରେ କେହି ବାସହୀନ ହୋଇ ରହିବେ ନାହିଁ । ଆମର ସଂକଳ୍ପ ହେଉଛି ଯେ ଯେତେ ବୁଢ଼ାବୁଢ଼ୀ ଅଛନ୍ତି ବାର୍ଦ୍ଧକ୍ୟ ଭତ୍ତା ପାଇବା ପାଇଁ, ସମସ୍ତେ ତାହା ପାଇବେ । ଯେତେ ଗରିବ ଲୋକ ଅଛନ୍ତି ସମସ୍ତଙ୍କ ପାଇଁ କିଛି ନା କିଛି ବ୍ୟବସ୍ଥା ରହିଛି । ଗରିବ ଲୋକଙ୍କ ପାଇଁ ଇନ୍ସୁରାନ୍ସ ବ୍ୟବସ୍ଥା ରହିବ । ସେ ଯଦି ଅସମୟ ଭାବରେ ମରିଯାଏ ତା'ର ପରିବାରକୁ ସାହାଯ୍ୟ କରିବା ପାଇଁ ଏହି ବ୍ୟବସ୍ଥା କରାଯାଇଛି । ଚାଷୀମାନଙ୍କର ଉନ୍ନତି ପାଇଁ ନୂଆ କୃଷି ନୀତି ପ୍ରଣୟନ କରାଯାଇଛି । ଏହି କୃଷି ନୀତି ଫଳରେ ଆମେ ଉତ୍କୃଷ୍ଟ ବିହନ ଯୋଗାଇବାର ସଂକଳ୍ପ ନେଇଛେ । ଏ ଉତ୍କୃଷ୍ଟ ବିହନ ଜରିଆରେ ଯେତିକି ଫସଲ ଆଜି ହେଉଛି, ତା'ର ୩ ଗୁଣ ଫସଲ ହୋଇପାରିବ । ଅଧିକ ସାରର ବ୍ୟବସ୍ଥା କରାଯାଉଛି । ୫୦ ଭାଗ ଜମିରେ ଜଳ ଯୋଗାଇବା ପାଇଁ ବ୍ୟବସ୍ଥା କରାଯାଉଛି । ଏହା ଫଳରେ କୃଷି ଏକ ଲାଭଜନକ ବ୍ୟବସାୟରେ ପରିଣତ ହେବ । କୃଷିକୁ ଶିଳ୍ପର ସ୍ଥାନ ଦେବା, ବାଣିଜ୍ୟର ସ୍ଥାନ ଦେବା ଆମର ଲକ୍ଷ୍ୟ । ଯେମିତି ବାଣିଜ୍ୟରେ ଲକ୍ଷ୍ମୀ ରହୁଛନ୍ତି, କୃଷିରେ ମଧ୍ୟ ସେହିପରି ଭାବରେ ଲକ୍ଷ୍ମୀ ରହୁଛନ୍ତି । ଆଜି ତାକୁ କାର୍ଯ୍ୟକାରୀ କରି ଆମେ ଓଡ଼ିଶାରେ ଦେଖେଇବା ଏବଂ ଓଡ଼ିଶାର ଗାଁ ଗଣ୍ଡାର ଦାରିଦ୍ର୍ୟ ଦୂର କରିବା । ଆଜି ଯେଉଁ ବେକାର ସମସ୍ୟା ଆମ ଆଖି ଆଗରେ ଦେଖା ଦେଉଛି, ସମୟ ଆସିବ ଯେତେବେଳେ ଏ ସମସ୍ୟା ଓଡ଼ିଶାରେ ନଥିବ । କାରଣ ଯଦି ଚାରିଆଡ଼େ ଆମେ କଳକାରଖାନାର ବିକାଶ କରିବା, କୃଷିର ବିକାଶ କରିବା, ବିଭିନ୍ନ ନିର୍ମାଣର କାର୍ଯ୍ୟକ୍ରମ, ରେଳପଥ, କେନାଲ, ରାସ୍ତାଘାଟ, ବିଭିନ୍ନ ପ୍ରକାରର କୋଠାବାଡ଼ି ନିର୍ମାଣର କାର୍ଯ୍ୟକ୍ରମ ଆରମ୍ଭ କରିବା, ତା'ହେଲେ ଆମେ ବେକାର ସମସ୍ୟା ଦୂ ର କରିପାରିବା ।

ଶିଳ୍ପର ବିକାଶ ଦ୍ୱାରା ହିଁ ବେକାର ସମସ୍ୟାର ସମାଧାନ ହୋଇପାରିବ । ଗୋଟିଏ ସମୟରେ ୨ୟ ଇସ୍ପାତ କାରଖାନା କରିବା ପାଇଁ ଉଦ୍ୟମ କରିଥିଲୁ । ଆଜି ସେ ଇସ୍ପାତ କାରଖାନା ଗୋପାଳପୁରରେ ହେବା ପାଇଁ ଯାଉଛି । ବିରୋଧ ହେବ, ସବୁ କ୍ଷେତ୍ରରେ ବିରୋଧ ହେବ । ବିରୋଧ ନହେଲେ ଜୀବନର ସଞ୍ଚାର ନାହିଁ । ହୀରାକୁଦଠାରେ ବିରୋଧ ହୋଇଥିଲା କିନ୍ତୁ ହୀରାକୁଦ ବନ୍ଧ ହେଲା । ରାଉରକେଲାଠାରେ ବିରୋଧ ହୋଇଥିଲା, ରାଉରକେଲା ଇସ୍ପାତ କାରଖାନା ହେଲା । ସେହିପରି ଭାବରେ ବିରୋଧ ହେବ କିନ୍ତୁ ଟାଟା ଇସ୍ପାତ୍ କାରଖାନା ନିଶ୍ଚିତ ଭାବରେ ଗୋପାଳପୁରରେ ହେବ । ଗୋଟିଏ ଇସ୍ପାତ୍ କାରଖାନା ନୁହେଁ, ଏହିଭଳି ଅନେକ ଇସ୍ପାତ୍ କାରଖାନା ଓଡ଼ିଶାରେ ହେବାକୁ ଯାଉଛି । ଖାଲି ଇସ୍ପାତ୍ କାରଖାନା ନୁହେଁ, ଆଲୁମିନିୟମ କାରଖାନା, ତୈଳ ବିଶୋଧନ କାରଖାନା-ଏହିପରି ଅସଂଖ୍ୟ କାରଖାନା ଓଡ଼ିଶାରେ କରାଯିବ । ଏହିସବୁ କାରଖାନା ସହିତ କ୍ଷୁଦ୍ର ଓ ମଧ୍ୟମ ଧରଣର ଶିଳ୍ପ ଚାରିଆଡ଼େ ହେବ । ଓଡ଼ିଶାକୁ ଯିଏ ଆସିବ, ସେ ଦେଖିବାକୁ ପାଇବ, ସବୁଠାରେ କିଛିନା କିଛି କାରଖାନା ଅଛି । ସବୁଠି କିଛିନା କିଛି କାମ ଚାଲିଛି ଏବଂ ସବୁଠି ଲୋକେ ରହିଛନ୍ତି । ବିଦେଶକୁ ଗଲେ ଆମେ ଦେଖୁ ସେସବୁ ରାଷ୍ଟ୍ରରେ କେମିତି କଳକାରଖାନାର ବିକାଶ ହୋଇଛି । ଓଡ଼ିଶାକୁ ସେହିପରି ବିଦେଶରୁ ଲୋକେ ଆସିବେ କାରଖାନାର ବିକାଶ ଦେଖିବାକୁ । ପୁରୀର ବିଶାଳ ବାଲୁକାଖଣ୍ଡ ରହିଛି । ସେଠି ଆମେ ପର୍ଯ୍ୟଟନ ଶିଳ୍ପର ବିକାଶ କରିବା । ଓଡ଼ିଶାକୁ ଲକ୍ଷ ଲକ୍ଷ ପର୍ଯ୍ୟଟକ ଆସିପାରିବେ ଏବଂ ପର୍ଯ୍ୟଟନ ଶିଳ୍ପ ଦ୍ୱାରା ମଧ୍ୟ ବହୁ ପରିମାଣରେ ବେକାର ସମସ୍ୟା ଦୂରୀଭୂତ ହୋଇପାରିବ । ସମସ୍ତ ଉନ୍ନୟନ ଭିତରେ ପ୍ରଧାନ ହେଉଛି ଶାନ୍ତି ଏବଂ ଏକତା । ଏ ଦୁଇଟି ନରହିଲେ କେବେ ହେଲେ କୌଣସି ରାଜ୍ୟର ଉନ୍ନତି ହେବନି । ଓଡ଼ିଶାରେ ଶାନ୍ତି ଏବଂ ଏକତା ଅତୁଟ ରହି ଆସିଛି । ଓଡ଼ିଶାର ଜନସାଧାରଣ ଧର୍ମପ୍ରାଣ । ଆଜି ସମସ୍ତ ସଭ୍ୟତା, ସମସ୍ତ ଧର୍ମର ସମନ୍ୱୟ ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରି ଆମେ ଆଗେଇ ଚାଲିବା ଓଡ଼ିଶାକୁ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ।

---

(୧୯୯୬ ସ୍ୱାଧୀନତା ଦିବସ ରାଜ୍ୟସ୍ତରୀୟ ପ୍ୟାରେଡ଼ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଅଭିଭାଷଣରୁ)

# ଜୟ ଜୟ ଭାରତ !

ପଣ୍ଡିତଃ ପ୍ରବୋଧ କୁମାର ମିଶ୍ରଃ

ଭାରତ ଦେଶଃ ଭାରତ-ବେଶଃ
ଜନଗଣ-ମାନସ-ସାରସ-କ୍ୟସଃ
ଭାରତ-ଭାବନ ମଡିତରକାମ୍ୟଂ
ଭାବୟ ଭାରତ-ସୁମଧୁର-ଭାସଃ ॥୧॥

ଜନଗଣମନ୍ତ୍ରଃ ମମ ଗଣତନ୍ତ୍ରଃ
ଲୋକାୟରଂ ସକଳ-ସୁକୃତ୍ୟଂ
ସମତା-ମମତା-ସୌହୃଦଭାବଃ
ରଚୟତି ଭୁବନେ ମୋହନ-ନୃତ୍ୟମ୍ ॥୨॥

ନାନା-ଜାତି-ବିମଣ୍ଡିତ-ଗାତ୍ରଃ
ନାନା-ରୀତି-ସୁଗୀତି-ବିଚିତ୍ରଃ ।
ଭାରତବର୍ଷଃ ସୁଲଳିତ-ହର୍ଷଃ
ଶୋଭନ-ବୋଧନ-ସୁମତି-ପବିତ୍ରଃ ॥୩॥

ଯମୁନା-ଗଙ୍ଗା ପୂତ-ତରଙ୍ଗା
ବିହସତି ନଭସି ଚ ଜାତି-ତ୍ରିରଙ୍ଗା ।
ମନସି ତୁ ସତ୍ୟଂ ନୃତ୍ୟତୁ ନିତ୍ୟଂ
ନ ଭବତୁ ସନ୍ତତିରତୁଳା ଭଙ୍ଗା ॥୪॥

ଦୁର୍ଗମ-ଗିରିବର-ଦୁର୍ଗକ-ସୁନ୍ଦର
ମୂର୍ଦ୍ଧନି ଦୁର୍ଜୟ-କେତନକଂ ।
ଦୁର୍ଦ୍ଦମ-ଦଳନଂ ଦୁର୍ନୟ-ଜ୍ୱଳନଂ
ଭବତାତ୍ ମମ ଗତି-ନିର୍ଣ୍ଣୟକମ୍ ॥୫॥

ଶିଷ୍ଟ ବିଚାରଃ ସଂସ୍କୃତିଭାରଃ
ମୂଲ୍ୟବୋଧ-ବିଭାସିତ-ହାରଃ ।
ବିଲସତୁ ସକଳେ ସନ୍ତୁନି ସଫଳଂ
ଜୟ-ଜୟ-ଭାରତ-ସୂନ-ସାରଃ ॥୬॥

୫-୩୩, ଶହୀଦନଗର
ଭୁବନେଶ୍ୱର - ୭

# ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଏକ ଝଲକ

## (୧୮୦୪-୧୯୪୨)

ଡକ୍ଟର ଜଗନ୍ନାଥ ପଟ୍ଟନାୟକ

ଭାରତର ଐତିହାସିକ ସ୍ୱାଧୀନତା ସଂଗ୍ରାମ ଶୌର୍ଯ୍ୟ, ବିକ୍ରମ ଓ ତ୍ୟାଗର ଏକ ଗୌରବଗାରିମାମୟ କାହାଣୀ । ଏଥିରେ ଭାରତର ଅନ୍ୟାନ୍ୟ ଅଞ୍ଚଳପରି ଓଡ଼ିଶା ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ସ୍ୱାଧୀନତା ସଂଗ୍ରାମକୁ ଜ୍ୟୋତିର୍ମୟ କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ଓଡ଼ିଶାବାସୀଙ୍କୁ ମହିମାନ୍ୱିତ କରିଛି ।

### ଓଡ଼ିଶାରେ ଇଂରେଜ ବିରୋଧୀ ଆନ୍ଦୋଳନ :

ଏହା ଗର୍ବ ଓ ଗୌରବର କଥା ଯେ ସର୍ବଭାରତୀୟ ସ୍ତରରେ ୧୮୫୭ ଖ୍ରୀଷ୍ଟାବ୍ଦରୁ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ହୋଇଥିବା ସ୍ଥଳେ ଓଡ଼ିଶାର ଅଧିବାସୀ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଅଧିକାର ଠାରୁ, ସେମାନଙ୍କ ଶାସନ କବଳରୁ ମୁକ୍ତି ପାଇବା ପାଇଁ କେତୋଟି ବିଦ୍ରୋହର ଆଶ୍ରୟ ନେଇଥିଲେ । ତନ୍ମଧ୍ୟରୁ ୧୮୦୪ ଖ୍ରୀଷ୍ଟାବ୍ଦର ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଖୋର୍ଦ୍ଧା ବିଦ୍ରୋହ ଥିଲା ଅନ୍ୟତମ । ସେତେବେଳେ ଗଜପତି ରାଜା ଥିଲେ ଦ୍ୱିତୀୟ ମୁକୁନ୍ଦଦେବ, ଜଣେ ନାବାଳକ । ତାଙ୍କର ଅଭିଭାବକ ରୂପେ କାର୍ଯ୍ୟକରୁଥିବା ଜୟୀ ରାଜଗୁରୁ ଇଂରେଜସୈନ୍ୟଙ୍କ ବିରୁଦ୍ଧରେ ସଂଗ୍ରାମକରି ଶେଷରେ ଫାଶୀ ପାଇଥିଲେ । ଏହି ଇଂରେଜ ବିରୋଧୀ ଆନ୍ଦୋଳନକୁ ଯଦି ମୁକ୍ତି ସଂଗ୍ରାମ ବୋଲି କୁହାଯାଏ, ତେବେ ଜୟୀରାଜଗୁରୁ ହୋଇଥିଲେ ଭାରତବର୍ଷର ପ୍ରଥମ ଶହୀଦ ।

ଖୋର୍ଦ୍ଧା ବିଦ୍ରୋହ ପରେ ୧୮୧୭ ମସିହାରେ ବକ୍ସିଜଗବନ୍ଧୁ ନାମରେ ପରିଚିତ ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର ପାଇକମାନଙ୍କର ନେତୃତ୍ୱ ନେଇ ଇଂରେଜମାନଙ୍କ ବିରୁଦ୍ଧରେ ଏକ ବିଦ୍ରୋହ ଘୋଷଣା କରିଥିଲେ । ଏହା ପାଇକ ବିଦ୍ରୋହ ନାମରେ କଥିତ । ଏହି ବିଦ୍ରୋହ ଖୋର୍ଦ୍ଧା ମଧ୍ୟରେ ସୀମିତ ନରହି ପିପିଲି, ହରିଶପୁର, କୁଜଙ୍ଗ, ପଟାମୁଣ୍ଡାଇ ଆଦି ଅଞ୍ଚଳକୁ ପ୍ରସାରିତ ପୂର୍ବକ ଇଂରେଜମାନଙ୍କୁ ଭୀତତ୍ରସ୍ତ କରି ପକାଇଥିଲା । ବହୁ ଉଦ୍ୟମ କରିଥିଲେ ମଧ୍ୟ ଦୀର୍ଘ ୮ ବର୍ଷ କାଳ ବକ୍ସି ଜଗବନ୍ଧୁ ଲୁଚି ଛପି ବିଦ୍ରୋହାତ୍ମକ କାର୍ଯ୍ୟରେ ଲିପ୍ତ ରହିଥିଲେ । ଶେଷରେ ଇଂରେଜ ପ୍ରଶାସକ ନୟାଗଡ଼ ରାଜାଙ୍କ ସହାୟତାରେ ତାଙ୍କୁ ସସମ୍ମାନେ କଟକ ନେଇ ସେଠାରେ ଏକ ଭଡ଼ାଘରେ ରଖିଥିଲେ । ସେହିଠାରେ ୧୮୨୯ ମସିହାରେ ଏହି ମହାନ ବୀରଙ୍କର ମହାସମାଧି ରଚିତ ହୋଇଥିଲା । ଏହି ପାଇକବିଦ୍ରୋହର ଭୟାବହତା ଉପରେ ମନ୍ତବ୍ୟ ଦେଇ, ଇଂରେଜ ଐତିହାସିକ ଜର୍ଜ ଟଏନବି ଲେଖିଛନ୍ତି, ''ପାଇକ ବିଦ୍ରୋହକୁ ଦମନ କରାଯାଇଥିଲେ ମଧ୍ୟ, ଏହା ଓଡ଼ିଶାରେ ଇଂରେଜମାନଙ୍କର ସ୍ଥିତିକୁ ଦୋହଲାଇ ଦେଇଥିଲା ।'' କେବଳ ସେତିକି ନୁହେଁ । ତା'ର ୧୦ ବର୍ଷପରେ ଅନ୍ୟ ଏକ ବିଦ୍ରୋହ ସଂଘଟିତ ହୋଇଥିଲା ।

ଏଥର ବିଦ୍ରୋହର ରଙ୍ଗମଞ୍ଚ ଥିଲା ତାପଙ୍ଗ । ଖୋର୍ଦ୍ଧାଠାରୁ ଅନତିଦୂରରେ ଅବସ୍ଥିତ ତାପଙ୍ଗର ଦଳବେହେରା ମାଧବ ରାଉତରାୟ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ତାଙ୍କୁ ଧରାଯାଇପାରିନଥିଲା । ତାଙ୍କୁ ଧରି ଦେଲେ ଟ ୧୦୦୦ ଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଯିବା ପରେ ସେ ନିଜେ ଆତ୍ମସମର୍ପଣ କରି ସେହି ଟଙ୍କା ଭୋକ ଉପବାସରେ ରହିଥିବା ଜଣେ କେଉଟକୁ ଦାନକରି, ଇଂରେଜସେନାପତିଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ସେହିପରି ବାଣପୁର ଅଞ୍ଚଳର ଜଣେ ପାଇକବୀର କୃତ୍ତିବାସ ପାଟଶାହାଣୀ ୧୮୩୫ ଖ୍ରୀଷ୍ଟାବ୍ଦରେ ପାଇକମାନଙ୍କ ସହାୟତାରେ ୩ ଦିନ ପାଇଁ ବାଣପୁର ଥାନା ଦଖଲ କରି ସ୍ୱାଧୀନତା ଘୋଷଣା କରିଥିଲେ । ବହୁ ପ୍ରକାର ଉଦ୍ୟମକରି ଇଂରେଜପ୍ରଶାସକମାନେ ତାଙ୍କୁ ଧରିପାରିନଥିଲେ । ଶେଷର ତାଙ୍କର ନିଜ ଶ୍ୱଶୁର ପଦପଦବୀ ଓ ଅର୍ଥ ପ୍ରାପ୍ତି ଲାଳସାରେ ବଶବର୍ତ୍ତୀ ହୋଇ ତାଙ୍କୁ ଧରାଇ ଦେଇଥିଲେ । ଯାବତ୍ ଜୀବନ ଦ୍ୱୀପାନ୍ତର ଦଣ୍ଡବିଧାନ କରି ତାଙ୍କୁ ଆଣ୍ଡାମାନ ପଠାଯାଇଥିଲା । ସେହିଠାରେ ହିଁ ସେହି ମହାନ ଦେଶଭକ୍ତଙ୍କର ଜୀବନ ଦୀପ ନିର୍ବାପିତ ହୋଇଥିଲା । ଏ ଗଲା ପାଇକମାନଙ୍କର ବିଦ୍ରୋହ ।

କନ୍ଧମାନେ ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ଇତିହାସ ପୃଷ୍ଠାରେ ସ୍ମରଣୀୟ ହୋଇ ରହିଛନ୍ତି । ଘୁମୁସରର ରାଜା ଧନଞ୍ଜୟ ଭଂଜଙ୍କ ପ୍ରତି ଇଂରେଜମାନେ ଅନ୍ୟାୟ ନୀତି ଅବଲମ୍ବନ କରି ତାଙ୍କୁ ରାଜଗାଦିରୁ ବିତାଡ଼ିତ କରିବାରୁ ମର୍ମାହତ ହୋଇ କମଳଲୋଚନ ଦୋରା ବିଶୋଇଙ୍କ ନେତୃତ୍ୱରେ କନ୍ଧମାନେ ଏକତ୍ରିତ ହୋଇ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଅବଶ୍ୟ ତାଙ୍କର ବିଦ୍ରୋହ ସାଫଲ୍ୟ ମଣ୍ଡିତ ହୋଇପାରିନଥିଲା । ତାର କିଛିବର୍ଷପରେ ଦୋରାବିଶୋଇଙ୍କର ପୁତୁରା ଚକ୍ରାବିଶୋଇ ସଂଗ୍ରାମକୁ ଅବ୍ୟାହତ ରଖି ସେମାନଙ୍କର ନେତୃତ୍ୱ ଦୋହଲାଇ ଦେଇଥିଲେ ।

ଯଥାକ୍ରମେ ୧୮୬୮ ଓ ୧୮୯୧ ମସିହାର କଥା । କେନ୍ଦୁଝରେ ସ୍ଥିତ ଭୂୟାଁ ସମ୍ପ୍ରଦାୟର ଦୁଇଜଣ ବ୍ୟକ୍ତି ରାଜା ଓ ଇଂରେଜ ସରକାର ବିରୁଦ୍ଧରେ ଦୁଇଟି ବିଦ୍ରୋହ ସଂଗଠିତ କରି ଓଡ଼ିଶା ଇତିହାସକୁ ମହିମାନ୍ୱିତ କରିଥିଲେ । ସେହି ଦୁଇଜଣ ସୁନାମଧନ୍ୟ ବ୍ୟକ୍ତିଥିଲେ ରତ୍ନାନାୟକ ଓ ଧରଣୀଧର ନାୟକ । ସେମାନଙ୍କର ବିଦ୍ରୋହକୁ ଯଥାକ୍ରମେ ରତ୍ନାମେଳି ଓ ଧରଣୀମେଳି ବୋଲି କୁହାଯାଏ ।

ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟରେ କେଉଁଝରର ରାଜା ଥିଲେ ଯଦୁନାଥ ଭଂଜ । ତାଙ୍କ ମୃତ୍ୟୁପରେ କେଉଁଝର ରାଜ୍ୟର ସିଂହାସନ ଆରୋହଣ କରନ୍ତି ଗଦାଧର ଭଂଜ । ସେ ଅପୁତ୍ରିକ ଥିବାରୁ ତାଙ୍କର ରାଣୀ ବିଷ୍ଣୁପ୍ରିୟା ଚାହିଁଥିଲେ ମୟୂରଭଞ୍ଜ ରାଜାଙ୍କର ନାତି ବୃନ୍ଦାବନଙ୍କୁ ରାଜା କରାଇବେ । କାରଣ ଗଦାଧର ଭଞ୍ଜ ଜୀବିତାବସ୍ଥାରେ ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଛନ୍ତି । ଏ ବିଷୟରେ ଇଂରେଜ କମିଶନରଙ୍କ ମତ ଲୋଡ଼ିବାରୁ ତାହା ସେ ଗ୍ରହଣ ନକରି ଯଦୁନାଥ ଭଞ୍ଜଙ୍କର ଦାବି ଗ୍ରହଣ କରିଥିଲେ । ତେଣୁ ରାଣୀ ଚାହିଁଲେ ଧନୁର୍ଜୟଙ୍କୁ ବିତାଡ଼ିତ କରି ବୃନ୍ଦାବନଙ୍କୁ ରାଜା କରାଇବେ । ସେଥିପାଇଁ ସେ ରତ୍ନାନାୟକ ଓ ଅନ୍ୟ କେତେଜଣ ଭୂୟାଁ ସର୍ଦ୍ଦାରଙ୍କ ସହ ହାତ ମିଳାଇଲେ । ୧୮୬୮ ମସିହାରେ ରତ୍ନାନାୟକ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଏହି ବିଦ୍ରୋହକୁ ଦମନ କରିବା ସହ ୧୮୩ ଜଣ ବନ୍ଦୀଙ୍କର ବିଚାର ହୋଇଥିଲା । ରତ୍ନାନାୟକ, ନନ୍ଦନାୟକ, ପଦୁନାୟକ, ଦଶରଥ କୁଅଁର ଆଦି ୭ ଜଣ ପ୍ରାଣ ଦଣ୍ଡରେ ଦଣ୍ଡିତ ହୋଇଥିଲେ ।

ରତ୍ନାମେଳିର ପ୍ରାୟ ୩୩ ବର୍ଷପରେ ଭୂୟାଁ ସମ୍ପ୍ରଦାୟର ଅନ୍ୟତମ ମଉଡ଼ମଣି ଧରଣୀଧର ଭୂୟାଁ ରାଜା ଓ ଇଂରେଜ ସରକାର ବିରୁଦ୍ଧରେ ଅନ୍ୟ ଏକ ବିଦ୍ରୋହର ନେତୃତ୍ୱ ନେଇ ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ।

ଧରଣୀଧର ଯୁବାବସ୍ଥାରେ ରାଜା ଓ ଅମଲାମାନଙ୍କର ପ୍ରଜାଙ୍କ ପ୍ରତି ହେଉଥିବା ଅତ୍ୟାଚାର ସହ୍ୟକରିପାରିନଥିଲେ । ବିଶେଷତଃ ବେଠୀପ୍ରଥା ତାଙ୍କୁ ମର୍ମାହତ କରିଥିଲା ।

ଇତିମଧ୍ୟରେ ୧୮୯୧ ମସିହାରେ କେନ୍ଦୁଝରରେ ଘଟଣାଟିଏ ଘଟିଥିଲା । ଉକ୍ତ ଘଟଣାଟି ସୁପ୍ତ ଧରଣୀଧରଙ୍କୁ ଶତସିଂହର ବଳଦେଇ ଲୋକଲୋଚନକୁ ଆଣି ଦେଇଥିଲା । ତାହା ଥିଲା ମାଛ କାନ୍ଦଣା ଝରର ଖନନ । କେନ୍ଦୁଝର ଗଡ଼ର ୧୧ କିଲୋମିଟର ଉତ୍ତରକୁ ଗୋନ୍ଦିଆ ପାହାଡ଼ରୁ ଗୋଟିଏ ଜୋର ବା ଝର ବାହାରି ବୈତରଣୀ ନଦୀରେ ପଡ଼ିଥିଲା । ଏହା ମାଛକାନ୍ଦଣା ଝର ନାମରେ କଥିତ । ସେତେବେଳେ କେନ୍ଦୁଝର ରାଜା ଚିନ୍ତାକଲେ ଯଦି ସେହି ଝର ଉପରେ ଏକ ବନ୍ଧ ନିର୍ମାଣ କରାଯାଇ ପାରିବ ତେବେ ତାହା ଏକ ବିରାଟ ହ୍ରଦରେ ପରିଣତ ହୋଇ ଜଳସେଚନ କାର୍ଯ୍ୟରେ ସାହାଯ୍ୟ କରିବ । ଏହା ଥିଲା ଏକ ସୁପରିକଳ୍ପିତ ଯୋଜନା । ଏହାର ଖନନ ଦାୟିତ୍ୱ ଦିଆଯାଇଥିଲା ଆସିଷ୍ଟାଣ୍ଟ ଦେୱାନ ବିଚିତ୍ରାନନ୍ଦ ଦାସଙ୍କୁ । ଦେୱାନ ମାହାରାଟିକୁ ଭୂୟାଁମାନଙ୍କ ଦ୍ୱାରା ବେଠିରେ ଖନନ କରିବେ ବୋଲି ସ୍ଥିରକରିଥିଲେ । ଏହା ଧରଣୀଧରଙ୍କୁ ଉତ୍ତେଜିତ କରାଇଥିଲା । ତାଙ୍କର ଆହ୍ୱାନକ୍ରମେ ଭୂୟାଁମାନେ ଏକତ୍ରିତ ହୋଇଥିଲେ । ଅଳ୍ପ ସମୟ ମଧ୍ୟରେ ବାଥୁଡ଼ି, କୋହ୍ଲ, ଭୂୟାଁ ଓ ସାଉଁଟିମାନେ ଧରଣୀଧରଙ୍କ ଅଧୀନରେ ସମବେତ ହୋଇଥିଲେ । ବିଦ୍ରୋହ ପାଇଁ ରଙ୍ଗମଞ୍ଚ ପ୍ରସ୍ତୁତ ହେବା ପରେ ବିଦ୍ରୋହ ଆରମ୍ଭ ହେଲା । ସେମାନେ ପୂର୍ବତନ ଦେୱାନ ନନ୍ଦଧନଙ୍କୁ ହତ୍ୟା କରିଥିଲେ । ଏଥି ସହିତ ସେମାନେ କେନ୍ଦୁଝରଗଡ଼ ସହିତ ସବୁ ଯୋଗସୂତ୍ର ବିଚ୍ଛିନ୍ନ କରି ଦେଇଥିଲେ । ପରେ ପରେ ଇଂରେଜ ସରକାରର ଷଡ଼ଯନ୍ତ୍ରର ଆଶ୍ରୟ ନେଇ ଧରଣୀଧରଙ୍କୁ ବନ୍ଦୀ କରିଥିଲେ । ସବୁ ବିଦ୍ରୋହୀଙ୍କର ବିଚାର ହୋଇ ଧରଣୀଧରଙ୍କୁ ୭ ବର୍ଷ ସଶ୍ରମ କାରାଦଣ୍ଡ ଦିଆଯାଇ କଟକ ଜେଲରେ ରଖାଯାଇଥିଲା ।

୧୮୯୭ ରେ ଧରଣୀଧର ଜେଲରୁ ମୁକ୍ତ ହେବା ପରେ ଏକ ସନ୍ନ୍ୟାସୀର ଜୀବନଯାପନ କରିବା ପାଇଁ ଇଚ୍ଛା କରିଥିଲେ । ତାଙ୍କ ଜୀବନାଦର୍ଶରେ ଏକ ବିରାଟ ପରିବର୍ତ୍ତନ ଦେଖାଦେଇଥିଲା । ପ୍ରଥମେ ପୁରୀ, ତା ପରେ ଆଳିକୁ ଯାଇ ଏକ ନିଭୃତ ଅଞ୍ଚଳରେ ଏକ ମଠ ନିର୍ମାଣ କରି ମୃତ୍ୟୁ ପର୍ଯ୍ୟନ୍ତ ଏକନିଷ୍ଠ ସନ୍ନ୍ୟାସ ଜୀବନଯାପନ କରିଥିଲେ । ଶେଷରେ ୧୯୪୧ ମସିହାରେ ସେହି ମହାନ୍ ବିଦ୍ରୋହୀଙ୍କର ଜୀବନାବସାନ ଘଟି ଥିବାର ଜଣାଯାଏ ।

## ୧୮୫୭ର ମହାନ ବିଦ୍ରୋହରେ ଓଡ଼ିଶାର ଭୂମିକା :

୧୮୫୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାବାସୀ ସର୍ବ ଭାରତୀୟ ସ୍ତରରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବାର ଦେଖାଯାଇଥିଲା । ଇଂରେଜ ଐତିହାସିକଗଣ ୧୮୫୭ ଖ୍ରୀଷ୍ଟାବ୍ଦର ଇଂରେଜ ବିରୋଧୀ ଯୁଗାନ୍ତକାରୀ ସଂଗ୍ରାମକୁ ସିପାହୀ ବିଦ୍ରୋହ ବୋଲି ଆଖ୍ୟା ଦେଇଥିଲେ ମଧ୍ୟ, ପ୍ରକୃତପକ୍ଷେ ଏହା ଥିଲା ଏକ ସୁଚିନ୍ତିତ ଓ ସୁସଂଗଠିତ ଜାତୀୟ ବିଦ୍ରୋହ ଏବଂ ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଙ୍କ । ଏହାର ପ୍ରଭାବ ଓଡ଼ିଶାର କଟକ, ପୁରୀ ଓ ସମ୍ବଲପୁର ଜିଲ୍ଲାରେ ଅନୁଭୂତ ହୋଇଥିଲା । କଟକ ଜିଲ୍ଲାର ରାମକୃଷ୍ଣ ସାମନ୍ତ ସିଂହାର, ପୁରୀ ଜିଲ୍ଲାର ଚାଖି ଖୁଣ୍ଟିଆ ଓ ସମ୍ବଲପୁର ଜିଲ୍ଲାର ସୁରେନ୍ଦ୍ର ସାଏ, ମାଧୋସିଂ ଓ ତାଙ୍କ ପୁତ୍ର ହାଟୀସିଂଙ୍କ ନେତୃତ୍ୱରେ ସଂଗ୍ରାମ ସଂଘଟିତ ହୋଇଥିଲା ।

### (୧) ରାମକୃଷ୍ଣ ସାମନ୍ତସିଂହାରଙ୍କର ବିଦ୍ରୋହ :

ରାମକୃଷ୍ଣ ସାମନ୍ତସିଂହାର ହେଉଛନ୍ତି ତତ୍କାଳୀନ ଯାଜପୁର ସବଡ଼ିଭିଜନ ଅନ୍ତର୍ଗତ ବାଲିଆର ପ୍ରଖ୍ୟାତ ଖଣ୍ଡାୟତ ଜମିଦାର । ସୂର୍ଯ୍ୟାସ୍ତ ଆଇନ ପ୍ରୟୋଗ କରି ଅନ୍ୟାୟଭାବରେ ଇଂରେଜମାନେ ତାଙ୍କ ଜମିଦାରୀରୁ ତାଙ୍କୁ ଉଚ୍ଛେଦ କରିବା ଫଳରେ ସେ ଖଣ୍ଡାୟତମାନଙ୍କୁ ଏକତ୍ରିତ କରି ଇଂରେଜ ସରକାରକୁ ରାଜସ୍ୱ ଦେଉନଥିଲେ । ଏହି ଖବର କଟକର ମାଜିଷ୍ଟ୍ରେଟ ଆର.ଏନ. ଶୋର ପାଇବା ପରେ ଦାରୋଗା ପଠାଇ ରାମକୃଷ୍ଣ ସାମନ୍ତ ସିଂହାର ଓ ତାଙ୍କର ଦୁଇଜଣ ମୁଖ୍ୟ ସହଯୋଗୀ ଦୀନବନ୍ଧୁ

ମହାପାତ୍ର ଓ ଉପେନ୍ଦ୍ର ଜେନାଙ୍କୁ ଗିରଫ କରିଥିଲେ । ରାମକୃଷ୍ଣ ଓ ଦୀନବନ୍ଧୁଙ୍କୁ ୫ ବର୍ଷ ସଶ୍ରମ କାରାଦଣ୍ଡ ଦିଆଯାଇଥିଲା । ରାମକୃଷ୍ଣଙ୍କର ସମସ୍ତ ସମ୍ପତ୍ତି ମଧ୍ୟ ବାଜ୍ୟାପ୍ତ କରାଯାଇଥିଲା । ୧୮୫୮ ମସିହା ନଭେମ୍ବର ମାସରେ ସବୁ ରାଜବନ୍ଦୀଙ୍କୁ ଖଲାସ କରିବା ପାଇଁ ମହାରାଣୀ ଭିକ୍ଟୋରିଆ ଘୋଷଣାନାମା ଜାରୀ କରିବା ପରେ ସେମାନଙ୍କୁ କାରାଗାରରୁ ମୁକ୍ତ କରାଯାଇଥିଲା । ଏଥି ସହିତ ରାମକୃଷ୍ଣଙ୍କର ସମ୍ପତ୍ତି ଫେରାଇ ଦିଆଯାଇଥିଲା । ପ୍ରକୃତପକ୍ଷେ ରାମକୃଷ୍ଣଙ୍କ କାର୍ଯ୍ୟକଳାପ ତୁଳନାରେ ତାଙ୍କୁ ଦିଆଯାଇଥିବା ଦଣ୍ଡଥିଲା ଅଧିକ ଗୁରୁତର । ଅନ୍ୟ ବିଦ୍ରୋହୀ ଜମିଦାରମାନଙ୍କୁ ଚେତାବନୀ ଦେବାପାଇଁ ଇଂରେଜମାନେ ଯେ ଏହା କରିଥିଲେ, ଏଥିରେ ସନ୍ଦେହ ନାହିଁ ।

## (୨) ଚାଖି ଖୁଣ୍ଟିଆଙ୍କର ଭୂମିକା :

ପୁରୀର ଚନ୍ଦନହଜୁରୀ ନାମରେ କଥିତ ଚାଖି ଖୁଣ୍ଟିଆଙ୍କର ଭୂମିକା କୌଣସି ସ୍ତରେ ନ୍ୟୁନ ନଥିଲା । ମିରଟରେ ସିପାହୀ (ଇଂରେଜଙ୍କ ସେନାବାହିନୀରେ ଭାରତୀୟ ସୈନ୍ୟଙ୍କୁ ସିପାହୀ କୁହାଯାଉଥିଲା) ମାନେ ବିଦ୍ରୋହ ଆରମ୍ଭ କରିବା ମାତ୍ରେ କଟକର ତତ୍କାଳୀନ କମିଶନର ଜି.ଏଫ. କକବର୍ଣ୍ଣଙ୍କୁ କଲିକତା ଡ଼କାଇନେଇ ଏ ଦିଗରେ ସତର୍କତାମୂଳକ ପଦକ୍ଷେପ ନେବାପାଇଁ ତାଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । କାରଣ ଖବର ମିଳିଥିଲା ଯେ କେତେଜଣ ବହିଷ୍କୃତ ସିପାହୀ ଧର୍ମପ୍ରାଣବ୍ୟକ୍ତିର ପୋଷାକ ପିନ୍ଧି ପୁରୀକୁ ରଥଯାତ୍ରା ସମୟରେ ଆସୁଛନ୍ତି । ତେଣୁ ବୈରାଗୀ, ବାବାଜୀ ବା ଫକୀର ବେଶରେ ଆସିଥିବା ଯାତ୍ରୀଙ୍କର ଗତିବିଧି ଲକ୍ଷ୍ୟ କରିବା ପାଇଁ ତାଙ୍କୁ ନିର୍ଦ୍ଦେଶ ଥିଲା । ଫଳରେ କେତେଜଣ ନିରୀହ ଯୋଗୀ ଓ ବୈରାଗୀଙ୍କୁ ଜେରା କରାଯାଇଥିଲା । ସେହିପରି ୩ ଜଣ ବୈରାଗୀ ଥିଲେ ଅକ୍ରୁରନାଥ, ହୀରାନାଥ ଓ ଦୁର୍ଗାନାଥ । ସେମାନଙ୍କୁ କଟକର କେଣ୍ଟନମେଣ୍ଟ ରାସ୍ତାରୁ ଧରି ନେଇ ଜେରାକରିବା ପରେ ସେମାନଙ୍କୁ ଛାଡ଼ିଦିଆଯାଇଥିଲା । ବାଲେଶ୍ୱରଠାରେ ଅବସ୍ଥାପିତ ପାଇକ କମ୍ପାନୀରେ ଜଣେ ସୁବେଦାର, ଦୁଇଜଣ ହାବିଲଦାର ଓ ଜଣେ ନାଏକ ମଧ୍ୟ ସେମାନଙ୍କର ବିଦ୍ରୋହାତ୍ମକ ମନୋଭାବ ଯୋଗୁଁ ଚାକିରିରୁ ବହିଷ୍କୃତ ହୋଇଥିଲେ । ସେହି ସୁବେଦାର ଥିଲେ ଜଣେ ଓଡ଼ିଆ ଓ ତାଙ୍କର ନାମଥିଲା 'ଜଗନ୍ନାଥ ଦୋରା' ।

ଚାଖିଖୁଣ୍ଟିଆ ଥିଲେ ପୁରୀ ସହର ମଣିକର୍ଣ୍ଣିକା ସାହିର ହଜୁରୀ ରଘୁନାଥ ବଡ଼ପଣ୍ଡାଙ୍କର ପୁତ୍ର । ୧୭୮୫ ମସିହା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ ଜଗନ୍ନାଥ ମହାପ୍ରଭୁଙ୍କର ଚନ୍ଦନ ଲାଗି ସମୟରେ ତାଙ୍କର ଜନ୍ମ ହୋଇଥିବାରୁ ତାଙ୍କ ନାମଦେଇଥିଲେ ଚନ୍ଦନ ହଜୁରୀ । ପିଲାଦିନେ ସ୍ୱେଚ୍ଛାସ୍ପୃଷ୍ଟ ଥିବାରୁ ମହାପ୍ରସାଦ ବିକ୍ରେତାଙ୍କ ଠାରୁ ଡ଼ାଲି, ତରକାରୀ ପ୍ରଭୃତି ଝାମ୍ପିନେଇ ଚାଖିବାଟା ତାଙ୍କର ଅଭ୍ୟାସ ଥିବାରୁ ତାଙ୍କୁ ଚାଖି ଖୁଣ୍ଟିଆ ବୋଲି ଡ଼କାଯାଉଥିଲା ଓ ସେହି ନାମରେ ସେ ଇତିହାସ ପୃଷ୍ଠାକୁ ମୁଖରିତ କରିଛନ୍ତି । ରଘୁନାଥ ହଜୁରୀ ଥିଲେ, ଶ୍ରୀ ଜଗନ୍ନାଥଙ୍କର ଜଣେ ବିଶ୍ୱସ୍ତ ସେବକ ବା ଛାମୁ ଖୁଣ୍ଟିଆ । ଚାଖି ପିତାଙ୍କ ସହ ପ୍ରତିବର୍ଷ ଉତ୍ତର ଭାରତକୁ ଯାଉଥିଲେ ପୁରୀକୁ ଆସି ଶ୍ରୀ ଜଗନ୍ନାଥଙ୍କର ଦର୍ଶନ ନିମନ୍ତେ ଲୋକଙ୍କୁ ପ୍ରବର୍ତ୍ତାଇବା ଉଦ୍ଦେଶ୍ୟରେ । ସେତେବେଳେ ତାଙ୍କର ସାକ୍ଷାତ ହୋଇଥିଲା ଝାନ୍ସିର ରାଜପରିବାର ସହିତ । ସେହିଦିନଠାରୁ ସେ ରାଣୀ ଲକ୍ଷ୍ମୀବାଈଙ୍କର ପାରିବାରିକ ପଣ୍ଡାରୂପେ କାର୍ଯ୍ୟ କରିଥିଲେ । ଏହା ମଧ୍ୟ ଲକ୍ଷ୍ମୀବାଈ ଚାଖି ଖୁଣ୍ଟିଆଙ୍କ ନିକଟକୁ ଲେଖିଥିବା ଏକ ପତ୍ରରୁ ସୂଚୀତ ହୁଏ । ଅବଶ୍ୟ ୧୮୫୭ ବିଦ୍ରୋହ ପୁସ୍ତକର ଲେଖକ ଏସ.ଏନ. ସେନ ଏହାକୁ ଏକ ଜାଲ ଚିଠି ବୋଲି କହିଛନ୍ତି । ବିଶ୍ୱାସ କରାଯାଏ ଯେ ଉକ୍ତ ଚିଠି ଓ ଏ ସଂକ୍ରାନ୍ତରେ ଅନ୍ୟାନ୍ୟ ଚିଠି ପୁରୀର ରେକର୍ଡ଼ରୁମରେ ଥିଲା ।୧୯୧୬ ଖ୍ରୀଷ୍ଟାବ୍ଦରେ ନିଆଁ ଲାଗିବା ଫଳରେ ନଷ୍ଟ ହୋଇଯାଇଛି । ମାତ୍ର ୧୮୫୭ ବିଦ୍ରୋହରେ ତାଙ୍କ ଭୂମିକା ସଂପର୍କରେ ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ସଂରକ୍ଷିତ କେତେଖଣ୍ଡ ଚିଠିରୁ ତାଙ୍କର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ବିଷୟରେ ଜଣାଯାଏ । ସେଥିରୁ ଜଣାଯାଏ ଯେ ଲକ୍ଷ୍ନୌରେ ଅବସ୍ଥାପିତ ତ୍ରୟୋଦଶ ବାଟାଲିୟନ ସିପାହୀମାନଙ୍କ ସହ ତାଙ୍କର ଯୋଗସୂତ୍ର ଥିଲା । ଏହା ଜଣାପଡ଼ିବା ପରେ ସେ ବିହାରର ଗୟାକୁ ପଳାୟନ କରିଥିଲେ । ସେଠାରେ ତାଙ୍କୁ ଅଟକବନ୍ଦୀ ରୂପେ ରଖାଯାଇଥିଲା । ୧୮୫୭ ମସିହାର ୨୫ ତମ ଆଇନ ଅନୁଯାୟୀ ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯାଇ ସରକାରଙ୍କ ଅଧୀନରେ ରଖାଯାଇଥିଲା । ୧୮୫୮ ମସିହାରେ ମହାରାଣୀ ଭିକ୍ଟୋରିଆଙ୍କର ଘୋଷଣାପତ୍ର ପ୍ରକାଶ ପାଇବାପରେ ଅନ୍ୟ ରାଜବନ୍ଦୀଙ୍କ ସହ ତାଙ୍କୁ ମୁକ୍ତ କରାଯିବା ସଙ୍ଗେ ସଙ୍ଗେ ତାଙ୍କର ସମସ୍ତ ସମ୍ପତ୍ତି ଫେରସ୍ତ କରି ଦିଆଯାଇଥିଲା । ସେ ଆଉ କୌଣସି ବିଦ୍ରୋହାତ୍ମକ କାର୍ଯ୍ୟରେ ଲିପ୍ତ ରହିବେ ନାହିଁ ବୋଲି ସର୍ତ୍ତ ରଖାଯାଇଥିଲା ମାତ୍ର ସେତେବେଳେ ସେ ପୁରୀ ଫେରିନଥିଲେ । କିଛିବର୍ଷ ଅନୁପସ୍ଥିତ ରହିବା ଫଳରେ ପୁରୀରେ ଏକ ଜନରବ ପ୍ରଚାର ହୋଇଥିଲା ଯେ ସେ ଓ ଝାନ୍ସିର ସେନାପତି ଘଞ୍ଚ ଜଙ୍ଗଲରେ ବୁଲୁଥିବା ସମୟରେ ଚାଖି ଖୁଣ୍ଟିଆଙ୍କର ମୃତ୍ୟୁ ହୋଇ ଯାଇଛି । ସେଥିପାଇଁ ତାଙ୍କର ପତ୍ନୀ ବିଧବା ସାଜି ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିଲେ । ଶେଷରେ ୧୮୬୩ ମସିହା କୁମାର ପୂର୍ଣ୍ଣମୀ ଦିନ ସେ ପୁରୀ ଫେରିବା ପରେ ତାଙ୍କ ପତ୍ନୀ ପୁନରାୟ ଶଙ୍ଖା ସିନ୍ଦୂର ପିନ୍ଧିଥିଲେ । ଏ ସମ୍ପର୍କରେ ଲୋକମୁଖରେ ଏକ ପ୍ରବାଦ ରହିଛି । ତାହା ହେଉଛି -

ନଈରେ କାକିଆ ଚହଟିଲା
କଜଳ ସିନ୍ଦୂର ନାଆଲୋ ରାଣ୍ଡ
ପୁଣି କାକିଆ (ଚାଖିଆ) ଲେଉଟିଲା ।

ଚାଖି ଖୁଣ୍ଟିଆ ଜୀବନର ଅବଶିଷ୍ଟ ସମୟ ସାହିତ୍ୟ ସାଧନାରେ ବ୍ରତୀହୋଇ ବହୁ ଭଜନ, ଜଣାଣ, ଚଉତିଶା ଆଦି ଲେଖିବାରେ ନିଜକୁ ନିଯୋଜିତ କରିଥିଲେ । । ଶେଷରେ ୧୮୭୦ ମସିହାରେ ତାଙ୍କର କର୍ମମୟ ଜୀବନର ଅବସାନ ଘଟିଥିଲା ।

## (୩) ସୁରେନ୍ଦ୍ର ସାଏ - ୧୮୫୭ ବିଦ୍ରୋହର ବହ୍ନିଶିଖା :

ସୁରେନ୍ଦ୍ର ସାଏଙ୍କର ବିଦ୍ରୋହ ଦୁଇଟି ପର୍ଯ୍ୟାୟରେ ସଂଗଠିତ ହୋଇଥିଲେ ମଧ୍ୟ ଏଠାରେ କେବଳ ମାତ୍ର ଦ୍ୱିତୀୟ ପର୍ଯ୍ୟାୟ ଅର୍ଥାତ୍ ୧୮୫୭ ରୁ ୧୮୬୪ ପର୍ଯ୍ୟନ୍ତ ତାଙ୍କର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ଉପରେ ଆଲୋପାତର କରାଯାଇଛି ।

ସୁରେନ୍ଦ୍ର ସାଏ ଥିଲେ ସମ୍ବଲପୁର ଚୌହାନ ରାଜବଂଶର ରାଜା ଧରମ ସିଂଙ୍କ ପୁତ୍ର ଓ ପଞ୍ଚମରାଜା ବଳୀୟାର ସିଂଙ୍କର ଉତ୍ତରାଧିକାରୀ । ସେହି ଦୃଷ୍ଟିରୁ ସମ୍ବଲପୁରର ରାଜାହେବାର ଅଧିକାର ତାଙ୍କର ଥିଲା । ମାତ୍ର ତାଙ୍କର ଅଧିକାରକୁ ଇଂରେଜମାନେ ଉପେକ୍ଷା କରିଥିଲେ । ତେଣୁ ସମ୍ବଲପୁର ଅଞ୍ଚଳର ଗଣ୍ଡ ଓ ବିଂଝାଲମାନେ ସୁରେନ୍ଦ୍ର ସାଏଙ୍କୁ ସହାୟତା ଦେଇଥିଲେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ । ସଂଗ୍ରାମରେ ପରାଜୟ ବରଣ କରିବା ପରେ ୧୮୪୦ ଖ୍ରୀଷ୍ଟାବ୍ଦରେ ସୁରେନ୍ଦ୍ର ସାଏ ତାଙ୍କ ଭାଇ ଉଦାନ୍ତ ସାଏ ଓ ଖୁଡୁତା ବଳରାମ ସିଂଙ୍କୁ ଇଂରେଜମାନେ ଧରିନେଇ ହଜାରୀବାଗ ଜେଲରେ ରଖିଥିଲେ । ପୁନରାୟ ସମ୍ବଲପୁର ହୋଇଥିଲା ସୁରେନ୍ଦ୍ର ସାଏଙ୍କ ବିଦ୍ରୋହର ରଙ୍ଗମଞ୍ଚ ।

୧୮୫୭ ମସିହା ଜୁଲାଇ ୩୦ ତାରିଖ ଦିନ ହଜାରିବାଗରେ ବିଦ୍ରୋହୀ ସିପାହୀ ଜେଲଭାଂଗି ସୁରେନ୍ଦ୍ର ସାଏ ଓ ତାଙ୍କ ଭାଇ ଉଦାନ୍ତ ସାଏଙ୍କ ସମେତ ୩୨ ଜଣ ବନ୍ଦୀଙ୍କୁ ମୁକୁଳାଇ ଦେଇଥିଲେ । ସେମାନେ ଅନ୍ୟ ବିଦ୍ରୋହୀଙ୍କ ସହ ଯୋଗ ନଦେଇ ରାଞ୍ଚିକୁ ଚାଲି ଆସିଥିଲେ । କାରଣ ସେ ଚାହିଁଲେ ପ୍ରଥମେ ତାଙ୍କର ମାତୃଭୂମି ସମ୍ବଲପୁରକୁ ଇଂରେଜମାନଙ୍କ ଅଧୀନରୁ ମୁକ୍ତ କରିବା ପାଇଁ । ସେ ସମ୍ବଲପୁରରେ ପହଞ୍ଚିବା ପରେ ଗଗନ ପବନ ମୁଖରିତ ହୋଇଥିଲା । ଚାହୁଁ ଚାହୁଁ ଗଣ୍ଡ ଓ ବିଝାଲ ଜମିଦାର, ଗୌନ୍ତିଆ ଆଦି ତାଙ୍କ ସହିତ ହାତମିଳାଇ ସଂଗ୍ରାମ କରିଥିଲେ । ସେତେବେଳେ ସମ୍ବଲପୁର ଥିଲା ଆସିଷ୍ଟାଣ୍ଟ କମିଶନର କେପ୍ଟେନ 'ଲି'ଙ୍କ ଅଧୀନରେ । ସୁରେନ୍ଦ୍ର ସାଏ ଏକ ଛୋଟ ପାହାଡ଼ ଉପରେ ଅବସ୍ଥିତ କୁଡୋପଲ୍ଲୀକୁ ନିଜର ସାମରିକ କେନ୍ଦ୍ର ରୂପେ ବ୍ୟବହାର କରିଥିଲେ । ସୁରେନ୍ଦ୍ର ସାଏଙ୍କ ଭାଇ ଛବିଳ ସାଏଙ୍କୁ ଇଂରେଜ ସୈନ୍ୟ ହତ୍ୟା କରିଥିଲେ । ତା'ର ପ୍ରତିଶୋଧ ସ୍ୱରୂପ ୧୮୫୮ ମସିହା ଫେବୃଆରୀ ୧୨ ତାରିଖଦିନ ବିଦ୍ରୋହୀମାନେ କେପ୍ଟେନ ଉଡ଼ଙ୍କୁ ପାହାଡ଼ ସିଙ୍ଗରାଠାରେ ହତ୍ୟା କରିଥିଲେ ।

କ୍ରମେ କ୍ରମେ ବିଦ୍ରୋହାଗ୍ନି ଅଧିକରୁ ଅଧିକ ପ୍ରଜ୍ୱଳିତ ହେବାକୁ ଲାଗିଲା । ବହୁ ଉଦ୍ୟମକରି ମଧ୍ୟ ସୁରେନ୍ଦ୍ର ସାଏ ଧରାହୋଇପାରିଲେ ନାହିଁ । ସେ ଲୁଚିଛପି ବିଦ୍ରୋହକୁ ନେତୃତ୍ୱ ଦେଉଥିଲେ । ଶେଷରେ ୧୮୬୪ ମସିହା ଜାନୁଆରୀ ୨୩ ତାରିଖ ଅର୍ଦ୍ଧରାତ୍ରିରେ ଅତର୍କିତ ଭାବେ ତାଙ୍କୁ ଗିରଫ କରାଯାଇ ମଧ୍ୟପ୍ରଦେଶସ୍ଥିତ ଅସିରଗଡ଼ ଦୁର୍ଗରେ ଆଜୀବନ ବନ୍ଦୀ କରି ରଖାଯାଇଥିଲା । ସେଇଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ଏହା ହେଉଛି ସୁରେନ୍ଦ୍ର ସାଏଙ୍କର ଭୂମିକା । କିନ୍ତୁ ଇତିହାସ ତାଙ୍କୁ ଯେଉଁ ସମ୍ମାନ ଜନକ ସ୍ଥାନ ଦେବାକଥା ତାହା ଦେଇନାହିଁ । ସେ ନାନାସାହେବ ବା ତାନ୍ତିଆଟୋପିଙ୍କ ଠାରୁ କୌଣସି ଗୁଣରେ ନ୍ୟୁନ ନଥିଲେ । ଅବଶ୍ୟ ସେ ଉତ୍ତର ଭାରତର ବିଦ୍ରୋହୀମାନଙ୍କ ସହ ଯୋଗ ନଦେଇ ସମ୍ବଲପୁର ଚାଲିଆସିଥିଲେ । ଅପରପକ୍ଷେ ତାଙ୍କୁ ପ୍ରଶଂସାକରି ମଧ୍ୟପ୍ରଦେଶର ଚିଫକମିଶନରଙ୍କର ସଚୀବ ଲେଖିଥିଲେ, ସମ୍ବଲପୁର ହେଉଛି ଭାରତବର୍ଷର ଶେଷ ଜିଲ୍ଲା, ଯେଉଁଠାରେ ସୁରେନ୍ଦ୍ର ସାଏ ୧୮୫୭ ବିଦ୍ରୋହର ଅଗ୍ନିକୁ ୧୮୬୪ ପର୍ଯ୍ୟନ୍ତ ପ୍ରଜ୍ୱଳିତ କରି ରଖିଥିଲେ' ।

## (୪) ମାଧୋସିଂ ଓ ତାଙ୍କ ପୁତ୍ରଙ୍କର ବିଦ୍ରୋହ :

ମାଧୋସିଂ ଥିଲେ ସମ୍ବଲପୁର ନିକଟବର୍ତ୍ତୀ ଘେଂସର ଜମିଦାର । ସେ ଓ ତାଙ୍କର ପୁତ୍ର ହାଟୀସିଂ, କଞ୍ଜଲ ସିଂ, ବୈରୀ ସିଂ ଓ ସେମାନଙ୍କର ଘନିଷ୍ଠ ବନ୍ଧୁ ସାଲିଗ୍ରାମ ବରିହା । ୧୮୫୭ - ୫୮ର ଯୁଗାନ୍ତକାରୀ ବିଦ୍ରୋହ ଆରମ୍ଭ ହେବାପରେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ସେମାନଙ୍କ ମଧ୍ୟରୁ କେତେଜଣ ମୃତ୍ୟୁଦଣ୍ଡ ପାଇବା ସମେତ ଅନ୍ୟ କେତେଜଣଙ୍କୁ ଆଜୀବନ କଳାପାଣି ଦଣ୍ଡ ବିଧାନ ହୋଇଥିଲା ।

ପ୍ରଥମେ ମାଧୋ ସିଂ ଓ ତାଙ୍କର ପୁତ୍ରମାନେ ସିଙ୍ଗରାଘାଟୀ ଜଗି ଦେଇ ଇଂରେଜ ସୈନ୍ୟଙ୍କୁ ମଧ୍ୟପ୍ରଦେଶରୁ ପୂର୍ବ ଭାରତକୁ ଯିବାକୁ ଦେଇନଥିଲେ । ସେହିଠାରେ ସେମାନେ କେପ୍ଟେନ ଉଡ଼ବ୍ରିଜଙ୍କୁ ହତ୍ୟା କରିଥିଲେ । ପ୍ରାୟ ୧ ବର୍ଷଧରି ଉଭୟଙ୍କ ମଧ୍ୟରେ ଘମାଘୋଟ ସଂଘର୍ଷ ଲାଗିଥିଲା । ଶେଷରେ ଇଂରେଜମାନେ ଆପୋଷ ମିଳାମିଶା, ଷଡ଼ଯନ୍ତ୍ର ଓ ହୀନ ଉପାୟ ଅବଲମ୍ବନ କରି ମାଧୋ ସିଂଙ୍କୁ ୧୮୫୮ ମସିହାରେ ଫାଶୀଦଣ୍ଡ ଦେଇଥିଲେ । ମାତ୍ର ତାଙ୍କର ପୁତ୍ରମାନେ ୧୮୬୫ ମସିହା ଜାନୁଆରୀ ମାସ ପର୍ଯ୍ୟନ୍ତ ବିଦ୍ରୋହକୁ ଚାଲୁ ରଖି ଶେଷରେ ଗିରଫ ହୋଇଥିଲେ । ତନ୍ମଧ୍ୟରୁ ହାଟୀ ସିଂଙ୍କୁ ଆଣ୍ଡାମାନ ଜେଲକୁ ନିର୍ବାସିତ କରାଯାଇଥିଲା ଓ ସେହିଠାରେ ସେ ମୃତ୍ୟୁବରଣ କରିଥିଲେ । କଞ୍ଜଲ ସିଂ ଓ ସାଲିଗ୍ରାମ ବରିହାଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇଥିଲା ଓ ବୈର ସିଂ ସମ୍ବଲପୁରରେ ମୃତ୍ୟୁବରଣ କରିଥିଲେ ।

ଏହା ହେଉଛି ୧୮୫୭-୧୮୫୮ ର ଭାରତୀୟ ମହାନ୍ ବିଦ୍ରୋହ ବା ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଙ୍କରେ ଓଡ଼ିଶାର ଭୂମିକା ।

**ଓଡ଼ିଶାରେ ରାଜନୈତିକ ବା ଜାତୀୟ ଜାଗରଣ (୧୮୫୮-୧୮୮୫)**

୧୮୫୮ ରୁ ୧୮୮୫ ରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ପର୍ଯ୍ୟନ୍ତ ୨୭ ବର୍ଷର ସମୟ ଥିଲା ରାଜନୈତିକ ବା ଜାତୀୟ ଜାଗରଣର ସମୟ । ଓଡ଼ିଶା ସେଥିରୁ ବହିର୍ଭୂତ ନଥିଲା । ତା ମୂଳରେ, କେତୋଟି କାରଣ ନିହିତ ।

ପ୍ରଥମ କାରଣ ଥିଲା ଶିକ୍ଷାନୁଷ୍ଠାନର ପ୍ରତିଷ୍ଠା । ଓଡ଼ିଶାର କେତେଜଣ କମିଶନର ଟି.ଇ. ରେଭେନଶାହ, ଜନ ବିମ୍ସ, ଛୋଟ ଲାଟ ଜର୍ଜ କେମ୍ବେଲ, ଜମିଦାର, ରାଜା ଓ ଇଂରେଜ ପାଦ୍ରୀମାନେ ଇଂରେଜୀ ଭାଷା ସହ ମାତୃଭାଷାର ଉନ୍ନତିକଳ୍ପେ ସମ୍ବଲପୁର, ବାଲେଶ୍ୱର, ବ୍ରହ୍ମପୁର ଓ କଟକରେ କେତୋଟି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ତନ୍ମଧ୍ୟରୁ ସମ୍ବଲପୁର ଜିଲ୍ଲା ସ୍କୁଲ, ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେଓଙ୍କ ଦ୍ୱାରା ବାରିପଦାରେ ଉଚ୍ଚଇଂରାଜି ବିଦ୍ୟାଳୟ, ୧୮୭୯ ରେ କଟକରେ ପ୍ୟାରିମୋହନ ଏକାଡ଼େମି, ବାଲେଶ୍ୱରରେ ବୈକୁଣ୍ଠନାଥ ଦେ ଓ ଫକୀର ମୋହନ ସେନାପତି ଓ ପ୍ରଟେଷ୍ଟାରେ ଉଚ୍ଚଇଂରାଜି ବିଦ୍ୟାଳୟର ନାମ ଉଲ୍ଲେଖ ଯୋଗ୍ୟ । ନାରୀ ଶିକ୍ଷାର ପ୍ରସାର ପାଇଁ ଫକୀର ମହୋନ ସେନାପତି ଓ ଖ୍ରୀଷ୍ଟିୟାନ ପାଦ୍ରୀମାନେ ଯତ୍ନବାନ ହୋଇଥିଲେ । ଠିକ୍ ସେହି

ସମୟରେ କଟକରେ ଇଂଜିନିୟରିଂ ଓ ମେଡ଼ିକାଲ ସ୍କୁଲ ସ୍ଥାପନ କରାଯାଇଥିଲା ।

ଦ୍ୱିତୀୟତଃ ରାଜନୈତିକ ଜାଗରଣ ସୃଷ୍ଟିକରିବା ଦିଗରେ ଛାପାଖାନା ପ୍ରତିଷ୍ଠାର ଭୂମିକା । ତାହା ପତ୍ର ପତ୍ରିକା ଓ ପୁସ୍ତକ ପ୍ରକାଶନରେ ବହୁ ପରିମାଣରେ ସହାୟକ ହୋଇଥିଲା । ଖ୍ରୀଷ୍ଟିୟାନ ପାଦ୍ରୀମାନେ ବାଇବେଲ ଛପାଇବା ପାଇଁ କଟକରେ ପ୍ରଥମେ ମିଶନ ପ୍ରେସ, ୧୮୬୬ ରେ ବିଚିତ୍ରାନନ୍ଦ ଦାଏଙ୍କ ଦ୍ୱାରା କଟକ ପ୍ରିଣ୍ଟିଂ ପ୍ରେସ, ବାଲେଶ୍ୱରରେ ଫକୀରମୋହନ ସେନାପତିଙ୍କ ଦ୍ୱାରା ଉତ୍କଳ ପ୍ରେସ ଓ ବୈକୁଣ୍ଠନାଥ ଦେଓଙ୍କ ଦ୍ୱାରା ଦେ ପ୍ରେସ ବାମଣ୍ଡାର ରାଜା ବାସୁଦେବ ସୁଡ଼ଳ ଦେବଙ୍କ ଦ୍ୱାରା ସୁଡ଼ଳପ୍ରେସ ଓ ବାରିପଦାରେ ମୟୂରଭଂଜ ପ୍ରେସ ସ୍ଥାପିତ ହୋଇଥିଲା । ଏହିପରି ଭାବେ ଉନବିଂଶ ଶତାବ୍ଦୀର ଶେଷସୁଦ୍ଧା, ସର୍ବମୋଟ ୧୬ ଟି ଛାପାଖାନା ସ୍ଥାପନ କରାଯାଇଥିଲା । ଫଳରେ କେତେକ ସମ୍ବାଦପତ୍ର, ପତ୍ର ପତ୍ରିକା ପ୍ରକାଶ ଲାଭ କରି ରାଜନୈତିକ ଜାଗରଣ ସୃଷ୍ଟି କରିବା ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ପ୍ରଥମେ ୧୮୪୪ ଓ ୧୮୬୦ ଖ୍ରୀଷ୍ଟାବ୍ଦରେ ଯଥାକ୍ରମେ ଜ୍ଞାନାରୁଣ ଓ ଅରୁଣୋଦୟ ନାମରେ ଦୁଇଟି ପତ୍ରିକା ପ୍ରକାଶ ପାଇଥିଲା । ପରେ ପରେ ୧୮୬୬ ରେ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ଉତ୍କଳ ଦୀପିକା, ଫକୀରମୋହନ ସେନାପତିଙ୍କ ଦ୍ୱାରା ସମ୍ବାଦ ବାହିକା ଓ ବୋଧଦାୟିନୀ, ୧୮୭୦ ରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ସମ୍ବଲପୁର ହିତୈଷିଣୀ, କଟକରୁ ବିଶ୍ୱନାଥ କରଙ୍କ ଦ୍ୱାରା ଉତ୍କଳ ହିତୈଷିଣୀ ପତ୍ରିକା ପ୍ରକାଶିତ ହୋଇଥିଲା । ଏଗୁଡ଼ିକ ମଧ୍ୟ ଓଡ଼ିଆ ଭଷା ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ତୃତୀୟତଃ ସାମାଜିକ-ଆଧ୍ୟାତ୍ମିକ ଆନ୍ଦୋଳନ ମଧ୍ୟ କିଛି ପରିମାଣରେ ସହାୟକ ହୋଇଥିଲା । ବଙ୍ଗଳାର ରାଜା ରାମମୋହନ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରାହ୍ମସମାଜର ପ୍ରଭାବ ଓଡ଼ିଶାରେ ଅନୁଭୂତ ହୋଇଥିଲା । ଏହା ଆନୁକୂଲ୍ୟରେ ପ୍ରକାଶିତ ତତ୍ତ୍ୱବୋଧିନୀ ପତ୍ରିକା ସର୍ବତ୍ର ପାଠ କରାଯାଉଥିଲା । ସେହିସମୟରେ କେତେଜଣ ଓଡ଼ିଆ ଲେଖକ ସାମାଜିକ କୁସଂସ୍କାର ଦୂରକରିବା ପାଇଁ ଲେଖନୀ ଚାଳନା କରିଥିଲେ । ତନ୍ମଧ୍ୟରୁ ଫକୀରମୋହନ ସେନାପତିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେହିପରି ସାମାଜିକ ସଂସ୍କାର ଓ ଜାତୀୟ ଚେତନା ସୃଷ୍ଟିକରିବା ପାଇଁ କଟକରେ ୟଙ୍ଗମେନ୍ସ୍ ଏସୋସିଏସନ, ପରସ୍ପର ଉନ୍ନତି ସମିତି (୧୮୫୯) ବ୍ରହ୍ମପୁରରେ ଉତ୍କଳ ଭାଷା ବୋଧିନୀ ସଭା (୧୮୭୨), କଟକରେ ଉତ୍କଳ ସଭା (୧୮୭୨), ବାଲେଶ୍ୱରରେ ଜାତୀୟ ସଭା (National Society) (୧୮୭୮) ପାରଳାଖେମୁଣ୍ଡିରେ ଉତ୍କଳ ହିତୈଷିଣୀ ସଭା ଢେଙ୍କାନାଳ ହିତୈଷିଣୀ ସଭା (୧୮୮୧), ଉତ୍କଳ ସାହିତ୍ୟ ସମ୍ମିଳନୀ (୧୮୮୬) ବାରିପଦା ରିଡ଼ିଂ କ୍ଲବ (୧୮୮୯) ଅନୁକୂଳରେ ଶିକ୍ଷା ବୋଧିନୀ ସଭା (୧୮୯୭) ପ୍ରତିଷ୍ଠା କରାଯାଇଥିଲା । ଏ ଗୁଡ଼ିକର ସ୍ଥାୟିତ୍ୱ ବେଶୀଦିନ ହୋଇନଥିଲେ ମଧ୍ୟ ଏହାର ପ୍ରଭାବ ବେଶ ସୁଦୂରପ୍ରସାରୀ ହୋଇଥିଲା ।

ସେହି ସମୟରେ ଓଡ଼ିଆ ଭାଷା ସମସ୍ୟା ଓ ସେଥିପାଇଁ ଚାଲିଥିବା ଆନ୍ଦୋଳନ ମଧ୍ୟ ଜାତୀୟ ଚେତନା ସୃଷ୍ଟି କରିବା ଦିଗରେ ସହାୟକ ହୋଇଥିଲା । ସେତେବେଳେ ବଙ୍ଗଳାରୁ ଏକ ଧ୍ୱନି ଶୁଭିଲା ଯେ, ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ । ତାହା ବଙ୍ଗଳାର ଏକ ପ୍ରାନ୍ତୀୟ ଉପଭାଷା । ସେହିପରି ୧୮୭୦ ମସିହାରେ ଘୁମୁସରର ଜନାର୍ଦ୍ଦନ ଦାସ ପ୍ରଚାର କରିଥିଲେ ଯେ ସେଠାରେ ତେଲୁଗୁଙ୍କ ଦ୍ୱାରା ଓଡ଼ିଆମାନେ ବିଭିନ୍ନ ଅଫିସରେ ନିର୍ଯ୍ୟାତିତ ହେଉଛନ୍ତି । ସେଥିପାଇଁ ଖଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କ ନେତୃତ୍ୱରେ ଆନ୍ଦୋଳନ ଚାଲିଥିଲା । ସମ୍ବଲପୁରରେ ହିନ୍ଦୀଭାଷାର ପ୍ରାଦୁର୍ଭାବ ପରିଲକ୍ଷିତ ହୋଇଥିବାରୁ ସେଠାରେ ମଧ୍ୟ ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସ ଓ ଶ୍ରୀପତି ମିଶ୍ର ଗାଁ ଗାଁ ବୁଲି ତା ବିରୁଦ୍ଧରେ ପ୍ରଚାର କରିଥିଲେ । ସେତେବେଳେ ଉତ୍କଳଭୂମିକୁ ଗୌରବାନ୍ୱିତ କରି ଜାତୀୟବାଦୀ କବିତା ଲେଖାଯାଇଥିଲା । ଫକୀରମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଚିନ୍ତାମଣି ମହାନ୍ତି, ଲକ୍ଷ୍ମୀକାନ୍ତ ମହାପାତ୍ର, ମଧୁସୂଦନ ଦାସ, ଗୌରୀଶଙ୍କର ରାୟ ପ୍ରମୁଖ ଲେଖକ ଏ ଦିଗରେ ଅଗ୍ରଣୀ ଭୂମିକା ଅବଲମ୍ବନ କରିଥିଲେ ।

ଏହପରି ଭାବେ ବିଭିନ୍ନ ଲେଖକ ଓ ସମିତି ଦ୍ୱାରା ଉନବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରେ ଓଡ଼ିଶାରେ ରାଜନୈତିକ ଜାଗରଣର ଉଦ୍ରେକ ହୋଇଥିଲା ।

### ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା - (୧୮୮୫-୧୯୦୫)

ସ୍ୱାଧୀନତା ସଂଗ୍ରାମ ବିଧିବଦ୍ଧ ଭାବେ ଆରମ୍ଭ ହୋଇଥିଲା ୧୮୮୫ ରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ଠାରୁ । ବାସ୍ତବପକ୍ଷେ ସେହିଠାରୁ ଭାରତୀୟ ଜାତୀୟ କଂଗ୍ରେସର ଇତିହାସ ହୋଇଥିଲା ସ୍ୱାଧୀନତା ସଂଗ୍ରାମର ଇତିହାସ ।

ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ଉମେଶ ଚନ୍ଦ୍ର ବାନାର୍ଜିଙ୍କର ଅଧ୍ୟକ୍ଷତାରେ ୧୮୮୫ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହୋଇଥିଲା । ଭାରତର ସବୁ ପ୍ରାନ୍ତରୁ ମୋଟ ୭୨ ଜଣ ପ୍ରତିନିଧି ଯୋଗଦେଇଥିଲେ । ଓଡ଼ିଶାରୁ ବ୍ରହ୍ମପୁରର ଆଇନଜୀବୀ ବିଶ୍ୱେଶ୍ୱର ଆୟାର ଯୋଗଦେଇଥିଲେ । ପରେ ପରେ ୧୮୮୬ ମସିହା ମାର୍ଚ୍ଚ ୩ ତାରିଖ ଦିନ ମଧୁସୂଦନ ଦାସଙ୍କ ଅଧ୍ୟକ୍ଷତାରେ କଟକରେ ଏକ ସଭା ଆହୂତ ହୋଇଥିଲା ଓ ଏହା ହେଉଛି ଓଡ଼ିଶାରେ ଜାତୀୟ କଂଗ୍ରେସର ପ୍ରଥମ ସଭା ।୧୮୮୬ ରେ କଲିକତାଠାରେ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ଉତ୍କଳ ସଭାଦ୍ୱାରା ମନୋନୀତ ହୋଇ ମଧୁସୂଦନ ଦାସ, ଗୋଲକଚନ୍ଦ୍ର ବୋଷ, ହରିବଲ୍ଲଭ ଘୋଷ, କାଳିପଦ ବାନାର୍ଜି ବାଲେଶ୍ୱରର ଜାତୀୟ ସଭାଦ୍ୱାରା ମନୋନୀତ ହୋଇ ରାଜା ବୈକୁଣ୍ଠ ନାଥ ଦେ, ଭଗବାନ ଚନ୍ଦ୍ର ଦାସ, ରମେଶ ଚନ୍ଦ୍ର ମଣ୍ଡଳ, ବ୍ରହ୍ମପୁରରୁ ପି. ଗୋପାଳ ରାଓ ଯୋଗଦେଇଥିଲେ । ପରେ ପରେ ୧୮୮୭ ମାଡ୍ରାଜ ଅଧିବେଶନରେ ଉତ୍କଳ ସଭା ଓ ବାଲେଶ୍ୱର ଜାତୀୟ ସଭା ଓ କଟକର ଓଡ଼ିଶା ପିପୁଲ୍ସ ଏସୋସିଏସନ ଦ୍ୱାରା ମନୋନୀତ ହୋଇ ପ୍ରତିନିଧିମାନେ

ଯୋଗଦେଇଥିଲେ । ସେଠାରୁ ଫେରିବା ପରେ ସେମାନଙ୍କୁ କଟକରେ ୧୮୮୮ ମସିହା ଜାନୁୟାରୀ ୨୯ ତାରିଖ ଦିନ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏଥିରେ ମୁସଲମାନ, ଖ୍ରୀଷ୍ଟିୟାନ, ମାରଓ୍ୱାଡ଼ି, ତାମିଲି, ତେଲୁଗୁ, ଜମିଦାର, ସରକାରୀ କର୍ମଚାରୀ ଯୋଗଦେଇଥିଲେ । ସେଠାରେ ସ୍ଥିର ହୋଇଥିଲା ଯେ ସେମାନେ ଓଡ଼ିଶାର ବିଭିନ୍ନ ପ୍ରାନ୍ତକୁ ଯାଇ ଲୋକମାନଙ୍କୁ ଜାତୀୟ କାର୍ଯ୍ୟକ୍ରମ ଉପରେ ଅବଗତ କରାଇବେ । ୧୮୮୯ ରେ ବମ୍ବେଠାରେ ଅନୁଷ୍ଠିତ ପଞ୍ଚମ ଅଧିବେଶନରେ କଟକରୁ ଜାନକୀନାଥ ବୋଷ ଯୋଗଦେଇ ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତର ପ୍ରଚଳନ ଉପରେ ଗୁରୁତ୍ୱ ଦେଇଥିଲେ । ଉତ୍କଳ ସଭା ଓ ଜାତୀୟ ସଭା ବ୍ୟତୀତ ପାରଳାଖେମୁଣ୍ଡିରେ ଗଠିତ ଉତ୍କଳ ହିତୈଷିଣୀ ସମାଜ ଆନୁକୂଲ୍ୟରେ ମନୋନୀତ ହୋଇ ବି. ରାଜଗୁରୁ, ଦେଓ୍ୱାନ ସଦାଶିବ ମିଶ୍ର, ପଦ୍ମନାଭ ନାରାୟଣ ଦେଓ ୧୮୯୪ ମସିହାର ମାନ୍ଦ୍ରାଜ ଅଧିବେଶନରେ ଯୋଗଦେଇ ଥିଲେ । ସେମାନେ ଦକ୍ଷିଣ ଓଡ଼ିଶାର ଲୋକଙ୍କ ମଧ୍ୟରେ ଜାତୀୟ ଜାଗରଣ ସୃଷ୍ଟି କରିବା ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେହିପରି ସମ୍ବଲପୁରରୁ ଭାଗବତ ପ୍ରସାଦ ମହାପାତ୍ର, ବୈକୁଣ୍ଠ ନାଥ, ପୂଜାରୀ, ଧରଣୀଧର ମିଶ୍ର ଓ ଦାମୋଦର ଦାସ ୧୮୬୯ କଲିକତା ଅଧିବେଶନରେ ଯୋଗଦେଇଥିଲେ । ୧୯୦୧ ର କଲିକତା ଅଧିବେଶନ ଥିଲା ଓଡ଼ିଶା ପାଇଁ ଗୌରବମୟ ଅଧିବେଶନ । ଏଠାରେ ମଧୁସୂଦନ ଦାସ ଓଡ଼ିଶାର ତାରକସିକାମ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ଅଧିବେଶନରେ ଜଗମୋହନ ଲାଲା, ରାମଶଙ୍କର ରାୟ, ନିମାଇ ଚରଣ ମିତ୍ର, ଜାନକୀନାଥ ବୋଷ, ମଧୁସୂଦନ ଦାସ, ବାଲେଶ୍ୱରରୁ ଉପେନ୍ଦ୍ର ଚନ୍ଦ୍ର ରାୟ, ଲଳିତ ମୋହନ ସରକାର, ନରେନ୍ଦ୍ର କୁମାର ମଣ୍ଡଳ, ପୁରୀରୁ ବିଧୁଭୂଷଣ ବାନାର୍ଜି ଯୋଗ ଦେଇଥିଲେ । ଅନ୍ୟ କେତେଜଣ ପ୍ରତିନିଧିଙ୍କ ମଧ୍ୟରୁ ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ ରାଏ, ମଧୁସୂଦନ ରାଓ, ନାରାୟଣ ଚନ୍ଦ୍ର ପ୍ରଧାନ, ଗୋକୁଳାନନ୍ଦ ଚୌଧୁରୀ, ହରେନ୍ଦ୍ର ନାରାୟଣ ରାୟ ମହାଶୟ, ହେମଚନ୍ଦ୍ରଦେଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ମୋଟ ଉପରେ ଦେଖିବାକୁ ଗଲେ, ଓଡ଼ିଶାକୁ ପ୍ରତିନିଧିତ୍ୱ କରିଥିଲେ ଜମିଦାର, ମ୍ୟୁନିସିପାଲିଟି ସଭ୍ୟ, ଓକିଲ, ସମ୍ବାଦପତ୍ରର ସମ୍ପାଦକ ଓ କବି । ସମସ୍ତେ ଥିଲେ ଶିକ୍ଷିତ, ମଧ୍ୟବିତ୍ତ ପରିବାର ଓ ନରମପନ୍ଥୀ । ସେମାନେ ସରକାରଙ୍କ ନିକଟରେ ବିନମ୍ର ଭାବରେ ପ୍ରାର୍ଥନା କରି କାର୍ଯ୍ୟ ହାସଲ କରିବା ପାଇଁ ଚାହିଁଥିଲେ । ଏହିଠାରେ ଅନ୍ୟ ଗୋଟିଏ ବିଷୟ ଉପରେ ଆମର ଦୃଷ୍ଟି ପଡ଼ିଥାଏ । ମଧୁସୂଦନ ଦାସଙ୍କ ବ୍ୟତୀତ ବଙ୍ଗଳାର ସୁରେନ୍ଦ୍ରନାଥ ବାନାର୍ଜିଙ୍କ ପରି ଓଡ଼ିଶାର ଅନ୍ୟ କେଉଁ ପ୍ରତିନିଧି ଅଧିବେଶନରେ ବିଶେଷ ଭାବରେ ନିଜର ପ୍ରଭାବ ପକାଇନଥିଲେ । ତଥାପି ଜାତୀୟ ଜାଗରଣ ଓ ରାଜନୈତିକ ଶିକ୍ଷାଦେବାରେ ପ୍ରାଥମିକ ପର୍ଯ୍ୟାୟରେ ସେମାନେ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅବଲମ୍ବନ କରିଥିଲେ, ଏଥିରେ ସନ୍ଦେହ ନାହିଁ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିର ପ୍ରାରମ୍ଭରେ ଉତ୍କଳ ସଭା, ଜାତୀୟ ସଭା, ଉତ୍କଳ ହିତୈଷିଣୀ ସଭା ଆଦି ନିଜ ନିଜର ସତ୍ତା ହରାଇ ଜାତୀୟ କଂଗ୍ରେସର ଉଜାଣି ସ୍ରୋତରେ ଲୀନ ହୋଇ ଯାଇଥିଲେ ।

## ଉତ୍କଳ ସମ୍ମିଳନୀ ଗଠନ (୧୯୦୩)

ଆଲୋଚ୍ୟ ପର୍ଯ୍ୟାୟରେ ଏକ ଉଲ୍ଲେଖନୀୟ ଘଟଣା ସଂଘଟିତ ହୋଇ ଓଡ଼ିଶାର ଭାଗ୍ୟ ନିର୍ଣ୍ଣୟରେ ସହାୟକ ହୋଇଥିଲା ଓ ତାହା ଥିଲା ୧୯୦୩ ରେ ଗଠିତ ଉତ୍କଳ ସମ୍ମିଳନୀ । ତାର ମୁଖ୍ୟ ପ୍ରତିଷ୍ଠାତା ଥିଲେ ମଧୁସୂଦନ ଦାସ । ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ସେମାନଙ୍କୁ ବିରୋଧକରି ବିଦ୍ରୋହପରେ ବିଦ୍ରୋହ ଦେଖାଦେଇଥିଲା । ସେମାନେ ସୁଦୂର ପ୍ରସାରୀ ଓଡ଼ିଶାକୁ ଖଣ୍ଡ ବିଖଣ୍ଡିତ କରିଦେଇଥିବାରୁ । ଉଦ୍ଦେଶ୍ୟଥିଲା ଭବିଷ୍ୟତରେ ଓଡ଼ିଶାବାସୀ ଯେପରି ସେମାନଙ୍କ ପାଇଁ ବିପଦର କାରଣ ନହୁଅନ୍ତି । ଦକ୍ଷିଣରେ ଗଂଜାମ ସମେତ ଅନ୍ୟାନ୍ୟ ଅଞ୍ଚଳକୁ ମାନ୍ଦ୍ରାଜ ସରକାର ଅଧୀନରେ, ସମ୍ବଲପୁର ସମେତ ମହାନଦୀର ଅପର ପାର୍ଶ୍ୱରେ ଥିବା ଅଞ୍ଚଳକୁ ସେଣ୍ଟ୍ରାଲ ପ୍ରଭିନ୍ସ ଚିଫ କମିଶନରଙ୍କ ଅଧୀନରେ ଓ ସୁବର୍ଣ୍ଣରେଖା ନଦୀର ଅପରପାର୍ଶ୍ୱରେ ଅବସ୍ଥିତ ମେଦିନାପୁର ସମେତ ଅନ୍ୟାନ୍ୟ ଅଞ୍ଚଳକୁ ବଙ୍ଗଳା ସରକାରଙ୍କ ଅଧୀନରେ ଅବସ୍ଥାପିତ କରାଯାଇ ଶାସନକାର୍ଯ୍ୟ ଓଡ଼ିଶା ବାହାରୁ ନିୟନ୍ତ୍ରିତ ହୋଇଥିଲା । ଏହି ଖଣ୍ଡ ବିଖଣ୍ଡିତ ମନୋରମ ଓଡ଼ିଶା ଏକ ଦାନ୍ତଭଙ୍ଗା ପୁଷ୍ପର ରୂପ ନେଇଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ପୁନରାୟ ଏକତ୍ର କରି ଓଡ଼ିଶାର ଲୁପ୍ତ ଗୌରବ ଫେରାଇ ଆଣିବା ନିମନ୍ତେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା । ଏହାର ପ୍ରଥମ ଅଧିବେଶନ କଟକସ୍ଥିତ ଇଦ୍‌ଗାପଡ଼ିଆରେ ୧୯୦୩ ମସିହା ଡ଼ିସେମ୍ବର ୩୦ ତାରିଖ ଦିନ ଅନୁଷ୍ଠିତ ହୋଇଥିଲା । ବାମଣ୍ଡାର ରାଜା ସାର ବାସୁଦେବ ସୁଢ଼଼ଳଦେବ ପୌରହିତ୍ୟ କରିବାର ଥିଲା । ମାତ୍ର ସେ ଅସୁସ୍ଥ ହୋଇପଡ଼ିବାରୁ ମୟୂରଭଂଜର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଭଂଜ ପୌରହିତ୍ୟ କରିଥିଲେ । ଏହି ଅଧିବେଶନରେ କେତେଜଣ ରାଜା, ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ଓ ଅନ୍ୟାନ୍ୟ ନେତୃବୃନ୍ଦ ଯୋଗ ଦେଇଥିଲେ । ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରଦତ୍ତ ଜ୍ୱାଳାମୟୀ ଓ ଆବେଗପୂର୍ଣ୍ଣ ଭାଷଣ ଉପସ୍ଥିତ ବ୍ୟକ୍ତିଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଫଳରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ତତ୍କାଳୀନ ଭାଇସରାୟ ଲର୍ଡ଼ କର୍ଜନଙ୍କ ନିକଟରେ ଦାବୀ ଉପସ୍ଥାପନ କରିବା ଫଳରେ ୧୯୦୫ ମସିହାରେ ସମ୍ବଲପୁରକୁ ଓଡ଼ିଶା ସହିତ ମିଶ୍ରଣ କରାଯାଇଥିଲା । ପରେ ପରେ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ଏହାର ଅଧିବେଶନ ଡ଼କାଯାଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଥିଲା । ତାର ବର୍ଣ୍ଣନା ପରେ ପରେ ଦିଆଯିବ ।

**ଓଡ଼ିଶାରେ ସ୍ୱଦେଶୀ ଆନ୍ଦୋଳନ : (୧୯୦୫-୧୯୧୪)**

ଇଂରେଜମାନଙ୍କ ଏକ ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ସ୍ୱଦେଶୀ ଆନ୍ଦୋଳନର ଆରମ୍ଭ ପାଇଁ କିଛି ପରିମାଣରେ ଦାୟୀ । ପ୍ରଶାସନିକ ଅସୁବିଧା ଦର୍ଶାଇ ୧୯୦୫ ରେ ଲର୍ଡ଼ କର୍ଜନ ବଙ୍ଗଳା ପ୍ରଦେଶକୁ ଦୁଇଭାଗରେ ବିଭକ୍ତ କରି ପୂର୍ବ ବଙ୍ଗ ଓ ଆସାମ ନାମରେ ଏକ ନୂତନ ପ୍ରଦେଶ ଗଠନ କରିଥିଲେ । ଫଳରେ ଏହା ଏକ ରାଜନୈତିକ ଝଡ଼ ସୃଷ୍ଟି କରିଥିଲା । ସେହି ଝଡ଼ଟି ଥିଲା ସ୍ୱଦେଶୀ ଆନ୍ଦୋଳନ । ଏହାର ଆଭିମୁଖ୍ୟ ଥିଲା ଇଂରେଜ ଦ୍ରବ୍ୟକୁ ବ୍ୟବହାର ନକରି ସ୍ୱଦେଶରେ ପ୍ରସ୍ତୁତ ଦ୍ରବ୍ୟ ବ୍ୟବହାର କରିବା । ବଙ୍ଗଳାରେ ଏହା ଆରମ୍ଭ ହୋଇଥିଲେ ମଧ୍ୟ ଭାରତର ଅନ୍ୟାନ୍ୟ ଭାଗକୁ ଏହା ପ୍ରସାରିତ ହୋଇଥିଲା ।

ଓଡ଼ିଶାର କମିଶନର ସରକାରଙ୍କୁ ଜଣାଇଥିଲେ ଯେ, ଏହି ଆନ୍ଦୋଳନ ଓଡ଼ିଶାରେ ସେପରି କିଛି ପ୍ରଭାବ ପକାଇ ନାହିଁ  ମାତ୍ର ଏହା ଠିକ୍ ନୁହେଁ । ବଙ୍ଗ ଭଙ୍ଗ ଘୋଷଣା କରାଯିବା ପରେ ପରେ କଟକରେ ୧୯୦୫ ମସିହା ଅଗଷ୍ଟ ୨୦ ତାରିଖ ଦିନ ଜାନକୀନାଥ ବୋଷଙ୍କ ପୌରହିତ୍ୟରେ ଏକ ସଭା ଆହ୍ୱାନ କରାଯାଇଥିଲା । ସେହି ଠାରେ ସଭାରେ ଉପସ୍ଥିତ ବ୍ୟକ୍ତିମାନେ ଖଣ୍ଡିଏ କାଗଜ ଉପରେ ଦସ୍ତଖତ କରିଥିଲେ ଯେ ସେମାନେ ଇଂରେଜ ଦ୍ରବ୍ୟ ବ୍ୟବହାର କରିବେ ନାହିଁ । ବିଶେଷତଃ ମଧୁସୂଦନ ଦାସଙ୍କର ବକ୍ତୃତା ବେଶ ଉଦ୍ଦୀପନା ସୃଷ୍ଟି କରିଥିଲା । ଉଦାହରଣ ଦେଇ ସେ କହିଥିଲେ ଯେ ଛିଣ୍ଡାହେଲେ ମଧ୍ୟ ଜାପାନର ଜେନେରାଲ ଟୋଗୋ ଜାପାନ ପ୍ରସ୍ତୁତ ଯୋତା ବ୍ୟବହାର କରୁଥିଲେ । ପରେ ପରେ ମଧୁସୂଦନ ବିଭିନ୍ନ ସ୍ଥାନ ବୁଲି ସ୍ୱଦେଶୀ ସଭାରେ ଭାଷଣ ଦେଇଥିଲେ । ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ରଙ୍କ ପରି ଯୁବଗୋଷ୍ଠୀଙ୍କ ହୃଦୟରେ ତାଙ୍କର ବକ୍ତୃତା ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ବାଲେଶ୍ୱର ଟାଉନ ହଲରେ ଅବଦୁଲ ଶୋଭନ ଖାଁଙ୍କ ପୌରହିତ୍ୟରେ ଗୋଟିଏ ସଭା, ଅନ୍ୟ ଗୋଟିଏ ସଭା ଫକୀରମୋହନ ସେନାପତିଙ୍କ ପୌରହିତ୍ୟରେ ବାରବାଟି ବିଦ୍ୟାଳୟଠାରେ ଅନୁଷ୍ଠିତ ହୋଇଥିଲା । ପୁରୀରେ ମଧ୍ୟ ୧୯୦୫ ମସିହା ସେପ୍ଟେମ୍ବର ୯ ତାରିଖ ଦିନ ଅନ୍ୟ ଏକ ସଭାରେ ହରିଶ ଚନ୍ଦ୍ର ଘୋଷ ପୌରହିତ୍ୟ କରି ସ୍ୱଦେଶୀ ଆନ୍ଦୋଳନର ତାତ୍ପର୍ଯ୍ୟ ବୁଝାଇଥିଲେ । ବନ୍ଦେ ମାତରମ  ଥିଲା ସେମାନଙ୍କର ଧ୍ୱନି । ବହୁ ସ୍ଥାନରେ ଲୋକମାନେ ମାଞ୍ଚେଷ୍ଟାର ପ୍ରସ୍ତୁତ ବସ୍ତ୍ର  ଓ ଲିଭରପୋଲ ପ୍ରସ୍ତୁତ ଲୁଣ ପରିହାର କରି ଭାରତର ପ୍ରସ୍ତୁତ ଦ୍ରବ୍ୟ ବ୍ୟବହାର କରିଥିଲେ । ଗ୍ରାମ୍ୟ ମେଳାରେ ଏହା ପ୍ରଚାର କରାଯାଇଥିଲା । ସ୍ୱଦେଶୀ ଭାବନା ଓଡ଼ିଆ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ତନ୍ମଧ୍ୟରୁ ଗଂଜାମର ପ୍ରଜାବନ୍ଧୁ ବାରିପଦାର ମନୋରମା' ଓ 'ସମ୍ବଲପୁର ହିତୈଷିଣୀ' ପତ୍ରିକାର ନାମ ଉଲ୍ଲେଖ ଯୋଗ୍ୟ । ଉତ୍କଳ ସମ୍ମିଳନୀର ପୁରୀଶାଖା ଆନୁକୂଲ୍ୟରେ ୧୯୦୫ ମସିହା ଅକ୍ଟୋବର ୨୦ ତାରିଖ ଦିନ ଏକ ସଭା ଅନୁଷ୍ଠିତ ହୋଇ ସେଠାରେ ଜଗନ୍ନାଥଙ୍କ ଆଗରେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବା ପାଇଁ ସମସ୍ତେ ପ୍ରତିଜ୍ଞା କରିଥିଲେ ।

ଓଡ଼ିଶାରେ ତନ୍ତବୁଣା ବସ୍ତ୍ରର ପ୍ରସ୍ତୁତି ବୃଦ୍ଧିପ୍ରାପ୍ତ ହୋଇଥିଲା । ବ୍ରହ୍ମପୁରରୁ ସ୍ୱଦେଶ ଲକ୍ଷ୍ମୀନାମରେ ଏକ ପତ୍ରିକା ପ୍ରକାଶିତ ହୋଇଥିଲା । ସମ୍ବଲପୁର ଓ ବରଗଡ଼ରେ ଉତ୍କୃଷ୍ଟ ଧରଣର ବସ୍ତ୍ର ପ୍ରସ୍ତୁତ କରାଯାଇଥିଲା । ବଙ୍ଗଳାର ଲବ୍ଧପ୍ରତିଷ୍ଠିତ ନେତା ବିପିନ ଚନ୍ଦ୍ର ପାଲ ୧୯୦୭ ମସିହା ଏପ୍ରିଲ ମାସରେ କଟକ ଆସି ସ୍ୱଦେଶୀ ଓ ଜାତୀୟ ଶିକ୍ଷା ଉପରେ ଦୁଇଟି ଭାଷଣ ପ୍ରଦାନ କରିଥିଲେ । ତାଙ୍କର ଭାଷଣ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସରକାର ଶିକ୍ଷକ ଓ ଛାତ୍ରଙ୍କୁ ଶିକ୍ଷାନୁଷ୍ଠାନରେ ଯୋଗଦେବା ପାଇଁ ନିଷେଧ କରିବାରୁ ଗୋପବନ୍ଧୁ ଦାସ ଭୁବନେଶ୍ୱରଠାରେ ଜାତୀୟ ବିଦ୍ୟାଳୟ ଢାଞ୍ଚାରେ ଏକାମ୍ର ଏକାଡ଼େମୀ ପ୍ରତିଷ୍ଠା କରିଥିଲେ । ମାତ୍ର ଅର୍ଥାଭାବରୁ ଏହା ବନ୍ଦ ହୋଇଯାଇଥିଲା । ତେଣୁ ଗୋପବନ୍ଧୁ ୧୯୦୯ ମସିହା ଅଗଷ୍ଟ ୧୨ ତାରିଖଦିନ ପୁନାଠାରେ ପ୍ରତିଷ୍ଠିତ ଫର୍ଗୁସନ କଲେଜ ଢାଞ୍ଚାରେ ସାକ୍ଷୀଗୋପାଳଠାରେ ଏକ ବନବିଦ୍ୟାଳୟ ପ୍ରତିଷ୍ଠା କରି ଜାତୀୟ ଚେତନା ସୃଷ୍ଟି କରିଥିଲେ । ୧୯୧୩ ମସିହା ଏପ୍ରିଲ ୧୩ ତାରିଖ ଦିନ ବ୍ରହ୍ମପୁରଠାରେ 'ଆଶା' ନାମ ଦେଇ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରାଯାଇ କଂଗ୍ରେସର ବାର୍ତ୍ତା ପ୍ରଚାର କରାଯାଇଥିଲା । ଏହାର ସମ୍ପାଦକ ଥିଲେ ଯୁବନେତା ଶଶୀଭୂଷଣ ରଥ ।

### ଓଡ଼ିଶାରେ ସନ୍ତ୍ରାସବାଦୀ ଆନ୍ଦୋଳନ (୧୯୧୪-୧୯୧୫)

ଇତିମଧ୍ୟରେ ଭାରତୀୟ ଜାତୀୟ କଂଗ୍ରେସ ମଧ୍ୟରେ ନରମପନ୍ଥୀଙ୍କର କାର୍ଯ୍ୟକଳାପକୁ ଗ୍ରହଣ ନକରି ଏକ ଚରମପନ୍ଥୀ ଗୋଷ୍ଠୀର ଉଦ୍ଭବ ହୋଇଥିଲା । ସେମାନେ ହିଂସାର ଆଶ୍ରୟ ନେଇ ସ୍ୱରାଜ ପାଇବେ ବୋଲି ମତଦ୍ୟାନ୍ତ କରିଥିଲେ । ସେମାନଙ୍କୁ କୁହାଯାଉଥିଲା ଚରମ ପନ୍ଥୀ । ୧୯୦୭ ମସିହାରେ ଜାତୀୟ କଂଗ୍ରେସର ସୁରାଟ ଅଧିବେଶନରେ ସେମାନେ ଜାତୀୟ କଂଗ୍ରେସରୁ ବାହାରି ଆସିଥିଲେ । କଲିକତାର ଦୁଇଜଣ ଚରମପନ୍ଥୀ ଶଶୀ ଭୂଷଣ ଓ ଖୁଦିରାମ ବୋଷ ୧୯୧୩ ମସିହାରେ ଓଡ଼ିଶା ଆସି ଯୁବଗୋଷ୍ଠୀଙ୍କୁ ଅନୁପ୍ରାଣିତ କରିଥିଲେ । କଲିକତାରେ ପ୍ରତିଷ୍ଠିତ କଲିକତା ଅନୁଶୀଳନ ସମିତି ଆନୁକୂଲ୍ୟରେ ଶଶୀଭୂଷଣ ଓଡ଼ିଶାରେ ତାର ଶାଖା ଖୋଲିବା ପାଇଁ ଉଦ୍ୟମ କରି ଶେଷରେ କଟକରେ ଯୁବ ଉତ୍କଳ ସଂଘ ନାମ ଦେଇ ଏକ ଅନୁଷ୍ଠାନ ଖୋଲିଥିଲେ । ବ୍ରଜସୁନ୍ଦର ଦାସ, ନୀଳକଣ୍ଠ ଦାସ, ସୁବୋଧ ହାଜରା ଓ ଗୋଦାବରୀଶ ମିଶ୍ର ଥିଲେ ଏହାର ସକ୍ରିୟ ସଭ୍ୟ ।

ଇତିମଧ୍ୟରେ ଚରମପନ୍ଥୀଙ୍କ ମଧ୍ୟରୁ ଏକ ଯୁବ ବିପ୍ଳବୀଙ୍କର ଉନ୍ମେଷ ହୋଇଥିଲା । ପିସ୍ତଲ, ବୋମା ଓ ଅନ୍ୟାନ୍ୟ ଅସ୍ତ୍ର ବ୍ୟବହାର କରି ଇଂରେଜ କର୍ମଚାରୀଙ୍କୁ ହତ୍ୟା କରି ସନ୍ତ୍ରାସ ସୃଷ୍ଟି କରିବା ଥିଲା ସେମାନଙ୍କର ଆଭିମୁଖ୍ୟ । ସେମାନେ କହୁଥିଲେ, ଏକ ଆଉନ୍ସ ଓଜନର ସୀସା ଗୋଟିଏ ଟନ ଓଜନର ବକ୍ତୃତା ଅପେକ୍ଷା ଅଧିକ ଫଳପ୍ରଦ ସେମାନଙ୍କୁ କୁହାଯାଉଥିଲା ସନ୍ତ୍ରାସବାଦୀ ।

୧୯୧୪ ମସିହାରେ ସୂତ୍ରପାତ ହୋଇଥିଲା ପ୍ରଥମ ବିଶ୍ୱଯୁଦ୍ଧ । ସେହି ସମୟରେ ଭାରତର ସନ୍ତ୍ରାସବାଦୀମାନେ ଉତ୍ତର ଆମେରିକାରେ ହରଦୟାଲଙ୍କ ଦ୍ୱାରା ଗଠିତ ଗଦରପାର୍ଟି ମାଧ୍ୟମରେ ଜର୍ମାନୀରୁ ବହୁ ପରିମାଣରେ ଅସ୍ତ୍ର ଶସ୍ତ୍ର ଓ ଅର୍ଥ ପାଉଥିଲେ । ତାକୁ ବ୍ୟବହାର କରି ସେମାନେ ବିଭିନ୍ନ ହିଂସାତ୍ମକ କାର୍ଯ୍ୟ କରୁଥିଲେ । ତନ୍ମଧ୍ୟରୁ ଓଡ଼ିଶାରେ ଦୁଇଟି ଘଟଣା ଥିଲା ବେଶ୍ ରୋମାଞ୍ଚକର ଓ ରହସ୍ୟବିଜଡ଼ିତ । ଗୋଟିଏ ଥିଲା ଚୈନପୁର ଡକାୟତି ଓ ଅନ୍ୟଟି ଥିଲା ଚଷାଖଣ୍ଡ ସଂଘର୍ଷ ।

### (୧) ଚୈନପୁର ଡକାୟତି : (୧୯୧୪ ମସିହା ସେପ୍ଟେମ୍ବର ୧୪)

ଏହା ଥିଲା ୧୯୧୪ ମସିହା ସେପ୍ଟେମ୍ବର ୧୪ ତାରିଖର ଘଟଣା । ବଙ୍ଗଳାରୁ ସୁରେଶଚନ୍ଦ୍ର ଧର ଓ କ୍ଷିତୀଶଚନ୍ଦ୍ର ଚୌଧୁରୀ ନାମରେ ଦୁଇଜଣ ସନ୍ତ୍ରାସବାଦୀ ୧୯୧୩ ମସିହାରେ ଯାଜପୁର ଅଞ୍ଚଳର ବନ୍ୟାରେ ସାହାଯ୍ୟ ବାଣ୍ଟିବା ପାଇଁ ଆସିଥିବା ଅବସରରେ ଚୈନପୁର ଗ୍ରାମରେ ଡକାୟତି କରିବା ପାଇଁ ଖବର ସଂଗ୍ରହ କରିଥିଲେ । ସେମାନଙ୍କ ସହିତ

ଥିଲେ ଡ଼ାକ୍ତର ଅଟଳବିହାରୀ ଆଚାର୍ଯ୍ୟ, କୃଷ୍ଣ ପ୍ରସାଦ ବସୁ ଓ ଦୟାନିଧି ମିଶ୍ର । ତାଙ୍କୁ ସହାୟତା ଦେଉଥିଲେ ଯାଜପୁର ଅଞ୍ଚଳର ଦୁଇଜଣ ଓଡ଼ିଆ ଯୁବକ । ସେମାନେ ଥିଲେ ଲକ୍ଷ୍ମୀଧର ଦାସ ଓ ବାସୁଆ ବାରିକ । ଯାଜପୁର ସହରର ନିକଟବର୍ତ୍ତୀ ଚୈନପୁର ଗ୍ରାମର ସଦେଇ ସାହୁ ନାମକ ଜଣେ ମହାଜନ ଘରେ ଡ଼କାୟତ କରି ସେଦିନ ରାତିରେ ଛଅହଜାର ଟଙ୍କା ମୂଲ୍ୟର ସୁନା ଓ ରୂପା ନେଇଯାଇଥିଲେ । ଏ ବିଷୟରେ କେହି କିଛି ଜାଣିପାରିନଥିଲେ । ସେମାନେ ଥିଲେ ୧୭ ଜଣ । ଓଡ଼ିଶାରୁ ମଧ୍ୟ ଅନ୍ୟ କେତେଜଣ ସନ୍ତ୍ରାସବାଦୀ ଥିଲେ ସେମାନେ ଥିଲେ କଟକର ଶଶାଙ୍କ ଶେଖର ମୁଖାର୍ଜି, ପଟିଆର ବୈରାଗୀ ତ୍ରିପାଠୀ ଓ ଦଣପଲ୍ଲୀର ଗୋବିନ୍ଦ ମିଶ୍ର ।

**(୨) ବାଘା ଯତୀନ ଓ ଚଷାଖଣ୍ଡ ସଂଘର୍ଷ (୧୯୧୫, ସେପ୍ଟେମ୍ବର ୯)**

୧୯୧୫ ମସିହା ସେପ୍ଟେମ୍ବର ମାସ ବାଲେଶ୍ୱର ସହରର ଉପକଣ୍ଠରେ ଚଷାଖଣ୍ଡ ନାମକ ସ୍ଥାନରେ ବାଘାଯତୀନ ନାମରେ ପରିଚିତ ଯତୀନ୍ଦ୍ରନାଥ ମୁଖାର୍ଜି ଓ ତାଙ୍କର ୪ ଜଣ ସହକର୍ମୀ ଚିତ୍ତପ୍ରିୟ, ମନୋରଂଜନ, ଜ୍ୟୋତିଷ ଓ ନିରେନ ଏବଂ ପୋଲିସଙ୍କ ମଧ୍ୟରେ ଏକ ଖଣ୍ଡ ଯୁଦ୍ଧ ସଂଘଟିତ ହୋଇଥିଲା ।

ଚଷାଖଣ୍ଡ ଥିଲା ବାଲେଶ୍ୱର ସହରର ଉପକଣ୍ଠରେ । ସେଠାରେ ତାଙ୍କର ଉପସ୍ଥିତି ବିଷୟରେ ଖବର ପାଇ ଗ୍ରୁପ୍ ଓ ଏକ୍ସପେରିମେଣ୍ଟର ମୁଖ୍ୟ ରୁଥଫୋର୍ଡ଼, କଲେକ୍ଟର କିଲବି ଓ ପୋଲିସ ସୁପରିଟେଣ୍ଡେଣ୍ଟ ସାହାବୁଦ୍ଦିନ ଖୋଦାବକ୍ସ ୩ ଟି ପୋଲିସ ସେକ୍ସନ ଧରି ସେଠାରେ ପହଞ୍ଚିଥିଲେ । ପ୍ରତ୍ୟେକ ଥିଲେ ଗୋଟିଏ ଗୋଟିଏ ସେକ୍ସନ ଦାୟିତ୍ୱରେ । ସେଦିନ ଥିଲା ୧୯୧୫ ମସିହା ସେପ୍ଟେମ୍ବର ୯ ତାରିଖ । ଉଭୟଙ୍କ ମଧ୍ୟରେ ଗୁଳିବିନିମୟ ହୋଇଥିଲା । ପ୍ରଥମେ ରୁଥଫୋର୍ଡ଼ ଗୁଳିଚଳାଇବା ଫଳରେ ଚିତ୍ତପ୍ରିୟଙ୍କ ସେଠାରେ ମୃତ୍ୟୁ ହୋଇଥିଲା । ଗୋଟିଏ ଯତୀନଙ୍କର ପେଟରେ, ଓ ଅନ୍ୟ ଗୋଟିଏ ଗୁଳି ଜ୍ୟୋତିଷଙ୍କର କାନ୍ଧରେ ବାଜିଥିଲା । ମାତ୍ର ମନୋରଂଜନ ଓ ନିରେନଙ୍କ ଦେହରେ କୌଣସି ଗୁଳି ବାଜିନଥିଲା । ସମସ୍ତଙ୍କୁ ବାଲେଶ୍ୱରକୁ ଅଣାଯାଇଥିଲା । ଯତୀନ ଓ ଜ୍ୟୋତିଷଙ୍କୁ ବାଲେଶ୍ୱର ଡ଼ାକ୍ତରଖାନାରେ ଚିକିତ୍ସା ପାଇଁ ରଖାଯାଇଥିଲା । ଗୋଟିଏ ଦିନପରେ ଯତୀନ ଡ଼ାକ୍ତରଖାନାରେ ମୃତ୍ୟୁବରଣ କରିଥିଲେ, ମାତ୍ର ଜ୍ୟୋତିଷ ଆରୋଗ୍ୟ ଲାଭ କରିଥିଲେ । ତାପରେ ୩ ଜଣଙ୍କର ବିଚାରହୋଇ ଜ୍ୟୋତିଷଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର, ମନୋରଂଜନ ଓ ନୀରେନଙ୍କୁ ପ୍ରାଣଦଣ୍ଡ ଦିଆଯାଇଥିଲା ।

ଏହିପରିକି ବାଘାଯତୀନ ଓ ତାଙ୍କର ସାଥୀ ଉଚ୍ଚର ସ୍ୱାକ୍ଷର ବହନ କରି ଓଡ଼ିଶାରେ ସନ୍ତ୍ରାସବାଦୀ ଆନ୍ଦୋଳନର ବହ୍ନି ଶିଖାରୂପେ ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଚିରଭାସ୍ୱର ହୋଇ ରହିଛନ୍ତି ।

**୧୯୧୬ ରୁ ୧୯୨୦ ମଧ୍ୟରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଅଗ୍ରଗତି :**

ଇତିମଧ୍ୟରେ ଉତ୍କଳ ସମ୍ମିଳନୀର ପ୍ରବଳ ଚାପ ଫଳରେ ୧୯୧୨ ରେ ବିହାର-ଓଡ଼ିଶା ପ୍ରଦେଶ ଗଠନ କରାଯାଇଥିଲା । ଏହାଥିଲା ଇଂରେଜମାନଙ୍କର ଅନ୍ୟ ଏକ ତ୍ରୁଟିପୂର୍ଣ୍ଣ ପଦକ୍ଷେପ । ଏହାର ତ୍ରୁଟି ବିଷୟରେ ଇଂଲଣ୍ଡ ଫେରିବା ପରେ ଲର୍ଡ଼କର୍ଜନ କଟୁ ସମାଲୋଚନା କରିଥିଲେ ।

୧୯୧୬ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ବହୁ ସଂଖ୍ୟାକ ଓଡ଼ିଆ ପ୍ରତିନିଧି ଯୋଗଦେଇଥିଲେ । ସେଠାରେ ମଧୁସୂଦନ ଦାସଙ୍କୁ ସର୍ବଭାରତୀୟ କଂଗ୍ରେସ କମିଟିର ଜଣେକ ସଭ୍ୟରୂପେ ନିର୍ବାଚନ କରାଯାଇଥିଲା । ତା'ର ଦୁଇବର୍ଷ ପରେ ଓଡ଼ିଶାରୁ ଗୋପବନ୍ଧୁ ଦାସ ସେହି ପଦବୀକୁ ନିର୍ବାଚିତ ହୋଇଥିଲେ । ତାପରେ ଗୋପବନ୍ଧୁ ହେଲେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର କେନ୍ଦ୍ରବିନ୍ଦୁ ।

ଇତିମଧ୍ୟରେ ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ସାକ୍ଷୀଗୋପାଳ ବନବିଦ୍ୟାଳୟରେ କେତେଜଣ ନିଷ୍ଠାପର, ତ୍ୟାଗୀ ଶିକ୍ଷାବିତଙ୍କୁ ସେ ଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ସେମାନେ ଥିଲେ ହରିହର ଦାସ, ନୀଳକଣ୍ଠ ଦାସ, କୃପାସିନ୍ଧୁ ମିଶ୍ର, ଲିଙ୍ଗରାଜ ମିଶ୍ର ଓ ଗୋଦାବରୀଶ ମିଶ୍ର । ଲକ୍ଷ୍ନୌରୁ ଫେରି ଗୋପବନ୍ଧୁ ଦାସ ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନକୁ ଏକ ନୂତନ ଜୀବନ ଦେଇ ଦୃଢ଼କରିବା କାର୍ଯ୍ୟରେ ଲାଗିପଡ଼ିଲେ । ଏ ଦିଗରେ ସହାୟତା ଦେବାପାଇଁ ସତ୍ୟବାଦୀରୁ 'ସମାଜ' ନାମ ଦେଇ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ ଏବଂ ଏହାର ପ୍ରଥମ ସଂଖ୍ୟା ୧୯୧୯ ମସିହା ଅକ୍ଟୋବର ୪ ତାରିଖ ଦଶହରା ଦିନ ପ୍ରକାଶ ପାଇଥିଲା ।

ତାପରେ ଏହି ସମ୍ବାଦପତ୍ର ହେଲା କଂଗ୍ରେସର ମୁଖପତ୍ର । ସେ ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣ କରି କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ସଙ୍ଗେ ସଙ୍ଗେ ଉତ୍କଳ ସମ୍ମିଳନୀ ଭାରତୀୟ ଜାତୀୟ କଂଗ୍ରେସର ଏକ ଅଂଶହେବା ଉଚିତ୍ ବୋଲି ମତବ୍ୟକ୍ତ କରିଥିଲେ । ସେ କହିଥିଲେ, ଭାରତୀୟ ଜାତୀୟ କଂଗ୍ରେସ ଆଗକୁ ମାଡ଼ି ଚାଲିଛି, ଯଦି ଓଡ଼ିଶା ଜାତୀୟ କଂଗ୍ରେସର ପ୍ରଧାନ ସ୍ରୋତରେ ନ ମିଶେ, ତେବେ ଓଡ଼ିଶା ତା'ର ପରିଚିତି ସଂପୂର୍ଣ୍ଣ ରୂପେ ହରାଇ ବସିବ ।

ଗୋପବନ୍ଧୁଙ୍କର ଏହି ପଦକ୍ଷେପ ମଧୁବାବୁଙ୍କୁ କ୍ଷୁବ୍ଧ କରିଥିଲା । ସେ ସମ୍ପାଦନା କରୁଥିବା 'ଦି ଓରିଆ' ପତ୍ରିକାରୁ ଇସ୍ତଫା ଦେଇଥିଲେ । ଉତ୍କଳ ସମ୍ମିଳନୀର ସମ୍ପାଦକ ପଦରୁ ବ୍ରଜସୁନ୍ଦର ଦାସ ମଧ୍ୟ ଇସ୍ତଫା ଦେଇଥିଲେ । ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନ ୧୯୧୯ ମସିହା ଏପ୍ରିଲ ୧୯ ଓ ୨୦ ତାରିଖରେ କଟକଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଗୋପବନ୍ଧୁ ଦାସ ପୌରହିତ୍ୟ କରି ଏକ ଉଦ୍ଦୀପନାମୂଳକ, ଆବେଗପୂର୍ଣ୍ଣ ଓ ତଥ୍ୟ ସମ୍ବଳିତ ବକ୍ତୃତା ପ୍ରଦାନ କରି ସମସ୍ତଙ୍କୁ ଜାତୀୟତା ଭାବରେ ଅନୁପ୍ରାଣିତ କରିଥିଲେ । ଚନ୍ଦ୍ରଶେଖର ବେହେରା ପୌରୋହିତ୍ୟ କରିଥିବା ପୁରୀଠାରେ ୧୯୧୯ ମସିହାର ଉତ୍କଳ ସମ୍ମିଳନୀରେ ଏହାକୁ ଭାରତୀୟ ଜାତୀୟ କଂଗ୍ରେସରେ ମିଶାଇବା ପାଇଁ ଆଲୋଚନା କରାଯାଇଥିଲା ।

୧୯୨୦ ମସିହା ଡ଼ିସେମ୍ବର ୩୦ ତାରିଖ ଦିନ ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀର ଅଧିବେଶନଟି ଥିଲା ଗୁରୁତ୍ୱପୂର୍ଣ୍ଣ ମଧୁସୂଦନ

ଦାସ ପୌରହିତ୍ୟ କରିବାକୁ ଅସମ୍ମତ ହେବାରୁ ଜଗବନ୍ଧୁ ସିଂ ପୌରୋହିତ୍ୟ କରିଥିଲେ । ଏଠାରେ ଗୋପବନ୍ଧୁ ଦାସ ଦୁଇଟି ପ୍ରସ୍ତାବ ଅନୁମୋଦନ କରାଇ ନେଇଥିଲେ । ପ୍ରଥମଟି ଥିଲା । ''ଭାରତୀୟ ଜାତୀୟ କଂଗ୍ରେସର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ହେଉ । ଦ୍ୱିତୀୟଟି ହେଲା- ଭାଷାଗତ ଭିତ୍ତିରେ ପ୍ରଦେଶ ଗଠନକରିବା ପାଇଁ ଭାରତୀୟ ଜାତୀୟ କଂଗ୍ରେସର ନିଷ୍ପତ୍ତିକୁ ଗ୍ରହଣ କରାଯାଉ । ମାତ୍ର ଉତ୍କଳ ସମ୍ମିଳନୀ କଂଗ୍ରେସର କାର୍ଯ୍ୟକ୍ରମକୁ ନୀତିଗତ ଭାବେ ଗ୍ରହଣ କରିଥିଲେ ମଧ୍ୟ ଏହା ଜାତୀୟ କଂଗ୍ରେସ ସହିତ ମିଶିଯାଇ ନଥିଲା ।

ମୋଟ ଉପରେ ଦେଖିବାକୁ ଗଲେ ୧୯୨୦ ମସିହା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ବର୍ଷ । ସେହିଠାରୁ ଓଡ଼ିଶାର ନେତୃତ୍ୱ ବୟସ୍କ ଓ ନରମପନ୍ଥୀ ନେତାଙ୍କ ହାତରୁ ଜାତୀୟବାଦୀ ଯୁବନେତାଙ୍କ ହାତରେ ପଡ଼ିଥିଲା । ଏହିଠାରୁ ବହୁ ସଂଖ୍ୟାରେ କଂଗ୍ରେସ କର୍ମୀଙ୍କର ଆବିର୍ଭାବ ଘଟିବା ଫଳରେ ଓଡ଼ିଶା ଜାତୀୟ କଂଗ୍ରେସର ଇତିହାସରେ ନୂତନ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା ।

## ଅସହଯୋଗ ଆନ୍ଦୋଳନ (୧୯୨୦-୧୯୩୦)

୧୯୧୯ ମସିହାର ଶେଷପାଦ ଓ ୧୯୨୦ ମସିହା ଜାନୁୟାରୀ ମାସରେ ରେଭେନ୍ସା କଲେଜର କେତେଜଣ ଛାତ୍ର ବାଖରା ବାଦରେ ଏକ ଅନୁଷ୍ଠାନ ଗଠନ କରି ତା'ର ନାମ ରଖିଥିଲେ ଭାରତୀ ମନ୍ଦିର । ଆଭିମୁଖ୍ୟ ଥିଲା, ମାନସିକ ଦିଗବଳୟକୁ ପ୍ରଶସ୍ତ କରିବା ସଙ୍ଗେ ସଙ୍ଗେ ଜାତୀୟବାଦୀ ଚିନ୍ତାଧାରାକୁ ପ୍ରଚାର ଓ ରାଜନୈତିକ ପରିସ୍ଥିତି ସମ୍ପର୍କରେ ଆଲୋଚନା କରିବା ।

ସେହି ଛାତ୍ରମାନେ ଥିଲେ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋ ଓ ଭାଗିରଥି ମହାପାତ୍ର । ୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାରେ ଭାରତୀୟ ଜାତୀୟ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନ ବସି ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ଓଡ଼ିଶାରୁ ଗୋପବନ୍ଧୁ ଦାସ, ଜଗବନ୍ଧୁ ସିଂ, କୃପାସିନ୍ଧୁ ମିଶ୍ର, ନୀଳକଣ୍ଠ ଦାସ ଓ ହରେକୃଷ୍ଣ ମହତାବ ଯୋଗଦେଇଥିଲେ । ସେଠାରୁ ଫେରିଆସି ଓଡ଼ିଶାରେ ଗୋପବନ୍ଧୁ ଦାସ କାର୍ଯ୍ୟକ୍ରମଗୁଡ଼ିକୁ ପ୍ରବର୍ତ୍ତନ କରିବାକୁ ଚାହିଁବାରୁ କେତେକ ବ୍ୟକ୍ତି ଆନ୍ଦୋଳନ କାର୍ଯ୍ୟକ୍ରମ ନାଗପୁର ଅଧିବେଶନରେ ଗ୍ରହଣ କରାଯିବାପରେ କାର୍ଯ୍ୟକାରୀ କରିବାକୁ ଚାହିଁଥିଲେ । ଇତିମଧ୍ୟରେ ୧୯୨୦ ମସିହା ଡ଼ିସେମ୍ବର ମାସରେ ନାଗପୁରଠାରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଗୋଟିଏ କମିଟି ଗଠନ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । କାର୍ଯ୍ୟକ୍ରମର ଧାରା ଥିଲା ଦୁଇଟି - ପ୍ରଥମ ଧାରାରେ ଥିଲା, କଂଗ୍ରେସର ନୀତି ହେବ ଇଂରେଜ ସରକାରଙ୍କ ଠାରୁ ପ୍ରତ୍ୟେକ କ୍ଷେତ୍ରରେ ସହଯୋଗ ପ୍ରତ୍ୟାହାର କରି ନେବା । ଯଥା ବିଚାରାଳୟ, ବିଧାନ ପରିଷଦ ବାସନ୍ଦ କରିବା ସଙ୍ଗେ ସଙ୍ଗେ ବିଦ୍ୟାଳୟ ଓ ମହାବିଦ୍ୟାଳୟର ଛାତ୍ରମାନେ ନିଜକୁ ପ୍ରତ୍ୟାହାର କରିନେବେ । ବିଦେଶୀ ଦ୍ରବ୍ୟ ବ୍ୟବହାର କରାଯିବ ନାହିଁ । ତା ପରିବର୍ତ୍ତେ ସ୍ୱଦେଶୀ ବସ୍ତ୍ର ଓ ଦ୍ରବ୍ୟ ବ୍ୟବହାର କରାଯିବ । ଦ୍ୱିତୀୟ ଧାରାରେ ଥିଲା- ପଞ୍ଚାୟତ ଅଦାଲତ, ଜାତୀୟ ବିଦ୍ୟାଳୟ ଓ ଚରଖା କେନ୍ଦ୍ର ପ୍ରତିଷ୍ଠା । ଏହି ନାଗପୁର ଅଧିବେଶନରେ ଓଡ଼ିଶାରୁ ୨୨ ଜଣ ପ୍ରତିନିଧି ଯୋଗଦେଇ ଥିଲେ । ହରେକୃଷ୍ଣ ମହତାବ, ଗୋପବନ୍ଧୁ ଦାସ, ଯଦୁମଣି ମଙ୍ଗରାଜ, ନିରଂଜନ ପଟ୍ଟନାୟକ, ଭାଗିରଥୀ ମହାପାତ୍ର, ଜଗବନ୍ଧୁ ସିଂ ଓ ମୁକୁନ୍ଦ ପ୍ରସାଦ ଦାସ । ସମ୍ବଲପୁରରୁ ଚନ୍ଦ୍ରଶେଖର ବେହେରା, ଦାଶରଥିମିଶ୍ର ଓ ଧରଣୀଧର ମିଶ୍ର ଯୋଗ ଦେଇଥିଲେ । ସେଠାରୁ ଫେରି ଗୋପବନ୍ଧୁ ଦାସ ୧୯୨୦ ମସିହା ଜାନୁୟାରୀ ମାସ ୨୪ ତାରିଖ ଦିନ କାଠଯୋଡ଼ି କୂଳରେ ସାଧାରଣ ସଭା ଆହ୍ୱାନ ପୂର୍ବକ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ବିଷୟରେ ଆଲୋକପାତ କରି ସେମାନଙ୍କ ହୃଦୟରେ ଅପୂର୍ବ ସ୍ପନ୍ଦନ ସୃଷ୍ଟି କରିଥିଲେ । ଏହି ସମୟରେ ନିରଂଜନ ପଟ୍ଟନାୟକ ବ୍ରହ୍ମପୁରରୁ ଗାନ୍ଧୀ ସମାଚାର ନାମଦେଇ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ନାଗପୁର ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ୧୯୨୧ ମସିହାର ପ୍ରାରମ୍ଭରେ ଉତ୍କଳ ପ୍ରଦେଶ କଂଗ୍ରେସ ଗଠନ କରାଯାଇ କାର୍ଯ୍ୟକାରୀ କମିଟିର ସଦସ୍ୟ ନିର୍ବାଚିତ ହୋଇଥିଲେ । ସେଥିରେ ଗୋପବନ୍ଧୁ ଦାସ ସଭାପତି, ଏକରାମ ରସୁଲ ଉପସଭାପତି, ଭାଗିରଥୀ ମହାପାତ୍ର ସମ୍ପାଦକ ଓ ବ୍ରଜସୁନ୍ଦର ଦାସ ସହସମ୍ପାଦକ ଓ ୫ ଜଣ ସଦସ୍ୟ ରହିଥିଲେ । ସେହିପରି ବିଭିନ୍ନ ଜିଲ୍ଲାରେ କଂଗ୍ରେସ କମିଟି ମାନ ଗଠନ କରାଯାଇଥିଲା ।

ଇତିମଧ୍ୟରେ ୧୯୨୧ ମସିହାରେ ଗାନ୍ଧିଜୀ ପ୍ରଥମଥର ପାଇଁ ଓଡ଼ିଶା ଆସି ମାର୍ଚ୍ଚ ୨୪ ତାରିଖଦିନ କାଠଯୋଡ଼ି ବାଲିରେ ଏକ ବିରାଟ ସଭାରେ ଭାଷଣ ଦେଇ ଅସହଯୋଗ ଆନ୍ଦୋଳନ ଉପରେ ଆଲୋଚନା କରିଥିଲେ । ସେ ମଧ୍ୟ କଟକ, ପୁରୀ , ଭଦ୍ରକ ଓ ବ୍ରହ୍ମପୁର ଯାଇ ସଭାସମିତି କରିଥିଲେ । ତାଙ୍କ ଭାଷଣରେ ଉଦବୁଦ୍ଧ ହୋଇ ଗୋପବନ୍ଧୁ ଦାସ ବ୍ରହ୍ମପୁର ଯାଉଥିବା ସମୟରେ କାଶୀପାତ୍ର, ଭି.ଭି. ଗିରିଙ୍କ ଭଗ୍ନୀ ଲକ୍ଷ୍ମୀବାଈ, ଦିବାକର ପଟ୍ଟନାୟକ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ନଟବର ଗଡ଼ତିଆ, ମହେନ୍ଦ୍ର ନାଥ ବର୍ମା, ଅଚ୍ୟୁତାନନ୍ଦ ପୁରୋହିତ ଓକିଲାତି ବ୍ୟବସାୟ ପରିତ୍ୟାଗ କରିଥିଲେ । ସେହିପରି ଗୋପବନ୍ଧୁ ଚୌଧୁରୀ ଡେପୁଟି ମାଜିଷ୍ଟ୍ରେଟ ଚାକିରି, ବାଲେଶ୍ୱରର ସୁରେନ୍ଦ୍ର ନାଥ ଦାସ ପୋଲିସ ସବଇନ୍ସପେକ୍ଟର, ମହମ୍ମଦ ହନିଫ ଅବକାରୀ ସବଇନ୍ସପେକ୍ଟର ଓ ଅନ୍ୟମାନେ ଭିନ୍ନ ଭିନ୍ନ ଚାକିରିରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ । କେତେକ ଛାତ୍ର ରେଭେନସା ମହାବିଦ୍ୟାଳୟରୁ ପାଠପଢ଼ା ଛାଡ଼ି ଦେଇଥିଲେ । ସେମାନଙ୍କ ମଧ୍ୟରେ ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନଗୋ, ନବକୃଷ୍ଣ ଚୌଧୁରୀ ଓ ରାଜକୃଷ୍ଣ ବୋଷଙ୍କ ନାମ ଉଲ୍ଲେଖଯୋଗ୍ୟ । ଅସହଯୋଗ ଆନ୍ଦୋଳନ କାର୍ଯ୍ୟକ୍ରମର ଅଂଶ ସ୍ୱରୂପ ଗୋପବନ୍ଧୁ ଦାସଙ୍କର ସତ୍ୟବାଦୀ ବିଦ୍ୟାଳୟକୁ ଏକ ଜାତୀୟ ବିଦ୍ୟାଳୟରେ ପରିଣତ କରାଯାଇଥିଲା । ସେହିପରି ଚକ୍ରଧରପୁର ଇଂରାଜୀ ବିଦ୍ୟାଳୟ ଜାତୀୟ ବିଦ୍ୟାଳୟରେ ରୂପାନ୍ତରିତ ହୋଇଥିଲା ଓ ତା'ର ନେତୃତ୍ୱ ନେଇଥିଲେ ଗୋଦାବରୀଶ ମିଶ୍ର । ଜାତୀୟ ବିଦ୍ୟାଳୟମାନ ସମ୍ବଲପୁର, ଜଗତସିଂହପୁର, ଭଦ୍ରକ, ବାଲେଶ୍ୱର, ସୋରରେ ପ୍ରତିଷ୍ଠା କରାଯାଇଥିଲା । ସ୍ୱେଚ୍ଛାସେବୀ ଓ କଂଗ୍ରେସ କର୍ମୀଙ୍କୁ

ଶିକ୍ଷା ଦେବା ପାଇଁ ୭ ଟି କେନ୍ଦ୍ର ସ୍ଥାପନ କରାଯାଇଥିଲା । ସେହି କେନ୍ଦ୍ରଗୁଡ଼ିକ କଟକ, ଜଗତସିଂପୁର, ପୁରୀ, ସାକ୍ଷୀଗୋପାଳ, ବାଲେଶ୍ୱର, ଭଦ୍ରକ ଓ ସୋର ଠାରେ ପ୍ରତିଷ୍ଠା କରାଯାଇଥିଲା । ସମ୍ବଲପୁରରୁ ଉତ୍କଳ ସେବକ ଓ ସାଧନା ନାମରେ ଦୁଇଟି ପାକ୍ଷିକ ପତ୍ରିକା ପ୍ରକାଶିତ ହୋଇଥିଲା । ଏହି ସମୟରେ କଟକରେ ସ୍ୱରାଜ ଆଶ୍ରମ ପ୍ରତିଷ୍ଠା କରାଯାଇ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ମୁଖ୍ୟ କେନ୍ଦ୍ର କରାଯାଇଥିଲା । ଭାଗିରଥି ମହାପାତ୍ର ଜଗତସିଂପୁରରେ ଅଳକାଆଶ୍ରମ ପ୍ରତିଷ୍ଠା କରିଥିଲେ, ବାଲେଶ୍ୱରରେ ମଧ୍ୟ ସ୍ୱରାଜ ମନ୍ଦିର ସ୍ଥାପନ କରାଯାଇଥିଲା । କଂଗ୍ରେସକର୍ମୀମାନେ ହସ୍ତଶିଳ୍ପ, ସୂତାକଟା, ଲୁଗାବୁଣା, ବଗିଚା ତିଆରି ଆଦି କାର୍ଯ୍ୟରେ ଶିକ୍ଷା ଲାଭକରି ପଲ୍ଲୀ ଅଞ୍ଚଳକୁ ଯାଇ ଏହାର ପ୍ରସାର କରିଥିଲେ । କଟକ, ବାଲେଶ୍ୱର, ଜଳେଶ୍ୱର ଆଦି ସହରରେ ବିଦେଶୀ ବସ୍ତ୍ର ବିକ୍ରୟ କରୁଥିବା ଦୋକାନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ବାଲେଶ୍ୱରରେ ମଦଦୋକାନ ସମ୍ମୁଖରେ ନନ୍ଦକିଶୋର ଦାସ, ଦାଶରଥି ମହାନ୍ତି, ଉପେନ୍ଦ୍ର ଚନ୍ଦ୍ର ପଣ୍ଡା, ଭୈରବ ଚନ୍ଦ୍ର ମହାପାତ୍ର ବିକ୍ଷୋଭ କରିଥିଲେ । ବାଲେଶ୍ୱରରେ ଦୋକାନୀମାନେ ସ୍ୱେଚ୍ଛାସେବୀଙ୍କ ମୁହଁକୁ ଛେପ ଓ ପରିସ୍ରା ପକାଇବା ପାଇଁ ବେଶ୍ୟାମାନଙ୍କୁ ନିଯୁକ୍ତ କରିଥିଲେ । କଟକ, ଭଦ୍ରକ ଆଦି ସ୍ଥାନରେ ସ୍ଥାନୀୟ ଓକିଲଙ୍କୁ ନେଇ ପଞ୍ଚାୟତ ଅଦାଲତମାନ ସ୍ଥାପନ କରାଯାଇଥିଲା । ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ ଗ୍ରାମରେ ଏପରି ଏକ ଅଦାଲତ ଗଠନ କରାଯାଇଥିଲା । ତା'ର ନେତୃତ୍ୱ ନେଇଥିଲେ ଗୌରମୋହନ ଦାସ ।

ଅସହଯୋଗ ଆନ୍ଦୋଳନ ସମୟରେ ୧୯୨୨ ମସିହା ଅଗଷ୍ଟ ୩ ତାରିଖ ଦିନ ରାଜଗୋପାଳାଚାରୀ, ମୋତିଲାଲ ନେହରୁ, ଡକ୍ଟର ଅନସାରି ଓ ପରେ ପରେ ସୁଭାଷ ଚନ୍ଦ୍ର ବୋଷ କଟକ ଆସି ଅସହଯୋଗ ଆନ୍ଦୋଳନ କାର୍ଯ୍ୟକ୍ରମଗୁଡ଼ିକୁ ତଦାରଖ କରିବା ସଙ୍ଗେ ସଙ୍ଗେ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରବର୍ତ୍ତନ କରାଯାଇପାରିବ କି ନାହିଁ ସେ ବିଷୟରେ ଦେଖିଥିଲେ । ଏହି ଆନ୍ଦୋଳନରେ ଦକ୍ଷିଣ ଓଡ଼ିଶାରୁ ରାସ ଦେଇ ଓ ସ୍ୱର୍ଣ୍ଣଲତା ଦେଇ ଯୋଗ ଦେଇଥିଲେ । ଗୋପବନ୍ଧୁ ଦାସ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ଅଟଳବିହାରୀ ଆଚାର୍ଯ୍ୟ, ଡକ୍ଟର ଏକରାମ ରସୁଲ, ସମ୍ବଲପୁରର ଲକ୍ଷ୍ମୀନାରାୟଣ ମିଶ୍ର, ଭାଗିରଥୀ ପଟ୍ଟନାୟକ, ଅଚ୍ୟୁତାନନ୍ଦ ପୁରୋହିତ ପ୍ରମୁଖଙ୍କୁ ଗିରଫକରାଯାଇ ହଜାରିବାଗ ଜେଲରେ ରଖାଯାଇ ଥିଲା । ୧୯୨୫ ରେ ବିଧିବଦ୍ଧ ଭାବେ ଅଖିଳ ଭାରତ ଚରଖା ସଂଘ ଗଠିତ ହୋଇଥିଲା । ନିରଞ୍ଜନ ପଟ୍ଟନାୟକ ଓଡ଼ିଶା ଶାଖାର ସମ୍ପାଦକ ହୋଇଥିଲେ ।

**କନିକା ପ୍ରଜାଆନ୍ଦୋଳନ**

ଅସହଯୋଗ ଆନ୍ଦୋଳନ ସମୟରେ ୧୯୨୨ ମସିହାରେ ଗୋଟିଏ ରୋମାଞ୍ଚକର ଘଟଣା ଦୃଷ୍ଟିଗୋଚର ହୋଇଥିଲା ଓ ତାହା ଥିଲା କନିକା ପ୍ରଜା ଆନ୍ଦୋଳନ । ସେଠାକାର ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓଙ୍କ ମନମୁଖୀ ଶାସନ ଓ ଅତ୍ୟାଚାର ବିରୁଦ୍ଧରେ ଚକ୍ରଧର ବେହେରାଙ୍କ ନେତୃତ୍ୱରେ ଏକ ପ୍ରଜାଆନ୍ଦୋଳନ ସଂଗଠିତ ହୋଇଥିଲା । ଓଡ଼ିଶାର କଂଗ୍ରେସ କର୍ମୀ ତା ପ୍ରତି ସହାନୁଭୂତି ପ୍ରକାଶ କରି ରାଜାଙ୍କର ଅତ୍ୟାଚାର ବିଷୟରେ ତଦନ୍ତ କରିବା ପାଇଁ ଏକ ପ୍ରସ୍ତାବ ଗ୍ରହଣ କରିଥିଲେ । ମାତ୍ର ରାଜା ଇଂରେଜ ସରକାରଙ୍କର ପ୍ରିୟପାତ୍ର ହୋଇଥିବାରୁ ଏଥି ପ୍ରତି ଭ୍ରୁକ୍ଷେପ କରିବା ଦୂରେ ଥାଉ, ଛମୁକାରେ ୧୯୨୨ ରେ ବାସୁସେଠୀ ଓ ବିଶୁନି ମହୁଆଳ ଉପରେ ଗୁଳି ଚାଳନା କରିବା ଫଳରେ ସେମାନଙ୍କର ମୃତ୍ୟୁ ହୋଇଥିଲା । ସେମାନେ ହେଲେ କନିକା ପ୍ରଜାଆନ୍ଦୋଳନର ପ୍ରଥମ ଶହୀଦ । ଉରମାର ପ୍ରସିଦ୍ଧ କବି ଓ ନାଟ୍ୟକାର କନିକା ଯାଇ ପ୍ରଜାମାନଙ୍କର ଦୁଃଖ ଦୁର୍ଦ୍ଦଶା ଦେଖିବାପରେ 'ଦୁଃଖିନୀ କନିକା' ନାମ ଦେଇ ଏକ କବିତା ରଚନା କରିଥିଲେ । ତା'ର ପ୍ରଥମ ଦୁଇଟି ପଂକ୍ତି ଥିଲା

''କେତେଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ ଲେଖିଥିଲା କିବା ଦଇବ ।''

ସେହି ସମୟରେ ଗୋପବନ୍ଧୁ ଦାସ ଓ ହରେକୃଷ୍ଣ ମହତାବଙ୍କୁ ଗିରଫ କରି ଜେଲରେ ରଖାଯାଇଥିଲା । ତେଣୁ ସେମାନେ କନିକା ବିଷୟରେ କିଛି ପଦକ୍ଷେପ ନେଇପାରିନଥିଲେ ।

ହରେକୃଷ୍ଣ ମହତାବ ଜେଲରୁ ଖଲାସ ହେବା ପରେ ୧୯୨୩ ମସିହାରେ ବାଲେଶ୍ୱରରେ ସାପ୍ତାହିକ ପ୍ରଜାତନ୍ତ୍ର ପ୍ରକାଶକରି ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ । ଇଂରେଜ ପ୍ରଶାସକମାନଙ୍କର ଅବଗତି ନିମନ୍ତେ ଏଡ୍‌ଭୋକେଟ ନାମ ଦେଇ ସେ ଏକ ଇଂରାଜି ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ । ମହତାବ ମଧ୍ୟ ବାଲେଶ୍ୱର ଜିଲ୍ଲାରେ ଅନ୍ୟ କେତୋଟି କଂଗ୍ରେସ ଆଶ୍ରମ ପ୍ରତିଷ୍ଠା କରିଥିଲେ ।

୧୯୨୫ ମସିହାରେ ମଧୁସୂଦନ ଦାସଙ୍କ ନିମନ୍ତ୍ରଣ କ୍ରମେ ଗାନ୍ଧିଜୀ ଓଡ଼ିଶା ଆସି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଟେନେରୀ ପରିଦର୍ଶନ କରି ସନ୍ତୋଷ ଲାଭ କରିଥିଲେ । ଏହାଥିଲା ତାଙ୍କର ଦ୍ୱିତୀୟ ଆଗମନ । ତା'ର ଦୁଇବର୍ଷପରେ ୧୯୨୭ ମସିହାରେ ଓଡ଼ିଶା ଆସି ବ୍ରହ୍ମପୁର ଓ ସମ୍ବଲପୁର ସମେତ ବିଭିନ୍ନ ସ୍ଥାନରେ ସଭାସମିତି କରି ଖଦଡ଼ବସ୍ତ୍ର ପରିଧାନ, ଅସ୍ପୃଶ୍ୟତା ନିବାରଣ ଓ ନିଶାନିବାରଣ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଥିଲେ । ୧୯୨୮ ମସିହା ୨୩ ଡିସେମ୍ବର ତାଙ୍କର ସମ୍ବଲପୁର ଯାତ୍ରା ଥିଲା ଏକ ବିଶିଷ୍ଟ ଘଟଣା । ନାରୀନେତ୍ରୀ କ୍ରିଷ୍ଣଦେବୀ ସମେତ ବହୁ ନେତା ଯୋଗଦେଇଥିଲେ ଘଟଣା । ସେହିପରି ଭଦ୍ରକ ଯାଇ ସୁଦୂର ମନ୍ତେଇ ନଦୀ କୂଳରେ ଥିବା ଚାରିବାଟିଆ ଠାରେ ରାତ୍ରିଯାପନ କରିଥିଲେ । ୧୯୨୮ ମସିହାରେ ବ୍ରହ୍ମପୁରର ସାପ୍ତାହିକ ଆଶା ପତ୍ରିକା ଦୈନିକ ହୋଇଥିଲା । ପରେ ପରେ ଓଡ଼ିଶାରେ କଂଗ୍ରେସ କମିଟିର ଭାଗ୍ୟ ବିପର୍ଯ୍ୟୟ ହେଲା । କଂଗ୍ରେସ ଆନ୍ଦୋଳନର ମୁଖ୍ୟ ଓ ଅସହଯୋଗ ଆନ୍ଦୋଳନର ପ୍ରଧାନ ନିର୍ଦ୍ଦେଶକ ଗୋପବନ୍ଧୁ ଦାସ ସମସ୍ତଙ୍କୁ ଶୋକସାଗରରେ ଭସାଇ ୧୯୨୮ ମସିହା ଜୁନ ୧୭ ରେ ମୃତ୍ୟୁବରଣ କରିଥିଲେ । ପରେ ପରେ ୧୯୨୯ ରେ ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଜବାହାରଲାଲ ନେହରୁଙ୍କ ପୌରହିତ୍ୟରେ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ୧୯୩୦ ମସିହା ଜାନୁୟାରୀ ୨୬ ତାରିଖଟି ପ୍ରତିବର୍ଷ

ସ୍ୱାଧୀନତା ଦିବସ ପାଳିତ ହେବା ପାଇଁ ସମସ୍ତେ ପ୍ରତିଜ୍ଞା କରିଥିଲେ । ଭୁବନେଶ୍ୱରସ୍ଥିତ ଲିଙ୍ଗରାଜ ମନ୍ଦିର ଓ କଟକ ସ୍ୱରାଜ ଆଶ୍ରମ ଉପରେ ତ୍ରିରଙ୍ଗ ପତାକା ଉଡ଼ାଯାଇଥିଲା ।

ପରେ ପରେ ଆରମ୍ଭ ହୋଇଥିଲା ସ୍ୱାଧୀନତା ସଂଗ୍ରାମର ଅନ୍ୟ ଏକ କ୍ରାନ୍ତିକାରୀ ଆନ୍ଦୋଳନ । ତାହାଥିଲା ଆଇନ ଅମାନ୍ୟ ଆନ୍ଦୋଳନ । ଏଥିରେ ଓଡ଼ିଶାର ଭୂମିକା କୌଣସି ଗୁଣରେ ନ୍ୟୂନ ନଥିଲା ।

## ଆଇନ ଅମାନ୍ୟ ଆନ୍ଦୋଳନ - (୧୯୩୦-୧୯୩୬)

ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଆଇନ ଅମାନ୍ୟ ଆନ୍ଦୋଳନ ଅବଲମ୍ବନ କରିବାର ଯୁଗାନ୍ତକାରୀ ସିଦ୍ଧାନ୍ତ ନେବାପରେ ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ରଚିତ ହୋଇଥିଲା । ଏ ଦିଗରେ ପ୍ରଥମ ପଦକ୍ଷେପ ଥିଲା ଲବଣ ଆଇନ ଭଂଗ । ଏହାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଥିଲା ଛାତ୍ର ଓ ସରକାରୀ କର୍ମଚାରୀ ନିଜ ନିଜର କାର୍ଯ୍ୟକରିବେ ନାହିଁ । ମଦ, ଅଫିମ, ଗଂଜା ଓ ବିଦେଶୀ ଦ୍ରବ୍ୟ ବିକ୍ରୟ କରୁଥିବା ଦୋକାନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ ଓ ସରକାରଙ୍କୁ କରଦାନରୁ ବିରତି ।

### ଲବଣ ସତ୍ୟାଗ୍ରହ

ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ ତାଙ୍କର ଡାଣ୍ଡିଯାତ୍ରାରେ । ୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ସେ ବାହାରି ଡାଣ୍ଡିଠାରେ ଏପ୍ରିଲ ୬ ତାରିଖ ଦିନ ଲୁଣ ଆଣି ଲବଣ ଆଇନ ଭଂଗ କରିଥିଲେ । ସର୍ବଭାରତୀୟ କଂଗ୍ରେସ ଦ୍ୱାରା ଆଦେଶ ପ୍ରାପ୍ତ ହୋଇ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବାଲେଶ୍ୱର ସହରଠାରୁ ପ୍ରାୟ ୧୫ କିଲୋମିଟର ଦୂରରେ ଅବସ୍ଥିତ ଇଞ୍ଚୁଡ଼ିଠାରେ ଲୁଣ ମାରିବା ପାଇଁ ନିଷ୍ପତ୍ତି ନେଇଥିଲେ । ତଦନୁଯାୟୀ କଟକରୁ ୨୧ ଜଣ ସତ୍ୟାଗ୍ରହୀ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ଏପ୍ରିଲ ୬ ତାରିଖ ଦିନ କଟକ ସ୍ୱରାଜ ଆଶ୍ରମରୁ ବାହାରିଥିଲେ । ସେମାନେ ପଦଯାତ୍ରା କରି ଯାଇଥିଲେ । ଗୋପବନ୍ଧୁ ଚୌଧୁରୀ ରାସ୍ତାରେ ଓ ହରେକୃଷ୍ଣ ମହତାବ ବାଲେଶ୍ୱର ରେଳ ଷ୍ଟେସନରେ ଗିରଫ ହେବାପରେ ଆଚାର୍ଯ୍ୟ ହରିହର ଦାସ ଓ ବାଲେଶ୍ୱରରୁ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ ପ୍ରମୁଖ ନେତାମାନେ ଇଞ୍ଚୁଡ଼ିଠାରେ ଏପ୍ରିଲ ୧୩ ତାରିଖ ଦିନ ପହଞ୍ଚି ହଜାର ହଜାର ଲୋକଙ୍କ ସମ୍ମୁଖରେ ଲୁଣ ମାଟି ଆଣିଥିଲେ । ସତ୍ୟାଗ୍ରହୀମାନଙ୍କୁ ରମାଦେବୀ ଓ ମାଳତୀ ଚୌଧୁରୀ ଫୁଲମାଳ ପିନ୍ଧାଇ ଶୁଭେଚ୍ଛା ଜ୍ଞାପନ କରିଥିଲେ । ପାର୍ଶ୍ୱବର୍ତ୍ତୀ ଗ୍ରାମରୁ ମାଳତୀ, କୋକିଳ, ଜାହ୍ନବୀ, କିରଣବାଳା ଓ କାନନବାଳା ପ୍ରମୁଖ ନାରୀ ନେତ୍ରୀମାନେ ଯୋଗ ଦେଇଥିଲେ । ପରେ ପରେ ବିଭିନ୍ନ ସ୍ଥାନରୁ ବିଭିନ୍ନ ପର୍ଯ୍ୟାୟରେ ସ୍ୱେଚ୍ଛାସେବୀମାନେ ଯାଇ ଲବଣ ଆଇନ ଭଂଗ କରିଥିଲେ । ତନ୍ମଧ୍ୟରୁ କଟକ ଜିଲ୍ଲାରୁ ଗୌରାଙ୍ଗ ଚରଣ ଦାସଙ୍କ ନେତୃତ୍ୱରେ ଲୌହସ୍ତମ୍ଭ ବାହିନୀ, ପୁରୀରୁ ପତିତପାବନ ବାହିନୀ, ଗଂଜାମ ବାହିନୀ, ସମ୍ବଲପୁର ବାହିନୀ ଓ ଓଡ଼ିଶା ଗୁଜରାଟୀ ବାହିନୀ ଯାଇ ଲବଣ ଆଇନ ଭଂଗ କରିଥିଲେ । ଏହିପରି ଭାବେ ଓଡ଼ିଶାରେ ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହର ଏକ ମୁଖ୍ୟ କେନ୍ଦ୍ରରୂପେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲା । ସେଠାରୁ ଓ ଅନ୍ୟସ୍ଥାନରୁ ପ୍ରାୟ ୨୦ ମହଣ ଲୁଣ ବାଲେଶ୍ୱର ଅଣାଯାଇଥିଲା । ସେଥିପାଇଁ ଏହାକୁ ଓଡ଼ିଶାର ଡାଣ୍ଡୀବୋଲି କୁହାଯାଇଥାଏ । ଇଞ୍ଚୁଡ଼ି ବ୍ୟତୀତ ବାଲେଶ୍ୱର ଜିଲ୍ଲାର ସାର୍ଥା, କସବା, ଇରମ, କଟକ ଜିଲ୍ଲାର କୁଜଙ୍ଗ, ପୁରୀ ଜିଲ୍ଲାର ଅସ୍ତରଙ୍ଗ, କୁହୁଡ଼ି, ଗଂଜାମ ଜିଲ୍ଲାର ଚିଲିକା, ହୁମା, ଗୋପାଳପୁର ଆଦି ସ୍ଥାନରେ ଲବଣ ଆଇନ ଭଂଗ କରାଯାଇଥିଲା । ସମ୍ବଲପୁରରେ ଘନଶ୍ୟାମ ପାଣିଗ୍ରାହୀ, ଦୟାନନ୍ଦ ଶତପଥୀ ଓ ହରିହର ବେହେରାଙ୍କ ନେତୃତ୍ୱରେ ସତ୍ୟାଗ୍ରହ କମିଟି ଗଠନ କରାଯାଇଥିଲା । କୁଜଙ୍ଗରେ ନାରାୟଣ ବୀରବର ସାମନ୍ତ ଓ ଭାଗ୍ୟବତୀ ପାଟ ମହାଦେଇ, ରମାଦେବୀ, ମାଳତୀ ଚୌଧୁରୀ, ନାରାୟଣ ପାତ୍ର, ଶରତଚନ୍ଦ୍ର ଦାସ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇଥିଲେ । ଗଂଜାମର ହୁମାଠାରେ ତତ୍କାଳୀନ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ନିରଂଜନ ପଟ୍ଟନାୟକ ୨୩ ଜଣ ସତ୍ୟାଗ୍ରହୀଙ୍କୁ ନେଇ ୧୯୩୦ ମସିହା ଏପ୍ରିଲ ୩୦ ରେ ଲବଣ ଆଇନ ଭଂଗ କରିଥିଲେ । ତାଙ୍କ ସହିତ ଥିଲେ ତାଙ୍କର ପତ୍ନୀ କିଶୋରୀ ମଣି ଦେଈ ଓ ଅନ୍ୟଜଣେ କୁନ୍ଦଲତା ଦେଈ, ତେଲୁଗୁ ମହିଳା ବରଲକ୍ଷ୍ମୀ ଓ ସୂର୍ଯ୍ୟମ୍ମା ଅବର୍ଣ୍ଣୀ ଲକ୍ଷ୍ମୀବାଇ ।

ଓଡ଼ିଶାରେ ଲବଣ ସତ୍ୟାଗ୍ରହର ସାଫଲ୍ୟ ପାଇଁ ଗାନ୍ଧିଜୀ ଉଚ୍ଛ୍ୱସିତ ପ୍ରଶଂସା କରି ଏକ ଅଭିନନ୍ଦନ ଚିଠି ପଠାଇଥିଲେ ।

ଲବଣ ସତ୍ୟାଗ୍ରହ ବ୍ୟତୀତ ବିଦେଶୀ ବସ୍ତ୍ର ବର୍ଜନ, ଚୌକିଦାରୀ ଟିକସ ବର୍ଜନ, ଗଂଜା, ମଦ ଦୋକାନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ ଆଦି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ଇଞ୍ଚୁଡ଼ି ନିକଟବର୍ତ୍ତୀ ଶ୍ରୀଜଙ୍ଗ ଗ୍ରାମର ଗୌରମୋହନ ଦାସ ଓ ବିଦ୍ୟାଧର ରାଉତଙ୍କ ନେତୃତ୍ୱରେ ଲୋକେ ଚୌକିଦାରୀ ଟିକସ ନଦେଇ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ସେଥିପାଇଁ ଗ୍ରାମବାସୀମାନେ ପୋଲିସ ଅତ୍ୟାଚାରର ଶିକାର ହୋଇଥିଲେ ।

ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ବାନରସେନା ଗଠନ ଥିଲା ଏକ ଚାଞ୍ଚଲ୍ୟକର ଘଟଣା । ୧୬ ବର୍ଷ ବୟସରୁ କମ ପାଠପଢୁଥିବା ଛାତ୍ରମାନେ ସ୍ୱେଚ୍ଛାସେବୀ ରୂପେ ଯୋଗଦେଇ ଆଇନ ଅମାନ୍ୟ ଆନ୍ଦୋଳନକୁ ସାଫଲ୍ୟମଣ୍ଡିତ କରିବାରେ ସହାୟକ ହୋଇଥିଲେ । ସେହିପରି ଏହି ଆନ୍ଦୋଳନରେ ଅଭୂତପୂର୍ବ ସଂଖ୍ୟାରେ ନାରୀମାନଙ୍କର ଯୋଗଦାନ ଥିଲା ଏକ ବୈଶିଷ୍ଟ୍ୟ । ଅବଶ୍ୟ ସେଥିପାଇଁ ରମାଦେବୀ, ମାଳତୀ ଚୌଧୁରୀ ଓ ସରଳାଦେବୀଙ୍କର ପ୍ରରୋଚନା ଓ ଆପ୍ରାଣ ଉଦ୍ୟମ ମୁଖ୍ୟତଃ ଦାୟୀ । ଚନ୍ଦ୍ରମଣି ଓ ସୁନାମଣିଙ୍କର ଉଦ୍ୟମ ପ୍ରଶଂସନୀୟ । ଆଇନ ଅମାନ୍ୟ ଆନ୍ଦୋଳନ ବହୁ ଛାତ୍ରଙ୍କୁ ପ୍ରଭାବିତ କରିଥିଲା । ତେଣୁ ସେମାନେ ଏଥିରେ ଯୋଗଦେଇଥିଲେ । କଟକରେ ସୁରେନ୍ଦ୍ର ନାଥ ପଟ୍ଟନାୟକ, ଆକୁଳାନନ୍ଦ ବେହେରା, ବାଲେଶ୍ୱରର ରବୀନ୍ଦ୍ର ମୋହନ ଦାସ, ନିତ୍ୟାନନ୍ଦ ମହାପାତ୍ର, ଗୌରଗୋପାଳ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ଓଡ଼ିଶାରେ ହରିଜନ ଆନ୍ଦୋଳନ ଆଶାତୀତ ଭାବେ ସାଫଲ୍ୟମଣ୍ଡିତ ହୋଇଥିଲା । ଅବଶ୍ୟ ସେଥିପାଇଁ ୧୯୩୪ ମସିହାରେ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ଓ ଜାତିପ୍ରଥାର ବିଲୋପ ସାଧନ ପାଇଁ ତାଙ୍କର ଆହ୍ୱାନ ମୁଖ୍ୟତଃ ଦାୟୀ । ଏହାଥିଲା ଗାନ୍ଧିଜୀଙ୍କର ଓଡ଼ିଶାକୁ ଚତୁର୍ଥଥର ପାଇଁ ଆଗମନ । ଉତ୍କଳ ହରିଜନ

ସଂଗଠନ କରାଯାଇ ତା'ର ଦାୟିତ୍ୱରେ ରମାଦେବୀ, ହେମଲତା ଦେବୀ ଓ ଅନ୍ୟାନ୍ୟ ନାରୀକର୍ମୀ ରହିଥିଲେ । ଏହି ସାଫଲ୍ୟ ପାଇଁ ମହାତ୍ମାଗାନ୍ଧୀ ଅଭିନନ୍ଦନ ଜଣାଇ ରମାଦେବୀଙ୍କ ନିକଟକୁ ପତ୍ରଟିଏ ଲେଖିଥିଲେ ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଓଡ଼ିଶାରାଜନୀତିର ବିକାଶ (୧୯୩୬-୧୯୩୯)

ମଧୁସୂଦନ ଦାସ, ପାରଳାଖେମଣ୍ଡିର ମହାରାଜ କୃଷ୍ଣଚନ୍ଦ୍ର ଗଜପତି, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ, ନୀଳକଣ୍ଠ ଦାସ ଓ ଅନ୍ୟାନ୍ୟ ବହୁନେତାଙ୍କର ଆପ୍ରାଣ ଉଦ୍ୟମ ଯୋଗୁଁ ୧୯୩୬ ମସିହା ଏପ୍ରିଲ ୧ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯାଇଥିଲା । ଅବଶ୍ୟ ଏହାର ମୁଖ୍ୟ ନାୟକ ମଧୁସୂଦନ ଦାସ ୧୯୩୪ ଫେବୃୟାରୀ ୪ ତାରିଖରେ ମୃତ୍ୟୁ ବରଣ କରିସାରିଥିଲେ । ୨୬ଟି ଗଡ଼ଜାତ ବ୍ୟତୀତ, ନୂତନ ଓଡ଼ିଶା ପ୍ରଦେଶରେ ୬ଟିଜିଲ୍ଲାଥିଲା । ସେଗୁଡ଼ିକ ଥିଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଂଜାମ ଓ କୋରାପୁଟ ।

ପରେ ପରେ ଓଡ଼ିଶାର ରାଜନୈତିକ ଦିଗବଳୟ ବହୁ ଘଟଣାରେ ଆହ୍ଲାଦିତ ହୋଇଥିଲା । କଂଗ୍ରେସ ଦଳ ୧୯୩୬ ମସିହା ନଭେମ୍ବର ମାସରେ ହେବାକୁ ଥିବା ନିର୍ବାଚନରେ ଲଢ଼ିବା ପାଇଁ ପ୍ରସ୍ତୁତ ହୋଇଥିଲା । ଏଥିପାଇଁ ଜବାହରଲାଲ ନେହରୁ କଟକ, ପୁରୀ ଓ ବ୍ରହ୍ମପୁର ଆସିଥିଲେ କଂଗ୍ରେସ ପାଇଁ ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ । ଫଳରେ ୬୦ ଟି ଆସନ ମଧ୍ୟରୁ କଂଗ୍ରେସ ୩୬ ଟି ଆସନ ଲାଭ କରିଥିଲା । କଂଗ୍ରେସ ବହୁ ମତ ପାଇଥିବା ୫ ଟି ପ୍ରଦେଶ ମଧ୍ୟରୁ ଓଡ଼ିଶା ଥିଲା ଅନ୍ୟତମ । ବିଶ୍ୱନାଥ ଦାସଙ୍କୁ ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ନିମନ୍ତ୍ରଣ କରାଯାଇଥିଲେ ମଧ୍ୟ ଲାଟଙ୍କର ସଂବିଧାନ ସମ୍ବନ୍ଧୀୟ ସ୍ୱତନ୍ତ୍ର କ୍ଷମତା ପାଇଁ ସେ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ମନା କରିଦେଇଥିଲେ । ତେଣୁ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏକ ମଧ୍ୟବର୍ତ୍ତୀ କାଳୀନ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ ୧୯୩୭ ମସିହା ଏପ୍ରିଲ ୧ ତାରିଖ ଦିନ । ଏହା ସେହିବର୍ଷ ଜୁଲାଇ ୧୩ ତାରିଖ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା । ତାପରେ ୧୯୩୭ ମସିହା ଜୁଲାଇ ୧୯ ତାରିଖ ଦିନ ବିଶ୍ୱନାଥ ଦାସ ଏକ ୩ ଜଣିଆ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ଅନ୍ୟ ଦୁଇଜଣ ମନ୍ତ୍ରୀ ଥିଲେ ନିତ୍ୟାନନ୍ଦ କାନୁନଗୋ ଓ ବୋଧିରାମ ଦୁବେ । ବହୁବିଧ ଅସୁବିଧା ସତ୍ତ୍ୱେ ନାଗରିକ ଅଧିକାର, ଶିକ୍ଷା, ଜନସ୍ୱାସ୍ଥ୍ୟ, ନିଶାନିବାରଣ ଓ ରାଜସ୍ୱ ସଂସ୍କାର ଉପରେ ପ୍ରଶଂସନୀୟ କାର୍ଯ୍ୟ କରିଥିଲା । ମାତ୍ର ଏହି ମନ୍ତ୍ରୀମଣ୍ଡଳର ସ୍ଥାୟିତ୍ୱ ଥିଲା ମାତ୍ର ୨୮ ମାସ । ଏହା ୧୯୩୯ ମସିହା ନଭେମ୍ବର ୪ ତାରିଖ ଦିନ ଇସ୍ତଫା ଦେଇଥିଲା ।

ଏହି ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ସମୟରେ ଗୋଟିଏ ଘଟଣା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମକୁ ନୂତନ ପ୍ରେରଣା ଓ ଶକ୍ତି ପ୍ରଦାନ କରିଥିଲା । ଘଟଣାଟି ଥିଲା ପୁରୀ ଜିଲ୍ଲା ଅନ୍ତର୍ଗତ ଡେଲାଙ୍ଗର ବେରବୋଇ ଆଶ୍ରମରେ ୧୯୩୮ ମସିହାରେ ଆହୂତ ୪ର୍ଥ ଗାନ୍ଧୀ ସେବାସଂଘ ଅଧିବେଶନ ମାର୍ଚ୍ଚ ୨୫ ରୁ ୧୯୩୮ ମସିହା ମାର୍ଚ୍ଚ ୩୧ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏଥିରେ ମହାତ୍ମାଗାନ୍ଧୀଙ୍କ ସମେତ ଭାରତବର୍ଷର ରାଜେନ୍ଦ୍ର ପ୍ରସାଦ, ବଲ୍ଲଭ ଭାଇ ପଟେଲ ପ୍ରମୁଖ ତୁଙ୍ଗନେତାମାନେ ଯୋଗଦେଇ ଥିଲେ । ଏହା ଥିଲା ମହାତ୍ମାଗାନ୍ଧୀଙ୍କର ଓଡ଼ିଶାକୁ ୫ମ ଓ ଶେଷ ଆଗମନ । ଏଠାରେ ଗାନ୍ଧିଜୀ ଓ ପଟେଲ ଓଡ଼ିଶାର ଲୋକଙ୍କୁ ସ୍ୱାଧୀନତା ସଂଗ୍ରାମରେ ସାଫଲ୍ୟ ମଣ୍ଡିତ ଭୂମିକା ଗ୍ରହଣ କରିଥିବାରୁ ଭୂୟସୀ ପ୍ରଶଂସା କରିଥିଲେ ।

## ଓଡ଼ିଶା ପ୍ରଜାମଣ୍ଡଳ ଆନ୍ଦୋଳନ - (୧୯୩୮-୧୯୩୯)

ଓଡ଼ିଶାରେ ସେତେବେଳେ ୨୬ ଟି ଗଡ଼ଜାତ ରାଜ୍ୟଥିଲା । ଉକ୍ତ ରାଜ୍ୟର ରାଜାମାନେ ପ୍ରଜାଙ୍କ ଠାରୁ ସଲାମି, ବେଠି, ବେଗାରି ଓ ନାନାପ୍ରକାର କର ଆଦାୟ କରି ସେହି ଅର୍ଥକୁ ନିଜ ତଥା ପରିବାରବର୍ଗଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟବିଧିରେ ବ୍ୟୟ କରୁଥିଲେ । ସେମାନେ ମଧ୍ୟ ଥିଲେ ଅତ୍ୟାଚାରର ଜଣେ ଜଣେ ମୂର୍ତ୍ତିମନ୍ତ ପ୍ରତୀକ । ଅବଶ୍ୟ କେତେକ ରାଜା ଏହାର ବ୍ୟତିକ୍ରମ ଥିଲେ । ରାଜାଙ୍କର ଏହି ନିରଙ୍କୁଶ କ୍ଷମତା ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବା ପାଇଁ ପ୍ରଜାମାନଙ୍କର ସାହସ ନଥିଲା । କାରଣ ଇଂରେଜ ପ୍ରଶାସକମାନେ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ରଖିଥିଲେ ।

### ପ୍ରଜାମଣ୍ଡଳ ଗଠନର ପୃଷ୍ଠଭୂମି :

ଇତିମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ଡାକେ ଡାକେ ଗଡ଼ଜାତ ରାଜ୍ୟର ପ୍ରଜାମାନଙ୍କ ହୃଦୟରେ ଏକ ବିଦ୍ରୋହାତ୍ମକ ମନୋଭାବ ଉଦ୍ରେକ ହୋଇଥିଲା । ସେମାନେ କ୍ରମେ କ୍ରମେ ନିଜ ନିଜର ଅଧିକାର ବିଷୟରେ ସଚେତନ ହୋଇଥିଲେ । ୧୯୩୧ ମସିହାରେ ଗୋଟିଏ ଘଟଣା ସେମାନଙ୍କୁ ସାହସିକ ପଦକ୍ଷେପ ଗ୍ରହଣ କରିବା ପାଇଁ ପ୍ରୋତ୍ସାହିତ କରିଥିଲା । ତାହା ଥିଲା ୧୯୩୧ ମସିହାରେ କଟକରେ ଆହୂତ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀ । ଇତିମଧ୍ୟରେ ୧୯୩୬ ମସିହାରେ ଲକ୍ଷ୍ନୌଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ୪୯ ତମ ଅଧିବେଶନରେ ସ୍ୱାଧୀନତା ପ୍ରତ୍ୟେକଙ୍କର ମୌଳିକ ଅଧିକାର ବୋଲି ପ୍ରସ୍ତାବ ଗ୍ରହଣ କରାଯାଇଥିଲା । କିନ୍ତୁ ସେଥିରୁ ପ୍ରଜାମାନଙ୍କୁ ବଞ୍ଚିତ କରାଯାଇଥିବାରୁ କ୍ଷୋଭ ପ୍ରକାଶ କରାଯାଇଥିଲା । ପରେ ପରେ ୧୯୩୭ ରେ କଟକରେ ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ପୌରହିତ୍ୟରେ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେଥିରେ ରାଜ୍ୟରେ ବସବାସକରୁଥିବା ପ୍ରଜାମାନଙ୍କର ସୁପ୍ତ ଶକ୍ତିକୁ ଉଦ୍ରେକ କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ୧୯୩୭ ମସିହାରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରାଯିବା ପରେ ପ୍ରଜାମାନଙ୍କର ରାଜନୈତିକ ଚେତନା ଓ କାର୍ଯ୍ୟକ୍ରମକୁ ପ୍ରୋତ୍ସାହିତ କରିଥିଲା । ଇତିମଧ୍ୟରେ ୧୯୩୮ ରେ ଭାରତୀୟ ଜାତୀୟ କଂଗ୍ରେସ ହରିପୁରା ଅଧିବେଶନରେ ଗୃହୀତ ପ୍ରସ୍ତାବରେ ଘୋଷଣା କରିଥିଲା ଯେ ପୂର୍ଣ୍ଣସ୍ୱରାଜର ଆଭିମୁଖ୍ୟରେ ଗଡ଼ଜାତ ରାଜ୍ୟକୁ ସ୍ୱାଧୀନ କରିବା ଏକ କର୍ତ୍ତବ୍ୟ । ପ୍ରକୃତପକ୍ଷେ ସେହି ଅଧିବେଶନ ଠାରୁ ପ୍ରଜାମାନେ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ ।

### ପ୍ରଜାମଣ୍ଡଳ ଗଠନ ଓ ତା'ର ପଦକ୍ଷେପ :

ଉପରୋକ୍ତ ଘଟଣାଗୁଡ଼ିକ ବିଭିନ୍ନ ରାଜ୍ୟରେ ପ୍ରଜାମଣ୍ଡଳ ଗଠନ ଦିଗରେ ସହାୟକ ହୋଇଥିଲା । ଆଠଗଡ଼, ତାଳଚେର, ଢେଙ୍କାନାଳ,

ନୀଳଗିରି ଆଦି ଗଡ଼ଜାତ ରାଜ୍ୟ ଏ ଦିଗରେ ନେତୃତ୍ୱ ନେଇଥିଲେ । ଏଦିଗରେ ସାରଙ୍ଗଧର ଦାସଙ୍କର ଭୂମିକା ଥିଲା ଉଲ୍ଲେଖନୀୟ । ୧୯୩୮ ମସିହାରେ ଆଠଗଡ଼ରେ ରାଧାନାଥ ରଥ, ତାଳଚେରରେ ପବିତ୍ରମୋହନ ପ୍ରଧାନ, ଢେଙ୍କାନାଳରେ ମହେଶ୍ୱର ସୁବାହୁ ସିଂ, ସାରଙ୍ଗଧର ଦାସ, ବୈଷ୍ଣବଚରଣ ପଟ୍ଟନାୟକ, ବ୍ରଜକିଶୋର ଧଳ, ନୀଳଗିରିରେ କୈଳାସଚନ୍ଦ୍ର ମହାନ୍ତି, ହିନ୍ଦୋଳରେ ବାଲୁକେଶ୍ୱର ଆଚାର୍ଯ୍ୟଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳମାନ ଗଠନ କରାଯାଇଥିଲା । ସେମାନେ ରାଜାମାନଙ୍କ ବିରୁଦ୍ଧରେ ପଦକ୍ଷେପ ଗ୍ରହଣ କରିଥିଲେ । ଏପରି ଅବସ୍ଥାରେ ରାଜାମାନେ ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିବା ଦୂରେ ଥାଉ, ଇଂରେଜ ସରକାରଙ୍କର ସହାୟତାରେ ଗୁଳିଚାଳନା, ନେତାମାନଙ୍କୁ ବନ୍ଦୀକରିବା ଆଦି ଦମନ ମୂଳକ ପଦକ୍ଷେପ ଗ୍ରହଣ କରିଥିଲେ । ଢେଙ୍କାନାଳରେ ୧୯୩୮ ମସିହା ଅକ୍ଟୋବର ମାସରେ ମହେଶ୍ୱର ସୁବାହୁ ସିଂ ଓ ଅନ୍ୟମାନଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳର ଆନ୍ଦୋଳନ ଗୁରୁତର ରୂପ ଧାରଣ କରିବାରୁ ପୋଲିସ ସେମାନଙ୍କ ଉପରେ ଗୁଳିଚାଳନା କରି ୬ ଜଣଙ୍କର ପ୍ରାଣନେଇଥିଲେ । ତନ୍ମଧ୍ୟରୁ ନୀଳକଣ୍ଠପୁର ଗ୍ରାମର ୧୨ ବର୍ଷ ବୟସର ବାଳକ ବାଜିରାଉତ ଥିଲା ଅନ୍ୟତମ । ତାଙ୍କୁ ଭାରତବର୍ଷର ସବୁଠାରୁ କନିଷ୍ଠ ଶହୀଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ତା'ର ପ୍ରତିବାଦରେ ନବକୃଷ୍ଣ ଚୌଧୁରୀ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ଢେଙ୍କାନାଳକୁ ପଦଯାତ୍ରାରେ ଯାଉଥିବା ସମୟରେ ତାଙ୍କୁ ଗିରଫ କରାଯାଇଥିଲା । ତାଳଚେରରେ ରାଜାଙ୍କର ନିର୍ଯ୍ୟାତନା ପାଇଁ ୩୦ ହଜାର ଲୋକ ଘର ଛାଡ଼ି ଅନୁଗୁଳରେ ରହିଥିଲେ ।

**ବେଜେଲଗେଟ ହତ୍ୟାକାଣ୍ଡ-ଜାନୁୟାରୀ ୫, ୧୯୩୯ ଓ ଆମକୋ-ସିମକୋ ଗୁଳିକାଣ୍ଡ :**

ରଣପୁର ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏକ ଉଗ୍ରବାଦ ରୂପ ନେଇଥିଲା । ସେଠାରେ ପ୍ରଜାମଣ୍ଡଳର ସମ୍ପାଦକ ଓ ସହସମ୍ପାଦକ ରୂପେ କାର୍ଯ୍ୟ କରିଥିବା ଜୀବନର ମାତ୍ର ୩୦ ଟି ବସନ୍ତ ବିତାଇଥିବା ଦୁଇଜଣ ଯୁବକ ଆନ୍ଦୋଳନର ନେତୃତ୍ୱ ନେଇ ଓଡ଼ିଶାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ସେମାନେ ଥିଲେ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା । ଆନ୍ଦୋଳନ ବିଷୟରେ ଖବର ପାଇ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ମେଜର ବେଜେଲଗେଟ ନୟାଗଡ଼ ଆସି ସେଠାରୁ ରଣପୁର ଆସିଥିଲେ ୧୯୩୯ ମସିହା ଜାନୁୟାରୀ ୫ ତାରିଖ ଦିନ । ସେଦିନ ରାଜବାଟୀ ସମ୍ମୁଖରେ ପ୍ରଜାମଣ୍ଡଳର ଏକ ସଭା ଅନୁଷ୍ଠିତ ହୋଇଥିଲା । ମେଜର ବେଜେଲଗେଟ ସେଠାରେ ପହଞ୍ଚିବା ପରେ ବୃଥାମଣାର ଅଭାବଯୋଗୁଁ ତାଙ୍କୁ ଗାଁ ଭିତରକୁ ଠେଲି ନେଇ କେତେକ ଲୋକ ବାଡ଼ିରେ ପିଟି ପିଟି ହତ୍ୟାକରିଥିଲେ । ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ସେତେବେଳେ ସେଠାରେ ଉପସ୍ଥିତ ନଥିଲେ ହେଁ ଉଭୟଙ୍କୁ ପକ୍ଷଭୁକ୍ତ କରାଯାଇଥିଲା । ବିଚାରରେ ସେମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇ ଭାଗଲପୁର ଜେଲରେ ଫାଶୀ ଦିଆଯାଇଥିଲା । ଇଂଲଣ୍ଡର ପାର୍ଲିଆମେଣ୍ଟରେ ଏ ବିଷୟ ଆଲୋଚନା କରାଯାଇ ବେଜେଲଗେଟଙ୍କୁ ମାରିଥିବା ଅସ୍ତ୍ରକୁ ଦେଖିବାକୁ ଚାହିଁବାରୁ ରଣପୁର ଜଙ୍ଗଲରୁ କେତେଖଣ୍ଡ ବାଡ଼ି ଜାହାଜରେ ପ୍ରେରଣ କରାଯାଇଥିଲା ।

ସେହିପରି ଗାଙ୍ଗପୁର ରାଜ୍ୟରେ ନିର୍ମଳମୁଣ୍ଡାଙ୍କ ନେତୃତ୍ୱରେ ମୁଣ୍ଡାମାନେ ସେଠାକାର ରାଣୀ ଓ ଇଂରେଜଶକ୍ତି ବିରୁଦ୍ଧରେ ଆନ୍ଦୋଳନକରି ଆମକୋ-ସିମକୋ ସ୍ଥାନରେ ସଭାକରୁଥିବା ଅବସ୍ଥାରେ ପୋଲିସ ଗୁଳିରେ ପ୍ରାୟ ୪୦ ଜଣ ମୃତ୍ୟୁବରଣ କରିଥିଲେ ।

ପରବର୍ତ୍ତୀ ସମୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ସ୍ୱାଧୀନତା ଆନ୍ଦୋଳନର ମହାସ୍ରୋତରେ ମିଶିଯାଇଥିଲା ।

**ଓଡ଼ିଶାରେ ଉତ୍କଳ କଂଗ୍ରେସ ସମାଜବାଦୀ ଦଳ ଓ ଫରୱାର୍ଡ଼ ବ୍ଲକ ଗଠନ:**

ଏହି ସମୟରେ ଓଡ଼ିଶା ରାଜନୀତିରେ ଉତ୍କଳ କଂଗ୍ରେସ ସମାଜବାଦୀଦଳ ନାମ ଦେଇ ଏକ ଦଳ ଗଠନକରାଯାଇ ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ଉକ୍ତ ଦଳ ଗଠନ ଦିଗରେ ଉଦ୍ୟମ କରିବା ଫଳରେ ୧୯୩୪ ମସିହାରେ ଏହା ଜନ୍ମ ନେଇଥିଲା । ପ୍ରାଣନାଥ ପଟ୍ଟନାୟକ ଥିଲେ ଏହାର ପ୍ରଥମ ସଭାପତି । ପରେ ପରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏହାର ନେତୃତ୍ୱ ନେଇ ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ କାର୍ଯ୍ୟକ୍ରମକୁ ଗ୍ରହଣ କରିଥିଲେ । ଏହାର ଆନୁକୂଲ୍ୟରେ କିଷାନ ସଂଘ ଗଠନ କରାଯାଇଥିଲା । ଏହି ସମୟରେ କଟକରେ ଲୋକସେବକ ମଣ୍ଡଳୀର ଏକ ଅଧିବେଶନ ଡ଼କାଯାଇ ସେଥିରେ ପୁରୁଷୋତ୍ତମ ଦାସ ଟଣ୍ଡନ, ହରନାଥ ଶାସ୍ତ୍ରୀ ଓ ବଳବନ୍ତ ରାଓ ମେହେଟା ପ୍ରମୁଖ ସର୍ବଭାରତୀୟ ନେତୃବୃନ୍ଦ ଯୋଗଦେଇ ସ୍ୱାଧୀନତା ଆନ୍ଦୋଳନକୁ ଜନପ୍ରିୟ କରାଇଥିଲେ ।

ଇତିମଧ୍ୟରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଫରୱାର୍ଡ଼ ବ୍ଲକ ଗଠନ କରିବା ପରେ ଓଡ଼ିଶାରେ ତା'ର ଏକ ଶାଖା ଉନ୍ମୋଚିତ ହୋଇଥିଲା, ୧୯୪୦ ମସିହା ମାର୍ଚ୍ଚ ମାସରେ । ଦିବାକର ପଟ୍ଟନାୟକ ଓ ଅଶୋକ ଦାସ ଯଥାକ୍ରମେ ଏହାର ସଭାପତି ଓ ସଂପାଦକ ଆସନ ଅଳଙ୍କୃତ କରିଥିଲେ ।

**ଯୁଦ୍ଧ ବିରୋଧୀ ଆନ୍ଦୋଳନ (୧୯୩୯-୧୯୪୦)**

ଓଡ଼ିଶା ମଧ୍ୟ ଯୁଦ୍ଧ ବିରୋଧୀ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲା । ୧୯୩୯ ମସିହା ସେପ୍ଟେମ୍ବର ୩ ତାରିଖରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା ଓ ଏହାଥିଲା ମୁଖ୍ୟତଃ ଜର୍ମାନୀ ଓ ଇଂଲଣ୍ଡ ମଧ୍ୟରେ ଯୁଦ୍ଧ । ଅତୀତରେ ଅର୍ଥାତ୍ ପ୍ରଥମ ବିଶ୍ୱଯୁଦ୍ଧରେ ପ୍ରତାରିତ ହୋଇଥିବା ଭାରତୀୟମାନେ ଏହି ଯୁଦ୍ଧରେ ଇଂଲଣ୍ଡକୁ ସାହାଯ୍ୟ ଦେବା ପାଇଁ ଚାହିଁ ନଥିଲେ । ପ୍ରତିବାଦ ସତ୍ତ୍ୱେ ତତ୍କାଳୀନ ଭାଇସରାୟ ଏକ ଘୋଷଣାନାମା ଜାରିକରି ଭାରତକୁ ଇଂଲଣ୍ଡର ପକ୍ଷଭୁକ୍ତ କରିବାରୁ ଭାରତୀୟ ଜାତୀୟ କଂଗ୍ରେସ ଯୁଦ୍ଧବିରୋଧୀ ଆନ୍ଦୋଳନ ଡାକରା ଦେଇଥିଲା । ସମାଜବାଦୀ ଦଳ ଓ କଂଗ୍ରେସ ଏହାକୁ ନେତୃତ୍ୱ ଦେଇଥିଲେ । କରନଦେବା ଓ ରେଳବାଇ ଧର୍ମଘଟ ଥିଲା ମୁଖ୍ୟ ପଦକ୍ଷେପ ।

ଓଡ଼ିଶାରେ ମଧ୍ୟ ଏହି ଆନ୍ଦୋଳନ ପ୍ରତିଧ୍ୱନିତ ହୋଇଥିଲା । କଂଗ୍ରେସ ସମାଜବାଦୀ ଦଳ, ଫରୱାର୍ଡ଼ ବ୍ଲକ ଓ କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନକୁ ସମର୍ଥନ ଜଣାଇଥିଲେ । ଯୁଦ୍ଧ ବିରୋଧୀ ଆନ୍ଦୋଳନର ଏକ

ଅଂଶସ୍ୱରୂପ ଗଞ୍ଜାମ ଜିଲ୍ଲାରେ ବିଶ୍ୱନାଥ ଦାସଙ୍କ ଅଧ୍ୟକ୍ଷତାରେ ୨୧ ଜାନୁୟାରୀ ୧୯୪୦ ରୁ ୨୮ ଜାନୁୟାରୀ ପର୍ଯ୍ୟନ୍ତ ଏକ କିଶାନ ସମ୍ମିଳନୀ ଆହୂତ ହୋଇଥିଲା । ପରେ ପରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଏକ ଶୋଭାଯାତ୍ରା କରି ଆଶ୍ରମରୁ ଆରମ୍ଭ ହୋଇ ଗାଁ ଗାଁରେ ବୁଲି ଯୁଦ୍ଧ ବିରୋଧୀ ଆନ୍ଦୋଳନ ବିଷୟରେ ଲୋକମାନଙ୍କୁ ବୁଝାଇଥିଲେ । ଇତିମଧ୍ୟରେ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ଯୁଦ୍ଧ ବିରୋଧୀ ଆନ୍ଦୋଳନର କାର୍ଯ୍ୟକ୍ରମ ଛପାଇ ବଣ୍ଟନ କରିବାରୁ ତାଙ୍କୁ ଗିରଫ କରି ନିଆଯାଇଥିଲା ।

ଇତିମଧ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଇଂଲଣ୍ଡର ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ତା'ର ପରାଜୟ ଅବଶ୍ୟମ୍ଭାବୀ ଜାଣି ବରଦୀ ମହାତ୍ମାଗାନ୍ଧୀ ଇଂଲଣ୍ଡକୁ ଅର୍ଥ ଓ ଲୋକବଳ ଯୋଗାଇଥିଲେ ଦୁଇଟି ସର୍ତ୍ତରେ- (କ) ଯୁଦ୍ଧ ପରେ ଭାରତୀୟମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇ ସଂବିଧାନ ପ୍ରଣୟନର କ୍ଷମତା ଦେବେ । (ଖ) ଏକ ଜନପ୍ରିୟ ସରକାର ଗଠନ ପାଁଇ ଅନୁମତି ଦେବେ । ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଭାଇସରାୟଙ୍କୁ ଆଦେଶ ଦେଇଥିଲେ ଯେ ଭାରତୀୟମାନଙ୍କୁ ତାଙ୍କର ଦାବୀ ଉପରେ ବିଚାର କରି କିଛି ସୁବିଧା ସୁଯୋଗ ଦେବାପାଇଁ । ଅଗଷ୍ଟ ମାସରେ ଭାଇସରାୟ କିଛି ଦାନ ଦେଇଥିଲେ ମଧ୍ୟ ଏହା ପ୍ରତାରଣାର ଏକ ପନ୍ଥା, ତେଣୁ ଜାତୀୟ କଂଗ୍ରେସ ଏହି ଅଗଷ୍ଟ ଦାନକୁ ପ୍ରତ୍ୟାଖ୍ୟାନ କରିଥିଲା ।

**ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ (୧୯୪୦-୪୧) ଓ ତାପରେ :**

ଅଗଷ୍ଟ ଦାନକୁ ପ୍ରତ୍ୟାଖ୍ୟାନ କରିବା ପରେ ଗାନ୍ଧିଜୀଙ୍କ ଠାରେ ଆଇନ ଅମାନ୍ୟ ଆନ୍ଦୋଳନ ବ୍ୟତୀତ ଅନ୍ୟ କୌଣସି ଅହିଂସ ପନ୍ଥା ନଥିଲା । ମାତ୍ର ଯୁଦ୍ଧ ସମୟରେ ଜନସାଧାରଣଙ୍କ ଦ୍ୱାରା ଆଇନ ଅମାନ୍ୟ ଆନ୍ଦୋଳନ ପ୍ରବର୍ତ୍ତନ ନ କରି ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରବର୍ତ୍ତନ କରିଥିଲେ । ଏଥିରେ ପ୍ରତିଦିନ ଜଣେ ଜଣେ ମନୋନୀତ ବ୍ୟକ୍ତି ଆଇନ ଅମାନ୍ୟ କରିବେ । ମହାତ୍ମାଗାନ୍ଧୀ ନିଜେ ତାଙ୍କୁ ମନୋନୀତ କରିବେ । ସେ ପ୍ରଥମେ ଜିଲ୍ଲାର ପ୍ରଶାସକଙ୍କୁ ଜଣାଇବେ ଯେ ବିଶ୍ୱଯୁଦ୍ଧରେ ସହାୟତା ନଦେବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତା ଉଛନ୍ତି । ୧୯୪୦ ମସିହାରେ ଏହି ଆନ୍ଦୋଳନର ଥିଲା ଅଯମାରମ୍ଭ । ପ୍ରଥମେ ଆଚାର୍ଯ୍ୟ ବିନୋବାଭାବେ ଓ ପରେ ଜବାହାରଲାଲ ନେହୁରୁ ସତ୍ୟାଗ୍ରହୀଭାବେ ମନୋନୀତ ହୋଇଥିଲେ ।

ଓଡ଼ିଶାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଏହି ଆନ୍ଦୋଳନକୁ ଗ୍ରହଣ କରିବା ପରେ ୧୯୪୦ ମସିହା ଡ଼ିସେମ୍ବର ମାସ ୧ ତାରିଖ ଦିନ ଏହାର ସୂତ୍ରପାତ ହୋଇଥିଲା । ପ୍ରାଣକୃଷ୍ଣ ପଡ଼ୀଆରୀ ଓଡ଼ିଶାରେ ପ୍ରାଦେଶିକ ସଂଚାଳକ ଭାବେ ମନୋନୀତ ହୋଇ ତାଙ୍କୁ ଏହି ଆନ୍ଦୋଳନର ଦାୟିତ୍ୱ ଦିଆଯାଇଥିଲା । ପ୍ରଥମ ଦଫାରେ ୧୦ ଜଣ ମନୋନୀତ ହୋଇଥିଲେ । ସେମାନେ ଥିଲେ ହରେକୃଷ୍ଣ ମହତାବ, ସରଳାଦେବୀ, ବୋଧିରାମ ଦୁବେ, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁଙ୍ଗୋ, ସଦାଶିବ ତ୍ରିପାଠୀ, ମୋହନ ଦାସ, ନବକୃଷ୍ଣ ଚୌଧୁରୀ, ରାଧାକୃଷ୍ଣ ବିଶ୍ୱାସ- ରାୟ ଓ ଲୋକନାଥ ମିଶ୍ର । ସେମାନେ ସମସ୍ତେ ବିଭିନ୍ନ ସ୍ଥାନରେ ଗିରଫ ହୋଇଥିଲେ । ପରେ ପରେ ଅନ୍ୟମାନେ ଯୋଗଦେଇ ୧୫ ଦିନ ଧରି ଯୁଦ୍ଧ ବିରୋଧୀ ଧ୍ୱନି ଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରାଣକୃଷ୍ଣ ପ୍ରତିହାରୀ, ଜଗନ୍ନାଥ ଦାସ, ପ୍ରାଣନାଥ ପଟ୍ଟନାୟକ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ଲକ୍ଷ୍ମୀନାରାୟଣ ମିଶ୍ରଙ୍କର ନାମ ଉଲ୍ଲେଖଯୋଗ୍ୟ । ପରେ ପରେ ଗାଁ ଗାଁରେ ଯୁବକ ସଂଘ ଓ ସେବକ ସଂଘ ଯୁଦ୍ଧବିରୋଧୀ ଆନ୍ଦୋଳନ ପାଇଁ ଗଠନ କରାଯାଇଥିଲା । ଏହି ସମୟରେ ବାବୁ ରାଜେନ୍ଦ୍ର ପ୍ରସାଦ ଓ ଆଚାର୍ଯ୍ୟ କୃପାଳିନୀ ୧୯୪୧ ମସିହା ଜୁନ ୨୨ ତାରିଖଦିନ ଓଡ଼ିଶା ଆସି ଟାଉନ ହଲରେ ଏକ ସଭାରେ କଂଗ୍ରେସକର୍ମୀଙ୍କୁ ଉଦ୍‌ବୋଧନ ଦେଇ ଯୁଦ୍ଧ ବିରୋଧୀ ଆନ୍ଦୋଳନକୁ ସର୍ବାନ୍ତଃକରଣରେ ସାଫଲ୍ୟ ମଣ୍ଡିତ କରିବା ପାଇଁ ଉତ୍ସାହିତ କରିଥିଲେ ।

୧୯୪୧ ମସିହାର ମଧ୍ୟ ଭାଗକୁ ଯୁଦ୍ଧର ଅବସ୍ଥା ଏକ ନୂତନ ମୋଡ଼ ନେଇଥିଲା । ଏଥିରେ ଜର୍ମାନୀର ପକ୍ଷ ଜାପାନ ଗ୍ରହଣ କରି ଯୁଦ୍ଧରେ ଯୋଗଦେବା ପରେ ଭାରତ ଉପରେ ଜାପାନ ଆକ୍ରମଣର ଆଶଙ୍କା ଘନୀଭୂତ ହୋଇଥିଲା । ଗାନ୍ଧିଜୀ ଓ ଅନ୍ୟାନ୍ୟ କଂଗ୍ରେସ ନେତା ଚିନ୍ତା କଲେ ଯେ ଯଦି ପ୍ରକୃତରେ ଏହା ହୁଏ, ତେବେ ଭାରତର ଅବସ୍ଥା ଉତ୍ତପ୍ତ କଡ଼େଇରୁ ନିଆଁରେ ପଡ଼ିବା ପରି ହୋଇଯିବ । ତେଣୁ ମହାତ୍ମାଗାନ୍ଧୀ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖିଥିଲେ । ଅବଶ୍ୟ ଏହି ଆନ୍ଦୋଳନ ଫଳରେ ଭାରତପ୍ରତି ଇଂରେଜର ମନୋଭାବ କୋହଳ ହୋଇଥିଲା । ଫଳରେ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ସାର ଷ୍ଟାଫୋର୍ଡ଼ କ୍ରିପ୍ସଙ୍କୁ ଭାରତକୁ ପଠାଇଥିଲେ ସ୍ୱାଧୀନତା ସମ୍ବନ୍ଧୀୟ କିଛି ପ୍ରସ୍ତାବ ଦେବା ପାଇଁ । ସେ ପ୍ରସ୍ତାବ ଦେଲେ ସତ । ଗାନ୍ଧିଜୀ କହିଥିଲେ, ସେ ଗୋଟିଏ ଦେବାଳିଆ ବ୍ୟାଙ୍କ ଉପରେ ସମୟଗଡ଼ିଯାଇଥିବା ଏକ ଚେକ ଦେଇ ପ୍ରତାରିତ କରିଛନ୍ତି । ଭାରତୀୟ ଜାତୀୟ କଂଗ୍ରେସ ତାକୁ ପ୍ରତ୍ୟାଖ୍ୟାନ କରିବା ପରେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ ଏହାକୁ ଗ୍ରହଣ କରିନଥିଲା । ୧୯୪୨ ମସିହା ମେ ୬ ତାରିଖର ଦିନ ସମ୍ବଲପୁର ଜିଲ୍ଲାର ଝାରସୁଗୁଡ଼ା ଠାରେ ବିଶ୍ୱନାଥ ଦାସଙ୍କ ପୌରହିତ୍ୟରେ ଏକ ସଭା ଆହ୍ୱାନ କରାଯାଇ କ୍ରିପ୍ସ ପ୍ରସ୍ତାବକୁ କାରଣ ସହ ପ୍ରତ୍ୟାଖ୍ୟାନ କରିବା ପାଇଁ ଘୋଷଣା କରିଥିଲେ ।

ପରେ ପରେ ଇଂରେଜ ସରକାର ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳରେ ଜାପାନ ଆକ୍ରମଣକୁ ପ୍ରତିହତ କରିବା ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିବାରେ ଲୋକମାନେ ଆତଙ୍କିତ ହୋଇପଡ଼ିଥିଲେ । ତେଣୁ ମହାତ୍ମାଗାନ୍ଧୀ ଏହା ଜାଣି ତାଙ୍କର ଶିଷ୍ୟା ମୀରାବେନଙ୍କୁ ୧୯୪୨ ମସିହା ମେ-ଜୁନ ମାସରେ ଓଡ଼ିଶା ପ୍ରେରଣ କରିଥିଲେ । ତାଙ୍କ ସହିତ ଥିଲେ ହରେକୃଷ୍ଣ ମହତାବ । ସେମାନେ ଗ୍ରାମରକ୍ଷା କମିଟି ଓ ଘରୋଇ ସ୍ୱେଚ୍ଛାସେବୀ ସଂଘ ଗଠନ କରିବା ପାଇଁ ଲୋକମାନଙ୍କୁ ପରାମର୍ଶ ଦେଇଥିଲେ । ଏହାର କିଛିଦିନ ପରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଲାଭ ପାଇଁ ଏକ ବଳିଷ୍ଠ ପଦକ୍ଷେପ ଗ୍ରହଣ କରାଯାଇଥିଲା । ତାହା ଥିଲା ଭାରତଛାଡ଼ ଆନ୍ଦୋଳନ-ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟ ।

—0—

# ସ୍ୱାଧୀନତା ସଂଗ୍ରାମକୁ ଘୁମୁସରର ଅବଦାନ

ଡ଼ଃ. ଦଣ୍ଡପାଣି ବେହେରା

ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ଘୁମୁସରର ଅବଦାନ କଥା ଆଲୋଚନା କଲାବେଳେ ମନରେ ସ୍ୱତଃ ରୋମାଞ୍ଚକର ଶିହରଣ ଖେଳିଯାଏ । ଦୀର୍ଘ ଏକଶହ ତେରବର୍ଷ ସମୟ ଧରି ଘୁମୁସରର କନ୍ଧ ସଂପ୍ରଦାୟ ଓ ଜନଗଣଙ୍କର ତୁମୁଳ ସଂଗ୍ରାମ ଜାତୀୟ ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି । ୧୭୫୩ ସାଲରୁ ୧୭୫୯ ସାଲ ଯାଏଁ ପ୍ରଥମେ ସାମ୍ରାଜ୍ୟବାଦୀ ଫରାସୀ ଶାସନ ପ୍ରତିଷ୍ଠା ବିରୁଦ୍ଧରେ ଏବଂ ତତ୍‌ପରେ ପରେ ୧୭୬୬ ସାଲରୁ ୧୮୬୬ ସାଲ ଯାଏଁ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନ ବିରୁଦ୍ଧରେ ଅନବରତ ଭାବେ ସଂଗ୍ରାମ କରି ଘୁମୁସରର ଅଧିବାସୀମାନେ ଓଡ଼ିଶା କାହିଁକି, ସମଗ୍ର ଜାତୀୟ ସ୍ତରରେ ଅସାମାନ୍ୟ ପ୍ରତିଷ୍ଠା ଓ ଗୌରବର ଅଧିକାରୀ ହୋଇ ପାରିଛନ୍ତି । ମହାପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଶକ୍ତିସହ ଏକ ଶତାବ୍ଦୀ ଧରି ସଂଗ୍ରାମ କରିବା କମ ସାହସ ଓ ବୀରତ୍ୱର କଥା ନୁହେଁ । ଯଦିଓ ଏଭଳି ସାମରିକ ମୁକାବିଲା ସେମାନଙ୍କ ପକ୍ଷେ ଶେଷରେ ବିପର୍ଯ୍ୟୟରେ ପରିଣତ ହେବ ବୋଲି ସେମାନଙ୍କର ସ୍ୱତଃ ହୃଦବୋଧ ହୋଇଥିଲା । କାରଣ ସେମାନଙ୍କର ସମ୍ବଳ ଥିଲା ସୀମିତ, କିନ୍ତୁ ମନୋବଳ ଥିଲା ଅସୀମ । ସେହି ସଂଗ୍ରାମକୁ ଆଖ୍ୟା ଦିଆଯାଏ ପ୍ରତିରୋଧମୂଳକ ସଂଗ୍ରାମ ଅବା ଇଂରେଜୀରେ କୁହାଯାଏ Resistance Movement । ଏଭଳି ସଂଗ୍ରାମର ନିର୍ଦ୍ଦିଷ୍ଟ ସମୟ ସୀମା ଥିଲା । ଦୃଷ୍ଟାନ୍ତ ସ୍ୱରୂପ ଖୋର୍ଦ୍ଧା ବିଦ୍ରୋହ କି ସିପାହୀ ବିଦ୍ରୋହର କଥା ଏଠାରେ ଉଲ୍ଲେଖ କରାଯାଇପାରେ । ବୈଦେଶିକ ଶାସନ ପ୍ରତିଷ୍ଠା ବିରୁଦ୍ଧରେ ଭାରତବର୍ଷରେ ସର୍ବପ୍ରଥମେ ସଂଗ୍ରାମ ଉତ୍ତୋଳନ କରି ଏବଂ ସେହି ସଂଗ୍ରାମକୁ ଲଗାତାରଭାବେ ଦୀର୍ଘ ଏକଶହ ତେରବର୍ଷ ଧରି ଅବ୍ୟାହତ ରଖି ଘୁମୁସରର ଆଦିବାସୀ କନ୍ଧ ଓ ପ୍ରଜାମଣ୍ଡଳୀ ଜାତୀୟ ଇତିହାସରେ ବିସ୍ମୟ ଓ ଆଲୋଡ଼ନ ସୃଷ୍ଟି କରିଛନ୍ତି । ବାସ୍ତବରେ ଦେଶମାତୃକାର ମୁକ୍ତି ନିମନ୍ତେ ସେମାନେ ଯେଉଁ ତ୍ୟାଗପୂତ ସଂଗ୍ରାମ କରିଯାଇଛନ୍ତି ତା'ର ଭାରତରେ ଅନ୍ୟତ୍ର ପଟାନ୍ତର ଦୃଶ୍ୟମାନ ହୁଏ ନାହିଁ । ଅପୂର୍ବ ସାହସୀ ଅଦମ୍ୟ ଉତ୍ସାହ, ଅମାପ ଶୌର୍ଯ୍ୟ ଓ ଅଶେଷ ବୀର୍ଯ୍ୟର ପରାକାଷ୍ଠାକୁ ବିଦେଶୀ ଶାସନ ବିରୁଦ୍ଧରେ ଦୀର୍ଘକାଳ ଲଢ଼େଇ କରି ସେମାନେ ପ୍ରଦର୍ଶନ କରିଛନ୍ତି । ତଦ୍ୱାରା ସମଗ୍ର ଭାରତୀୟ ଜାତି ବିଶେଷ ବିସ୍ମୟାଭୂତ ଓ ଜାତୀୟ ସ୍ୱାଭିମାନ ଯଥେଷ୍ଟ ବର୍ଦ୍ଧିତ, ସଞ୍ଚିତ ଓ ସଞ୍ଜିତ ହୋଇପାରିଛି କହିଲେ ସତ୍ୟର ଆଦୌ ଅପଳାପ ହେବ ନାହିଁ ।

ଘୁମୁସରର ବିଦ୍ରୋହକୁ ମୁଖ୍ୟତଃ ଦୁଇ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରଥମ ପର୍ଯ୍ୟାୟ ୧୭୫୩ ସାଲରୁ ୧୮୩୫ ସାଲ ଯାଏଁ ବ୍ୟାପ୍ତ ଏବଂ ଦ୍ୱିତୀୟ ପର୍ଯ୍ୟାୟ ୧୮୩୫ ସାଲରୁ ୧୮୬୬ ସାଲ ଯାଏଁ ବିସ୍ତୃତ । ପ୍ରଥମ ପର୍ଯ୍ୟାୟ ସଂଗ୍ରାମ ଭଂଜ ରାଜାମାନଙ୍କ ଦ୍ୱାରା ପରିଚାଳିତ ଏବଂ ଦ୍ୱିତୀୟ ପର୍ଯ୍ୟାୟ ସଂଗ୍ରାମ ଜନଗଣଙ୍କର ନେତୃମଣ୍ଡଳୀ ପରିଚାଳନା କରିଛନ୍ତି । ପ୍ରଥମ ପର୍ଯ୍ୟାୟ ସଂଗ୍ରାମ ଆରମ୍ଭ ହୁଏ କୃଷ୍ଣ ଭଂଜଙ୍କ ଦ୍ୱାରା ଓ ଶେଷ ହୁଏ ଧନଞ୍ଜୟ ଭଞ୍ଜଙ୍କର ମୃତ୍ୟୁ ସହ । ୧୭୫୩ ସାଲରୁ ୧୮୩୫ ସାଲ ପର୍ଯ୍ୟନ୍ତ । ଧନଞ୍ଜୟ ଭଂଜଙ୍କର ମୃତ୍ୟୁ ସହ ବ୍ରିଟିଶମାନେ ଭଂଜରାଜବଂଶ ଶାସନକୁ ସମାପ୍ତ ଘୋଷଣା କରି ଘୁମୁସର ରାଜ୍ୟକୁ ଗଞ୍ଜାମ ଜିଲ୍ଲା ପ୍ରଶାସନାଧୀନ କରାଗଲା ବୋଲି ଆଦେଶନାମା ପ୍ରକାଶ କଲେ ।

କିଭଳି ଘୁମୁସରର ପ୍ରଥମ ବିଦ୍ରୋହୀ ରାଜା କୃଷ୍ଣ ଭଂଜ ପ୍ରଥମେ ଫରାସୀମାନଙ୍କ ବିରୁଦ୍ଧରେ ଏବଂ ପରେ ପରେ ଇଂରେଜମାନଙ୍କ ବିରୁଦ୍ଧରେ ଘମାଘୋଟ ଲଢ଼େଇ କରିଥିଲେ, ସେହି କଥାର ଅବତାରଣା କଲେ ଏବେ ବି ଦେହ ଶୀତେଇ ଉଠେ । ଆଜିଭଳି ଲାଗୁଛି । ୧୭୫୪ ରୁ ୧୭୬୩ ସାଲ ମଧ୍ୟରେ ଘଟିଯାଇଥିବା କେତୋଟି ରୋମାଞ୍ଚକର ଘଟଣା ମଧ୍ୟରୁ ଗୋଟାଏ ଘଟଣା ହେଲା, ସଦୂର ହାଇଦ୍ରାବାଦରୁ ଫରାସୀ ଆଧିପତ୍ୟ ଜାହିର କରିବା ନିମନ୍ତେ ମହାପରାକ୍ରମୀ ଜେନେରାଲ ଡ଼ି.ବୁସି ସାମରିକ ଅଭିଯାନ ଚଳାଇ ଆସିବା ପଥରେ ବାବୁଲି ରାଜ୍ୟର ରାଜାରାମା ରାଓଙ୍କ ବ୍ୟତୀତ କୌଣସି ଦେଶୀୟ ରାଜା ତାଙ୍କର ପଥରୋଧ କରି ନଥିଲେ । ବିଶାଖାପାଟଣା, ବିଜୟନଗର, ପାରଳାଖେମୁଣ୍ଡି ତଥା ମହୁରୀର ରାଜାମାନେ ଡ଼ି. ବୁସିଙ୍କଠାରେ ଆତ୍ମସମର୍ପଣ କରି ଫରାସୀ ଆଧିପତ୍ୟ ସ୍ୱୀକାର କଲେ । କିନ୍ତୁ ଘୁମୁସରର ରାଜା କୃଷ୍ଣ ଭଂଜ ତାଙ୍କର ପ୍ରତିରୋଧ କଲେ । ଫଳରେ ମୁହାଁ ମୁହିଁ ଯୁଦ୍ଧରେ ବାଲିପଦର ନିକଟସ୍ଥ ବାର୍ଭିଣ ବଣରେ ତିନିଶହରୁ ଊର୍ଦ୍ଧ୍ୱ ଫରାସୀ ସୈନ୍ୟ ନିହତ ହେଲେ । ଉଭୟ ରାଜା ଓ ପ୍ରଜାମାନେ ସମ୍ମିଳିତ ଭାବେ ଫରାସୀମାନଙ୍କ ସହ ଯୁଦ୍ଧ କଲେ । ଫରାସୀଙ୍କର ଆଧିପତ୍ୟକୁ ଗ୍ରହଣ କଲେ ନାହିଁ । ୧୭୫୯ ସାଲରେ ପଣ୍ଡିଚେରୀର ଗଭର୍ଣ୍ଣରଙ୍କର ଆଦେଶ କ୍ରମେ ଜେନେରାଲ ବୁସି ଓ ତାଙ୍କର ଫରାସୀ ସେନାବାଳ ଅପସାରଣ ପରେ ଘୁମୁସରରେ କିଛି କାଳ ପାଇଁ

ଆଶ୍ୱସ୍ତି ଆସିଲା । ପୁନଶ୍ଚ ୧୭୬୬ ସାଲରେ ମାଡ୍ରାଜ ପ୍ରେସିଡ଼େନ୍‌ସି ପ୍ରଶାସନ ତରଫରୁ ଉଡ୍‌ୱାର୍ଡ଼ କାଟସ୍‌ଫୋର୍ଡ଼ ଇଂରେଜ ଆଧିପତ୍ୟ ଜାହିର କରିବା ଉଦ୍ଦେଶ୍ୟରେ ଇଂଜିନିୟର ଓ ରେସିଡ଼େଣ୍ଟ ଭାବେ ଗଞ୍ଜାମରେ ଅବସ୍ଥାପିତ ହେଲେ । କିନ୍ତୁ ଘୁମୁସରର କୃଷ୍ଣଭଂଜ ଓ ତାଙ୍କର ପ୍ରଜାମାନେ ସେହି ଆଧିପତ୍ୟକୁ ଅମାନ୍ୟ କରି ୧୭୫୩ ସାଲରେ ତାଙ୍କର ମୃତ୍ୟୁଯାଏଁ ବିଦ୍ରୋହକୁ ଅବ୍ୟାହତ ରଖିଲେ । ସେହିଭଳି ତାଙ୍କର ପୁତ୍ର ବିକ୍ରମ ଭଂଜ ୧୭୭୩ ସାଲରୁ ୧୭୮୨ ସାଲ ଯାଏଁ ବିଦ୍ରୋହ ଚାଲୁ ରଖିଲେ । ତାଙ୍କର ମୃତ୍ୟୁ ଅନ୍ତେ ସେହି ବିଦ୍ରୋହକୁ ତାଙ୍କର ଭାତୃଷ୍ପୁତ୍ର ଶ୍ରୀକର ଭଂଜ ଓ ଶ୍ରୀକରଙ୍କର ପୁତ୍ର ଧନଞ୍ଜୟ ଭଂଜ ଅବ୍ୟାହତ ରଖିଲେ । ୧୮୩୫ ସାଲରେ ଭଂଜ ବଂଶ ଶାସନକୁ ବ୍ରିଟିଶମାନେ ଉଚ୍ଛେଦିତ ଘୋଷଣା କଲେ ।

ତତପରେ ଘୁମୁସର ବିଦ୍ରୋହର ନେତୃତ୍ୱ ନେଲେ କମଳଲୋଚନ ଦୋରା ବିଶୋୟୀ (୧୮୩୫-୧୮୪୪ ସାଲ) ଓ ତାଙ୍କର ଭାତୃଷ୍ପୁତ୍ର ଚକରା ବିଶୋୟୀ (୧୮୪୪-୧୮୫୬ ସାଲ) ଏବଂ ଅନ୍ୟମାନେ ୧୮୫୬-୧୮୬୬ ସାଲ ଯାଏଁ । ଦୋରା ଓ ଚକରା ଜାତିରେ ଥିଲେ ବେଣିଆ କନ୍ଧ । ୧୮୧୫ ରୁ ୧୮୧୮ ସାଲ ଯାଏଁ ରାଜାଙ୍କର ରାଜ୍ୟରେ ଅନୁପସ୍ଥିତି ଅବସରରେ ଦୋରା ବିଶୋୟୀ କୁଲାଦ୍ରର ଏକ ନାବାଳିକା କନ୍ୟାକୁ 'ରାଜାପିଲା' କହି ଘୁମୁସରର ରାଜ୍ୟ ଭାର ଗ୍ରହଣ କରି ଜିଲ୍ଲା ପ୍ରଶାସନକୁ ଧୂଆଁ ବୁଲାଇ ଉକ୍ତ ପିଲାର ଅଭିଭାବକ ଭାବେ ଶାସନ କଲେ । ସେତେବେଳେ ୧୮୧୭ ସାଲରେ ଖୋର୍ଦ୍ଧାର ବିଦ୍ରୋହୀ ବକ୍ସି ଜଗବନ୍ଧୁଙ୍କ ଘୁମୁସରରେ ସେ ଆଶ୍ରୟ ଦେଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ସେହି ବର୍ଷ ଚାରି ହଜାର କନ୍ଧ ପାଇକମାନଙ୍କୁ ମେଳି କରି ସେ ଖୋର୍ଦ୍ଧା ପ୍ରେରଣ କଲେ । ଏହି ପାଇକ ମେଳି ବାଣପୁରରେ ଧ୍ୱଂସର ତାଣ୍ଡବ ଲୀଳା ଭିଆଇ ସେଠାରୁ ପୁରୀ ଯାତ୍ରାକରି ଖୋର୍ଦ୍ଧା ବିଦ୍ରୋହର ସୂତ୍ରପାତ କରାଇଲେ । ତତପରେ ସେଠାରୁ କଟକ ଯାତ୍ରା କରି ବିଦ୍ରୋହର କ୍ଷେତ୍ରକୁ ସଂପ୍ରସାରିତ କଲେ । କୁହାଯାଏ ଯେ ଯଦି ଘୁମୁସରର ଏହି କନ୍ଧ ପାଇକ ମେଳି ଖୋର୍ଦ୍ଧା ଯାଇ ନଥାନ୍ତେ, ତେବେ ୧୮୧୭ ସାଲର ଖୋର୍ଦ୍ଧା ବିଦ୍ରୋହର ସୂତ୍ରପାତ ହୁଅନ୍ତା ନାହିଁ । ୧୮୧୯ ସାଲରେ ଘୁମୁସରରୁ ବିତାଡ଼ିତ ହୋଇ ଦୋରା ବିଶୋୟୀ ବଣ ପର୍ବତରେ ଆଶ୍ରୟ ନେଇ ଇଂରେଜ ଶାସନ ବିରୁଦ୍ଧରେ ବ୍ୟାପକ ଜନମେଳିର ସଂଗଠନ ଓ ଆୟୋଜନ କରିବା ଅବସରରେ ତାଙ୍କର ପୁତୁରା ଚକରା ବିଶୋୟୀ ତାଙ୍କଠାରୁ ଯୁଦ୍ଧବିଦ୍ୟା ଶିକ୍ଷାକରି ଗରିଲା ଯୁଦ୍ଧ କୌଶଳରେ ବିଶେଷ ଜ୍ଞାନ ଓ ନିପୁଣତା ହାସଲ କଲେ । ଘୁମୁସରର ସମଗ୍ର ପାର୍ବତ୍ୟ ଅଞ୍ଚଳରେ କମଳଲୋଚନ ଦୋରା ବିଶୋୟୀ ବୈଦେଶିକ ଶାସନ ବିରୁଦ୍ଧରେ ଘମାଘୋଟ ଲଢ଼େଇ ଆରମ୍ଭ କଲେ । ପରିଶେଷରେ ଅନୁଗୁଳର ରାଜା ସୋମନାଥ ସିଂହ କେବଳ ପାଞ୍ଚହଜାର ଟଙ୍କାର ଅର୍ଥ ପୁରସ୍କାର ଲାଳସାରେ ବିଦ୍ରୋହୀ ନେତା ଦୋରା ବିଶୋୟୀଙ୍କୁ ବ୍ରିଟିଶ ଶାସକମାନଙ୍କ ହସ୍ତରେ ସମର୍ପଣ କରାଇ ଏକ ଜଘନ୍ୟ ଦେଶଦ୍ରୋହ କାର୍ଯ୍ୟ ସମାପନ କରି ଇତିହାସର ପୃଷ୍ଠାରେ ଚିର ନିନ୍ଦିତ ହେଲେ । ୧୮୩୫ ରୁ ୧୮୪୬ ଯାଏଁ ଦୋରା ବିଶୋୟୀଙ୍କର ଦୃଢ଼ ନେତୃତ୍ୱରେ କନ୍ଧମାନ ଅଞ୍ଚଳରେ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହର ବହ୍ନି ଜଳି ଉଠିଲା । ୧୮୪୬ ସାଲରେ ମାଡ୍ରାଜ ନିକଟସ୍ଥ ଗୁତି ସହରର କାରାଗାରରେ ରାଜକୀୟ ବନ୍ଦୀ ଭାବେ କମଳଲୋଚନ ମୃତ୍ୟୁବରଣ କଲାପରେ ତାଙ୍କର ପୁତୁରା ଚକରା କନ୍ଧ ବିଦ୍ରୋହର ନେତୃତ୍ୱ ନେଲେ । ୧୮୪୬ ରୁ ୧୮୫୬ ଯାଏଁ ସମଗ୍ର ଦକ୍ଷିଣ ପଶ୍ଚିମ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଚକରା ବିଶୋୟୀ ବ୍ୟାପକ ଗଣବିଦ୍ରୋହ ସଂଗଠନ କଲେ । ତାଙ୍କର ବିଦ୍ରୋହ ସୂତ୍ରପାତ ନିମନ୍ତେ କେତୋଟି କାରଣ ହେଲା (୧) ଭଂଜରାଜ ପରିବାରକୁ ଘୁମୁସରର ସିଂହାସନରେ ପୁନରପି ଆରୁଢ଼ କରାଇବା, (୨) ମେରିଆ ନରମେଧ ପ୍ରଥାକୁ ଚାଲୁ ରଖିବା (୩) ନିଜ ପରିବାରର ଅପହୃତ ସମସ୍ତ ସୁବିଧା, ସୁଯୋଗ ଓ ଅଧିକାରକୁ ପୁନଶ୍ଚ ହାସଲ କରିବା ଏବଂ (୪) ଦେଶମାତୃକା ବକ୍ଷରୁ ଗୋରା ଶାସନ କର୍ତ୍ତୃତ୍ୱକୁ ହଟାଇବା । ପିତାମ୍ବର ଭଂଜ ନାମକ ଏକ ରାଜପୁତ୍ରକୁ ଘୁମୁସରର ଖାଲିଥିବା ସିଂହାସନରେ ଆସୀନ କରିବା ଯୋଗୁଁ ଚକରା ବିଶୋୟୀ ମୁଖ୍ୟତଃ ବିଦ୍ରୋହ ଆରମ୍ଭ କଲେ । ଏହି ରାଜପୁତ୍ରକୁ କନ୍ଧମାନେ ଘୁମୁସରର ରାଜାଭାବେ ବିଶ୍ୱାସ କରୁଥିଲେ, କିନ୍ତୁ ପରିଶେଷରେ ଏହି ରାଜପୁତ୍ର ଅବା ''ରାଜପିଲା'' ବଣ ଜଙ୍ଗଲରେ ଚକରାଙ୍କ ସହ ବୁଲି ବୁଲି କ୍ଳାନ୍ତ ଅନୁଭବ କରି ଏବଂ ଚକରାଙ୍କର ଅଭିଭାବକତ୍ୱରେ ଅତିଷ୍ଠ ହୋଇ ତାଙ୍କର ପକ୍ଷ ପରିତ୍ୟାଗ କରି ବ୍ରିଟିଶ୍ ସରକାରୀ ପକ୍ଷ ଗ୍ରହଣ ପୂର୍ବକ ପେନ୍‌ସନ ପ୍ରାପ୍ତ ହୋଇ ଆତ୍ମସନ୍ତୋଷରେ ଜୀବନର ଅବଶିଷ୍ଟ ସମୟ ଅତିବାହିତ କଲେ । ଏହି ରାଜପୁତ୍ର ପିତାମ୍ବର ଭଂଜଙ୍କର ଏତାଦୃଶ ଆଚରଣରେ ଚକିତ କି ବିସ୍ମିତ ନହୋଇ ଦ୍ୱିଗୁଣିତ ମନୋବଳ ସହ ସରକାରୀ ବିରୋଧୀ ଆନ୍ଦୋଳନକୁ ଚକରା ବିଶୋୟୀ ବଳବତ୍ତର କଲେ । ଜନଗଣ ତଥା କରଦ ରାଜନ୍ୟ ମଣ୍ଡଳୀଙ୍କର ପରୋକ୍ଷ ଓ ପ୍ରତ୍ୟକ୍ଷ ସାହାଯ୍ୟ ଓ ସହଯୋଗ ଲାଭ କରି ଅପୂର୍ବ ବୀର ଦର୍ପ ଓ ଉଦ୍ଦୀପନାରେ ଚକରା ବିଶୋୟୀ ଇଂରେଜ କର୍ତ୍ତୃତ୍ୱ ଆରୋପକୁ ପ୍ରତିରୋଧକରି ବ୍ୟାପକ ଗଣ ଆନ୍ଦୋଳନକୁ ତେଜିୟାନ କଲେ । ତାଙ୍କର ସଂଗ୍ରାମ କ୍ଷେତ୍ରରେ ଅନ୍ତର୍ଭୁକ୍ତ ଥିଲା ଘୁମୁସର, ବୌଦ୍ଧ, ଅନୁଗୁଳ, ସୋନପୁର, ମଦନପୁର, ଭରତପୁର, ତେଲନଦୀ ଉପତ୍ୟକା, କଳାହାଣ୍ଡି, ଜୟପୁର, ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ରାଜ୍ୟମାନ । ସୀମିତ ସମ୍ବଳ ସତ୍ତ୍ୱେ ସେ ବ୍ରିଟିଶ୍ ଶାସନର ଶକ୍ତିଶାଳୀ ଭିତ୍ତିକୁ ଦୋହଲାଇଦେଲେ । ଫଳତଃ ଗୋରା ଇଂରେଜ ଶାସକମାନଙ୍କ ମଧ୍ୟରେ ସେ ଘୋର ଆତଙ୍କ ଓ ଆଶଙ୍କା ସୃଷ୍ଟି କଲେ । ତାଙ୍କର ନାମ ଶୁଣିଲେ ଶାସକବର୍ଗ ଆତଙ୍କିତ ହେଉଥିଲେ । ସମସ୍ତ ପ୍ରକାରର ଉଦ୍ୟମ ସତ୍ତ୍ୱେ ଚକରାଙ୍କର ବିଦ୍ରୋହକୁ ସରକାର ଦମନ କରି ପାରିଲେ ନାହିଁ କି ତାଙ୍କୁ ଗିରଫ କରିପାରିଲେ ନାହିଁ । ତାଙ୍କୁ ଧରିବା ପାଇଁ ସରକାରଙ୍କର ସମସ୍ତ ଯୋଜନା, ଆୟୋଜନ ଓ କୌଶଳ ଶୋଚନୀୟ ଭାବେ ବ୍ୟର୍ଥ ହେଲା । ସେ ବୋଧହୁଏ ଏକମାତ୍ର ପ୍ରତିରୋଧାତ୍ମକ ସ୍ୱାଧୀନତା ସଂଗ୍ରାମୀ, ଯାହାଙ୍କୁ କି ବ୍ରିଟିଶ୍ ସରକାର ଗିରଫ କରିବାକୁ ଆଦୌ ସକ୍ଷମ ହୋଇ ପାରି ନଥିଲେ । ତାଙ୍କୁ ଧରିବା ନିମନ୍ତେ ସରକାର ବାରଂ ବାର ଅର୍ଥ ପୁରସ୍କାର ଘୋଷଣା କଲେ । ତଥାପି ଲୋକଙ୍କ ଉପରେ ଏହି ଘୋଷଣାର କୌଣସି ପ୍ରଭାବ ପଡ଼ି ନଥିଲା । ଅର୍ଥଲୋଭ ଲାଳସାରେ କେହି ତାଙ୍କୁ ସରକାରଙ୍କଠାରେ ଧରାଇ ଦେବା ନିମନ୍ତେ ଚାହିଁ ନଥିଲେ । ସର୍ବ ଶ୍ରେଣୀୟ ଲୋକଙ୍କର ସ୍ନେହ ଓ ବିଶ୍ୱାସଭାଜନ ହୋଇ ସେ ଅବାଧରେ ବିଭିନ୍ନ ଅଞ୍ଚଳ ଭ୍ରମଣ କରି ସରକାରଙ୍କ ବିରୁଦ୍ଧରେ ଗଣ ଆନ୍ଦୋଳନ ସଂଗଠନ କରୁଥିଲେ । ସମ୍ଭବତଃ ତାଙ୍କର ସାମରିକ

ସମର୍ଥକମାନେ ସର୍ବତ୍ର ସନ୍ତ୍ରାସ ସୃଷ୍ଟି କରି ହିଂସା ଓ ଲୁଣ୍ଠନ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । ଚକରା ବିଶୋୟୀଙ୍କର ଯୁଦ୍ଧ କୌଶଳ ତଥା ସରକାରଙ୍କର ଚକ୍ଷୁରେ ଧୂଳିଦେଇ ଆୟୋଜିତ ବ୍ୟୁହମାନଙ୍କରୁ ଚତୁରତା ସହ ଖସି ପଳାଇ ଯିବାର ପାରଙ୍ଗମତା ପ୍ରଦର୍ଶନରେ ତତ୍କାଳୀନ ଭାରତର ବଡ଼ଲାଟ ଲର୍ଡ଼ ଡେଲହାଉସୀ ଅତ୍ୟନ୍ତ ବିସ୍ମିତ ଓ ଚକିତ ହୋଇଥିଲେ । କୌଣସି ଉପାୟରେ ଚକରାଙ୍କୁ ଧରିବା ପାଇଁ ସେ ଏପ୍ରେଲ ୧୮୪୮ ରେ ମାନ୍ଦ୍ରାଜ ପ୍ରେସିଡ଼େନସି ପ୍ରଶାସନକୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ଚକରାଙ୍କର ସଂପର୍କରେ ସେ ଇଷ୍ଟଇଣ୍ଡିଆ କଂପାନୀର ବୋର୍ଡ଼ ଅଫ୍ କଣ୍ଟ୍ରୋଲର ପ୍ରେସିଡ଼େଣ୍ଟଙ୍କ ନିକଟକୁ ଏକ ପତ୍ରରେ ଉଲ୍ଲେଖ କରିଥିଲେ, ''ଚକରା ବିଶୋୟୀ ହେଉଛନ୍ତି ଜଣେ ଦୁଃସାହସୀ ବିଦ୍ରୋହୀ । ତାଙ୍କୁ ପର୍ବତ କନ୍ଦରରୁ ଉପତ୍ୟକା ଇଲାକା ପର୍ଯ୍ୟନ୍ତ ଖୋଜା ଚାଲିଛି । ତଥାପି ତାଙ୍କର ସନ୍ଧାନ ପାଇବା କଷ୍ଟକର ହୋଇ ପଡ଼ିଛି । ବୋଧହୁଏ ସେ ବଣଜଙ୍ଗଲର ନିଭୃତ ଘଞ୍ଚ ଦେଶରେ ଆତ୍ମଗୋପନ କରି ରହିଛନ୍ତି ।'' ସେ ପୁଣି ସେଥିରେ ଲେଖିଛନ୍ତି - '' ଯଦିଚ ବର୍ତ୍ତମାନ ଚକରାଙ୍କୁ ଧରିବା କଷ୍ଟକର, ତଥାପି ବି ବିନେନା ଦିନେ ତାଙ୍କୁ ଓ ତାଙ୍କର ଅନୁଧ୍ୟାୟୀମାନଙ୍କୁ ଧରାଯାଇ ସମଗ୍ର ଉପଦ୍ରୁତ ଅଞ୍ଚଳମାନଙ୍କରେ ଶାନ୍ତି ଓ ସ୍ଥିରତା ନିଶ୍ଚିତଭାବେ ସ୍ଥାପନା କରାଯିବ'' । ଜଣେ ବିଦ୍ରୋହୀଙ୍କର ସଂପର୍କରେ ଲର୍ଡ଼ ଡେଲହାଉସୀଙ୍କ ଭଳି ଭାରତର ଜଣେ ବଡ଼ଲାଟ ଇଷ୍ଟଇଣ୍ଡିଆ କଂପାନୀର ବୋର୍ଡ଼ ଅଫ କଣ୍ଟ୍ରୋଲର ପ୍ରେସିଡ଼େଣ୍ଟଙ୍କ ନିକଟକୁ ଏଭଳି ଏକ ଗୁପ୍ତ ବିବରଣୀ ପଠେଇ ଥିବା ଅତ୍ୟନ୍ତ କୌତୁହଳମୟ ଓ ବିସ୍ମୟକର ମନେହୁଏ । ବଡ଼ଲାଟଙ୍କର ଦୃଷ୍ଟି ଆକର୍ଷଣ କରି ଚକରା ବିଶୋୟୀ ଭାରତର ଜଣେ ଅସାଧାରଣ ଜାତୀୟ ବିଦ୍ରୋହୀ ନେତାଭାବେ ସର୍ବତ୍ର ସ୍ୱୀକୃତ ଓ ସମ୍ମାନିତ ହୋଇଥିଲେ । ଏହା ତାଙ୍କ ପାଇଁ କାହିଁକି, ସମଗ୍ର ଓଡ଼ିଆ ଜାତି ପାଇଁ କମ ଗର୍ବ ଓ ଗୌରବର ବିଷୟ ନଥିଲା ।

ବିଦ୍ରୋହୀ ନେତା ଚକରାଙ୍କୁ ଧରିବା ନିମନ୍ତେ ସମସ୍ତ ସରକାରୀ ଉଦ୍ୟମ ଅବ୍ୟାହତ ରହିଲା । ତଥାପି ଏହିସବୁ ଉଦ୍ୟମକୁ ଖଣ୍ଡିଭୂତ ଓ ପଣ୍ଡକରି ଚକରା ତାଙ୍କର ସଂଗ୍ରାମକୁ ୧୮୫୬ ଯାଏଁ ଦଶବର୍ଷ ଧରି ପରମ ନିଷ୍ଠା, ଶୌର୍ଯ୍ୟ ଓ ଧୈର୍ଯ୍ୟର ସହ ଚାଲୁ ରଖିଥିଲେ । ୧୮୫୬ ରେ ଓଡ଼ିଶାର କମିଶନର ଜି.ଏଫ. କାକବର୍ଣ୍ଣ ଲେଖିଥିଲେ ଯେ - '' ଏହା ନିଶ୍ଚିତ କଥା ଯେ ଚକରା ବିଶୋୟୀ ତାଙ୍କର ପୂର୍ବ ଗୋପନୀୟ ସ୍ଥାନ ଛାଡ଼ି ଭାରତର କେନ୍ଦ୍ର ଭାଗକୁ ଚାଲି ଯାଇଛନ୍ତି, ଯେଉଁଠିକି ତାଙ୍କୁ ପୂର୍ବରୁ କେହି ଚିହ୍ନି ନଥିବେ କି ଜାଣି ନଥିବେ କି ତାଙ୍କର ସେଠାରେ କୌଣସି ପ୍ରଭାବ ନଥିବ ।''

କାକବର୍ଣ୍ଣ ପୁନଶ୍ଚ ଲେଖିଛନ୍ତି ଯେ - '' ପ୍ରାୟ ୧୮ ମାସଧରି ଚକରା ବିଶୋୟୀଙ୍କର ସଂପର୍କରେ କିଛି ଶୁଣାଯାଏ ନାହିଁ । ଏପରିକି ତାଙ୍କର ସମର୍ଥକମାନଙ୍କ ବିଷୟରେ ମଧ୍ୟ ବିଶେଷ କିଛି ଶୁଣାଯାଏ ନାହିଁ । ସେମାନଙ୍କ ମଧ୍ୟରୁ କେତେଜଣ ଧରାପଡ଼ି କାରାଗାରରେ କାଳତିପାତ କରୁଛନ୍ତି ଏବଂ ଆଉ କେତେଜଣ ସମଗ୍ର କନ୍ଧମାଳ ଅଞ୍ଚଳରେ ବିକ୍ଷିପ୍ତ ଭାବେ ଆତ୍ମଗୋପନ କରିଛନ୍ତି । ଉପଦ୍ରୁତ ଅଞ୍ଚଳରୁ ଚକରାଙ୍କର ଆକସ୍ମିକ ଅନ୍ତର୍ଦ୍ଧାନ ଫଳରେ ସେହି ଅଞ୍ଚଳରେ ସଂପ୍ରତି ଶାନ୍ତି ଓ ସ୍ଥିରତା ପରିଲକ୍ଷିତ ହେଉଛି ।''

ଘୁମୁସରର ପ୍ରତିରୋଧାତ୍ମକ ମୁକ୍ତି ସଂଗ୍ରାମର ମୁଖ୍ୟନାୟକ ଚକରା ବିଶୋୟୀ ୧୮୫୭ର ସିପାହୀ ବିଦ୍ରୋହ ସଂଗଠନ ପୂର୍ବରୁ ଇହଲୀଳା ସମ୍ବରଣ କରି ସାରିଥିବା ଅନୁମାନ କରାଯାଏ । ଭାରତର ଉତ୍ତର ଓ ପୂର୍ବଭାଗରେ ସିପାହୀ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ ହେଉଥିବା ବେଳେ ଚକରା ବିଶୋୟୀ ଘୁମୁସରରେ କନ୍ଧ ଅଞ୍ଚଳର ବିଦ୍ରୋହର ରଙ୍ଗମଞ୍ଚରେ ଅନୁପସ୍ଥିତ ଥିଲେ । ଯେତେବେଳେ ବୀର ସୁରେନ୍ଦ୍ର ସାଏଙ୍କର ନେତୃତ୍ୱରେ ଗଣ୍ଡ ଜାତୀୟ ଆଦିବାସୀମାନେ ବିଦ୍ରୋହ କଲେ ଏବଂ ପରବର୍ତ୍ତୀ ରାଜାଙ୍କର ଇଂଗିତରେ କୋଲ ଜାତୀୟ ଆଦିବାସୀମାନେ ବିଦେଶୀ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ, ସେତେବେଳେ କନ୍ଧମାଳ ଅଞ୍ଚଳ ତଥା ଘୁମୁସର ଗାଦିର ଉପଦ୍ରୁତ ଅଞ୍ଚଳମାନଙ୍କରେ ଶାନ୍ତି ଓ ସ୍ଥିରତା ଥିବା ଲକ୍ଷ୍ୟ କରାଯାଇଥିଲା । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ୧୮୫୭ ରେ ସଂଗଠିତ ଜାତୀୟ ସିପାହୀ ବିଦ୍ରୋହ ସମୟକୁ ଚକରା ବିଶୋୟୀ ଜୀବିତ ନଥିଲେ ।

ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ ପ୍ରଭାତ ମୁଖାର୍ଜୀଙ୍କର ଭାଷାରେ- '' ଚକରା ବିଶୋୟୀ ଅର୍ବାଚୀନ କନ୍ଧ ମୁଠାମାନଙ୍କର ଦଳପତି ଥିବାରୁ ତଥା ତାଙ୍କର ଜନ୍ମ ଓ ପରିବାର ସଂପର୍କରେ ବିଶେଷ ଭାବେ କିଛି ଜଣା ନଥିବା ଯୋଗୁଁ ତାଙ୍କୁ ଉଦ୍ଦେଶ୍ୟମୂଳକ ଭାବେ ଇତିହାସ ପୃଷ୍ଠାରେ ଅବହେଳା ପ୍ରଦର୍ଶନ କରାଯାଇଅଛି । ଯଦି ତାଙ୍କର ସଂପର୍କରେ ସମ୍ୟକ ଜ୍ଞାନ ହାସଲ କରାଯାଏ, ତାହାହେଲେ ତାଙ୍କୁ ନିଶ୍ଚିତ ଭାବେ ବକ୍ସି ଜଗବନ୍ଧୁ ବିଦ୍ୟାଧର ଓ ସୁରେନ୍ଦ୍ର ସାଏଙ୍କ ସହ ସମ ସମ୍ମାନ ଓ ସମସ୍ଥାନ ଇତିହାସର ସ୍ତମ୍ଭରେ ଦିଆ ହୁଅନ୍ତା ।''

ଯଥାର୍ଥରେ କୁହାଯାଇଛି ଯେ- '' ଚକରା ବିଶୋୟୀଙ୍କର କୌଣସି ବ୍ୟକ୍ତିଗତ ଉଦ୍ଦେଶ୍ୟ କି ସ୍ୱାର୍ଥ ନଥିଲା । ତାଙ୍କର କକା ଦୋରା ବିଶୋୟୀଙ୍କର ବଚନ ପାଳନ ନିମନ୍ତେ ଭଞ୍ଜରାଜ ପରିବାରକୁ ପୁଣିଥରେ କ୍ଷମତାସୀନ କରିବା ନିମନ୍ତେ ସେ ପଣ କରିଥିଲେ । ନିଜ ବଂଶ ଅବା ପରିବାରର ଅପହୃତ ମର୍ଯ୍ୟାଦାକୁ ପୁନଃ ପ୍ରତିଷ୍ଠା ପାଇଁ ସେ ସଂକଳ୍ପବଦ୍ଧ ହୋଇଥିଲେ । ୧୮୪୬ ରୁ ୧୮୫୬ ଯାଏଁ ସେ ଅନବରତ ଓ ଅବିରାମ ଭାବେ ବ୍ରିଟିଶ ଶକ୍ତି ବିରୁଦ୍ଧରେ ତୁମୁଳ ପ୍ରତିରୋଧାତ୍ମକ ସଂଗ୍ରାମ କରିଥିଲେ ।''

ଚକରା ବିଶୋୟୀ ଏକ ରାଜନୈତିକ ଆଶ୍ରୟପ୍ରାର୍ଥୀ ଭାବେ ବଣ, ଜଙ୍ଗଲ, ପାହାଡ଼, ପର୍ବତ ଓ ମାଳ, କନ୍ଦରରେ ଇତଃସ୍ତତ ବିଚରଣ କଲେ । ସେ ଆଠଗଡ଼ରୁ ପାରଳାଖେମୁଣ୍ଡି ଓ ଅନୁଗୁଳରୁ ଘୁସର ଯାଏଁ ସମସ୍ତ ଅଞ୍ଚଳରେ ଅତ୍ୟନ୍ତ ବିସ୍ମୟକର ତଥା ରୋମାଞ୍ଚକର ଭାବରେ ନାହିଁ ନଥିବା ଗଣବିଦ୍ରୋହର ଭୟାବହ ତାଣ୍ଡବଲୀଳା ଭିଆଇ ଥିଲେ । ସରକାରଙ୍କର କ୍ଷମା ଘୋଷଣାକୁ ଉପେକ୍ଷା କରି ଏବଂ ପୁରସ୍କାର ଓ ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରି ଚକରା ଅପୂର୍ବ ସଂହତି ଓ ତ୍ୟାଗ ଭାବର ପରାକାଷ୍ଠା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ କନ୍ଧମାଳ ଅଞ୍ଚଳରେ ଉଲ୍ଲୋଳିତ ଗଣ ଆନ୍ଦୋଳନକୁ ବହୁଗୁଣିତ କରିଥିଲେ । କଟକର କମିଶନର, ଛୋଟ ନାଗପୁରର କମିଶନର ତଥା ଭାରତର ବଡ଼ଲାଟ ଲର୍ଡ଼ ଡେଲହାଉସୀ

ଚକରାଙ୍କୁ କୌଣସିମତେ ଧରିବା ନିମନ୍ତେ ସକଳ ପ୍ରକାରର ଉଦ୍ୟମକୁ ଅବ୍ୟାହତ ରଖିଥିଲେ । ପରନ୍ତୁ ଶହୀଦ ଜଗୁ ଦିୱାନଙ୍କ ଭଳି ଚକରା ବିଷୋୟୀ ଜଣେ ଅଜ୍ଞାତ ମୁକ୍ତି ସଂଗ୍ରାମୀ ରୂପେ ଏଯାଏଁ ଇତିହାସ ପୃଷ୍ଠାରେ ରହି ଆସିଥିଲେ ।

୧୮୪୬ ରୁ ୧୮୫୬ ଯାଏଁ ଓଡ଼ିଶାର ପ୍ରତିରୋଧାତ୍ମକ ସଂଗ୍ରାମୀମାନଙ୍କ ମଧ୍ୟରେ ସେ ଥିଲେ ସର୍ବାଧିକ ଅଗ୍ରଗଣ୍ୟ । ତାଙ୍କର ସାହସିକ ଅଭିଯାନ, ଦୁର୍ଦ୍ଧର୍ଷ କର୍ମକାଣ୍ଡ, ଅଦମ୍ୟ ବୀରତ୍ୱ, ଅସମାନ୍ୟ ଶକ୍ତି ଓ ଅସାଧାରଣ ବ୍ୟକ୍ତିତ୍ୱ ଓଡ଼ିଶାର ଇତିହାସରେ ଆଦୌ ପଟାନ୍ତର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ବୀର ଚକରା ତାଙ୍କର ଅଦ୍ୱିତୀୟ ଦେଶପ୍ରେମ ଓ ଅତୁଳନୀୟ ଦେଶାତ୍ମସଂଗ୍ରାମ ଯୋଗୁଁ ଓଡ଼ିଶା ତଥା ଭାରତର ପ୍ରତିରୋଧାତ୍ମକ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅତ୍ୟଧିକ ମହନୀୟ ଓ ଗୌରବମୟ ସ୍ଥାନ ଅଧିକାର କରିଛନ୍ତି ।

ବୀର ଚକରା ବିଷୋୟୀ ପରିଶେଷରେ କେନ୍ଦ୍ର ଭାରତର ଘଞ୍ଚ ଜଙ୍ଗଲରେ ଆକସ୍ମିକ ଭାବେ ଅନ୍ତର୍ଦ୍ଧାନ ହେଲେ ବୋଲି ସରକାରୀ କଥିପତ୍ରରେ ଉଲ୍ଲେଖିତ କରାଯାଇଛି । ସେ ବୋଧହୁଏ ଭାରତର ଏକମାତ୍ର ସ୍ୱାଧୀନତା ସଂଗ୍ରାମୀ ଯିଏ କି ଜୀବନର ଅନ୍ତିମ ମୁହୂର୍ତ୍ତ ଯାଏଁ ସରକାରଙ୍କ ଦ୍ୱାରା ଧରାପଡ଼ି ନଥିଲେ କି ଦବିଯାଇ ନଥିଲେ । ଦେଶମାତୃକାକୁ ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଆଜୀବନ ସଂଗ୍ରାମର ପଟାନ୍ତର ଦେଖିବାକୁ କ୍ୱଚିତ ମିଳେ । ଏଣୁ ସେ ଓଡ଼ିଶା କାହିଁକି, ସମଗ୍ର ଭାରତବାସୀଙ୍କର ଚିର ନମସ୍ୟ ଓ ସମ୍ମାନନୀୟ । ତାଙ୍କର ଏକନିଷ୍ଠ ଦେଶ ଭକ୍ତି ଓ ପ୍ରେମ ହେଉଛି ଅନନ୍ୟ ସାଧାରଣ । ଏଣୁ ତାଙ୍କୁ ଭାରତର ମହାନ୍ ସ୍ୱାଧୀନତା ସଂଗ୍ରାମୀ ଭାବେ ସାର୍ବଜନୀନ ମାନ୍ୟତା ଦିଆଯାଏ ।

ସଂପ୍ରତି ଉଭୟ ଦୋରା ଓ ଚକରା ବିଷୋୟୀ ଇତିହାସର କକ୍ଷରେ ଅବିସମ୍ବାଦିତ ଓ ଅବିବାଦୀୟ ବ୍ୟକ୍ତି ପୁଙ୍ଗବ ଅଟନ୍ତି । ଘୁମୁସର ତଥା ଦକ୍ଷିଣ ପଶ୍ଚିମ ଓଡ଼ିଶା (ଅନୁଗୁଳ, ବଉଦ, ସୋନପୁର, କନ୍ଧମାଳ, କଳାହାଣ୍ଡି, ଜୟପୁର, ପାରଳାଖେମୁଣ୍ଡି, ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ଆଦି ରାଜ୍ୟର ପାର୍ବତ୍ୟ ଓ ସମତଳ ଅଞ୍ଚଳ) ଥିଲା ସେମାନଙ୍କର ସଂଗ୍ରାମର ବିସ୍ତୃତ କ୍ଷେତ୍ର । ସେହି ସମଗ୍ର ଅଞ୍ଚଳରେ ଥିବା କନ୍ଧ ଆଦିବାସୀମାନଙ୍କ ମଧ୍ୟରେ ଗୋରା ଶାସନ ବିରୁଦ୍ଧରେ ଯେଉଁ ଅସାଧାରଣ ଓ ବ୍ୟାପକ ମେଳି ସଂଗଠନ କରି ବିଦ୍ରୋହର ବହ୍ନି ଦୀର୍ଘକାଳ ଧରି ସେମାନେ ପ୍ରଜ୍ୱଳନ କରିଥିଲେ ଭାରତ ସ୍ୱାଧୀନତା ସଂଗ୍ରାମରେ ତାର ପଟାନ୍ତର ଦେଖିବାକୁ ବିରଳ ।

---

ହିଲପାଟଣା,
ବ୍ରହ୍ମପୁର - ୭୬୦୦୦୫
ଗଞ୍ଜାମ

ଦେଶ ଦେଶ ବୋଲି କାହାକୁ ଡ଼ାକୁଛୁ
କହ ଦେଶ ତୋର କାହିଁରେ
ଦେଶତ ବିଦେଶୀ ଶୃଙ୍ଖଳରେ ବନ୍ଧା
ଖୋଜିଲେ ମିଳିବ ନାହିଁ ରେ ।

ରାଜା ବୋଲି ରାଜା-ଭୂତଟାକୁ ଡ଼ରି
ମିଛଟାରେ ହେଲୁ ବାଇ ରେ
ଡ଼ରି ଡ଼ରି ସାରା ଜୀବନଟା ଯିବ
ନୀରବରେ ଥିବୁ ଚାହିଁ ରେ ।

ତୁ ଏ ଦେଶ ରାଜା, ତୁ ଏ ଦେଶ ପ୍ରଜା
ତୋ ଉପରେ କେହି ନାହିଁରେ
ସ୍ୱରାଜ-ପଥରେ ଆଗେଇ ଗଲେତୁ
ସ୍ୱଦେଶକୁ ଯିବୁ ପାଇରେ ।

ଜାତୀୟ ପତାକା ଟେକି ଧର ଉଚେ
ଭାରତର ଜୟ ଗାଇରେ
ସେହି ତୋର ପିତା ସେହି ତୋର ମାତା
ସେହି ତୋର ବନ୍ଧୁ ଭାଇରେ

ହରେକୃଷ୍ଣ ମହତାବ

# ସ୍ୱାଧୀନତା ସଂଗ୍ରାମରେ ବାଲେଶ୍ୱର ଜିଲ୍ଲା

୧୮୮୫ ମସିହାରେ ଭାରତୀୟ କଂଗ୍ରେସ କମିଟି ଗଠିତ ହେବା ପରେ ବାଲେଶ୍ୱରରେ ରାଜନୈତିକ ଚେତନାର ସୂତ୍ରପାତ ହେଲା । 'ବାଲେଶ୍ୱର ଜାତୀୟ ସଭା' (Balasore National Society) ନାମରେ ଗୋଟିଏ ରାଜନୈତିକ ଅନୁଷ୍ଠାନ ଗଠିତ ହେଲା । ଏହି ଅନୁଷ୍ଠାନ ଭାରତୀୟ କଂଗ୍ରେସ ସହିତ ସଂପର୍କ ରଖି ବାଲେଶ୍ୱରର ଲୋକମାନଙ୍କୁ କଂଗ୍ରେସର ବାର୍ଷିକ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବଗୁଡ଼ିକ ବିଷୟରେ ଲୋକମାନଙ୍କୁ ଅବଗତ କରାଉଥିଲେ । ସେହି ଉଦ୍ଦେଶ୍ୟରେ 'ବାଲେଶ୍ୱର ଜାତୀୟ ସଭା'ର ପ୍ରତିନିଧିମାନେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଉଥିଲେ । ୧୮୮୬ ମସିହାରେ କଂଗ୍ରେସର କଲିକତା ଅଧିବେଶନରେ ଯୋଗ ଦେବା ପାଇଁ ରାଜା ବୈକୁଣ୍ଠ ନାଥ ଦେ, ଭଗବାନ୍ ଚନ୍ଦ୍ର ଦାସ ଓ ରମେଶ ଚନ୍ଦ୍ର ମଣ୍ଡଳଙ୍କୁ ସଭାର ପ୍ରତିନିଧି ରୂପେ ନିର୍ବାଚିତ କରାଯାଇଥିଲା । ପରବର୍ଷ ଭାରତୀୟ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ଯୋଗ ଦେବା ପାଇଁ ରେଭେରେଣ୍ଡ ଶାମ ସାହୁ ଓ ହରେକୃଷ୍ଣ ଦାସଙ୍କୁ ନିର୍ବାଚିତ କରାଯାଇଥିଲା । ଭାରତୀୟ କଂଗ୍ରେସର ଆଲାହାବାଦ (୧୮୮୮) ଅଧିବେଶନରେ ଯୋଗ ଦେବା ପାଇଁ ରମେଶ ଚନ୍ଦ୍ର ମଣ୍ଡଳ, ଶରତଚନ୍ଦ୍ର ମଣ୍ଡଳ, ଭଗବାନ୍ ଚନ୍ଦ୍ର ଦାସ, ଭୂୟାଁ ଅବ୍ଦୁସ ଶୋଭାନ ଖାଁ ପ୍ରମୁଖ ଯାଇଥିଲେ । ଏହି ଅଧିବେଶନ ପରେ ବାଲେଶ୍ୱର ଜାତୀୟ ସଭାରୁ କୌଣସି ପ୍ରତିନିଧି ଅନ୍ୟ କଂଗ୍ରେସ ଅଧିବେଶନ-ମାନଙ୍କରେ ଯୋଗ ଦେଇ ନଥିଲେ । କଂଗ୍ରେସ ଓଡ଼ିଶାରେ ଯେଉଁ ଜାତୀୟ ଭାବ ଓ ଉତ୍ସାହ ସୃଷ୍ଟି କରିଥିଲା, ତାହା କ୍ରମେ ମ୍ରିୟମାଣ ହୋଇଗଲା । କିନ୍ତୁ ଲୋକଙ୍କ ମନରେ ସୃଷ୍ଟି ହୋଇଥିବା ଜାତୀୟ ମନୋଭାବ ବିଲୀନ ହୋଇଯାଇନଥିଲା । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏହା ହେଲା ପ୍ରଥମ ପର୍ବ ।

### ବଙ୍ଗ-ଭଙ୍ଗ ଆନ୍ଦୋଳନ

ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ ହେଲା ୧୯୦୫ ମସିହାରେ । ଲର୍ଡ଼ କର୍ଜନଙ୍କ ବଙ୍ଗ ବିଭାଗ ଆଦେଶ ଯୋଗୁଁ ବଙ୍ଗ ଦେଶରେ ଯେଉଁ ତୁମୁଳ ଆନ୍ଦୋଳନର ସୃଷ୍ଟି ହେଲା, ତାହା ଭାରତର ସର୍ବତ୍ର ଇଂରେଜ ସରକାରଙ୍କ ବିଭେଦକାରୀ ନୀତିର ଏକ ନଗ୍ନ ଦୃଷ୍ଟାନ୍ତ ବୋଲି ଲୋକେ ମନେକଲେ । ସେହି ଦୃଷ୍ଟିରୁ ସ୍ୱଦେଶୀ ଆନ୍ଦୋଳନ ପରବର୍ତ୍ତୀ ପର୍ଯ୍ୟାୟର ଅସହଯୋଗ ଆନ୍ଦୋଳନର ଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱଦେଶୀ ଆନ୍ଦୋଳନ ଯୋଗୁଁ ଲୋକଙ୍କ ମନରେ ନୂତନ ରାଜନୈତିକ ଚେତନାର ସୃଷ୍ଟି ହେଲା । ବିଦେଶୀ ବସ୍ତ୍ର ଓ ବସ୍ତୁ ବର୍ଜନ କରିବା ପାଇଁ ଆନ୍ଦୋଳନ ଚାଲିଲା । 'ସ୍ୱଦେଶୀ' ଆନ୍ଦୋଳନ ସମୟରେ ବାଲେଶ୍ୱରରେ ବିଶେଷ କିଛି ଉଲ୍ଲେଖନୀୟ ଘଟଣା ଘଟି ନଥିଲା । ବିଦେଶୀ ବସ୍ତ୍ର ବର୍ଜନ ପାଇଁ ପ୍ରଚାର କରାଯାଇଥିଲା ଓ ତତ୍ ସଙ୍ଗେ ସଙ୍ଗେ କିଛି ସାଂଗଠନିକ କାର୍ଯ୍ୟ ମଧ୍ୟ କରାଯାଇଥିଲା ।

### କଂଗ୍ରେସ ଆନ୍ଦୋଳନ

୧୯୨୧ ମାର୍ଚ୍ଚ ମାସରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଉତ୍କଳ କଂଗ୍ରେସ କମିଟି ସ୍ଥାପିତ ହେଲା । ମାର୍ଚ୍ଚ ୨୪ ତାରିଖରେ ଗାନ୍ଧୀ ଓଡ଼ିଶାକୁ ଆସିଲେ । ମହାତ୍ମାଗାନ୍ଧୀଙ୍କ ଓଡ଼ିଶା ଆଗମନ ନବ-ପ୍ରତିଷ୍ଠିତ କଂଗ୍ରେସ ପକ୍ଷରେ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ଜନସାଧାରଣଙ୍କ ମଧ୍ୟରେ ମହାତ୍ମା ଗାନ୍ଧୀଙ୍କ ବାଣୀ ଅପୂର୍ବ ଉତ୍ସାହ ସୃଷ୍ଟି କରିଥିଲା । ଲୋକେ ବହୁ ସଂଖ୍ୟାରେ କଂଗ୍ରେସରେ ଯୋଗ ଦେଲେ । ମହାତ୍ମା ଗାନ୍ଧୀ ଭଦ୍ରକରେ ଗୋଟିଏ ବିରାଟ ଜନସଭାରେ ଭାଷଣ ଦେଇଥିଲେ ।

ନିଖିଳ ଉତ୍କଳ କଂଗ୍ରେସ କମିଟି ଅଧୀନରେ ଓଡ଼ିଶାର ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଜିଲ୍ଲା କଂଗ୍ରେସ କମିଟି ଦାୟିତ୍ୱରେ ରହିଲେ । ବାଲେଶ୍ୱରର କର୍ମୀମାନଙ୍କ ମଧ୍ୟରେ ନୀଳାମ୍ବର ଦାସ, ସୁବୋଧ ଚନ୍ଦ୍ର ଦେ, କରୁଣାକର ପାଣିଗ୍ରାହୀ, ବାଞ୍ଛାନିଧି ମହାନ୍ତି ପ୍ରମୁଖ ବିଶେଷ ଉଦ୍ୟୋଗୀ ଥିଲେ । ସେମାନଙ୍କର ଅକ୍ଳାନ୍ତ ପରିଶ୍ରମରେ ବାଲେଶ୍ୱର କଂଗ୍ରେସ କମିଟି ସୁସଂଗଠିତ ହୋଇଥିଲା ଓ କଂଗ୍ରେସ କାର୍ଯ୍ୟ ସୁଚାରୁ-ରୂପରେ ଚାଲିଥିଲା ।

ଅସହଯୋଗ ଆନ୍ଦୋଳନ ୧୯୨୧ ମସିହାରେ ଆରମ୍ଭ ହୋଇଥିଲା । ବାଲେଶ୍ୱର ଜିଲ୍ଲାରେ ଏହି ଆନ୍ଦୋଳନ ସୁସଂଗଠିତ ଭାବରେ ଚାଲିଥିଲା । ଭଦ୍ରଖ ସବ୍‌ଡ଼ିଭିଜନରେ କଂଗ୍ରେସ କମିଟିର ଦାୟିତ୍ୱ କବି-ବାଞ୍ଛାନିଧି ମହାନ୍ତିଙ୍କ ଉପରେ ନ୍ୟସ୍ତ ଥିଲା । ସେ କଂଗ୍ରେସ କର୍ମୀମାନଙ୍କୁ ଏପରି ଭାବରେ ସଂଗଠିତ କରିଥିଲେ ଯେ ଭଦ୍ରଖରେ ଅଦାଲତ ବର୍ଜନ କାର୍ଯ୍ୟ ଅପୂର୍ବ ଭାବରେ ସଫଳ ହୋଇଥିଲା । ସବ୍‌ଡ଼ିଭିଜନର କୌଣସି ଜମିଦାର ପ୍ରଜାମାନଙ୍କ ବିରୋଧରେ ଖଜଣା ବାକି ମକଦ୍ଦମା କରିନଥିଲେ । ବାଲେଶ୍ୱର ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ମଧ୍ୟ ସରକାରୀ ଅଦାଲତ

ଓ କଚେରୀ ବର୍ଜନ, ଗ୍ରାମପଞ୍ଚାୟତ ଗଠନ, ମଦ ଦୋକାନ ଓ ବିଲାତି ବସ୍ତ୍ର ଦୋକାନରେ ପିକେଟିଂ କାର୍ଯ୍ୟ ଜୋରସୋରରେ ଚାଲିଥିଲା । ବାଲେଶ୍ୱର ସଦର ସବ୍‌ଡ଼ିଭିଜନ ଅନ୍ତର୍ଗତ ଶ୍ରୀଜଙ୍ଗ ଗ୍ରାମ ପଞ୍ଚାୟତରେ ଜମି ଖରିଦ-ବିକ୍ରୀ ରେଜେଷ୍ଟ୍ରୀ ମଧ୍ୟ ହୋଇଥିଲା । ଅନେକ ସ୍ଥାନରେ କଂଗ୍ରେସ ଶାଖା କାର୍ଯ୍ୟାଳୟମାନ ଓ ଆଶ୍ରମମାନ ଖୋଲାଗଲା । ଓଡ଼ିଶାରେ ଗଢ଼ା ହୋଇଥିବା ୭ ଟି ପ୍ରଧାନ ଆଶ୍ରମ ମଧ୍ୟରୁ ୩ଟି ବାଲେଶ୍ୱର ଜିଲ୍ଲାର ବାଲେଶ୍ୱର, ସୋର ଓ ଭଦ୍ରଖରେ ସ୍ଥାପିତ ହୋଇଥିଲା ।

## ବିଦେଶୀ ବସ୍ତ୍ର ବର୍ଜନ

ବାଲେଶ୍ୱରରେ ବିଲାତି ବସ୍ତ୍ର ବର୍ଜନ କାର୍ଯ୍ୟକ୍ରମ ଖୁବ୍ ସଫଳ ହୋଇଥିଲା । କୁଲିମାନେ ବିଲାତି ବସ୍ତ୍ର ବସ୍ତା ବୋହି ଆଣିବା ପାଇଁ ମନା କରିଦେଲେ । କଂଗ୍ରେସ କର୍ମୀଙ୍କ ବିଲାତି ବସ୍ତ୍ର ଦୋକାନରେ ଧାରଣାଦେବା ଯୋଗୁଁ ବାଲେଶ୍ୱର ଜିଲ୍ଲାରେ ବିଲାତିବସ୍ତ୍ର ଆମଦାନୀ ଓ ବିକ୍ରୀ ପ୍ରାୟ ବର୍ଷେକାଳ ଏକବାରେ ବନ୍ଦ ହୋଇ ଯାଇଥିଲା । ହରେକୃଷ୍ଣ ମହତାବ, ବାଞ୍ଛାନିଧି ମହାନ୍ତି ଓ ଅନ୍ୟ ଅନେକ କର୍ମୀ ଗିରଫ ହୋଇ କାରାଦଣ୍ଡ ଭୋଗିଥିଲେ । ଚରଖା ପ୍ରସାର କାର୍ଯ୍ୟ ବହୁତ ଅଗ୍ରଗତି କରିଥିଲା ଓ ଚରଖା କ୍ରମେ ଜନପ୍ରିୟ ହୋଇ ଉଠିଥିଲା ।

## କନିକା ଆନ୍ଦୋଳନର ପ୍ରତିଧ୍ୱନି

୧୯୨୨ ମସିହାରେ ଦୁଇଟି ପ୍ରଧାନ ଘଟଣା ହେଲା - କଟକ ଓ ବାଲେଶ୍ୱରରେ ଘରପୋଡ଼ି ଓ କନିକା ପ୍ରଜା ଆନ୍ଦୋଳନ । ୧୯୨୨ ଗ୍ରୀଷ୍ମଋତୁ ଆରମ୍ଭରେ କଟକରେ ଓ ବାଲେଶ୍ୱରରେ ଘରପୋଡ଼ି ଆତଙ୍କ ଖେଳି ଯାଇଥିଲା । ପ୍ରତ୍ୟେକ ଦିନ ଦିନବେଳେ ଅଚାନକ ଘରେ ନିଆଁ ଲାଗିଯାଉଥିଲା । ନିଆଁ କିପରି ଲାଗୁଥିଲା ତାହା କେହି ଠିକ୍ କରି ପାରୁନଥିଲେ । ଲୋକେ ବିଶ୍ୱାସ କରୁଥିଲେ, ଲୋକଙ୍କୁ ଆତଙ୍କିତ କରି ସେମାନଙ୍କର ଦୃଷ୍ଟି କଂଗ୍ରେସ ଆନ୍ଦୋଳନରୁ ଦୂରେଇ ନେବା ପାଇଁ ଏହା ପୋଲିସର ଏକ ଖେଳ ଥିଲା । ସେ ଯାହାହେଉ ମହତାବବାବୁ ବାଲେଶ୍ୱରର ମାଜିଷ୍ଟ୍ରେଟ ଓ ଏସ୍.ପି.ଙ୍କ ସହିତ ଆଲୋଚନା କରି ଲୋକଙ୍କର ଏହି ଆତଙ୍କ ଦୂର କରିଥିଲେ ।

କନିକା ଜମିଦାରୀ ଦୁଇ ଭାଗରେ ବିଭକ୍ତ ଥିଲା । କଟକ ଜିଲ୍ଲାରେ ଥିବା କନିକା ଜମିଦାରୀର ନାମ ଚୌମୁଖା ଥିଲା । ବାଲେଶ୍ୱର ଜିଲ୍ଲାରେ ଥିବା ଜମିଦାରୀ ବାକି ଅଂଶ ପଞ୍ଚମୁଖା ନାମରେ ପରିଚିତ ଥିଲା । କନିକା ରାଜା ପ୍ରଜାମାନଙ୍କ ଠାରୁ ନାନା ପ୍ରକାର ବେଆଇନ୍ କର ଆଦାୟ କରୁଥିଲେ । ଜମିଦାରୀର ଧନୀ କୃଷକମାନଙ୍କ ଠାରୁ ଧାନ କିଣି ଉଚ୍ଚଦରରେ ପ୍ରଜାଙ୍କୁ ବିକ୍ରି କରୁଥିଲେ । ପ୍ରଜାଙ୍କ ଆପତ୍ତି ସତ୍ତ୍ୱେ ଜମିର କର ଅନ୍ୟାୟ ଭାବରେ ବଢ଼ାଇ ଦେଲେ । ଏଥି ଯୋଗୁଁ ରାଜା ଓ ପ୍ରଜାଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହେଲା । କିନ୍ତୁ ରାଜା ଏହି ସଂଘର୍ଷକୁ ରାଜନୈତିକ ରୂପ ଦେଇ ସରକାରୀ ଉଚ୍ଚ କର୍ମକର୍ତ୍ତାଙ୍କୁ ବୁଝାଇ ଦେଲେ ଯେ କଂଗ୍ରେସ ନେତାମାନଙ୍କ ପ୍ରରୋଚନାରେ ପ୍ରଜା ଆନ୍ଦୋଳନ ଚାଲିଛି । ଫଳରେ ସରକାର ଏହି ଆନ୍ଦୋଳନକୁ ଦବାଇବା ପାଇଁ ପୋଲିସ ଫୌଜ ପଠାଇଲେ । ପୋଲିସ ଚୌମୁଖା ଅଞ୍ଚଳରେ ପ୍ରଜାଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲେ । ସୌଭାଗ୍ୟ ବଶତଃ ବାଲେଶ୍ୱର ଜିଲ୍ଲାର ପଞ୍ଚମୁଖା ଅଞ୍ଚଳ ଶାନ୍ତ ଥିଲା । ଭଦ୍ରଖର ଏସ୍.ଡ଼ି.ଓ. ଭଦ୍ରଖ ଅଞ୍ଚଳରେ କୌଣସି ସାଧାରଣ ସଭା କରିବା ପାଇଁ ନିଷେଧ କରି ୧୪୪ ଧାରା ଜାରି କରିଥିଲେ । ସେହି ସମୟରେ ଉତ୍କଳ କଂଗ୍ରେସ ସଭାପତି ପଣ୍ଡିତ ଗୋପବନ୍ଧୁ ଦାସ ଓ ସମ୍ପାଦକ ଭାଗିରଥୀ ମହାପାତ୍ର ପୂର୍ବରୁ ସ୍ଥିର ହୋଇଥିବା ଗୋଟିଏ ସଭାରେ ଯୋଗ ଦେବା ପାଇଁ ଭଦ୍ରଖ ଯାଇଥିଲେ । ୧୪୪ ଧାରା ଅମାନ୍ୟ କରିଥିବା ଅଭିଯୋଗରେ ଭଦ୍ରଖର ଏସ୍.ଡ଼ି.ଓ. ଉଭୟ ନେତାଙ୍କୁ ଗିରଫ କଲେ । ବାଲେଶ୍ୱରରେ ସେମାନଙ୍କର ବିଚାର ହୋଇ ପ୍ରତ୍ୟେକଙ୍କୁ ୬ ମାସ କାରାଦଣ୍ଡ ଆଦେଶ ଦିଆଯାଇଥିଲା । କନିକା ଆନ୍ଦୋଳନ ସମ୍ପର୍କରେ ମହତାବ ବାବୁ ମଧ୍ୟ ଜୁନ୍ ୧୯୨୨ ମସିହାରେ ୧ ବର୍ଷ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ ।

ଏ ବର୍ଷର ଆଉ ଗୋଟିଏ ବିଶିଷ୍ଟ ଘଟଣା ହେଲା, ବାଲେଶ୍ୱର ଜିଲ୍ଲାବୋର୍ଡ଼ ନିର୍ବାଚନରେ କଂଗ୍ରେସ ଦଳର ବିଜୟ । ମହତାବବାବୁ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ ନିର୍ବାଚିତ ହେଲେ । ସେ ଜନସାଧାରଣଙ୍କ ସହିତ ସମ୍ପର୍କ ରଖି ସେମାନଙ୍କର ଅସୁବିଧା ଜିଲ୍ଲାବୋର୍ଡ଼ ମାଧ୍ୟମରେ ଯେତେଦୂର ସମ୍ଭବ ଦୂର କରୁଥିଲେ ।

କ୍ରମେ ଜିଲ୍ଲାରେ ଅସହଯୋଗ ଆନ୍ଦୋଳନ ଶିଥିଳ ହୋଇ ପଡ଼ିଲା । କଂଗ୍ରେସ କର୍ମୀମାନେ ସାଂଗଠନିକ କାର୍ଯ୍ୟରେ ଯଥା-ଖଦୀ ପ୍ରସାର, ଗ୍ରାମ ପଞ୍ଚାୟତ ଗଠନ ଇତ୍ୟାଦିରେ ନିଯୁକ୍ତ ରହିଲେ ।

## ସଂରକ୍ଷଣପନ୍ଥୀ ଓ ପରିବର୍ତ୍ତନପନ୍ଥୀ

୧୯୨୩ ମସିହା ବେଳକୁ କଂଗ୍ରେସ ଦୁଇ ଦଳରେ ବିଭକ୍ତ ହୋଇଥିଲା । ଯେଉଁମାନେ ଗାନ୍ଧୀଙ୍କ ଆଦର୍ଶରେ ଚାଳିତ ହେବାକୁ ଚାହୁଁଥିଲେ, ସେମାନଙ୍କୁ ଗାନ୍ଧୀପନ୍ଥୀ ବା ସଂରକ୍ଷଣ ପନ୍ଥୀ କୁହାଗଲା । ଯେଉଁମାନେ ଗାନ୍ଧୀଙ୍କ ଆଦର୍ଶକୁ ନ ମାନି ସରକାରୀ ପ୍ରଶାସନିକ କ୍ଷେତ୍ରରେ ଲୋକ ପ୍ରତିନିଧି ରୂପେ ଯୋଗ ଦେଇ ସେଠାରେ ସରକାର ବିରୁଦ୍ଧରେ ଲଢ଼ିବା ପାଇଁ ସ୍ଥିର କଲେ, ସେମାନଙ୍କୁ ପରିବର୍ତ୍ତନ ପନ୍ଥୀ ବୋଲି କୁହାଗଲା । ପରିବର୍ତ୍ତନ ପନ୍ଥୀଙ୍କ ଦଳକୁ 'ସ୍ୱରାଜ୍ୟ' ଦଳ ନାମରେ ଅଭିହିତ କରାଗଲା । ସେହି ସ୍ୱରାଜ୍ୟ ଦଳର ପ୍ରତିନିଧି ସାମନ୍ତ ଭାଗବତ ପ୍ରସାଦ ମହାପାତ୍ର ୧୯୨୩ ମସିହାରେ ବିହାର ପ୍ରାଦେଶିକ ଲାଟ ସଭାରେ ସଭ୍ୟ ରୂପେ ନିର୍ବାଚିତ ହେଲେ ।

## ବନ୍ଦୋବସ୍ତ ବିରୁଦ୍ଧରେ ଜନ ଆନ୍ଦୋଳନ

ସେତେବେଳର ଆଉ ଗୋଟିଏ ପ୍ରଧାନ ଘଟଣା ହେଲା, ବାଲେଶ୍ୱରରେ ସରକାରଙ୍କ ବନ୍ଦୋବସ୍ତ କରିବା ବିରୁଦ୍ଧରେ ଜନ ଆନ୍ଦୋଳନ । ଠିକ୍ ଧାନକଟା ସମୟରେ ଏହି ବନ୍ଦୋବସ୍ତ ହେବାର ଥିଲା । ସେଥିପାଇଁ ଚାଷୀମାନେ ଘୋର ଆପତ୍ତି କଲେ ଓ ବନ୍ଦୋବସ୍ତ ବନ୍ଦ କରିବା ପାଇଁ ମଥୁରୀ ମୋହନ ବେହେରାଙ୍କ ନେତୃତ୍ୱରେ ଆନ୍ଦୋଳନ କଲେ । ସାମନ୍ତ ଭାଗବତ ପ୍ରସାଦ ମହାପାତ୍ର ଲାଟ ସଭାରେ ବନ୍ଦୋବସ୍ତ ସ୍ଥଗିତ କରିବା ପାଇଁ ପ୍ରସ୍ତାବ ଆଗତ କଲେ । ତାଙ୍କ ପ୍ରସ୍ତାବ ଗୃହୀତ ହେଲା ଓ ବନ୍ଦୋବସ୍ତ ଏକ ବର୍ଷ ପାଇଁ ସ୍ଥଗିତ କରାଗଲା ।

## ସମ୍ବାଦପତ୍ରର ଭୂମିକା

ମହତାବବାବୁଙ୍କ ଦ୍ୱାରା ୧୯୨୩ ମସିହାର ଶେଷ ଭାଗରେ ପ୍ରକାଶିତ ଖବର କାଗଜ 'ପ୍ରଜାତନ୍ତ୍ର' ଓଡ଼ିଶାରେ 'ସମାଜ' ପରି ଗୋଟିଏ ଜାତୀୟ ପତ୍ରିକା ହେଲା । ସେଥିରେ କଂଗ୍ରେସ ସମ୍ପର୍କରେ ବହୁ ସମ୍ବାଦ ପ୍ରକାଶିତ ହେଉଥିଲା ଓ ସରକାରଙ୍କ କ୍ରିୟାକଳାପ ସମ୍ପର୍କରେ କଡ଼ା ଆଲୋଚନା କରାଯାଉଥିଲା ।

୧୯୨୭ ମସିହାରେ ବାଲେଶ୍ୱର ଜିଲ୍ଲାରେ ବିରାଟ ବନ୍ୟା ହୋଇଥିଲା । ସେଥିରେ ଜିଲ୍ଲାର ବହୁତ କ୍ଷତି ହୋଇଥିଲା । କଂଗ୍ରେସ କର୍ମୀମାନେ ଓ ବହୁତ ଛାତ୍ର ସ୍ୱେଚ୍ଛାସେବକମାନେ ଲୋକମାନଙ୍କୁ ସାହାଯ୍ୟ କରିଥିଲେ ।

୧୯୨୬ ର ଶେଷରେ ଯେଉଁ ପ୍ରାଦେଶିକ ବ୍ୟବସ୍ଥାପକ ସଭା ପାଇଁ ନିର୍ବାଚନ ହୋଇଥିଲା, ସେଥିରେ ବାଲେଶ୍ୱରରୁ ନନ୍ଦ କିଶୋର ଦାସ ଓ ହରେକୃଷ୍ଣ ମହତାବ ନିର୍ବାଚିତ ହୋଇଥିଲେ ।

## ମହାତ୍ମାଗାନ୍ଧୀଙ୍କ ଆଗମନ

୧୯୨୭ ମସିହା ଡ଼ିସେମ୍ବର ମାସରେ ମହାତ୍ମା ଗାନ୍ଧୀ ଓଡ଼ିଶାକୁ ଆସିଥିଲେ । ସେ ଓଡ଼ିଶାର ପ୍ରତ୍ୟନ୍ତ ପଲ୍ଲୀରେ ବୁଲି ଲୋକମାନଙ୍କର ଅବସ୍ଥା ସ୍ୱଚକ୍ଷୁରେ ଦେଖିବାକୁ ଚାହିଁଥିଲେ । ଭଦ୍ରଖର ଚାରବାଟିଆ ଗ୍ରାମରେ ଦୁଇଦିନ ରହି ସେ ସେଠାକାର ନିକଟବର୍ତ୍ତୀ ଗ୍ରାମମାନଙ୍କରେ ବାସ କରୁଥିବା ଗ୍ରାମ୍ୟ ଲୋକଙ୍କ ଅବସ୍ଥା ଦେଖିଥିଲେ । ତାଙ୍କର ରହଣୀ ସମୟରେ ଅନେକ କଂଗ୍ରେସ ସ୍ୱେଚ୍ଛାସେବକ ସେଠାରେ ଗାନ୍ଧିଜୀଙ୍କ ସୁବିଧା ଅସୁବିଧା ସମ୍ବନ୍ଧରେ ନଜର ରଖି ତାଙ୍କର ରହଣୀକୁ ସ୍ୱଚ୍ଛନ୍ଦ କରିବା ପାଇଁ ଯତ୍ନ କରୁଥିଲେ । ସେମାନଙ୍କ ମଧ୍ୟରେ ପ୍ରଥମ ଲବଣ ସତ୍ୟାଗ୍ରହୀ ଦଳର କାଳୀପଦ ଦାସ ଜଣେ ।

## ନୀଳଗିରି ପ୍ରଜା ଆନ୍ଦୋଳନର ପ୍ରତିକ୍ରିୟା(୧୯୨୮)

୧୯୨୮ ସାଲର ବାଲେଶ୍ୱର ଜିଲ୍ଲାର ଅନ୍ୟ ଗୋଟିଏ ପ୍ରଧାନ ଘଟଣା ହେଲା, ନୀଳଗିରି ରାଜ୍ୟର ପ୍ରଜାମାନଙ୍କ ସତ୍ୟାଗ୍ରହ । ନୀଳଗିରି ପ୍ରଜାମାନେ ବେଗାରୀ-ବେଠି ପ୍ରଥା ଓ ଅନ୍ୟାୟ କର ଦାଉରେ ଅତିଷ୍ଠ ହୋଇ ପ୍ରାୟ ହଜାରେ ଲୋକ ସେମାନଙ୍କର ଘରଦ୍ୱାର ଛାଡ଼ି ବାଲେଶ୍ୱରରେ ଆଶ୍ରୟ ନେଲେ । ସ୍ୱେଚ୍ଛାସେବୀ ସଂଗଠନମାନେ ଏହି ଦୁର୍ଗତ ଲୋକଙ୍କୁ ନାନା ପ୍ରକାର ସାହାଯ୍ୟ ଦେଇଥିଲେ । ଆଣ୍ଟ୍ରୁଜ ସାହେବ ଓ ଅନ୍ୟ କେତେକ ନେତା ଏ ସମ୍ପର୍କରେ ପଲିଟିକାଲ ଏଜେଣ୍ଟଙ୍କ ସହିତ ଆଲୋଚନା କରି ସେହି ସମସ୍ୟାର ଏକ ସମାଧାନ କଲେ ।

## ଲବଣ ସତ୍ୟାଗ୍ରହ - ୧୯୩୦

ମହାତ୍ମାଗାନ୍ଧୀ ଏପ୍ରିଲ ୬ ତାରିଖରେ ଦାଣ୍ଡୀଠାରେ ଲୁଣମାରି ଲବଣ ଆଇନ ଭଙ୍ଗ କଲେ । ଏହି ସମ୍ବାଦ ଭାରତର ଚାରିଆଡ଼େ ଏକ ଅପୂର୍ବ ଉତ୍ସାହ ଖେଳାଇ ଦେଲା । ଓଡ଼ିଶାରେ ମଧ୍ୟ ଲୁଣ ମାରିବା ପାଇଁ ସବୁ ବନ୍ଦୋବସ୍ତ କରାଗଲା ।

ଏପ୍ରିଲ ୬ ତାରିଖରେ ଗୋପବନ୍ଧୁ ଚୌଧୁରୀ ଓ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହୀଙ୍କ ପ୍ରଥମ ଦଳ କଟକରୁ ବାଲେଶ୍ୱର ଅଭିମୁଖେ ଯାତ୍ରା କଲେ । ଗୋପବନ୍ଧୁ ଚୌଧୁରୀ ଓ ଅଟଳବିହାରୀ ଆଚାର୍ଯ୍ୟଙ୍କୁ ଜଟକରେ ୮ ଏପ୍ରିଲରେ ଗିରଫ କରାଗଲା । ଫଳରେ ଗୋପବନ୍ଧୁ ଚୌଧୁରୀ ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହର ଶୁଭାରମ୍ଭ କରି ପାରିଲେ ନାହିଁ । ତାଙ୍କ ପରିବର୍ତ୍ତେ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ୧୩ ଏପ୍ରିଲରେ ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ଖୁବ୍ ଜୋରସୋରରେ ଚାଲିଲା । କଟକ, ପୁରୀ, ଗଞ୍ଜାମ ଓ ସମ୍ବଲପୁରରୁ ସ୍ୱେଚ୍ଛାସେବକମାନେ ଇଞ୍ଚୁଡ଼ିରେ ଲୁଣ ମାରିବା ପାଇଁ ଆସିଲେ । ବାଲେଶ୍ୱରର ପରମିଟ୍ କୋଠୀ ସତ୍ୟାଗ୍ରହୀଙ୍କ ଆଶ୍ରମ ହେଲା । ଇଞ୍ଚୁଡ଼ିଠାରେ ହଜାର ହଜାର ସ୍ୱେଚ୍ଛାସେବକ ଓ ଜନସାଧାରଣ ମିଶି ଲୁଣ ମାରିବାକୁ ଲାଗିଲେ । ପୋଲିସ କେତେକଙ୍କୁ ଗିରଫ କଲେ ଓ ଅନ୍ୟମାନଙ୍କ ଉପରେ ଲାଠି ପ୍ରହାର କରି ସେମାନଙ୍କୁ ଘଉଡ଼ାଇ ଦେବାକୁ ଚେଷ୍ଟା କଲେ । କିନ୍ତୁ ସେ ଚେଷ୍ଟା ବିଶେଷ ଫଳପ୍ରଦ ହେଲା ନାହିଁ । ସେମାନେ ପୋଲିସକୁ ଭ୍ରୂକ୍ଷେପ ନ କରି ନିର୍ଭୀକ ଭାବରେ ଲୁଣ ମାରିବାକୁ ଲାଗିଲେ । ଲବଣ ସତ୍ୟାଗ୍ରହୀଙ୍କ ମଧ୍ୟରୁ ଅଧିକାଂଶ ଇଞ୍ଚୁଡ଼ି ନିକଟବର୍ତ୍ତୀ ଗ୍ରାମର ଲୋକ ।

ସରକାର ଏହି ଆନ୍ଦୋଳନକୁ ଦବାଇବା ପାଇଁ ଚେଷ୍ଟା କରିଥିଲେ । ଗୋପବନ୍ଧୁ ଚୌଧୁରୀ, ଅଟଳ ବିହାରୀ ଆଚାର୍ଯ୍ୟ, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ପ୍ରାଣକୃଷ୍ଣ ପଢ଼ିଆରୀ, ଗୋବିନ୍ଦ ମିଶ୍ର, କୃପାସିନ୍ଧୁ ହୋତା ଇତ୍ୟାଦି ପ୍ରାୟ ସବୁ ନେତାଙ୍କୁ ଗିରଫ କରି ଜେଲରେ ଭର୍ତ୍ତି କରିଦେଲେ ।  ଏଥିରେ ଲୋକେ ହତୋତ୍ସାହ ନ ହୋଇ ଅଧିକ ଉତ୍ସାହରେ ଏହି ଆନ୍ଦୋଳନରେ ଯୋଗ ଦେଲେ । ପୋଲିସର ଅତ୍ୟାଚାର ସତ୍ତ୍ୱେ ଉତ୍ସାହ କମିଲା ନାହିଁ । ସ୍ୱେଚ୍ଛାସେବକ ତଥା ଗ୍ରାମର ଲୋକମାନେ ଲୁଣ ମାରି ଚାଲିଲେ । ପୋଲିସ ମରାଯାଉଥିବା ଲୁଣ ବାଜ୍ୟାପ୍ତ କଲେ ମଧ୍ୟ, ସତ୍ୟାଗ୍ରହୀମାନେ ବଜାରରେ ଲୁଣ ବିକ୍ରି କରୁଥିଲେ ।

ଏହି ଲବଣ ସତ୍ୟାଗ୍ରହ ସମୟରେ ବହୁ ନାରୀ ସ୍ୱେଚ୍ଛାସେବିକା ଯୋଗ ଦେଇଥିଲେ । ଏତେ ସଂଖ୍ୟାରେ ନାରୀମାନେ ସତ୍ୟାଗ୍ରହ ଆନ୍ଦୋଳନରେ ଆଗରୁ କେବେ ଯୋଗ ଦେଇ ନଥିଲେ । ଓଡ଼ିଶାରେ ନାରୀ ଜାଗରଣର ଏହା ପ୍ରଥମ ପାଦ ।

ଲବଣ ସତ୍ୟାଗ୍ରହ ବେଳେ ଲୋକମାନଙ୍କୁ ଉତ୍ସାହିତ କରିବା ପାଇଁ ଲେଖକମାନେ ଅନେକ ଗୁଡ଼ିଏ ରଚନା ପ୍ରକାଶ କରିଥିଲେ । ସେଥି ମଧ୍ୟରୁ ମହତାବ ବାବୁଙ୍କ 'ପଲାସିର ଅବସାନେ', ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'ଲୁଣ ମରା ଗୀତ', ନିତ୍ୟାନନ୍ଦ ମହାପାତ୍ରଙ୍କ 'ସ୍ୱରାଜ୍ୟ ପାଳା' ବାଲେଶ୍ୱର ଜିଲ୍ଲାରୁ ପ୍ରକାଶିତ ହୋଇଥିଲା । ଏହି ବହି ଗୁଡ଼ିକୁ ସରକାର ରାଜଦ୍ରୋହାତ୍ମକ ରଚନା ବୋଲି ଘୋଷଣା କରି ସେଗୁଡ଼ିକୁ ବାଜ୍ୟାପ୍ତ କରିଥିଲେ ।

## ସମ୍ବାଦପତ୍ର ଉପରେ ସରକାରଙ୍କ ଚଡ଼ାଉ

ଓଡ଼ିଶାର ଦୁଇଟି ପ୍ରଧାନ ସାପ୍ତାହିକ ସମ୍ବାଦପତ୍ର 'ସମାଜ' ଓ 'ପ୍ରଜାତନ୍ତ୍ର' ଯଥାକ୍ରମେ ଏପ୍ରିଲ ୬ ଓ ଏପ୍ରିଲ ୧୩ ତାରିଖରେ ଦୈନିକ

ପ୍ରକାଶିତ ହେଲା । 'ପ୍ରଜାତନ୍ତ୍ର' ବାଲେଶ୍ୱରରୁ ପ୍ରକାଶିତ ହେଉଥିଲା । 'ପ୍ରଜାତନ୍ତ୍ର'ରେ ସତ୍ୟାଗ୍ରହର ସମ୍ବାଦ ପ୍ରତିଦିନ ପ୍ରକାଶ କରାଗଲା । ସରକାରଙ୍କ ଅନ୍ୟାୟ ନୀତି ଓ ସତ୍ୟାଗ୍ରହୀଙ୍କ ଉପରେ ଅତ୍ୟାଚାର ସଂପର୍କରେ ଆଲୋଚନା କରାଯାଉଥିଲା । ସେଥିପାଇଁ ସରକାର ଅସନ୍ତୁଷ୍ଟ ହୋଇ ପ୍ରେସ୍ ଅର୍ଡ଼ିନେନ୍ସର ୩ (୩) ଧାରା ଅନୁସାରେ ଅମାନତ ଦାବୀ କଲେ । ଏହି ଅନ୍ୟାୟ ଆଦେଶର ପ୍ରତିବାଦରେ 'ପ୍ରଜାତନ୍ତ୍ର' ପ୍ରକାଶନ ବନ୍ଦ କରି ଦିଆଗଲା । କିନ୍ତୁ ବାଲେଶ୍ୱରର ସ୍ୱରାଜ ଆଶ୍ରମରୁ 'ବନ୍ଦେ ମାତରଂ' ନାମକ ଗୋଟିଏ ଦୈନିକ ସମ୍ବାଦ ପତ୍ରିକା ପ୍ରକାଶ କରାଗଲା । ସରକାର ଏହାକୁ ବାଜ୍ୟାପ୍ତ କରିବାକୁ ଚାହିଁଲେ । କିନ୍ତୁ ଏହା ଗୁପ୍ତରେ ପ୍ରକାଶ କରାଯାଉଥିବାରୁ କାହା ଉପରେ ଆଦେଶ ଜାରିକରିବେ, ସ୍ଥିର କରିପାରିଲେ ନାହିଁ । ଏହିପରି ଭାବରେ 'ପ୍ରଜାତନ୍ତ୍ର' ଓ 'ବନ୍ଦେମାତରଂ' ବା 'ସତ୍ୟାଗ୍ରହ ସମାଚାର' ସମ୍ବାଦ-ପତ୍ରିକା ଜରିଆରେ ଲୋକମାନଙ୍କ ସତ୍ୟାଗ୍ରହ ସମ୍ବନ୍ଧରେ ସତ୍ୟ ସମାଚାର ପରିବେଷଣ କରୁଥିଲେ ଓ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ ଲୋକଙ୍କୁ ଉତ୍ସାହିତ କରୁଥିଲେ ।

## ରକ୍ତତୀର୍ଥ ଇଞ୍ଚୁଡ଼ି

ଇଞ୍ଚୁଡ଼ି ବାଲେଶ୍ୱର ଜିଲ୍ଲାର ଲବଣ ସତ୍ୟାଗ୍ରହର ପ୍ରଧାନ କେନ୍ଦ୍ର ଥିଲା । ଏହାଛଡ଼ା ସଂଗଲା ଥାନାର ସାର୍ଥା, ସୋର ଥାନାର ଖେରଙ୍ଗ, ବାଲେଶ୍ୱର ଥାନାର ପରଖି ଓ ବାଲିଆପାଳ ଥାନାର ଚୂଡ଼ାମଣିଠାରେ ମଧ୍ୟ ଲୁଣ ମାରିବା କେନ୍ଦ୍ର ଖୋଲା ଯାଇଥିଲା । ଲବଣ ସତ୍ୟାଗ୍ରହ ସଙ୍ଗେ ସଙ୍ଗେ ସ୍ୱେଚ୍ଛାସେବକମାନେ ବିଦେଶୀ ଲୁଗା ଦୋକାନ ଓ ମଦ ଦୋକାନ ସାମନାରେ ଧାରଣା ଦେଉଥିଲେ ।

ବାଲେଶ୍ୱରର ଅଥିଲାବାଦ ଗ୍ରାମର ପ୍ରାୟ ୫୦୦ ଲୋକ ଅସ୍ତ୍ରଶସ୍ତ୍ର ନେଇ ଥାନା ଆକ୍ରମଣ କରିଥିଲେ ଓ ସିପାହୀମାନଙ୍କ ପୋଷାକ ଓ ଅନ୍ୟ ଜିନିଷ ଛଡ଼ାଇ ନେଇଥିଲେ ।

ଇଞ୍ଚୁଡ଼ିରେ ଲୁଣ ମାରିବା ସମୟରେ ନିକଟସ୍ଥ ଶ୍ରୀଜଙ୍ଗ ଗ୍ରାମରେ ଏକ ଅତି ଶୋଚନୀୟ ଘଟଣା ଘଟିଥିଲା । ସେହି ଗ୍ରାମର କେତେକ ଲୋକଙ୍କ ସହିତ ପୋଲିସର ସଂଘର୍ଷ ହୋଇଥିଲା । ପୋଲିସ୍ ଲୋକଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଅକଥନୀୟ ଅତ୍ୟାଚାର କରିଥିଲେ । ପୋଲିସ୍ ଗ୍ରାମରେ ପହଞ୍ଚିବା ପୂର୍ବରୁ ଗ୍ରାମର ପୁରୁଷମାନେ ଗ୍ରାମ ଛାଡ଼ି ପଳାଇଲେ । ପୋଲିସ ଆବାଳ ବୃଦ୍ଧ ବନିତାଙ୍କ ଉପରେ ନିର୍ମମ ଅତ୍ୟାଚାର କରିଥିଲେ ଓ ଗ୍ରାମବାସୀଙ୍କ ସଂପତ୍ତି ଲୁଟି ନେଇଥିଲେ ଓ ନଷ୍ଟ କରିଦେଇଥିଲେ । ଏହି ଘଟଣା ୧୨.୬.୩୦ ତାରିଖରେ ଚୌକିଦାର ଟାକ୍ସ ବନ୍ଦ ଆନ୍ଦୋଳନ ସଂପର୍କରେ ଘଟିଥିଲା ।

ବର୍ଷା ଆରମ୍ଭ ହୋଇ ଯିବାରୁ ପ୍ରାୟ ଜୁନ ମାସ ଶେଷ ବେଳକୁ ଲୁଣମରା ସତ୍ୟାଗ୍ରହ ଧିମେଇ ଆସିଲା । କିନ୍ତୁ ବିଲାତ ଲୁଗା ଓ ମଦ ଦୋକାନ ସାମନାରେ ଲୋକେ ଧାରଣା ଦେବା କାର୍ଯ୍ୟ ଚଳାଇଲେ ।

## ବାନରସେନା

ଲବଣ ସତ୍ୟାଗ୍ରହର ଆଉ ଗୋଟିଏ ବିଶେଷ ଘଟଣା ହେଲା ବାନର ସେନା ଗଠନ । ସାନ ସାନ ପିଲାମାନେ ସ୍ୱେଚ୍ଛାସେବକ ହୋଇ ଲୁଣ ମାରିବା, ପିକେଟିଂ କରିବା ଇତ୍ୟାଦି କଂଗ୍ରେସ କାର୍ଯ୍ୟରେ ଯୋଗ ଦେଲେ । ପୋଲିସ୍ ସେମାନଙ୍କୁ ଧରି ବେତମାଡ଼ ଦେଇ ଦୂର ନିର୍ଜନ ସ୍ଥାନରେ ଛାଡ଼ି ଦେଇ ଆସୁଥିଲେ । ସେମାନେ କିନ୍ତୁ ଫେରି ଆସି ଲୁଣ ମାରିବା ଓ ପିକେଟିଂ ଇତ୍ୟାଦି କାର୍ଯ୍ୟ କରୁଥିଲେ । ସେମାନଙ୍କୁ ଆୟତ୍ତ କରିବା ସରକାରଙ୍କ ପକ୍ଷରେ ଏକ ଗୁରୁତର ସମସ୍ୟା ହୋଇ ଉଠିଥିଲା ।

## ଗାନ୍ଧୀ -ଇରଉଇନ୍ ଚୁକ୍ତି

ମାର୍ଚ୍ଚ ୫ ତାରିଖରେ (୧୯୩୧) ଗାନ୍ଧୀ-ଇରଉଇନ୍ ଚୁକ୍ତିହେବା ପରେ ଲବଣ ସତ୍ୟାଗ୍ରହ ସମାପ୍ତ ହେଲା । ରାଜନୈତିକ ବନ୍ଦୀମାନେ ଖଲାସ ହେଲେ । କଂଗ୍ରେସ କର୍ମୀମାନେ ରଚନାତ୍ମକ କାର୍ଯ୍ୟରେ ନିଯୁକ୍ତ ରହିଲେ । ବାଲେଶ୍ୱରରେ ଗୋଟିଏ ଗାନ୍ଧୀ କର୍ମ ମନ୍ଦିର ସ୍ଥାପିତ ହୋଇଥିଲା । କେତେକ କଂଗ୍ରେସ କର୍ମୀ ଫରାସୀ ଡ଼ାଙ୍ଗାରେ ଗୋଟିଏ କେନ୍ଦ୍ର ସ୍ଥାପନ କରି ପିକେଟିଂ, ଲୁଣମରା ଇତ୍ୟାଦି କଂଗ୍ରେସ କାର୍ଯ୍ୟ ଚଳାଉଥିଲେ । ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସଙ୍କ ନେତୃତ୍ୱରେ ଏହି କେନ୍ଦ୍ରଟି ପରିଚାଳିତ ହେଉଥିଲା । ୧୯୩୨ ମସିହାରେ ସରକାର ପୁଣି ନାନା ଆଳରେ କଂଗ୍ରେସ କର୍ମୀଙ୍କୁ ଧରପଗଡ଼ କରିବା ଆରମ୍ଭ କରି ଦେଇଥିଲେ । ବାଲେଶ୍ୱରର ନନ୍ଦକିଶୋର ଦାସ ଓ 'ପ୍ରଜାତନ୍ତ୍ର'ର ପ୍ରକାଶକ ଉପେନ୍ଦ୍ର ପଣ୍ଡାଙ୍କୁ ଗିରଫ କରାଯାଇଥିଲା ।

## ହରିଜନ ପଦଯାତ୍ରା

୧୯୩୪ ସାଲରେ ମହାତ୍ମାଗାନ୍ଧୀ ଅସ୍ପୃଶ୍ୟତା ନିବାରଣ ସଂପର୍କରେ ମେ ୮ ତାରିଖରେ ପୁରୀରେ ଆସି ପହଞ୍ଚିଲେ । ସେଠାରୁ ପଦଯାତ୍ରାରେ କଟକକୁ ଆସି ସେଠାରେ ଏକ ଜନସଭାରେ ଭାଷଣ ଦେଇଥିଲେ । ପରେ ଭଦ୍ରଖ ଆସି ସେଠାରେ ୩ ଦିନ ରହିଥିଲେ । ଗାନ୍ଧିଜୀ ଜୁନ ୮ ତାରିଖରେ ଟ୍ରେନ ଯୋଗେ ବାଲେଶ୍ୱର ଯାଇ ସେଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିଲେ ।

୧୯୩୬ ସାଲରେ କୃଷକ ସଭା ଗଠନ ଓ ହରିଜନ କଲ୍ୟାଣ କାର୍ଯ୍ୟରେ କଂଗ୍ରେସ କର୍ମୀମାନେ ନିଯୁକ୍ତ ରହିଲେ । ସେହି ବର୍ଷ ଜିଲ୍ଲାବୋର୍ଡ଼ ସଭ୍ୟ ନିର୍ବାଚନରେ ନନ୍ଦକିଶୋର ଦାସ ଅପୂର୍ବ ସଫଳତା ଲାଭ କରିଥିଲେ । ବର୍ଷ ଶେଷ ଆଡ଼କୁ ପ୍ରାଦେଶିକ ବ୍ୟବସ୍ଥାପକ ନିର୍ବାଚନ ପାଇଁ ପ୍ରଚାର କାର୍ଯ୍ୟରେ କଂଗ୍ରେସ କର୍ମୀ ତଥା ନେତାମାନେ ବ୍ୟସ୍ତ ରହିଲେ ।

## ନୀଳଗିରି ପ୍ରଜା ଆନ୍ଦୋଳନ

୧୯୩୮ ସାଲ ଜୁନ ମାସରେ ନୀଳଗିରି ଗଡ଼ଜାତ ରାଜ୍ୟର ପ୍ରଜାମାନେ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ କଲେ । କଂଗ୍ରେସ ସେମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କଲେ । ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଦଳେ ସ୍ୱେଚ୍ଛାସେବକଙ୍କୁ ନୀଳଗିରିର ପ୍ରଜାଙ୍କୁ ସାହାଯ୍ୟ ଦେବା ପାଇଁ

ପଠାଯାଇଥିଲା । ୧୧୬ ଜଣ ସତ୍ୟାଗ୍ରହୀ ଗିରଫ ହୋଇଥିଲେ । ପ୍ରଜା ଓ ରାଜାଙ୍କ ମଧ୍ୟରେ ଏକ ଆପୋଷ ମୀମାଂସାର ଚେଷ୍ଟା ବିଫଳ ହେଲା । ପ୍ରଜାମଣ୍ଡଳର ସଂପାଦକ ବନମାଳି ଦାସଙ୍କୁ ଗିରଫ କରାଗଲା ଓ ଆନ୍ଦୋଳନକୁ ଦବାଇବା ପାଇଁ ରାଜାଙ୍କ ପୋଲିସ ଲୋକଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କଲେ । ରାଜାଙ୍କ କଠୋର ଦମନ ନୀତି ସତ୍ତ୍ୱେ ପ୍ରଜା ଆନ୍ଦୋଳନ ଚାଲୁ ରହିଲା । ଶେଷରେ ରାଜା ପ୍ରଜାଙ୍କ ମଧ୍ୟରେ ଏକ ମୀମାଂସା ହେଲା । ରାଜା ପ୍ରଜାଙ୍କର ସବୁ ଦାବୀ ମାନିନେଲେ । କିନ୍ତୁ ରାଜ୍ୟ ବିଧାନ ପରିଷଦ ଗଠନ ଓ ରାଜ୍ୟର ବାର୍ଷିକ ରାଜସ୍ୱ ଉପରେ ପ୍ରଜାଙ୍କର କୌଣସି ପ୍ରକାର ହସ୍ତକ୍ଷେପ ବିଷୟରେ ସେ ରାଜି ହେଲେ ନାହିଁ ।

୧୯୩୮ ମସିହାରେ ନୀଳଗିରିରେ କୈଳାସ ଚନ୍ଦ୍ର ମହାନ୍ତିଙ୍କ ନେତୃତ୍ୱରେ ପ୍ରଜା ଆନ୍ଦୋଳନ ଚାଲିଲା । ରାଜା ଆନ୍ଦୋଳନକାରୀଙ୍କୁ ନାନା ପ୍ରକାର ନିର୍ଯ୍ୟାତନା କଲେ କିନ୍ତୁ ଆନ୍ଦୋଳନ ବନ୍ଦ ହେଲା ନାହିଁ । ଶେଷରେ ବାଲେଶ୍ୱରର ଜିଲ୍ଲାପାଳ ସୋଲମାନ ସାହେବ, ମହତାବ, ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ, ନୀଳଗିରିର ଦେଓ୍ୱାନ ଓ କୈଳାସ ମହାନ୍ତିଙ୍କ ମଧ୍ୟରେ ଆଲୋଚନା ହୋଇ ଏକ ସମାଧାନ ହେଲା ଓ ରାଜ୍ୟରେ ଶାନ୍ତି ସ୍ଥାପିତ ହେଲା ।

## ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ କଂଗ୍ରେସ ଭୂମିକା

୧୯୩୭ ସାଲ ଜୁଲାଇ ମାସରେ ଓଡ଼ିଶାରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ୧୯୩୯ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାରତୀୟମାନଙ୍କର ବିନା ସମ୍ମତିରେ ଭାରତକୁ ଯୁଦ୍ଧରେ ପକ୍ଷଭୁକ୍ତ କରାଯାଇ ଥିବାରୁ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶରେ ସବୁ ପ୍ରଦେଶର କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ଏହି ପରିସ୍ଥିତିରେ ଭାରତର ରାଜନୈତିକ ପରିବେଶ ସରଗରମ ହୋଇ ଉଠିଥିଲା । କଂଗ୍ରେସର ପରବର୍ତ୍ତୀ ପଦକ୍ଷେପ ପାଇଁ ସମସ୍ତେ ଉଦ୍‌ଗ୍ରୀବ ଥିଲେ ।

୧୯୪୨ ସାଲ ଫେବୃଆରୀ ମାସରେ ଜାପାନ ଭାରତ ଆକ୍ରମଣ କଲା । ଜାପାନ ଆକ୍ରମଣର ପ୍ରତିରୋଧ ପାଇଁ କଂଗ୍ରେସ ନେତୃବୃନ୍ଦ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ତାଲିମ୍ ଦେବାର ବ୍ୟବସ୍ଥା କଲେ । ବାଲେଶ୍ୱରରେ ମହତାବ ବାବୁ 'ଶାନ୍ତିସେନା' ନାମକ ଏକ ସ୍ୱେଚ୍ଛାସେବକ ବାହିନୀ ଏହି ଉଦ୍ଦେଶ୍ୟରେ ଗଠନ କରିଥିଲେ ।

## ଅଗଷ୍ଟ ବିପ୍ଳବ : ୧୯୪୨

୧୯୪୨ ଅଗଷ୍ଟ ୮ ତାରିଖରେ କଂଗ୍ରେସର ବମ୍ବେ ଅଧିବେଶନର କାର୍ଯ୍ୟକାରୀ କମିଟିରେ ମହାତ୍ମା ଗାନ୍ଧୀଙ୍କ 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହୋଇଗଲା । ଭାରତରେ ଏହାର ଭୀଷଣ ପ୍ରତିକ୍ରିୟା ହେଲା ଓ ତାହା ଇଂରେଜ ସରକାରଙ୍କର ପ୍ରଶାସନିକ ଭିତ୍ତିକୁ ସଂପୂର୍ଣ୍ଣ ଦୋହଲାଇ ଦେଲା । ସେହିଦିନ ରାତିରେ ମହାତ୍ମା ଗାନ୍ଧୀ ଓ ଜହରଲାଲ ପ୍ରମୁଖ କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟଙ୍କୁ ଗିରଫ କରିନେଇ ବ୍ରିଟିଶ ସରକାର ଅଜ୍ଞାତ ସ୍ଥଳରେ ବନ୍ଦୀ କରି ରଖିଲେ ।

ବୋମ୍ବାଇରେ କଂଗ୍ରେସ ନେତୃବୃନ୍ଦ ଗିରଫ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରଦେଶରେ ମଧ୍ୟ ମୁଖ୍ୟ କଂଗ୍ରେସ ନେତାଙ୍କୁ ଅଗଷ୍ଟ ୯ ତାରିଖରେ ଗିରଫ କରାଗଲା । ବାଲେଶ୍ୱର ଜିଲ୍ଲାରେ କରୁଣାକର ପାଣିଗ୍ରାହୀ, ରବୀନ୍ଦ୍ର ମୋହନ ଦାସ, ନୀଳାମ୍ବର ଦାସ, ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ଗିରଫ ହେଲେ । ଜିଲ୍ଲାରେ ନେତୃତ୍ୱ ଦେବା ପାଇଁ କେହି ରହିଲେ ନାହିଁ । ସ୍କୁଲ ଛାତ୍ରମାନେ ପ୍ରଥମେ ୧୯୪୨ ବିପ୍ଳବର ଶୁଭାରମ୍ଭ କଲେ । ବାଲେଶ୍ୱର, ସୋର, ଭଦ୍ରକ, ଚାନ୍ଦବାଲି ଇତ୍ୟାଦି ସ୍କୁଲର ଛାତ୍ରମାନେ ସ୍କୁଲ ପରିତ୍ୟାଗ କରି ଧର୍ମଘଟ କଲେ । ବାଲେଶ୍ୱର ଜିଲ୍ଲା ସ୍କୁଲକୁ ହଠାତ ବନ୍ଦ କରି ଦିଆଗଲା । ରାଘବ ପାଣିଗ୍ରାହୀ ଓ ଜାଲା ପ୍ରସାଦଙ୍କୁ ଗିରଫ କରାଗଲା ।

ଅଗଷ୍ଟ ମାସର ଶେଷାର୍ଦ୍ଧରେ ଛାତ୍ରମାନେ ଧର୍ମଘଟ କଲେ ଓ ଶୋଭାଯାତ୍ରା ବାହାର କରି ଲୋକମାନଙ୍କୁ ଉତ୍ସାହିତ କଲେ । ଅନେକ ଛାତ୍ର ନେତାଙ୍କୁ ଗିରଫ କରି ନିଆଗଲା ।

ଅଗଷ୍ଟ ୧୭ ତାରିଖରେ ଭଦ୍ରକର ଭଣ୍ଡାରୀପୋଖରୀଠାରେ ପ୍ରାୟ ୩।୪ ହଜାର ଲୋକ ଲାଠି ଧରି ଗୋଟିଏ ସଭା କରିବା ପାଇଁ ଏକତ୍ରିତ ହେଲେ । ମିଟିଂ କରିବା ପରିବର୍ତ୍ତେ ଲୋକମାନେ ଥାନା ଆଡ଼କୁ ଅଗ୍ରସର ହେଲେ । ସେ ସମୟରେ ଥାନାରେ ଜଣେ ଉପ ସବଇନ୍ସପେକ୍ଟର ଓ ୩ ଜଣ ସିପାହୀ ଥିଲେ । ସିପାହୀମାନେ ଲୋକମାନଙ୍କୁ ଅଗ୍ରସର ନହେବାକୁ କହିଲେ କିନ୍ତୁ ଲୋକେ ସେମାନଙ୍କୁ ଠେଲି ଦେଇ ଥାନା ଉପରେ ଚଢ଼ାଉ କଲେ । ଥାନାର ଆସବାବ୍ ପତ୍ର ଭାଙ୍ଗି ଦେଲେ ଓ ରେକର୍ଡ଼ ଚିରିଦେଲେ । ଲୋକମାନେ ଦୁଇଜଣ ସିପାହୀଙ୍କୁ ମାଡ଼ ଦେଲେ । ତୃତୀୟ ପୁଲିସ ଜଣକ ଖସି ପଳାଇଲା ଓ ଭଦ୍ରକକୁ ଯାଇ ସେଠାରେ ଥାନା ଚଢ଼ାଉ ସମ୍ବନ୍ଧରେ ଖବର ଦେଲା । ଉପ ସବଇନ୍ସପେକ୍ଟର ନିକଟସ୍ଥ ଗ୍ରାମରେ ଲୁଚି ରହିଲେ । କିନ୍ତୁ ଲୋକମାନେ ତାଙ୍କୁ ଖୋଜି ବାହାର କଲେ, ତାଙ୍କର ପୁଲିସ ପୋଷାକ କାଢ଼ି ନେଇ ତାଙ୍କୁ ଖଦୀ ପିନ୍ଧିବାକୁ ବାଧ୍ୟ କଲେ ଓ ଥାନା ପୋଡ଼ିଦେଲେ । ଜିଲ୍ଲାପାଳ ଖବର ପାଇ ପୁଲିସ ଫୌଜ ନେଇ ଭଣ୍ଡାରୀ ପୋଖରୀରେ ତୁରନ୍ତ ଆସି ପହଞ୍ଚିଲେ । ୧୨ଟି ଗ୍ରାମ ଉପରେ ୬୦୦୦ ଟଙ୍କାର ସମୂହ ଜୋରିମାନା କରାଗଲା । ବ୍ୟବସ୍ଥାପକ ସଭାର ସଭ୍ୟ ଜଗନ୍ନାଥ ଦାସ ଓ ଦ୍ୱାରିକା ନାଥ ଦାସ ଭଣ୍ଡାରୀପୋଖରୀ ଅଂଚଳରେ ପ୍ରଚାର କରୁଥିଲେ । ସେଥିପାଇଁ ସେମାନଙ୍କୁ ଗିରଫ କରାଗଲା ।

ବିପ୍ଳବର ଦ୍ୱିତୀୟ ବିଶେଷ ଘଟଣା ଭଦ୍ରକର ଧାମନଗର ଥାନା ଅଞ୍ଚଳରେ ଘଟିଥିଲା । ସେପ୍ଟେମ୍ବର ମାସ ୨ ତାରିଖ ଜିଲ୍ଲା ପୁଲିସ ସାହେବ ପୁଲିସ ଫୌଜ ସହ ଧାମନଗରକୁ ଆସିଲେ । ପ୍ରାୟ ୨୦୦୦ ଲୋକ ଲାଠି ଓ ଅନ୍ୟ ଅସ୍ତ୍ର ଧରି ପୁଲିସର ସାମନା କଲେ । ପୁଲିସ ସେମାନଙ୍କୁ ସେ ସ୍ଥାନରୁ ଚାଲି ଯିବାକୁ କଠୋର ଆଦେଶ ଦେଲେ । ଲୋକମାନେ ସେଠାରୁ ଚାଲିଗଲେ ।

କିନ୍ତୁ ଧାମନଗର ଅଞ୍ଚଳରେ ଅବସ୍ଥା ଅଶାନ୍ତ ରହିଲା । ଅନିରୁଦ୍ଧ ମହାନ୍ତି, ସାଗର ଭୂୟାଁ, ମୁରଲୀଧର ପଣ୍ଡା ପ୍ରଭୃତି ନେତାମାନେ ଗାଁ ଗଣ୍ଡାରେ ବୁଲି ଲୋକମାନଙ୍କୁ ସରକାର ବିରୁଦ୍ଧରେ ବିପ୍ଳବ କରିବାକୁ

ଉତ୍ସାହିତ କରୁଥିଲେ । ପୁଲିସ୍ ସେମାନଙ୍କୁ ଧରିବା ପାଇଁ ଅନେକ ଚେଷ୍ଟା କରି ସଫଳ ହୋଇ ନଥିଲେ ।

## ଧାମନଗର ଗୁଳିକାଣ୍ଡ (୨୧ସେପ୍ଟେମ୍ବର, ୧୯୪୨)

ଅନିରୁଦ୍ଧ ମହାନ୍ତି ଧାମନଗରରୁ ବାସୁଦେବପୁର ଥାନା ଅଞ୍ଚଳକୁ ଯାଇ ସେଠାରେ ଲୋକଙ୍କ ମଧ୍ୟରେ ବିପ୍ଳବର ବାର୍ତ୍ତା ପ୍ରଚାର କରି ସରକାର ବିରୁଦ୍ଧରେ ଉତ୍ତେଜିତ କରୁଥିଲେ । ମୁରଲୀଧର ପଣ୍ଡା ଧାମନଗର ଅଞ୍ଚଳ କାର୍ଯ୍ୟକ୍ଷେତ୍ରରେ ଥିଲେ । ଧାମନଗର ପୁଲିସ ସବ-ଇନ୍ସପେକ୍ଟର ୧୨ ଜଣ ସିପାହୀ ଓ କେତେଜଣ ଚୌକିଦାର ନେଇ ଭଟିସାହି ଗ୍ରାମକୁ ଗଲେ । ପୁଲିସ ମୁରଲୀଧର ପଣ୍ଡାଙ୍କୁ ଧରିବାକୁ ଆସିଛନ୍ତି, ଏହି ଖବର ପ୍ରଚାରିତ ହେବା ମାତ୍ରେ ପ୍ରାୟ ୩/୪ ହଜାର ସଶସ୍ତ୍ର ଲୋକ ଆସି ରୁଣ୍ଡ ହୋଇ ପୁଲିସ ଫୌଜକୁ ଆକ୍ରମଣ କଲେ । ପୁଲିସ ଫୌଜ ବାଧ୍ୟ ହୋଇ ଗୁଳି ଚଳାଇଲେ । ମୋଟ ୩୫ ରାଉଣ୍ଡ ଗୁଳି କରାଯାଇଥିଲା । ଫଳରେ ୬ ଜଣ ଲୋକ ଘଟଣା ସ୍ଥଳରେ ମଲେ ଓ ୫ ଜଣ ଆହତ ହେଲେ । ଆହତ ମଧ୍ୟରୁ ଦୁଇଜଣ ପରେ ମରିଗଲେ । ମୁରଲୀଧର ପଣ୍ଡା ଭଦ୍ରଖଠାରେ ପୁଲିସ ଦ୍ୱାରା ଗିରଫ ହେଲେ ।

## ଖୈରାଡ଼ିହି ଗୁଳିକାଣ୍ଡ (୨୮।୯।୪୨)

ଖୈରା ଥାନା ଅଞ୍ଚଳରେ କେତେକ ଲୋକ ଖଇରା ଥାନା ସବ୍-ଇନ୍ସପେକ୍ଟରଙ୍କୁ ଅପମାନିତ କରିଥିବା ଅଭିଯୋଗରେ ଜଣେ ପୁଲିସ ଇନ୍ସପେକ୍ଟର ପୁଲିସ ଫୌଜ ନେଇ ପୁରୁଷୋତ୍ତମ ନାୟକ, ବୈଦ୍ୟନାଥ ରାଉତ ଓ ଅନ୍ୟ କେତେକଙ୍କୁ ଧରିବା ପାଇଁ ଖୈରାଡ଼ିହି ଯାଇଥିଲେ । ପ୍ରାୟ ୩୦୦/୪୦୦ ସଶସ୍ତ୍ର ଲୋକ ସେଠାରେ ଏକତ୍ରିତ ହୋଇ ପୁଲିସଙ୍କୁ ଜଣାଇ ଦେଲେ ଯେ ସେମାନେ କାହାରିକୁ ଗିରଫ କରିବାକୁ ଦେବେ ନାହିଁ । ଇନ୍ସପେକ୍ଟର ସମବେତ ଜନତାକୁ ଅବୈଧ ଘୋଷଣା କରି ସେମାନଙ୍କୁ ଚାଲିଯିବାକୁ ଆଦେଶ ଦେଲେ । ଲୋକମାନେ ତାହା ନଶୁଣି ପୁଲିସ ଆଡ଼କୁ ଅଗ୍ରସର ହେଲେ । ଇନ୍ସପେକ୍ଟର ଗୁଳି ଚଳାଇବା ପାଇଁ ଆଦେଶ ଦେଲେ । ପୁଲିସ ଦୁଇ ରାଉଣ୍ଡ ଗୁଳି ଚଳାଇଲେ, କିନ୍ତୁ କେହି ଆହତ ହେଲେ ନାହିଁ । ଇନ୍ସପେକ୍ଟର ଜାଣି ପାରିଲେ ଯେ ସିପାହୀମାନେ ଜାଣିଶୁଣି ଲୋକଙ୍କ ଉପରକୁ ଗୁଳି ଚଳାଉ ନାହାନ୍ତି । ତେଣୁ ସେ ତାଙ୍କର ଫୌଜ ନେଇ ଫେରି ଆସିଲେ ।

ପରଦିନ ଇନ୍ସପେକ୍ଟର ଖଇରା ଓ ସୋର ଥାନାର ସବ-ଇନ୍ସପେକ୍ଟର ଓ ଅନ୍ୟ ଏକ ଦଳ ପୁଲିସ ଫୌଜ ନେଇ ଅପରାଧୀମାନଙ୍କୁ ଧରିବାକୁ ଗଲେ । ସ୍ଥାନୀୟ ଲୋକେ ଅସ୍ତ୍ରଶସ୍ତ୍ର ଧରି ସେମାନଙ୍କର ମୁକାବିଲା କଲେ । ପୁଲିସ ଗୁଳି ଚଳାଇଲେ । ଏଥିରେ ଦୁଇଜଣ ନିହତ ଓ ଜଣେ ଆହତ ହେଲେ ।

ସେହିଦିନ ୩ ଟା ବେଳେ ପ୍ରାୟ ୧୦୦ ସଶସ୍ତ୍ର ବ୍ୟକ୍ତି ମୃତ ବ୍ୟକ୍ତିଙ୍କୁ ପୁଲିସଠାରୁ ଛଡ଼ାଇ ଆଣିବା ପାଇଁ ପୁଲିସଙ୍କର ସମ୍ମୁଖୀନ ହେଲେ । ପୁଲିସ ପୁନଶ୍ଚ ଗୁଳି ଚଳାଇଲେ, ଫଳରେ ଆଉ ଜଣେ ଲୋକର ମୃତ୍ୟୁ ହେଲା ।

## ଇରମ୍ ଗୁଳିକାଣ୍ଡ (୨୮-୯-୪୨)

ଯେଉଁଦିନ ଖୈରାଡ଼ିହିରେ ଗୁଳିକାଣ୍ଡ ଘଟିଲା, ସେହିଦିନ ଇରମରେ ଯେଉଁ ଗୁଳିକାଣ୍ଡ ହେଲା ସେଥିରେ ୨୬ ଜଣ ବ୍ୟକ୍ତି ମୃତ୍ୟୁ ବରଣ କଲେ ଓ ୫୬ ଜଣ ଆହତ ହେଲେ । ଅନିରୁଦ୍ଧ ମହାନ୍ତି ଓ ତାଙ୍କର ସହଯୋଗୀମାନେ ବାସୁଦେବପୁର୍ ଥାନା ଅଞ୍ଚଳରେ ଏକ ସମାନ୍ତରାଳ ସରକାର ଗଠନ କରିଥିଲେ । ଲୋକମାନେ ଚୌକିଦାର ଓ ଦଫାଦାରମାନଙ୍କ ପୋଷାକ ଛଡ଼ାଇ ପୋଡ଼ି ଦେଉଥିଲେ । ବଡ଼ଲୋକଙ୍କ ଘରୁ ଧାନ ଲୁଟ କରୁଥିଲେ ଓ ଖଜଣା ନ ଦେବା ପାଇଁ ସଂଗଠିତ ହେଉଥିଲେ । ଯେଉଁ ସ୍ଥାନରେ ସମାନ୍ତରାଳ ସରକାର ଗଠନ କରାଯାଇଥିଲା, ସେଠାକୁ ବର୍ଷା ଦିନରେ ଯିବା ଅତି କଷ୍ଟକର ଥିଲା । ଏହି ଅଞ୍ଚଳରେ ୨୫ ଟି ଗ୍ରାମ ଥିଲା । କଂଗ୍ରେସ ନେତାମାନେ ସେହି ଗ୍ରାମର ଲୋକମାନଙ୍କୁ ସଂଗଠିତ କରିଥିଲେ । ସରକାର ସେହି ଅଞ୍ଚଳରେ ହେଉଥିବା ସରକାର ବିରୋଧୀ କାର୍ଯ୍ୟକଳାପକୁ ବନ୍ଦକରିବା ପାଇଁ ଓ ନେତାମାନଙ୍କୁ ଧରିବା ପାଇଁ ସେପ୍ଟେମ୍ବର ୨୮ ତାରିଖ ଦିନ ଜଣେ ଡି.ଏସ.ପିଙ୍କ ଅଧୀନରେ ଗୋଟିଏ ପୁଲିସ ଫୌଜ ପଠାଇଲେ । ପୋଲିସ ଆସିବା ଖବର ପାଇ ହଜାରକରୁ ଅଧିକ ସଶସ୍ତ୍ର ଗ୍ରାମବାସୀ ପୋଲିସର ବିରୋଧ କରିବା ପାଇଁ ଏକତ୍ରିତ ହେଲେ । ସେମାନଙ୍କ ମଧ୍ୟରୁ କେତେକ ଚୌକିଦାରଙ୍କ ଠାରୁ ପୁଲିସଙ୍କର ବିଛଣାପତ୍ର ଛଡ଼ାଇ ନେଲେ । ଏହି ସମ୍ବାଦ ପାଇ ପୁଲିସ ଫୌଜ ସେଠାରେ ଉପସ୍ଥିତ ହେଲେ । ସେମାନେ ଜନତାକୁ ଅବୈଧ ଘୋଷଣା କଲେ ଓ ସେମାନଙ୍କୁ ଚାଲି ଯିବାକୁ ଆଦେଶ ଦେଲେ । ଲୋକମାନେ ଚାଲି ନଯିବାରୁ ପୁଲିସ ୮୦ ରାଉଣ୍ଡ ଗୁଳି ଚଳାଇଲେ । ପରେ ପୁଣି ୫୦ ରାଉଣ୍ଡ ଗୁଳି କଲେ । ଫଳରେ ୨୬ ଜଣ ଲୋକ ମୃତ୍ୟୁ ବରଣ କଲେ ଓ ୫୨ ଜଣ ଆହତ ହେଲେ । ଏହା ଓଡ଼ିଶାରେ ୧୯୪୨ ବିପ୍ଳବର ସବୁଠାରୁ ମର୍ମନ୍ତୁଦ ଓ ଉତ୍ତାପ ଘଟଣା । ଏହା ପଞ୍ଜାବର ଜାଲିଆନାବାଲାବାଗ ଗୁଳିକାଣ୍ଡର କ୍ଷୁଦ୍ର ସଂସ୍କରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅକ୍ଟୋବର ମାସ ୧୯ ତାରିଖରେ ପ୍ରାୟ ୨୦୦୦ ଭୋକିଲା ଲୋକ ଲକ୍ଷ୍ମଣନାଥର ଏକ ଚାଉଳ ମିଲ ଉପରେ ଚଢ଼ାଉ କଲେ । ପୁଲିସ ସେମାନଙ୍କ ଉପରେ ଗୁଳି ଚଳାଇଲେ ଓ ଜଣେ ଲୋକ ଗୁଳି ଚୋଟରେ ପ୍ରାଣ ହରାଇଲା ।

—0—

# ମୟୂରଭଞ୍ଜ ଜିଲ୍ଲାରେ ପ୍ରଜା ଆନ୍ଦୋଳନ

ଭାରତରେ ୧୮୫୭ ସାଲର ସିପାହୀ-ବିଦ୍ରୋହ ବେଳେ ମୟୂରଭଞ୍ଜ ମହାରାଜା ଯଦୁନାଥ ଭଞ୍ଜ ଇଂରାଜୀ ସରକାରଙ୍କର ବିଶ୍ୱସ୍ତ ବନ୍ଧୁ ରୂପେ ପରିଚିତ ହୋଇଥିଲେ । ତାଙ୍କ ଜାମାତା ପୋଡ଼ାହାଟର ରାଜା ସିପାହୀ-ବିଦ୍ରୋହରେ ଲିପ୍ତ ହେଉଥିବା ଜାଣି ସେ ତାଙ୍କୁ ସେଥିରୁ ନିବୃତ୍ତ ହେବାକୁ ଉପଦେଶ ଦେଇ କେତୋଟି ପତ୍ର ଲେଖିଥିଲେ । ତାହା ସିଂହଭୂମିର ତତ୍କାଳୀନ ସହକାରୀ କମିଶନର ଲେଫ୍ଟନେଣ୍ଟ ବିର୍ଚ୍ଚ ସାହେବ ସେଠା ପୁଲିସ ଅଫିସରଙ୍କଠାରୁ ଖବର ପାଇ ସରକାରଙ୍କୁ ଜଣାଇ ଦେଇଥିଲେ ଯେ, ମୟୂରଭଞ୍ଜ ମହାରାଜା 'ମହାରାଜାଧିରାଜ' ଉପାଧି ପାଇବାକୁ ଯୋଗ୍ୟ । ଯଦୁନାଥ ଭଞ୍ଜ ଜାମାତା ପୋଡ଼ାହାଟ ରାଜାଙ୍କୁ ୧୮୫୯ ରେ ପ୍ରଭାବିତ କରି ବିଦ୍ରୋହରେ ଯୋଗ ଦେବାରୁ କ୍ଷାନ୍ତ କରିପାରିଥିଲେ । ସିଂହଭୂମିରେ ଯେଉଁ ବିଦ୍ରୋହ ଅଙ୍କୁରିତ ଅବସ୍ଥାରେ ଥିଲା ତାହା ମୂଳୋତ୍ପାଟ କରିବାକୁ ମହାରାଜା ଯଦୁନାଥ ଭଞ୍ଜ ସକ୍ଷମ ହୋଇ ଥିବାରୁ ସରକାରଙ୍କ ପକ୍ଷରୁ ୧୮୬୦ ରେ ତାଙ୍କୁ ''ମହାରାଜା ବାହାଦୁର'' ଉପାଧି ଦିଆଗଲା ।

୧୮୬୩ ସାଲରେ ଯଦୁନାଥ ଭଞ୍ଜ କଟକରେ ମୃତ୍ୟୁ ଲାଭ କଲାପରେ ତାଙ୍କ ପୁତ୍ର ଶ୍ରୀନାଥଭଞ୍ଜ ଚାରିବର୍ଷ ଗାଦିରେ ବସିଥିଲେ । ତାଙ୍କ ରାଜତ୍ୱ କାଳରେ ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷରେ ବହୁ ସଂଖ୍ୟାରେ ଲୋକେ ଖାଇବାକୁ ନପାଇ ପ୍ରାଣ ହରାଇଲେ । ଏପରି ଘୋର ଦୁର୍ଦ୍ଦିନ ବେଳେ ମୟୂରଭଞ୍ଜର ବାମନଘାଟି ପରଗଣାରେ ଆଦିବାସୀ ବିଦ୍ରୋହ ଦେଖାଦେଲା । କିନ୍ତୁ ଅଳ୍ପ କାଳ ମଧ୍ୟରେ ତାହା ଦମନ କରାଯାଇ ପାରିଥିଲା । ସେତେବେଳେ ମିଷ୍ଟର ଟି.ଇ. ରେଭେନ୍ସା ସାହେବ ଥିଲେ ଓଡ଼ିଶା ଗଡ଼ଜାତ ମହଲର କାର୍ଯ୍ୟକାରୀ ସୁପରିଟେଣ୍ଡେଣ୍ଟ । ବାମନଘାଟି ଏବଂ ଉପେର ଭାଗ ନାମକ ସ୍ଥାନରେ ସେ ୧୦ ଦିନ ରହିଥିଲେ । ତାଙ୍କ ସାଥିରେ ସେ ନେଇଥିଲେ ୧୮ ବର୍ଷ ବୟସ୍କ ମୟୂରଭଞ୍ଜର ଉତ୍ତରାଧିକାରୀ କୃଷ୍ଣଚନ୍ଦ୍ର ଭଞ୍ଜଙ୍କୁ ।

ନଅଙ୍କ ଦୁର୍ଭିକ୍ଷର କରାଳ ଛାୟା ସମଗ୍ର ଓଡ଼ିଶାରେ ବିଶେଷତଃ ବାଲେଶ୍ୱର ଜିଲ୍ଲାକୁ ଗ୍ରାସ କରିଥିଲା । ୧୮୬୬ ରେ ସିଂହ ଭୂମି ମଧ୍ୟ ଦୁର୍ଭିକ୍ଷ କବଳରେ ପଡ଼ିବାରୁ ଛୋଟନାଗପୁର ଡିଭିଜନର କମିଶନର ସେଠା ଲୋକଙ୍କୁ ଖାଦ୍ୟ ଯୋଗାଇବା ପାଇଁ ସରକାରଙ୍କୁ ଅନୁରୋଧ କରି ପତ୍ର ଲେଖିଥିଲେ । ମୟୂରଭଞ୍ଜର ଉଭୟ ପାର୍ଶ୍ୱ ଲୋକେ ଦୁର୍ଭିକ୍ଷ କବଳରେ ପଡ଼ିଥିବା ଦୃଷ୍ଟିରୁ ବାମନଘାଟିର ଆଦିବାସୀମାନେ ଖାଦ୍ୟାଭାବରୁ ଲୁଟମାର କରିଥିବେ ଏବଂ ସାଧାରଣ ଚାଷୀ ଓ ବ୍ୟବସାୟୀମାନେ ସେଥିର ପ୍ରତିରୋଧ କରିଥିବେ, ଯାହା ଫଳରେ ସେଠାରେ ଚାଷୀ ଓ ହାଟ ବ୍ୟବସାୟୀମାନେ ସଂଚୟ କରିଥିବା ଧାନ-ପୁଡ଼ା ଓ ଧାନ କୋଠିଗୁଡ଼ିକ ଲୁଟି କରିବାକୁ ଦଳ ଦଳ ଭୋକିଲା ଆଦିବାସୀ ସେ ଅଞ୍ଚଳରେ ଅଶାନ୍ତି-ଉପଦ୍ରବ ସୃଷ୍ଟି କରିଥିବେ ଏଥିରେ ଆଦୌ ସନ୍ଦେହ ନାହିଁ । ଦୁର୍ଭାଗ୍ୟକୁ ସେତେବେଳେ ଭୂମି ମାପଚୁପ, ସର୍ଭେ ଓ ସେଟେଲମେଣ୍ଟ କାମ ଜୋର ସୋରରେ ଚାଲିଥାଏ । ଯେଉଁମାନେ ସେହି ସେହି କାମରେ ନିଯୁକ୍ତ ହୋଇଥିଲେ, ସେମାନେ ସାଧାରଣ ଜମିମାଲିକଙ୍କଠାରୁ ଧାନ ଚାଉଳ ଯୋଗାଡ଼ କରି ଆଦିବାସୀଙ୍କର ଜମିର ମାଲିକାନା ସ୍ୱତ୍ୱରେ ଦୁର୍ନୀତି କରୁଥିଲେ । ଏଣୁ 'ଦେଶି ଲୋକ' ବା 'ଆଦିବାସୀ' ଏବଂ 'ହାଟୁଆ' ବା ଚାଷୀ ଓ ବ୍ୟବସାୟୀମାନଙ୍କ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି ହେବା ସ୍ୱାଭାବିକ । କ୍ରମେ ତାହା ଘୋର ଅଶାନ୍ତି-ଉପଦ୍ରବରେ ପରିଣତ ହେଲା । ରେଭେନ୍ସା ସାହେବ ସରକାରଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ ସେଥିରେ ନଅଙ୍କ ଦୁର୍ଭିକ୍ଷ ଓ ଦୁର୍ନୀତି ଯେ ସେଥିର ମୂଳ କାରଣ, ଏହା ଆଦୌ ସୂଚାଇ ନଥିବାର ଜଣାଯାଏ । ସେ ବାମନଘାଟିକୁ ଯିବା ଆଗରୁ କଟକ ଓ ବାଲେଶ୍ୱରବାଟ ଦେଇ ଯଦି ଯାଇଥାନ୍ତେ, ତେବେ ହୁଏତ ବୁଝିପାରିଥାନ୍ତେ କିପରି ଖାଦ୍ୟାଭାବରେ ହଜାର ହଜାର ଲୋକ ମରିଯାଉଛନ୍ତି । କିନ୍ତୁ ରେଭେନ୍ସାଙ୍କ କ୍ୟାମ୍ପରେ ଯଥେଷ୍ଟ ପରିମାଣ ଖାଦ୍ୟ ଜିନିଷ ଗଚ୍ଛିତ ଥିବାରୁ ଲୋକଙ୍କ ଦୁର୍ଦ୍ଦଶା ବୁଝିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥିଲା । କିନ୍ତୁ ବହୁ ବିଳମ୍ବରେ ନିଜର ଅଜ୍ଞତା ବୁଝିପାରି ଅନୁତାପ କରିଥିଲେ ।

ଉପେର ଭାଗ ପରଗଣାରେ ଖାଦ୍ୟ ପଦାର୍ଥ ଯୋଗାଣ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ଫଳରେ ନାନା ପ୍ରକାର ରୋଗ ମଧ୍ୟ ଦେଖାଦେଲା ।

(୧୮୬୪ ସାଲରେ ଓଡ଼ିଶାରେ ଖାଦ୍ୟଶସ୍ୟ ଅଳ୍ପ ପରିମାଣରେ ଉତ୍ପାଦିତ ହୋଇଥିଲା । ତାପର ବର୍ଷ ୧୮୬୫ ସାଲରେ ବର୍ଷାର ସ୍ୱଳ୍ପତା ହେତୁ ଉତ୍କଟ ମରୁଡ଼ି ଦେଖା ଦେଲା । ସେବର୍ଷ ଆଶ୍ୱିନ-କାର୍ତ୍ତିକ ମାସରେ ଧାନ-ଚାଉଳର ମୂଲ୍ୟ ହଠାତ୍ ଅନେକ ଗୁଣ ବଢ଼ିଗଲା । ମାର୍ଗଶିର ମାସ ବେଳକୁ ଖାଦ୍ୟାଭାବରେ ଲୋକେ ମରିବାକୁ ଲାଗିଲେ । ପୁରୀ କଲେକ୍ଟର ଏଥିର ପ୍ରତିକାର ପାଇଁ ସରକାରଙ୍କୁ ଲେଖି ଲେଖି ଥକି ଗଲେ । ରେଭେନ୍ୟୁ ବୋର୍ଡ଼ ତାଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ । ୧୮୬୬ରେ ଓଡ଼ିଶାରୁ ଲକ୍ଷ ଲକ୍ଷ ଲୋକ ଭୋକ-ଉପାସରେ ମରିଥିଲେ - ଯାହାକି ଇଂରାଜୀ ରାଜତ୍ୱର ଏକ ଅକ୍ଷମଣୀୟ ଐତିହାସିକ କଳଙ୍କ)

ଉଠିଲା ପ୍ରବଳ ଭାବରେ ମାଡ଼ି ଆସିଲା । ସେତେବେଳେ ରେଭେନ୍ସା ସାହେବ ଯେଉଁମାନଙ୍କଠାରୁ ସାକ୍ଷ୍ୟ ପାଇବାର ଯୋଗାଡ଼ କରି ତଲବ କରିଥିଲେ, ଦିନଙ୍କ ପରେ ସେମାନଙ୍କ ଦେଖା ମିଳିଲା ନାହିଁ । ସେମାନେ ମଲେ କି ହଜିଲେ କେହି ଜାଣିପାରି ନଥିଲେ ।

ଆଦିବାସୀମାନେ ଯେଉଁ ଗୋଲ୍ଲା ଗାଈଗୁଡ଼ିକ ସାଧାରଣ ଚାଷୀଙ୍କଠାରୁ ଲୁଟି ନେଇଥିଲେ, ସେଥିରୁ କିଛି କିଛି ରେଭେନ୍ସା ଉଦ୍ଧାର କରିପାରିଥିଲେ; କିନ୍ତୁ ଅପହୃତ ଧାନ-ଚାଉଳ ସବୁ ବୁଭୁକ୍ଷୁ ଆଦିବାସୀମାନେ ଖାଇ ସାରିଥିଲେ ।

ଏ ପରିସ୍ଥିତିରେ ମହାରାଜା ଶ୍ରୀନାଥ ଭଞ୍ଜଙ୍କର ମୃତ୍ୟୁ ହୁଏ ଓ ତାଙ୍କ ଭ୍ରାତୃଷ୍ପୁତ୍ର କୃଷ୍ଣଚନ୍ଦ୍ର ଭଞ୍ଜ ୨୦ ବର୍ଷ ବୟସରେ ୧୮୬୭ ନଭେମ୍ବର ୧୦ ତାରିଖ ଦିନ ସିଂହାସନ ଲାଭ କରନ୍ତି । ୧୮୮୨ ସାଲରେ ତାଙ୍କ ମୃତ୍ୟୁ ବେଳକୁ ତାଙ୍କ ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ରଙ୍କ ବୟସ ଥିଲା ଏଗାର ବର୍ଷ । ତେଣୁ ମୟୂରଭଞ୍ଜ 'କୋର୍ଟ ଅଫ୍ ୱାର୍ଡ଼ସ' ଅଧୀନରେ ରହିଲା । ମି.ପି. ୱିଲି ସେଥିର ମେନେଜର ରୂପେ ନିଯୁକ୍ତ ହେଲେ । ୧୮୯୦ ସାଲରେ ରାମଚନ୍ଦ୍ରଭଞ୍ଜଙ୍କୁ ଯେତେବେଳେ ୨୦ ବର୍ଷ ବୟସ ହୋଇଥିଲା, ସେତେବେଳେ ସେ ସିଂହାସନ ଲାଭ କରିଥିଲେ । ପ୍ରାୟ ୩୩ ବର୍ଷ ବୟସରେ ସେ ବଙ୍ଗଳାର ସୁପ୍ରସିଦ୍ଧ ନବବିଧାନ ବ୍ରହ୍ମସମାଜର ସଂସ୍ଥାପକ କେଶବ ଚନ୍ଦ୍ର ସେନଙ୍କ କନ୍ୟା ସୁଚାରୁ ଦେବୀଙ୍କୁ ଦ୍ୱିତୀୟଥର କଲିକତାରେ ବିବାହ କଲେ । ତାଙ୍କ ପ୍ରଥମ ରାଣୀ ଲକ୍ଷ୍ମୀ କୁମାରୀ ଥିଲେ ଛୋଟନାଗପୁର ମହାରାଜାଙ୍କ କନ୍ୟା । ସେତେବେଳେ ରାମଚନ୍ଦ୍ର ଭଞ୍ଜଙ୍କ ବୟସ ପ୍ରାୟ ୨୫ ବର୍ଷ ହୋଇଥିଲା । ରାଣୀଙ୍କ ଗର୍ଭରୁ ଗୋଟିଏ କନ୍ୟା ଓ ଦୁଇଟି ପୁତ୍ର ଜନ୍ମ ହୋଇଥିଲେ । ଅଳ୍ପ କାଳରେ ବସନ୍ତ ରୋଗରେ ରାଣୀଙ୍କର ମୃତ୍ୟୁ ଘଟିଥିଲା, ଦ୍ୱିତୀୟା ରାଣୀ ସୁଚାରୁ ଦେବୀଙ୍କ ଗର୍ଭରୁ ମଧ୍ୟ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜନ୍ମିଥିଲେ । ରାଣୀ ସୁଚାରୁ ଦେବୀ ହିନ୍ଦୁ ହୋଇ ନଥିବାରୁ ମୟୂରଭଞ୍ଜ ପ୍ରାସାଦରେ ନରହି କଲିକତାରେ ହିଁ ଜୀବନ ଯାପନ କରିଥିଲେ ।

ଶ୍ରୀରାମଚନ୍ଦ୍ରଭଞ୍ଜ ଜଣେ ଦାନଶୀଳ ଏବଂ ଜନପ୍ରିୟ ରାଜା ହୋଇଥିବାରୁ ଇଂରାଜୀ ସରକାର ଯେପରି, ଜନସାଧାରଣ ମଧ୍ୟ ସେପରି ତାଙ୍କର ପ୍ରଶଂସା କରୁଥିଲେ । ଫଳରେ କୌଣସି ପ୍ରକାର ଅଶାନ୍ତି ମୟୂରଭଞ୍ଜକୁ ସ୍ପର୍ଶ କରି ନଥିଲା । ୧୯୧୧ ସାଲରେ ଅନୁଷ୍ଠିତ ଦିଲ୍ଲୀ ଦରବାରରେ ସେ "ମହାରାଜା" ଉପାଧି ପାଇଥିଲେ ।

ଓଡ଼ିଶାର ବହୁ ଲୋକ ହିତକର କାର୍ଯ୍ୟରେ ମହାରାଜା ଜଡ଼ିତ ଥିଲେ । ତାଙ୍କରି ଅର୍ଥ ସାହାଯ୍ୟରେ ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ରାଖାଲଦାସ ବାନାର୍ଜୀ ଇଂରାଜୀରେ ଲେଖିଥିଲେ । ମହାରାଜା ରାମଚନ୍ଦ୍ରଭଞ୍ଜଙ୍କ ଆର୍ଥିକ ସାହାଯ୍ୟରେ ଓଡ଼ିଶାରେ ବହୁ ସାହିତ୍ୟ ଅନୁଷ୍ଠାନ ବିକାଶ ଲାଭ କଲା । ସେ ମଧୁବାବୁଙ୍କୁ ଉଚ୍ଚ ନିଜ ରାଜ୍ୟରେ ଷ୍ଟେଟ ଓକିଲ ରୂପେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ନିଯୁକ୍ତ କରିଥିଲେ । ମୟୂରଭଞ୍ଜର ସାମାଜିକ, ସାଂସ୍କୃତିକ ଓ ସାହିତ୍ୟର ଯଥେଷ୍ଟ ଉନ୍ନତି ଘଟିଥିଲା ।

୧୯୧୨ ସାଲ ଫେବୃୟାରୀ ୨୪ ତାରିଖ ସକାଳେ କଲିକତା ହସପିଟାଲରେ ତାଙ୍କ ଅପମୃତ୍ୟୁ ସମ୍ବାଦ ସମଗ୍ର ଓଡ଼ିଶାରେ ଗଭୀର ଦୁଃଖ ଓ ବିଷାଦର ଛାୟା ଖେଳାଇ ଦେଇଥିଲା । ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ ମୃତ୍ୟୁ ବେଳକୁ ତାଙ୍କ ଉତ୍ତରାଧିକାରୀ ପୁତ୍ର ପୂର୍ଣ୍ଣଚନ୍ଦ୍ରଭଞ୍ଜ ଅପ୍ରାପ୍ତ ବୟସ୍କ ହୋଇ ଥିବାରୁ ମୟୂରଭଞ୍ଜ ଷ୍ଟେଟ କୋର୍ଟ ଅଫ ୱାର୍ଡ଼ସଙ୍କ ଅଧୀନରେ ଚାଳିତ ହେଲା ।

୧୯୧୭ ମେ ମାସରେ ସେଠା ଆଦିବାସୀ ସାନ୍ତାଳମାନେ ବାମନଘାଟିଠାରେ ବିଦ୍ରୋହ ଆରମ୍ଭ କଲେ । ସେମାନଙ୍କ ଦାବୀ ଥିଲା ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଫ୍ରାନ୍ସଠାକୁ ମଜୁରି ଦେଇ ଯେଉଁ ଆଦିବାସୀ ଶ୍ରମିକମାନଙ୍କୁ ଏଠାରୁ ନେବା ପାଇଁ ତାଲିକା ସ୍ଥିର ହୋଇଥିଲା, ସେଥିରୁ ସାନ୍ତାଳମାନେ ବାଦ ପଡ଼ିଥିଲେ । ଏଣୁ ସମ୍ପୃକ୍ତ ଅଫିସରଙ୍କୁ ସେମାନେ ମାରିଦେବାକୁ ଉଦ୍ୟତ ହେଲେ । ସ୍ଥାନୀୟ ଦୋକାନ, ବଜାର ପ୍ରଭୃତି ଲୁଟମାର କରି ରେଳଲାଇନ୍ ଭାଙ୍ଗି ଦେଲେ ।

ସାନ୍ତାଳ ବିଦ୍ରୋହୀମାନଙ୍କ ମୁକାବିଲା କରିବାକୁ ମୟୂରଭଞ୍ଜରେ ଥିବା ପ୍ରତିରକ୍ଷା ବିଭାଗ ଅପାରଗ ହେବାରୁ ଓଡ଼ିଶାରୁ ପୁଲିସ୍ ଫୌଜ ଏବଂ କଲିକତାରୁ ଏକଶତ ବନ୍ଧୁକଧାରୀ ସୈନିକଙ୍କୁ ପଠାଇ ଦିଆଗଲା । ତଥାପି ଆଦିବାସୀମାନଙ୍କ ଉପଦ୍ରବ ଦବିଲା ନାହିଁ । ତେଣୁ ମିଲିଟାରୀ ଫୌଜ ଅଧିକ ସଂଖ୍ୟାରେ ବାହାରୁ ଅଣାଗଲେ । ଏ ପରିସ୍ଥିତିରେ ସାନ୍ତାଳମାନଙ୍କ ଉପରେ ଅତି କଠୋର ଆକ୍ରମଣ ହେଲା । ସେମାନଙ୍କୁ ଲାଠି ମାଡ଼ ଓ ବେତଦଣ୍ଡ ଦିଆଗଲା । ମିଲିଟାରୀମାନଙ୍କ ବନ୍ଧୁକ ମୁନରେ ବହୁ ସଂଖ୍ୟାରେ ଆଦିବାସୀ ପ୍ରାଣ ହରାଇଲେ । କିନ୍ତୁ ସେହି ନିର୍ମମ ଅତ୍ୟାଚାର ସରକାରୀ ରିପୋର୍ଟରୁ ବାଦ ଦିଆ ଗଲା । ମୟୂରଭଞ୍ଜରେ ସାମରିକ ଆଇନ୍ ଜାରି ହେବାରୁ ୫ ଜଣ ଏକାଠି ମନ୍ତ୍ରଣା କରିବାକୁ ମଧ୍ୟ ନିଷେଧ ହୋଇଥିଲା ।

୧୯୨୦ ନଭେମ୍ବର ୧୩ ତାରିଖ ଦିନ ତରୁଣ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ରାଜ ଗାଦି ଆରୋହଣ କଲେ । ସେତେବେଳେ ଭାରତର ଜାତୀୟ କଂଗ୍ରେସ ପକ୍ଷରୁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । କ୍ରମେ ସେଥିର ପ୍ରଭାବରେ ଓଡ଼ିଶା ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଗଢ଼ି ସ୍ୱାଧୀନତା ଆନ୍ଦୋଳନ ପାଇଁ ନେତାମାନଙ୍କର ବିଚାର ଚାଲିଥାଏ ।

୧୯୩୮ ମସିହାରେ ଓଡ଼ିଶାର ଗଡ଼ଜାତମାନଙ୍କରେ ପ୍ରବଳଭାବେ ରାଜନୈତିକ ଚେତନାର ସୂତ୍ରପାତ୍ ହେଲା । ଏହା ସହିତ ପ୍ରଜା ଆନ୍ଦୋଳନ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟିକଲା । ଓଡ଼ିଶାରେ ନୀଳଗିରି, ଢେଙ୍କାନାଳ, ରଣପୁର, ନୟାଗଡ଼, ତାଳଚେର, ଆଦି ଭିନ୍ନ ଭିନ୍ନ ଗଡ଼ଜାତ ଅଂଚଳରେ ପ୍ରଜାମଣ୍ଡଳମାନ ଗଢ଼ି ଉଠିଲା । ଶାସକ ଗୋଷ୍ଠୀ ମଧ୍ୟ ଜନଜାଗରଣକୁ ଦମନ କରିବାର ପ୍ରଚେଷ୍ଟାରେ ରହିଲେ । ଏହା ଫଳରେ ଭିନ୍ନ ଭିନ୍ନ ସ୍ଥାନରେ ବହୁ ଅପ୍ରୀତିକର ପରିସ୍ଥିତି ସୃଷ୍ଟିହେଲା । ରଣପୁରଠାରେ ଥିବା ପଲିଟିକାଲ ଏଜେଣ୍ଟ ବେଜଲଗେଟ ନାମକ ଜଣେ ଗୋରା ଅଫିସରଙ୍କୁ ପିଟି ପିଟି ମାରିଦେବା ଫଳରେ ସାରା ଭାରତରେ

ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା । ୧୯୩୮ ମସିହା ଶେଷ ବେଳକୁ ପ୍ରଜା ଆନ୍ଦୋଳନ କ୍ରମଶଃ ଦୃଢ଼ୀଭୂତ ହେବାକୁ ଲାଗିଲା । ରାଜ୍ୟର ଲୋକେ ସେମାନଙ୍କର ନ୍ୟାଯ୍ୟ ସାମାଜିକ ଓ ରାଜନୈତିକ ଅଧିକାର ଦାବୀ କଲେ । ମୟୂରଭଞ୍ଜରେ ପ୍ରଥମ ସାଧାରଣ ସଭା ବଂଶୀଧର ବେହେରାଙ୍କ ନେତୃତ୍ୱରେ ସିମିଳାଠାରେ ଅନୁଷ୍ଠିତ ହୋଇଥିଲା । ସଭା ପୂର୍ବରୁ ତାଙ୍କର କେତେକ ସହକର୍ମୀଙ୍କୁ ପୋଲିସ୍ ନିର୍ମମ ମାଡ଼ ଦେଇ ଥିଲେ ମଧ୍ୟ ସଭା ହୋଇଥିଲା । ଏହାପରେ କପ୍ତିପଦା ସବଡ଼ିଭିଜନ ଓ ପଞ୍ଚପୀଢ଼ ସବ୍‌ଡ଼ିଭିଜନର କେତେକ ସ୍ଥାନରେ ସରକାରଙ୍କର ଅନୁମତି ବିନା ସାଧାରଣ ସଭାମାନ ହୋଇଥିଲା । ଯେଉଁ ଯୁବକ ଗୋଷ୍ଠୀ ଏହି ସଭାର ଆୟୋଜନ କରୁଥିଲେ, ସେମାନେ କ୍ରମଶଃ ଏହାକୁ ଏକ ସ୍ଥାୟୀ ସଂଗଠିତ ଆନ୍ଦୋଳନରେ ପରିଣତ କରିବାକୁ ଚେଷ୍ଟାକଲେ ।

୧୯୩୯ ମସିହାରେ ମୟୂରଭଞ୍ଜଠାରେ 'ପ୍ରଜାମଣ୍ଡଳ' ସ୍ୱର୍ଗୀୟ ଶରତ ଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ସେ ଜଣେ ଓକିଲ ହେଲେ ମଧ୍ୟ ରାଜନୈତିକ କ୍ଷେତ୍ରରେ ତାଙ୍କର ଯଥେଷ୍ଟ ସୁନାମ ଥିଲା । ମୟୂରଭଞ୍ଜ ଜିଲ୍ଲାରେ ସେ ''ଶରତ ଗାନ୍ଧୀ'' ନାମରେ ପରିଚିତ ଥିଲେ । ସେ ୧୯୨୦ ରୁ ୧୯୨୫ ମସିହା ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚବର୍ଷ ଧରି ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ଉପସଭାପତି ଭାବରେ ରହି କଂଗ୍ରେସ ଆନ୍ଦୋଳନ ପରିଚାଳନା କରୁଥିଲେ । ସେ ଉତ୍କଳ ସମ୍ମିଳନୀ ସହିତ ମଧ୍ୟ ସଂପୃକ୍ତ ଥିଲେ । ସେ ବାରିପଦାଠାରେ ''ଜଗନ୍ନାଥ କ୍ଲବ'' ପ୍ରତିଷ୍ଠାକରି ଜନସାଧାରଣଙ୍କ ସାହାଯ୍ୟରେ ରାଜ୍ୟର ଯୁବକମାନଙ୍କୁ ଉଚ୍ଚଶିକ୍ଷା ପ୍ରଦାନ କରୁଥିଲେ ଓ ବେଶିଙ୍ଗା ଥାନାର ରାହାଣ୍ଡା ପ୍ରଗଣାରେ କେତେକ ଅନୁଷ୍ଠାନ ମାଧ୍ୟମରେ ସେ ଅଂଚଳର ଶିକ୍ଷାର ଉନ୍ନତି ସାଧନ କରିଥିଲେ । ୧୯୩୯ ମସିହାରେ ଶରତଚନ୍ଦ୍ର ଦାସ ଓକିଲାତି ଛାଡ଼ି ପ୍ରଜା ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲେ । ୧୯୩୯ ମସିହା ଆରମ୍ଭରେ କପ୍ତିପଦା ସବ୍‌ଡ଼ିଭିଜନରେ ଏକ ବଡ଼ ଧରଣର ସାଧାରଣ ସଭା ହୋଇଥିଲା । ସେଥିରେ ଶରତ ବାବୁ ପ୍ରଥମ କରି ଯୋଗଦେଇ, କଂଗ୍ରେସ ଆନ୍ଦୋଳନର ଆବଶ୍ୟକତା, କଂଗ୍ରେସ ଆଦର୍ଶ ଓ ଗଡ଼ଜାତ ଶାସନର ବିଲୋପ ପାଇଁ ଯେଉଁ ଭାଷଣ ଦେଇଥିଲେ, ତାହା ଜନସାଧାରଣଙ୍କ ମନରେ ବିଶେଷ ପ୍ରଭାବ ପକାଇ ପାରିଥିଲା । ପରେ ପରେ ମୟୂରଭଞ୍ଜର ଚକ୍ରପାଳ, କରଁଜିଆ, ସାଇଁ କୋଳାର କାଶିପୁର ଡୋଟା, ମାଣିଗାଁ ଆଦି ବିଭିନ୍ନ ଜାଗାରେ ସାଧାରଣ ସଭାମାନ ହୋଇ ଆନ୍ଦୋଳନକୁ ଅଧିକ ସୁଦୃଢ଼ କରିଥିଲା । ଶରତ ବାବୁ ଏହି ପ୍ରଜା ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରି ଏହାକୁ ଏକ ସୁଦୃଢ଼ ଓ ସୁସଂଗଠିତ ଜାତୀୟ ଆନ୍ଦୋଳନରେ ପରିଣତ କରିବାକୁ ସକ୍ଷମ ହୋଇଥିଲେ ।

ଓଡ଼ିଶାର ଅନ୍ୟାନ୍ୟ ଅଂଚଳରେ ଚାଲିଥିବା ପ୍ରଜା ଆନ୍ଦୋଳନର ପ୍ରଭାବରେ ମୟୂରଭଞ୍ଜର ଶାସନ କ୍ଷେତ୍ରରେ କେତେକ ପରିବର୍ତ୍ତନ ଘଟିଥିଲା । ହଠାତ୍ ଏକ ସରକାରୀ ଘୋଷଣାରେ ସଭାସମିତି ଗଠନ ଉପରୁ କଟକଣା ଉଠିଗଲା ଓ ପ୍ରଶାସନିକ କ୍ଷେତ୍ରରେ ଜନସାଧାରଣଙ୍କର ସହଯୋଗର ଆବଶ୍ୟକତାକୁ ଗୁରୁତ୍ୱ ଦିଆଯାଇ ସାବାଳକ ଭୋଟ ଦ୍ୱାରା ରାଜ୍ୟର ୪ ଟି ସବଡ଼ିଭିଜନରୁ ନିର୍ବାଚିତ ପ୍ରତିନିଧିମାନଙ୍କର ୪ ଟି 'ପ୍ରଜାସଭା' ଗଠନ କରାଗଲା । ପରେ ଉକ୍ତ ପ୍ରଜାସଭାମାନଙ୍କରୁ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ରାଜ୍ୟ ବା ଷ୍ଟେଟର ଶାସନ କ୍ଷେତ୍ରରେ ପରାମର୍ଶ ଦେବା ପାଇଁ ପ୍ରଜାପରିଷଦ ନାମକ ଏକ ପ୍ରତିନିଧିମୂଳକ ସଂସ୍ଥା ଗଠନ କରାଯିବାର ବିଜ୍ଞପ୍ତି ପ୍ରକାଶ ପାଇଲା । ଅବଶ୍ୟ ଏହା ତତ୍କାଳୀନ ସଂକଟଜନକ ପରିସ୍ଥିତିକୁ ସମ୍ଭାଳିବା ପାଇଁ ଏକ କୂଟନୈତିକ କୌଶଳ ଥିଲା । ଏହି ଭୋଟ ଗ୍ରହଣ ପାଇଁ କୌଣସି ଭୋଟର ତାଲିକା ବା ଗୁପ୍ତ ଭାବରେ ଭୋଟଦାନର କୌଣସି ବ୍ୟବସ୍ଥା ନଥିଲା । ମୟୂରଭଞ୍ଜ 'ପ୍ରଜା ପରିଷଦ'ର ପରାମର୍ଶ ଦେବା ବ୍ୟତୀତ ଅନ୍ୟ କୌଣସି କ୍ଷମତା ନଥିଲେ ମଧ୍ୟ ତତ୍କାଳୀନ ବ୍ରିଟିଶ ଶାସନରେ ଏହା ଏକ ଉନ୍ନତିମୂଳକ ପଦକ୍ଷେପ ଥିଲା ।

୧୯୩୯ ମସିହାରେ ଆମ୍ବକୋଡ଼ାଠାରେ ଶରତଚନ୍ଦ୍ରଙ୍କର ବାସଗୃହରେ ଏକ ଛୋଟ ଆଶ୍ରମ ପ୍ରତିଷ୍ଠା କରାଯାଇଥିଲା । ମୟୂରଭଞ୍ଜର ବିଭିନ୍ନ ସ୍କୁଲ ଓ କଲେଜର ଛାତ୍ରଛାତ୍ରୀମାନେ ଏହାର ସଭ୍ୟ ହେଲେ । ପରବର୍ତ୍ତୀକାଳରେ ମୟୂରଭଞ୍ଜର ବାରିପଦା ସବ୍‌ଡ଼ିଭିଜନର ସଠିଲୋ, ବଣହାରୀ, ରାହାଣ୍ଡା, ବାଉପଡ଼ା, ବଡ଼ସାହୀ, କୁରାଡ଼ିହା, ମାଣଚ୍ରୀ, ଆଣ୍ଠୁଆ-ଦେଉଳିଆ ଓ କପ୍ତିପଦା ସବ୍‌ଡ଼ିଭିଜନର କଇଁସାରୀ, ସାଇଁକୋଳା, ଖୁଣ୍ଟା, ଚିଲିମା, ଆଉପଟା ଇତ୍ୟାଦିରେ ପ୍ରଗଣା ସମିତିମାନ ଗଠନ କରାଗଲା ।

ଶରତଚନ୍ଦ୍ର ଦାସ ପ୍ରଜା ଆନ୍ଦୋଳନକୁ ହଠାତ୍ ତୀବ୍ର ନକରି ସର୍ବପ୍ରଥମେ ସେ ସଂଗଠନ ଉପରେ ଗୁରୁତ୍ୱ ଦେଇଥିଲେ । ୧୯୪୦ ମସିହା ବେଳକୁ ଶରତ ବାବୁଙ୍କ ସକ୍ରିୟ ଉଦ୍ୟମ ଯୋଗୁଁ ପ୍ରଜାଆନ୍ଦୋଳନ କ୍ରମେ ସଂପ୍ରସାରିତ ହେଲା । ପ୍ରଗଣା ସମିତିମାନ ଗଠିତ ହୋଇ, ବିଭିନ୍ନ ପ୍ରକାରର ଗଠନ ମୂଳକ କାର୍ଯ୍ୟକ୍ରମ ଯଥା, ଗ୍ରାମରେ ଧାନଗୋଲା ସ୍ଥାପନ, ରାସ୍ତା ମରାମତି, ସଫେଇ ଆଦି ଗାନ୍ଧିଜୀଙ୍କର ଗଠନମୂଳକ କାର୍ଯ୍ୟକ୍ରମ ଜନସାଧାରଣଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । କ୍ରମଶଃ ଜନସାଧାରଣ ଏହି ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ବହୁ ସଂଖ୍ୟାରେ ପ୍ରଗଣା ସମିତିମାନଙ୍କରେ ସଭ୍ୟ ହେଲେ । ସେମାନଙ୍କର ମିଳିତ କାର୍ଯ୍ୟକ୍ରମ ଫଳରେ ଗ୍ରାମବାସୀମାନଙ୍କର ଅର୍ଥନୈତିକ ଓ ସାମାଜିକ ଉନ୍ନତି ସାଧିତ ହେଲା । ୧୯୪୦ ମସିହାରେ ବଡ଼ସାହୀ ଥାନାର ତେନ୍ତଳ ଗ୍ରାମରେ ବୁଢ଼ାବଳଙ୍ଗ ନଦୀକୂଳରେ ମୟୂରଭଞ୍ଜ ପ୍ରଜା ଆନ୍ଦୋଳନର ତିନିଦିନିଆ ବାର୍ଷିକ ଅଧିବେଶନ ଓ ତାହା ସହିତ ଏକ କୃଷି ଓ ହସ୍ତଶିଳ୍ପର ପ୍ରଦର୍ଶନୀ ମଧ୍ୟ କରାଗଲା । ଏହି ଅଧିବେଶନରେ ସର୍ବଭାରତୀୟ ଜନକ ରାଜ୍ୟ ଲୋକଙ୍କ ସଭାର ସାଧାରଣ ସଂପାଦକ ସାରଙ୍ଗଧର ଦାସ ଯୋଗ ଦେଇଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ଶରତଚନ୍ଦ୍ରଙ୍କ ନେତୃତ୍ୱରେ ଚାଲିଥିବା ପ୍ରଜା ଆନ୍ଦୋଳନକୁ ପ୍ରଶଂସା କରି ଏକ ଚିଠି ଲେଖିଥିଲେ । ସାରଙ୍ଗଧର ବାବୁଙ୍କର ପରାମର୍ଶରେ ୧୯୪୦ ମସିହା ଜୁନ ଶେଷ ବେଳକୁ ୪୦-୫୦ ଜଣ କର୍ମୀଙ୍କର ଏକ ସେବାଦଳ ଶିବିର ଗଠନ କରାଯାଇଥିଲା ।

ଗ୍ରାମବାସୀମାନେ ସେମାନଙ୍କର ରାଜନୈତିକ ଓ ସାମାଜିକ ଅଧିକାର ବିଷୟରେ ସଚେତନ ହୋଇଥିଲେ । ଅନ୍ୟାୟ ଅତ୍ୟାଚାରର

ମୁକାବିଲା ପାଇଁ ସେମାନେ ଏକତ୍ରିତ ହୋଇ ବିଦ୍ରୋହ କରିବା ପାଇଁ ପ୍ରସ୍ତୁତ ହୋଇଥିଲେ । ପ୍ରଗଣା ସମିତିର ଗଠନ ମୂଳକ କାର୍ଯ୍ୟକ୍ରମ କ୍ରମଶଃ ଏକ ରାଜନୈତିକ ଆନ୍ଦୋଳନର ରୂପ ନେବାକୁ ଲାଗିଲା ।

୧୯୪୦ ମସିହା, ଡ଼ିସେମ୍ବର ୧୮ ତାରିଖରେ ଆମ୍ବଯୋଡ଼ା ଗାଁରେ ଏକ ସମ୍ମିଳନୀରେ ସମସ୍ତ ପ୍ରଗଣା ସମିତିକୁ ନେଇ 'ମୟୂରଭଞ୍ଜ ଷ୍ଟେଟ ପ୍ରଜାମଣ୍ଡଳ' ନାମକ ଏକ ରାଜନୈତିକ ସଂଗଠନ ଶରତଚନ୍ଦ୍ର ଦାସଙ୍କ ସଭାପତିତ୍ୱରେ ଗଠନ କରାଗଲା । ଅନ୍ୟ ପକ୍ଷରେ ରାଜ୍ୟର ଜଣେ ଉଚ୍ଚପଦ କର୍ମଚାରୀଙ୍କ ଭାଇଙ୍କ ନେତୃତ୍ୱରେ ଓ ସରକାରଙ୍କର ସଂପୂର୍ଣ୍ଣ ସହାୟତାରେ ପ୍ରଜାମଙ୍ଗଳ ନାମକ ଏକ ଅନୁଷ୍ଠାନ ଗଠନ କରାଗଲା । ଏହା ମୁଖ୍ୟତଃ ସରକାରଙ୍କ ସପକ୍ଷରେ ଥିବା ବ୍ୟକ୍ତି ଓ କେତେକ ଅସାମାଜିକ ଗୁଣ୍ଡା ଜାତୀୟ ଲୋକଙ୍କ ସହାୟତାରେ ଗଠିତ ହୋଇଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପ୍ରଜାମଣ୍ଡଳର କୁତ୍ସାରଟନା କରିବା । ଏହି ବ୍ୟକ୍ତିମାନେ ନିଜକୁ କଂଗ୍ରେସ କର୍ମୀ ଭାବରେ ପରିଚୟ ଦେଇ ଲୋକଙ୍କ ମନରେ ପ୍ରଜାମଣ୍ଡଳ ପ୍ରତି ଅବିଶ୍ୱାସ ଜନ୍ମେଇବାକୁ ଚେଷ୍ଟାକଲେ । ସରକାରଙ୍କ ସହାୟତାରେ ପ୍ରଜାମଣ୍ଡଳର କେତେକ ବିଶିଷ୍ଟ କର୍ମୀଙ୍କର ବିରୁଦ୍ଧରେ ଫୌଜଦାରୀ ମୋକଦ୍ଦମା କରାଯାଇଥିଲା । 'ପ୍ରଜାମଙ୍ଗଳ' ଦ୍ୱାରା ପ୍ରକାଶିତ ଏକ ସଂବାଦପତ୍ର ମଧ୍ୟ ବିଭିନ୍ନ ମିଥ୍ୟା ସମ୍ବାଦମାନ ପ୍ରକାଶିତ କରି ପ୍ରଜାମଣ୍ଡଳ ସଂଗଠନକୁ ନିନ୍ଦିତ କରିବାକୁ ଉଦ୍ୟମ କଲା । ଏସବୁ ସତ୍ତ୍ୱେ ପ୍ରଜାମଙ୍ଗଳର ଉଦ୍ଦେଶ୍ୟ ସାଧିତ ହୋଇପାରି ନଥିଲା ।

ମୟୂରଭଞ୍ଜର ରାଜଶାସନ କ୍ରମଶଃ ଶକ୍ତିହୀନ ହୋଇପଡୁଥିଲା ଓ ପ୍ରଜାମଣ୍ଡଳର ଲୋକପ୍ରିୟତାରେ ସରକାର ଭୟଭୀତ ହୋଇ ପଡ଼ିଥିଲେ । ସରକାର ବେଆଇନ ଭାବରେ ପ୍ରଜାମଣ୍ଡଳର ବିଶିଷ୍ଟ କର୍ମୀମାନଙ୍କ ବିରୁଦ୍ଧରେ ମୋକଦ୍ଦମା କରିଥିଲେ ମଧ୍ୟ ସେମାନେ ଖଲାସ ହୋଇଯାଉଥିଲେ । କାରଣ ମୟୂରଭଞ୍ଜ ଉଚ୍ଚ ନ୍ୟାୟାଳୟ ପ୍ରଶାସନିକ ଗୋଷ୍ଠୀର ପ୍ରଭାବରୁ ମୁକ୍ତଥିଲା । ବହୁ ସଂଖ୍ୟାରେ ପ୍ରଗଣା ସମିତିମାନ ଗଠିତ ହେବାକୁ ଲାଗିଲା । ୧୯୪୧ ମସିହାରେ ପ୍ରଜାମଣ୍ଡଳର କାର୍ଯ୍ୟକ୍ରମ ପଞ୍ଚପିଡ଼ା ସବ୍‌ଡିଭିଜନକୁ ବ୍ୟାପୀ ଯାଇଥିଲା । ୧୯୪୧ ମସିହା ଜାନୁଆରୀ ମସିହା ୨୬ ତାରିଖରେ ସ୍ୱାଧୀନତା ଦିବସ ଉପଲକ୍ଷେ ବାରିପଦାଠାରେ ହେଉଥିବା ଏକ ସାଧାରଣ ସଭାକୁ ସରକାର ବେଆଇନ ବୋଲି ଘୋଷଣା କରିଥିଲେ ।

୧୯୪୨ ମସିହା ଜୁନ ମାସରେ ଖୁଣ୍ଟା ପ୍ରଗଣାର ଶିକାଘାଟୀ ଠାରେ ପ୍ରଜାମଣ୍ଡଳ ଡ଼ାକରା ରେ ଏକ ବନ୍ଧ ନିର୍ମାଣ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ହଜାର ହଜାର ସଂଖ୍ୟାରେ କର୍ମୀ ଏଥିରେ ଯୋଗ ଦେଇଥିଲେ । ସରକାର ଏହାକୁ ବନ୍ଦ କରିବାକୁ ଆଦେଶ ଦେଇଥିଲେ । କପ୍ତିପଦାର ସବ୍‌ଡିଭିଜନାଲ ଅଫିସର ସେଠାରେ ୧୪୪ ଧାରା ଜାରି କରି ବହୁ ସଂଖ୍ୟକ ଲୋକଙ୍କୁ ଗିରଫ କରିଥିଲେ । ଏହାପରେ Defence of Indian Act ଅନୁଯାୟୀ ବହୁ ବିଶିଷ୍ଟ କର୍ମଚାରୀ ସମେତ ସ୍ୱର୍ଗୀୟ ଗିରିଶ ଚନ୍ଦ୍ର ରାୟ, ଜଗନ୍ନାଥ କମିଲା ଓ ବଂଶୀଧର ରାଜଙ୍କୁ ଗିରଫ କରି ଅଟକବନ୍ଦୀ କରାଗଲା ।

୧୯୪୨ ମସିହାରେ ବମ୍ବେଠାରେ ଭାରତ ଛାଡ଼ ପ୍ରସ୍ତାବର ଐତିହାସିକ ନିଷ୍ପତ୍ତି ପରେ ଅଗଷ୍ଟ ୧୬ ତାରିଖରେ ବେତନଟୀ ଥାନାର ଅଗଣିବାଠାରେ ଦଶହଜାର ଲୋକଙ୍କର ଏକ ସାଧାରଣ ସଭାରେ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କରାଗଲା । ଏହାପରେ ଖୁଣ୍ଟାଠାରେ ୨୦ ହଜାର ଲୋକଙ୍କର ସଭା ହୋଇ ଉଦଳା ପର୍ଯ୍ୟନ୍ତ ଏକ ଶୋଭାଯାତ୍ରାରେ ଯାଇ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ ଓ କଂଗ୍ରେସକୁ ବେଆଇନ ଘୋଷଣାର ପ୍ରତିବାଦ କରାଗଲା । କିନ୍ତୁ ମୟୂରଭଞ୍ଜରେ ଏହାର କୌଣସି ସରକାରୀ ପ୍ରତିରୋଧ ହୋଇ ନଥିଲା । ଏପରିକି ବେତନଟୀରେ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କରି ପ୍ରାୟ ୫୦ ହଜାର ଲୋକ ଏକ ଶୋଭାଯାତ୍ରାରେ ବାହାରି ଥିବାବେଳେ ମୟୂରଭଞ୍ଜର ରାଜା ଶରତବାବୁଙ୍କୁ ସରକାର ମୟୂରଭଞ୍ଜରେ ରକ୍ତପାତ ନକରିବାକୁ ଓ ସହର ଉପକଣ୍ଠରୁ ଫେରି ଆସିବାକୁ ଅନୁରୋଧ କରିଥିଲେ । ଏହାପରେ ବିଭିନ୍ନ ଜାଗାରେ ହରତାଳ ହୋଇ ଦୋକାନ ଓ ହାଟ ଇତ୍ୟାଦି ବର୍ଜନ କରାଯାଉଥିଲା ।

୧୯୪୩ ମସିହା ଜାନୁଆରୀ ୨୬ ତାରିଖ ଦିନ ସ୍ୱାଧୀନତା ଦିବସ ଉପଲକ୍ଷେ ବୈଶିଙ୍ଗା ଥାନାର କରଣଗାଠାରେ ବୁଢ଼ୀ ନଦୀନାମକ ଏକ ଛୋଟ ନାଳ ଉପରେ ପ୍ରଜାମଣ୍ଡଳ ତରଫରୁ ଏକ ବନ୍ଧ କାର୍ଯ୍ୟକ୍ରମର ଆୟୋଜନ କରାଗଲା । ପ୍ରଥମ ଦିନ ପ୍ରଜାମଙ୍ଗଳ ଦଳର ଲୋକେ ପୋଲିସ ସହ ଆସି ବନ୍ଧ କାର୍ଯ୍ୟକ୍ରମରେ ବାଧା ଦେବାକୁ ଲାଗିଲେ । ମାତ୍ର ଏହାର ଫଳ ହେଲା ଓଲଟା । ପ୍ରଜାମଣ୍ଡଳର ଡ଼ାକରାରେ ବହୁ ସଂଖ୍ୟାରେ ଲୋକମାନେ ମୟୂରଭଞ୍ଜର ବିଭିନ୍ନ ସ୍ଥାନରୁ ଆସି ଯୋଗଦେଲେ । ସ୍ତ୍ରୀଲୋକମାନେ ମଧ୍ୟ ଏହାକୁ ପବିତ୍ର କାର୍ଯ୍ୟ ଭାବି ସେଥିରେ ଭାଗ ନେବାକୁ ଆଗେଇ ଆସିଲେ । ଏହା ମୟୂରଭଞ୍ଜ ଓ ବାଲେଶ୍ୱରର ମଧ୍ୟବର୍ତ୍ତୀ ଅଂଚଳ ଥିବାରୁ ଉଭୟ ଅଂଚଳର ଲୋକମାନେ ଏଥିରେ ଯୋଗଦାନ କରିଥିଲେ । ବନ୍ଧ କାର୍ଯ୍ୟ ସମାପନ ପରେ ହଜାର ହଜାର ଲୋକଙ୍କ ସମାରୋହରେ ଏହି ବନ୍ଧର ଉଦ୍‌ଘାଟନ କାର୍ଯ୍ୟକ୍ରମ ହୋଇ, ବନ୍ଧର ନାମ 'ଶରତ ବନ୍ଧ' ରଖାଯାଇଥିଲା । ଏହିପରି ବିଭିନ୍ନ ପ୍ରକାରର ଗଠନମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରଜାମଣ୍ଡଳର ଲୋକପ୍ରିୟତା କ୍ରମେ ବଢୁଥିଲା ।

୧୯୪୪ ମସିହାରେ ମାଣିତ୍ରୀ ମଧୁନଣ୍ଡା ଗ୍ରାମରେ ପ୍ରଜାମଣ୍ଡଳର ଦ୍ୱିତୀୟ ଅଧିବେଶନ ହେଲା । ଏହା ସହିତ ଏକ ହସ୍ତଶିଳ୍ପ ଓ କୃଷିଜାତ ଶିଳ୍ପ ପ୍ରଦର୍ଶନୀ ହୋଇଥିଲା । ପ୍ରଜାମଣ୍ଡଳର ଗଠନମୂଳକ ଯୋଜନା ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ଓ ଏହା ସହିତ ପ୍ରଜାମଙ୍ଗଳ ସଭା ସବୁଦିନ ପାଇଁ ଲୋପ ପାଇଲା । ମାତ୍ର ପ୍ରଜାମଙ୍ଗଳର ଧ୍ୱଂସାବଶେଷ ଉପରେ ଅନୁରୂପ ଅନ୍ୟ ଏକ ସଂଗଠନ 'ପ୍ରଜା ପରିଷଦ' ନାମରେ ମୁଣ୍ଡ ଟେକିଲା । ଏହାର ସଭ୍ୟମାନେ ସରକାରଙ୍କର ସପକ୍ଷରେ ଥିଲେ ।

ପ୍ରଜାମଣ୍ଡଳ ଭାରତର ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟରେ ଯୋଗଦାନ କରିବାକୁ ନିଷ୍ପତ୍ତି ନେଇଥିଲା । ବୈକୁଣ୍ଠ ସାହୁଆଙ୍କ ନେତୃତ୍ୱରେ ଏକ ପାଇକ ସମ୍ମିଳନୀ ପ୍ରତିଷ୍ଠା କରାଗଲା । ଏହା ରାଜ୍ୟଶାସନ ବ୍ୟବସ୍ଥାର ବିରୁଦ୍ଧରେ ଓ ପାଇକମାନଙ୍କର ଜାଗିର ବାଜ୍ୟାପ୍ତିର

ବିଦ୍ରୁପରେ ହୋଇଥିଲା । ଏହିପରି ଭାବରେ ମୟୂରଭଞ୍ଜରେ ଏକ ନୂତନ ପାଇକ ଆନ୍ଦୋଳନର ଆରମ୍ଭ ହୋଇଥିଲା ।

ପାଇକ ସମ୍ମିଳନୀର ସଭାପତିଙ୍କୁ ୨୪ ଘଣ୍ଟା ମଧ୍ୟରେ ରାଜ୍ୟ ଛାଡ଼ି ଯିବାପାଇଁ ଆଦେଶ ଦିଆଗଲା । ମାତ୍ର ସେ ଆଦେଶ ଲଂଘନ କଲେ, ଫଳରେ ତାଙ୍କୁ ବାରିପଦା ଜେଲରେ ଅଟକ ବନ୍ଦୀ ଭାବରେ ରଖାଗଲା । ଏହା ସାଧାରଣରେ ଉତ୍ତେଜନା ସୃଷ୍ଟିକଲା । ବିଶେଷ ଭାବରେ ପାଇକମାନଙ୍କୁ ଏହା ପ୍ରଭାବିତ କରିଥିଲା । ପ୍ରଜାମଣ୍ଡଳ ଷ୍ଟେଟ ପାଇକ ସମ୍ମିଳନୀ ସଭାପତିଙ୍କର ଯଥାଶୀଘ୍ର ଖଲାସ ଦାବୀ କରିଥିଲେ । ୧୯୪୭ ମସିହା ମାର୍ଚ୍ଚ ୩୦ ତାରିଖ ଦିନ ଏକ ବିରାଟ ଶୋଭା ଯାତ୍ରାରେ ହଜାର ହଜାର ସଂଖ୍ୟାରେ ଲୋକମାନେ ଯୋଗଦାନ କରିଥିଲେ, ଏପରିକି ମହିଳାମାନେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ଏହି ଶୋଭାଯାତ୍ରା ବାରିପଦାଠାରେ ହୋଇଥିଲା ଏବଂ ଶେଷରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇ ସରକାରଙ୍କର ସ୍ୱେଚ୍ଛାଚାରିତା ଓ ପାଇକ ସମ୍ମିଳନୀର ସଭାପତିଙ୍କ ଅଟକବନ୍ଦୀର ଘୋର ସମାଲୋଚନା କରାଯାଇଥିଲା ।

ଭାରତର ନେତୃବର୍ଗଙ୍କର ଜେଲରୁ ମୁକ୍ତିପରେ ଗୋଆଲିୟର ଠାରେ All India States people conference ର ଏକ ଅଧିବେଶନ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସଭାପତିତ୍ୱରେ ବସିଲା । ସେଥିରେ ମୟୂରଭଞ୍ଜ ପ୍ରଜାମଣ୍ଡଳର ପ୍ରତିନିଧିମାନେ ଶରତ ବାବୁଙ୍କର ନେତୃତ୍ୱରେ ଯୋଗଦାନ କରିଥିଲେ । ଏହାପରେ କଟକରେ ପୂର୍ବାଞ୍ଚଳ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରତିନିଧିମାନଙ୍କର All India States Peoples conference ର ଏକ ଆଞ୍ଚଳିକ ଶାଖା ସମ୍ମିଳନୀ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ ଗଢ଼ାଯାଇ, ଏହାର ମୁଖ୍ୟ ଅଫିସ କଟକଠାରେ ସ୍ଥାପନ କରାଗଲା । ମୟୂରଭଞ୍ଜ ପ୍ରଜାମଣ୍ଡଳ ତରଫରୁ ଏହାର ତୃତୀୟ ବାର୍ଷିକ ଅଧିବେଶନ ବଡ଼ସାହୀ ଥାନାର ପ୍ରତାପପୁରଠାରେ ଆୟୋଜିତ ହୋଇଥିଲା । ଏହା ପରାଧୀନ ଭାରତରେ ପ୍ରଜାମଣ୍ଡଳର ଶେଷ ଅଧିବେଶନ । ସେତେବେଳକୁ ଭାରତ ମୁକ୍ତିର ଶୁଭସୂଚନା ପ୍ରକାଶ ପାଇଲାଣି ଓ ମୟୂରଭଞ୍ଜର ସ୍ୱେଚ୍ଛାସେବୀ ଦଳ ଗଠନ କରି ସାମନ୍ତବାଦୀ ସରକାରର ମୁକାବିଲା ପାଇଁ ଆହ୍ୱାନ ଦିଆଯାଇଥିଲା ।

ଓଡ଼ିଶା ଓ ଛତିଶଗଡ଼ State Peoples council ରେ ମୟୂରଭଞ୍ଜର ୧୦ ଜଣ ନିର୍ବାଚିତ ପ୍ରତିନିଧି ଥିଲେ । ପ୍ରଶାସନିକ ବିଭାଗରେ ମଧ୍ୟ ୧୫ ଜଣ ମଧ୍ୟରୁ ୩ ଜଣ ମୟୂରଭଞ୍ଜର ଥିଲେ । ମୟୂରଭଞ୍ଜ ପ୍ରଜାମଣ୍ଡଳର ପି.କେ. ଦାସ ଏହାର ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ । ଉକ୍ତ କାଉନସିଲରେ ଓଡ଼ିଶାର ସମଗ୍ର ଗଡ଼ଜାତ ଅଂଚଳ ଓ ଅନ୍ୟାନ୍ୟ ଓଡ଼ିଆଭାଷୀ ଗଡ଼ଜାତ ଅଂଚଳକୁ ଗୋଟିଏ ଶାସନର ଅଧୀନରେ ଆଣିବାର ପ୍ରସ୍ତାବ ଦିଆଗଲା । ମାତ୍ର ଏହାକୁ ପ୍ରଜା ପରିଷଦ ବିରୋଧ କରିଥିଲେ । ସରକାର ବହୁଚେଷ୍ଟା କରି ଲୋକମାନଙ୍କୁ ପ୍ରଜାପରିଷଦରେ ସାମିଲ କରିବାକୁ ଚାହିଁଥିଲେ, ଏପରିକି ଜୋର ଜବରଦସ୍ତ ମଧ୍ୟ କରିଥିଲେ । ମାତ୍ର ଏହା ଫଳପ୍ରଦ ହୋଇନଥିଲା । ପ୍ରଜା ପରିଷଦ ପ୍ରଜାମଣ୍ଡଳ ଭଳି ଅକାଳ ମୃତ୍ୟୁବରଣ କରିବାକୁ ବାଧ୍ୟ ହୋଇଥିଲା ।

ପ୍ରଜାମଣ୍ଡଳ ଦ୍ୱାରା ଦିଆଯାଇଥିବା ପ୍ରସ୍ତାବ ଅନୁଯାୟୀ ଗଣତାନ୍ତ୍ରିକ ଶାସନ ସମଗ୍ର ଗଡ଼ଜାତ ଅଂଚଳରେ ଜାରି କରିବା ପାଇଁ ଏବଂ ସାବାଳକ ଭୋଟ ଦ୍ୱାରା ଏକ ଅନ୍ତଃ ସରକାର ପ୍ରତିଷ୍ଠା କରିବାକୁ କୁହାଯାଇଥିଲା । ମାତ୍ର ମୟୂରଭଞ୍ଜ ସରକାର ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରିଲେ ନାହିଁ । ତେଣୁ ପ୍ରଜାମଣ୍ଡଳର ଏକ ଅଧିବେଶନ ଆମ୍ବଜୋଡ଼ା ଠାରେ ହେଲା । ଏଠାରେ ଶରତଚନ୍ଦ୍ର ଦାସ, ହରିହର ମହାନ୍ତି, ଗୌରମୋହନ ପ୍ରଧାନ, ଭକ୍ତବନ୍ଧୁ ମହାନ୍ତି, ଅନନ୍ତ ରଥ, ପ୍ରସନ୍ନ କୁମାର ଦାସଙ୍କ ଦ୍ୱାରା ଏକ ଯୁଦ୍ଧ କାଉନସିଲ ଗଠନ କରାଗଲା ।

ପ୍ରଜାମଣ୍ଡଳ ପ୍ରଜାସଭାକୁ ବର୍ଜନ କରିଥିଲେ । ତେଣୁ ଖାଲି ସ୍ଥାନରେ ସରକାର ତାଙ୍କ ପକ୍ଷରେ ଥିବା ଲୋକଙ୍କ ମଧ୍ୟରୁ କେତେ ଜଣଙ୍କୁ ମନୋନୀତ କରିଥିଲେ । ଏହିପରି 'କେନ୍ଦ୍ର ପରିଷଦ' ବାରଜଣ ପ୍ରଜାପରିଷଦର ସଭ୍ୟ ଓ ୧୫ ଜଣ ମନୋନୀତ ସଭ୍ୟଙ୍କୁ ନେଇ ଗଠନ କରାଯାଇଥିଲା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ସ୍ୱାଧୀନତା ଦିବସ ବାରିପଦାଠାରେ ପାଳନ ପାଇଁ ପ୍ରଜାମଣ୍ଡଳର ଡାକରାରେ ୫୦/୬୦ ହଜାର ଲୋକ ଯୋଗ ଦେଇଥିଲେ । ସଭାରେ ପ୍ରଜାମଣ୍ଡଳର ସଭାପତି ଶରତଚନ୍ଦ୍ର ମୟୂରଭଞ୍ଜ ଷ୍ଟେଟର ଗଣତାନ୍ତ୍ରିକ ଶାସନ କ୍ଷମତା ଶାନ୍ତିପୂର୍ଣ୍ଣ ନୀତିରେ ହାସଲ କରିବା ପାଇଁ ସମସ୍ତଙ୍କୁ ଶପଥ ପାଠ କରାଇଥିଲେ ।

କେନ୍ଦ୍ରରେ ପଣ୍ଡିତ ଜବାହରଲାଲ ନେହେରୁଙ୍କର ପ୍ରଧାନମନ୍ତ୍ରୀତ୍ୱରେ ଏକ ଜନପ୍ରିୟ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲେ ହେଁ ଗଡ଼ଜାତ ବା ଦେଶୀୟ ରାଜ୍ୟଗୁଡ଼ିକ ଇଂରେଜ ଚାଲି ଗଲାପରେ ନିଜକୁ ଏକ ସାର୍ବଭୌମ ରାଷ୍ଟ୍ର ମନେ କରୁଥିଲେ । ତେଣୁ ସେହି ବର୍ଷ ପ୍ରଜାମଣ୍ଡଳର ଆହ୍ୱାନରେ ବାରିପଦା, ଝଡ଼ନା, କରଞ୍ଜିଆ, ରାଇରଙ୍ଗପୁର, ବେତନଟୀ, ଇତ୍ୟାଦି ମୁଖ୍ୟ ସ୍ଥାନମାନଙ୍କରେ ଶିବିର ମାନ ପ୍ରତିଷ୍ଠା କରାଯାଇ ଶାନ୍ତିପୂର୍ଣ୍ଣଭାବରେ ନିଶା ଦୋକାନମାନଙ୍କରେ ପିକେଟିଂ, ହାଟବଜାର ମାନଙ୍କରେ ହରତାଳ କରାଯାଇଥିଲା । ଲୋକେ ୪ ଟି ସବଡ଼ିଭିଜନରେ ଥିବା ପ୍ରଜାସଭା ଓ ଷ୍ଟେଟପାଇଁ ଥିବା ପ୍ରଜାପରିଷଦକୁ ବର୍ଜନ କରିଥିଲେ । ପିକେଟିଂ କରି ସରକାରୀ ଅଦାଲତମାନ ବର୍ଜନ କରି ଥିଲେ । ଜନତା ଅଦାଲତ ପ୍ରଜାମଣ୍ଡଳର ଆହ୍ୱାନରେ ପ୍ରତିଷ୍ଠା କରାଯାଇଥିଲା । ଏହି ଆନ୍ଦୋଳନ ଦୀର୍ଘ ୬୦ ଦିନ ଧରି ଚାଲିଲା । ପ୍ରଜାମଣ୍ଡଳ ସେପ୍ଟେମ୍ବର ୧୫ ତାରିଖ ପୂର୍ବରୁ ସେମାନଙ୍କର ସମସ୍ତ ସର୍ତ୍ତ ମାନିନେବାକୁ ବାଧ୍ୟ କରି ଏକ ଚରମ ପତ୍ର ସରକାରଙ୍କ ନିକଟକୁ ପଠାଇଲେ ।

ମୟୂରଭଞ୍ଜର ଶାସକଗୋଷ୍ଠୀ ଶାନ୍ତିପୂର୍ଣ୍ଣ ଭାବରେ ପ୍ରଜାମଣ୍ଡଳ ସହ ବୁଝାମଣା କରିବାକୁ ଚାହିଁଲେ । ତେଣୁ ସେମାନେ ପ୍ରଜାମଣ୍ଡଳ ପାଖକୁ

ନୂତନ ସରକାର ଗଠନ କରିବା ପାଇଁ ପ୍ରସ୍ତାବ ପଠାଇଲେ । ଏହି ପ୍ରସ୍ତାବ ଅନୁଯାୟୀ ପ୍ରଜାମଣ୍ଡଳ, ପ୍ରଜାସଭା ଓ କେନ୍ଦ୍ର ପରିଷଦର ସଭ୍ୟଙ୍କ ଏକ ତାଲିକା ପଠାଇବ । ଫଳରେ ଶାସନ କ୍ଷମତାର ହସ୍ତାନ୍ତର ପାଇଁ ଓ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ମହାରାଜାଙ୍କ ନିକଟରୁ ପ୍ରସ୍ତାବ ଆସିଲା । ପ୍ରଜାମଣ୍ଡଳ ଦେଇଥିବା ତାଲିକା ଅନୁଯାୟୀ ୫୧ ଜଣଙ୍କୁ ମୟୂରଭଞ୍ଜ ଷ୍ଟେଟ୍ ପ୍ରଜାପରିଷଦ ବା ବିଧାନ ସଭାକୁ ସଭ୍ୟ ରୂପେ ମନୋନୀତ କରାଯାଇଥିଲା ଓ ଶରତଚନ୍ଦ୍ର ଦାସଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଏକ ତିନିଜଣିଆ ମନ୍ତ୍ରୀମଣ୍ଡଳ ଗଠିତ ହୋଇ ଶାସନ କ୍ଷମତା ଅର୍ପଣ କରାଯାଇଥିଲା । ମହାରାଜା ଶାସକର ମୁଖ୍ୟ ହୋଇରହିଲେ ।

୧୯୪୭ ମସିହା ଡ଼ିସେମ୍ବର ୧୫ ତାରିଖରେ ମୟୂରଭଞ୍ଜ ବ୍ୟତୀତ ଅନ୍ୟ ସମସ୍ତ ଗଡ଼ଜାତ ଅଂଚଳ ଓଡ଼ିଶା ପ୍ରଦେଶ ସହିତ ମିଶିଗଲା । ମୟୂରଭଞ୍ଜ ବିଧାନ ସଭାର ପ୍ରଥମ ଅଧିବେଶନରେ ୧୯୪୮ ମସିହାରେ ପ୍ରଥମ ବିଲ ପାସ ହୋଇ ରାଜାର ସରଦାର ପ୍ରଥା ଲୋପ କରାଗଲା । ଭଂଜବଂଶୀ ନାମରେ ଏକ ନୂତନ ରାଜନୈତିକ ଦଳ ୧୯୪୮ ମସିହାରେ ଗଠନ କରାଯାଇଥିଲା ଏବଂ All India Congress Committee ର ନିର୍ଦ୍ଦେଶନା ରେ ମୟୂରଭଞ୍ଜ ପ୍ରଜାମଣ୍ଡଳକୁ ମୟୂରଭଞ୍ଜ State Congress committe ପଦବୀରେ ନାମିତ କରାଗଲା । ପ୍ରଫୁଲ୍ଲ ଚନ୍ଦ୍ର ଘୋଷ ଏ.ଆଇ.ସି.ସି.ର ପ୍ରତିନିଧି ଭାବରେ ବାରିପଦା ଆସି ମୟୂରଭଞ୍ଜ କଂଗ୍ରେସ କମିଟିର ଉତ୍କଳ ରାଜ୍ୟ କଂଗ୍ରେସ କମିଟି ସହ ମିଶ୍ରଣ ପ୍ରସ୍ତାବ ଆଗତ କରିଥିଲେ । ମାତ୍ର ମୟୂରଭଞ୍ଜ କଂଗ୍ରେସ କମିଟି ଏଥିରେ ରାଜିହେଲେ ନାହିଁ । ୧୯୪୮ ମସିହା ସେପ୍ଟେମ୍ବର ୧୬ ତାରିଖରେ ମୟୂରଭଞ୍ଜ କଂଗ୍ରେସ କମିଟିର ଏକ ଅଧିବେଶନରେ ସେମାନେ ଏ.ଆଇ.ସି.ସି.ର ପ୍ରସ୍ତାବ ଅନୁଯାୟୀ ଉତ୍କଳ ରାଜ୍ୟ କଂଗ୍ରେସ କମିଟି ସହିତ ମିଶିଗଲେ ।

ମୟୂରଭଞ୍ଜର ନୂତନ ମନ୍ତ୍ରୀମଣ୍ଡଳ ୧୯୪୮ ମସିହା ଜାନୁୟାରୀ ମାସରେ ଗଠିତ ହୋଇ ପ୍ରାୟ ଦଶମାସ ଶାସନ କରିବା ପରେ ସେତେବେଳର ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ବଲ୍ଲଭ ଭାଇ ପଟେଲଙ୍କ ପରାମର୍ଶରେ ଇସ୍ତଫା ଦେଲେ । ପ୍ରଥମେ କେନ୍ଦ୍ର ସରକାର ହାତକୁ କ୍ଷମତା ଯିବାର ପ୍ରାୟ ଦୁଇମାସ ଏହା କେନ୍ଦ୍ରଶାସିତ ଅଂଚଳ ରୂପେ ରହିବା ପରେ ୧୯୪୯ ମସିହା ପହିଲା ଜାନୁୟାରୀରେ ମୟୂରଭଞ୍ଜ ଓଡ଼ିଶା ରାଜ୍ୟ ସହିତ ମିଶି ଏହାର ଏକ ଜିଲ୍ଲା ଭାବରେ ପରିଗଣିତ ହେଲା ।

ସମଗ୍ର ଭାରତର ଅନ୍ୟାନ୍ୟ ଗଡ଼ଜାତ ଅଂଚଳଗୁଡ଼ିକର ପ୍ରଜା ଆନ୍ଦୋଳନଠାରୁ ମୟୂରଭଞ୍ଜ ପ୍ରଜା ଆନ୍ଦୋଳନର ଅନେକ ବିଶେଷତ୍ୱ ଥିଲା । ଏହା ଅନ୍ୟାନ୍ୟ ଅଂଚଳରେ ହୋଇଥିବା ରାଜାମାନଙ୍କର ବ୍ୟକ୍ତିଗତ ଅତ୍ୟାଚାରର ବିରୋଧରେ ଆନ୍ଦୋଳନ ନଥିଲା । ଏହା ଥିଲା ଏକ ସମାଜବାଦୀ ଆନ୍ଦୋଳନ । ରାଜଶକ୍ତି ଦ୍ୱାରା ପ୍ରୋତ୍ସାହିତ ଧନିକ ଗୋଷ୍ଠୀ ଓ ଉଚ୍ଚଶ୍ରେଣୀର ଲୋକଙ୍କ ବିରୁଦ୍ଧରେ ଏହା ଥିଲା ସମାଜର ଦରିଦ୍ର, ନିଷ୍ପେଷିତ ଜନସାଧାରଣଙ୍କର ଆନ୍ଦୋଳନ ।

—0—

ତୁହିମା ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଟୁ ସଭେ,
ତୋର ଶ୍ରୀଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ
ତୋ ଆନନ୍ଦେ ହୋଇବା ସୁଖୀ,
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।

ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତବର
ଦୁଇ ପାର୍ଶ୍ୱେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁନଦୀ
ଚରଣରେ ବିରାଜିତ ମହା ସାଗର
ବିନ୍ଧ୍ୟଗିରିବର କଟିରେ
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ।

ଜନମିଲେ ତୋ କୋଳରେ କେତେ ସୁର, ବୀର, ନରେ
ରାମଚନ୍ଦ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜୁନ,
ମହାକବି ବେଦବ୍ୟାସ ବାଲମୀକି କାଳିଦାସ
ଗାଇଲେ ସର୍ବତ୍ର କଣେ ତୋହରି ଗୁଣ
ଚୈତନ୍ୟାଦି ମହାତ୍ମାଜନେ,
ପ୍ରଚାରିଲେ ବିଷ୍ଣୁନାମ ଆନନ୍ଦ ମନେ ।

କେତେ କେତେ ପୁଣ୍ୟବତୀ କେତେ ପତିବ୍ରତା ସତୀ
କେତେ ବୀରନାରୀ କେତେ ବୀର ଜନନୀ,
ସମସ୍ତେ ତୋର ଦୁହିତା ପଦ୍ମିନୀ, ସାବିତ୍ରୀ, ସୀତା,
ଦୁର୍ଗାବତୀ ଆଦି କେତେ ବୀର ରମଣୀ ।
ନମଇ ମା ଭକତିଭରେ,
ଅଧମ ଅକ୍ଷମ ସୁତ ତୋ ଚରଣରେ ।

ମଧୁସୂଦନ ରାଓ

# ବଲାଙ୍ଗିର ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମ

*ଶ୍ରୀ ଅଶୋକ ପଣ୍ଡା*

ଐତିହାସିକ ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଭାରତ ଛାଡ଼ ଆନ୍ଦୋଳନ ପ୍ରଭୃତି ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ବୀର ଓଡ଼ିଆ ଜାତି ସକ୍ରିୟ ଅଂଶ ଗ୍ରହଣ କରି ଯେଉଁ ଚରମ ତ୍ୟାଗ ସ୍ୱୀକାର କରି ଯାଇଛି ତାହା ଅବିସ୍ମରଣୀୟ ।

ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଆହ୍ୱାନ କ୍ରମେ ହଜାର ହଜାର ସ୍ୱାଧୀନଚେତା ଏବଂ ଦେଶପ୍ରେମୀ ଛାତ୍ରଛାତ୍ରୀ, ଚାଷୀମୂଲିଆ, ଶ୍ରମିକ ଘରଦ୍ୱାର ମୋହମାୟା ତ୍ୟାଗକରି ପ୍ରାଣପାତ ସଂଗ୍ରାମ କରିଥିଲେ । ଏଥିପାଇଁ ଅନେକ ବିପ୍ଳବୀ ହସି ହସି ପ୍ରାଣବଳୀ ଦେଇଛନ୍ତି । ଅନେକଙ୍କୁ ବର୍ଷ ବର୍ଷ ଧରି କାରାଗାର ମଧ୍ୟରେ ନାନା ନିର୍ଯ୍ୟାତନା ସହିବାକୁ ପଡ଼ିଛି । ଏଭଳି ଦମନଲୀଳା ସଂଗ୍ରାମୀମାନଙ୍କ ମନକୁ ଦମନ ନକରି ବରଂ ଅଧିକ ଦୀପ୍ତିମନ୍ତ କରିଛି ।

୧୯୩୬ ମସିହାରେ ଯେତେବେଳେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା, ସେତେବେଳେ ଓଡ଼ିଶାରେ ଛଅଟି ଜିଲ୍ଲା ସମେତ ଛବିଶଟି ଗଡ଼ଜାତ ଅନ୍ତର୍ଭୁକ୍ତ ଥିଲା । ସୋନପୁର ଓ ପାଟଣା ଗଡ଼ଜାତ ତନ୍ମଧ୍ୟରୁ ଅନ୍ୟତମ । ଏ ଉଭୟ ଗଡ଼ଜାତ ଅବିଭକ୍ତ ବଲାଙ୍ଗିର ଜିଲ୍ଲା ଅନ୍ତର୍ଭୁକ୍ତ । ଗଡ଼ଜାତମାନଙ୍କରେ ଶାସନ କରୁଥିଲେ ଦେଶୀୟ ରାଜାମାନେ । ଏହି ଦେଶୀୟ ରାଜାମାନଙ୍କର କାର୍ଯ୍ୟକଳାପ ତଦାରଖ କରିବା ପାଇଁ ଜଣେ ଜଣେ ପଲିଟିକାଲ ଏଜେଣ୍ଟ ଥିଲେ । ଗଡ଼ଜାତର ଶାସନ ସଂପୂର୍ଣ୍ଣ ରୂପେ ତାଙ୍କି ନିର୍ଦ୍ଦେଶରେ ଚଳୁଥିଲା । ତାଙ୍କ ଶାସନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଏ ଦେଶରେ ଇଂରେଜ ଶାସନକୁ ସୁଦୃଢ଼ କରିବା । ସୁତରାଂ ସେ ରାଜାମାନଙ୍କୁ ବିଶେଷ ଭାବରେ ସାହାଯ୍ୟ କରୁଥିଲେ । ତେଣୁ ରାଜାମାନଙ୍କ ହାତରେ ଅଖଣ୍ଡ କ୍ଷମତା ଥିଲା । ସେମାନେ ମନମୁତାବକ ଆଇନ ଗଢ଼ି ପ୍ରଜାମାନଙ୍କୁ ଶାସନ କରୁଥିଲେ । ଆଇନଗୁଡ଼ିକ ପ୍ରଜାମାନଙ୍କ ପକ୍ଷରେ ହିତକର କି ଅହିତକର ସେଥିପାଇଁ ସେମାନଙ୍କର ଚିନ୍ତା ନଥିଲା । ନାନା ପ୍ରକାର ବେଠି, ବେଗାରୀ ଓ ଭେଟି ପ୍ରଭୃତିର ସମ୍ମୁଖୀନ ହୋଇ ପ୍ରଜାମାନେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ । ଠିକଣା ସମୟରେ ବେଠି ନକଲେ ବା ଭେଟି ନଦେଲେ ନିର୍ମମ ଅତ୍ୟାଚାର ସହିବାକୁ ପଡୁଥିଲା । ଫଳରେ ସେମାନଙ୍କ ମନରେ ବିଦ୍ରୋହର ନିଆଁ ଜଳି ଉଠିଥିଲା ।

**ପ୍ରଜାମଣ୍ଡଳ ଗଠନ :** ୧୯୩୮ ସାଲରେ କଟକଠାରେ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ଆନୁକୂଲ୍ୟରେ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀ ଆନୁକୂଲ୍ୟରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ନାମରେ ଏକ ଅନୁଷ୍ଠାନ ଗଠିତ ହେଲା । ତାହାର ଶାଖା ସ୍ୱରୂପ ସୋନପୁରଠାରେ ତା ୧୦-୬-୧୯୩୮ ରିଖରେ ଲକ୍ଷ୍ମଣ ଶତପଥୀଙ୍କ ସଭାପତିତ୍ୱରେ ଚତୁର୍ଭୁଜ ମିଶ୍ର, ରାମସେନ ଭୋଇ, ଦାଶରଥି ରଥ, ରାମଚନ୍ଦ୍ର ଶତପଥୀ, ମକରଧ୍ୱଜ ପୁରୋହିତ, ଉପେନ୍ଦ୍ରମଣି ବାବୁ ଆଦିଙ୍କୁ ନେଇ ପ୍ରଜାମଣ୍ଡଳ କମିଟି ଗଠିତ ହେଲା । ସଭ୍ୟମାନେ କଟକ ଯାଇ ସାରଙ୍ଗଧର ଦାସ, ଗୋଦାବରୀଶ ମିଶ୍ର, ଭଗବତୀ ପାଣିଗ୍ରାହୀ ପ୍ରମୁଖଙ୍କୁ ସାକ୍ଷାତ୍ କଲେ । ସେମାନଙ୍କ ପ୍ରେରଣାରେ ତା ୨୨-୩-୩୯ ରିଖରେ ଏକ ବାରଦଫା ଦାବୀପତ୍ର ନେଇ କମିଟିର ତିନି ଜଣ ପ୍ରତିନିଧି ସୋନପୁର ରାଜାଙ୍କୁ ପ୍ରଦାନ କରିବା ପାଇଁ ପହଞ୍ଚିଲେ । ସୋନପୁରରେ ପହଞ୍ଚିବା କ୍ଷଣି ସେମାନଙ୍କୁ ଗିରଫ କରାଗଲା । ଏହାରି ପ୍ରତିବାଦରେ ତା ୨୭-୩-୩୯ ରିଖ, ତା ୧-୪-୩୯ ରିଖ, ତା ୨-୪-୩୯ ରିଖ, ତା ୪-୪-୩୯ ରିଖ ଏପରି ଚାରିଦଫାରେ ସତ୍ୟାଗ୍ରହ ଆରମ୍ଭ ହେଲା । ଫଳରେ ଶହ ଶହ ଲୋକ ଗିରଫ ହୋଇ ଜେଲ ଗଲେ । ଅନେକଙ୍କୁ ମାଡ଼ ହେଲା । ବିଭିନ୍ନ ବ୍ୟକ୍ତିଙ୍କ ଉପରେ ପାଶବିକ ଅତ୍ୟାଚାର ଚାଲିଲା ।

**ନୂତନ ଫୌଜଦାରୀ ଆଇନ୍ :** ସୋନପୁର ସେଶାଲ କ୍ରିମିନାଲ ଆକ୍ଟ ୧୯୩୯ ନାମରେ ଏକ ଆଇନ ପ୍ରଣୟନ ହେଲା । ଏହି ଆଇନ ଅନୁସାରେ କେହି ଗାନ୍ଧୀ ବା କଂଗ୍ରେସ ନାମ ଧରି ପାରିବେ ନାହିଁ । କୌଣସି ସ୍ଲୋଗାନ ଦେଇ ପାରିବେ ନାହିଁ ବା ଖଦି ପିନ୍ଧି ପାରିବେ ନାହିଁ । ଏହି ଆଇନ୍ ବଳରେ ଅନେକ ସଂଗ୍ରାମୀଙ୍କୁ ଜେଲ ଓ ଅର୍ଥ ଦଣ୍ଡ ହେଲା ।

**ଭାରତଛାଡ଼ ଆନ୍ଦୋଳନ :** ୧୯୪୨ ସାଲ ଅଗଷ୍ଟ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ ପକ୍ଷରୁ ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେଲା । ତା ପର ଦିନଠାରୁ ଇଂରେଜ ସରକାରଙ୍କ ପକ୍ଷରୁ କଂଗ୍ରେସର ନେତୃବୃନ୍ଦଙ୍କୁ ଗିରଫ କରାଗଲା । ନେତାମାନଙ୍କ ଅନୁପସ୍ଥିତିରେ କର୍ମୀମାନେ ଭାରତବ୍ୟାପି ଆନ୍ଦୋଳନକୁ ଚଳାଇ ରଖିଲେ । ଇଂରେଜ ସରକାର ଅନନ୍ୟୋପାୟ ହୋଇ କର୍ମୀମାନଙ୍କୁ ମଧ୍ୟ ଭାରତରକ୍ଷା ଆଇନ ବଳରେ ଗିରଫ କଲେ । ସୋନପୁର ପ୍ରଜାମଣ୍ଡଳ କର୍ମୀମାନେ ବା ବାଦଯାଆନ୍ତେ କିପରି ? ନଅଜଣ ସଂଗ୍ରାମୀଙ୍କୁ ଗିରଫ କରି ଜେଲରେ ଅଟକ ରଖାଗଲା ।

**ବଲାଙ୍ଗିର ପାଟଣା କୃଷକ ଦଳ :** ପ୍ରାୟ ୧୯୪୫ ସାଲ ପର୍ଯ୍ୟନ୍ତ ବଲାଙ୍ଗିର ଅଞ୍ଚଳରେ କୌଣସି ସଂଗଠିତ ରାଜନୈତିକ ସଂଘ ଗଢ଼ି ଉଠି

ନଥିଲା । ୧୯୪୬ ସାଲର ଆରମ୍ଭରେ ପାଟଣାରେ କୃଷକ ଦଳ ନାମରେ ଏକ ସଂଗଠନ ଗଠିତ ହେଲା । ଏଥିରେ ସଭାପତି ରହିଲେ କପିଳେଶ୍ୱର ନନ୍ଦ, ଉପ ସଭାପତି ଯୁଧିଷ୍ଠିର ମିଶ୍ର, ସଂପାଦକ ବଳଭଦ୍ର ପାଣିଗ୍ରାହୀ, ସଙ୍ଖ୍ୟା ଚିନ୍ତାମଣି ରଥ ଓ ଦିବାକର ବହିଦାର ପ୍ରମୁଖ । ପ୍ରଜାମଣ୍ଡଳ ଉପରେ ନାନା କଟକଣା ଜାରୀ ହେଉଥିବାରୁ ସଂଗଠନଟିକୁ ପ୍ରଜାମଣ୍ଡଳ ନାମ ନଦେଇ କୃଷକ ଦଳ ନାମରେ ଅଭିହିତ କରାଯାଇଥିଲା । ଯେତେବେଳେ ସାରଙ୍ଗଧର ବଲାଙ୍ଗିର ଆସିଲେ, ସେତେବେଳେ ରାଜାଙ୍କ ଲୋକମାନେ ଭୀଷଣ ଗଣ୍ଡଗୋଳ କଲେ । ମହଲ୍ଲାବ ଘୋରୀ ସାରଙ୍ଗଧର, କଟକୀ ପେଖୁଆ ସାରଙ୍ଗଧର- ଫେରିଯାଅ' ଆଦି କୁତ୍ସିତ ସ୍ଲୋଗାନ ମାନ ପ୍ରୟୋଗ କଲେ । କିନ୍ତୁ ଏସବୁ ସତ୍ତ୍ୱେ ବଲାଙ୍ଗିରରେ ସଭା ହେଲା ଓ ସଭାରେ ହଜାର ହଜାର ଜନତା ସ୍ୱେଚ୍ଛାକୃତ ଭାବରେ ଯୋଗ ଦେଇଥିଲେ ।

**ସ୍ୱେଚ୍ଛାସେବକ ବାହିନୀ :** ପ୍ରଜାମଣ୍ଡଳରେ ଏକ ସ୍ୱେଚ୍ଛାସେବକ ବାହିନୀ ରହିବାର ସ୍ଥିର ହେଲା । ତତଭାର ଶଶୀଭୂଷଣ ସାହୁଙ୍କୁ ଟ୍ରେନିଂ ପାଇଁ ପୁରୀକୁ ପଠାଗଲା । ସେ ସେଠାରୁ ଆସି ନୀଳକଣ୍ଠ ସ୍ୱେଚ୍ଛାସେବକ ବାହିନୀ ନାମରେ ଏକ ଅନୁଷ୍ଠାନ ଗଠନ କଲେ ଏବଂ ଏହାର ଶାଖା ଅନ୍ୟ ଆଡ଼େ ଗଢ଼ି ଉଠିଲା । ଅନେକ ସ୍ଥାନରେ ଆଞ୍ଚଳିକ ପ୍ରଜାମଣ୍ଡଳ ଓ କେତେକ ସ୍ଥାନରେ ପ୍ରାଇମେରୀ ପ୍ରଜାମଣ୍ଡଳ ଗଠିତ ହେଲା ।

**ବିନିକାରେ ଆନ୍ଦୋଳନ :** ବିନିକାରେ ପଣ୍ୟଦ୍ରବ୍ୟଠାରୁ ଆରମ୍ଭ କରି ଯାହା ବି ଜିନିଷ ଗ୍ରାମକୁ ଆସୁଥିଲା, ସେଥିରେ ଏକସ୍ତ୍ରା ଡ଼ିଉଟି ଦେବାର ବ୍ୟବସ୍ଥା ଥିଲା । ଏହା ଉଠାଇ ଦେବାକୁ ଦାବୀ କରି ଦାନଗାଦୀ ବିରୋଧ କମିଟି ନାମରେ ଏକ କମିଟି ଗଠିତ ହେଲା । ଏ ୧୯୪୭ ସାଲ ଜାନୁୟାରୀ ୨୮ ତାରିଖର କଥା । ସେଦିନ ଅପରାହ୍ନରେ ରାଜ୍ୟ ସରକାର ପୋଲିସ ଓ ଅସାମାଜିକ ଗୁଣ୍ଡାମାନଙ୍କୁ ଆଣି ବିନିକାରେ ଲୁଟତରାଜ ଚଳାଇଲେ । ପ୍ରଜାମଣ୍ଡଳ କର୍ମୀମାନେ ସମସ୍ତେ ଗିରଫ ହେଲେ । ଏ ଘଟଣା ପରେ ପ୍ରାୟ ୨୦ ହଜାର ଲୋକ ଆସି ରୁଣ୍ଡ ହେଲେ ଓ ପୋଲିସମାନଙ୍କୁ ଘେରାଉ କଲେ । ଲାଠି ଓ ବାୟୋନେଟ ମାଡ଼ରେ ଶହ ଶହ ଲୋକ କ୍ଷତ ବିକ୍ଷତ ହେଲେ । ବାୟୋନେଟ ମୁନରେ ବୃଦ୍ଧା ଗୁରୁବାରୀ ମେହେର ଶହୀଦ ହେଲେ । ଉତ୍ତ୍ୟକ୍ତ ଜନତା ରାଜାନୁଗତ ଲୋକଙ୍କ ଘରମାନ ପୋଡ଼ି ପୋଲିସର ବନ୍ଧୁକ ଗୁଳି ଆଦି ଗଭୀର ନଦୀ ଜଳକୁ ନିକ୍ଷେପ କଲେ । ସେମାନଙ୍କୁ ବାସନ୍ଦ କରି ପାଣି ଆଣିବାକୁ ମଧ୍ୟ ଛାଡ଼ିଲେ ନାହିଁ । ଫଳରେ ପୋଲିସ ଗୁଣ୍ଡା ଓ ଉଚ୍ଚ ରାଜକର୍ମଚାରୀମାନେ ଲୋକରେ ଆଉଟୁ ପାଉଟୁ ହୋଇ ପଳାଇଲେ । ଏ ବିଷୟରେ ଫେବୃୟାରୀ ୨୩ ତାରିଖ ଦୈନିକ ଆଶାରେ 'ସୋନପୁର ପ୍ରଜାଙ୍କର ବିଜୟ' ନାମକ ସାରଙ୍ଗଧର ଦାସଙ୍କ ଏକ ବିବୃତି ପ୍ରକାଶ ପାଇଲା ।

**ପ୍ରଜାମଣ୍ଡଳର ବିରାଟ ଅଧିବେଶନ :** ଲୋଇସିଂହା ନିକଟସ୍ଥ ବଗଛେରା ଗ୍ରାମରେ ୧୯୪୭ ସାଲ ଏପ୍ରିଲ ୨,୩ ଓ ୪ ତାରିଖରେ ପ୍ରଜାମଣ୍ଡଳର ଏକ ବିରାଟ ଅଧିବେଶନ ହୋଇଥିଲା । ରାଜ୍ୟ ମଧ୍ୟରୁ ଲୋକେ ସ୍ୱେଚ୍ଛାରେ ଚାନ୍ଦାମାନ ଦେଇ ଏହାକୁ ସାଫଲ୍ୟ ମଣ୍ଡିତ କରାଇଥିଲେ । ରାଜ୍ୟର ବିଭିନ୍ନ ଆଡ଼ୁ ଶହ ଶହ ଲୋକ ପ୍ରଜାମଣ୍ଡଳ ଜିନ୍ଦାବାଦ' ମହାତ୍ମା ଗାନ୍ଧୀଙ୍କି ଜୟ' 'ରାଜତନ୍ତ୍ର ଧ୍ୱଂସ ହେଉ' 'ପ୍ରଜାମଣ୍ଡଳ ନେତା ସାରଙ୍ଗ ଧର କି ଜୟ' ଇତ୍ୟାଦି ସ୍ଲୋଗାନମାନ ଦେଇ ଆସୁ ଥାଆନ୍ତି । ସୁସଜ୍ଜିତ ନେହେରୁ ମଞ୍ଚ ଉପରେ ସଭାପତି ସାରଙ୍ଗଧରଙ୍କ ଅନୁପସ୍ଥିତିରେ ସଭାପତିତ୍ୱ କରୁଥାଆନ୍ତି ବଲାଙ୍ଗିରର କପିଳ ନନ୍ଦ । ଉଦ୍‌ଘାଟନୀ ଭାଷଣ ଦେଉଥାଆନ୍ତି ସୁରେନ୍ଦ୍ରନାଥ ଦ୍ୱିବେଦୀ । ଠିକ୍ ଏହି ସମୟରେ ଗୋଟିଏ କାର ସେଠି ପହଞ୍ଚିଲା । ଉତ୍ତ୍ୟକ୍ତ ଜନତା ଟେକା ପଥର ଧରି କାର ପାଖକୁ ଗୋଡ଼ାଇ ଗଲେ । କିନ୍ତୁ କାରରୁ ନେତ୍ରୀ ମାଳତୀ ଚୌଧୁରୀ ଓ ସାରଙ୍ଗ ଧର ଦାସ ପ୍ରମୁଖ ଓହ୍ଲାଇବା ଦେଖି ହାତରୁ ଟେକା ପଥର ଖସି ପଡ଼ିଲା । ମାଳତୀ ଦେବୀ ଲୋକଙ୍କର ମନୋବୃତ୍ତି ଦେଖି ଭୂୟସୀ ପ୍ରଶଂସା କଲେ । ସଭାରେ ଅନ୍ୟ ଯେଉଁ ନେତାମାନେ ଯୋଗ ଦେଇଥିଲେ, ସେମାନେ ହେଲେ ଧୂଳେଶ୍ୱର ବଷିଆ, ପ୍ରଦୀପ୍ତ କିଶୋର ଦାସ, ଏବଂ ରବିରାୟ ପ୍ରମୁଖ । ଅଦମ୍ୟ ଉତ୍ସାହ, ଉଦ୍ଦୀପନା ମଧ୍ୟରେ ସମ୍ମିଳନୀ ସମାପ୍ତ ହେଲା ।

ଏପରି ନାନା ଘାତ ପ୍ରତିଘାତ ମଧ୍ୟରେ ସୋନପୁର ଓ ପାଟଣା ଉଭୟ ଗଡ଼ଜାତରେ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥାଏ । ଶେଷରେ ୧୯୪୭ ସାଲ ଅଗଷ୍ଟ ୧୫ ତାରିଖରେ ଇଂରେଜ ସରକାର ସ୍ୱାଧୀନତା ଘୋଷଣା କଲେ । କିନ୍ତୁ ତାପରେ ମଧ୍ୟ ଗଡ଼ଜାତମାନଙ୍କରେ ରାଜାମାନଙ୍କ ଅତ୍ୟାଚାରୀ ରାଜୁତି ଚାଲିଥାଏ ଏବଂ ତା ବିରୁଦ୍ଧରେ ସଂଗଠିତ ଜନ ଆନ୍ଦୋଳନ ଚାଲିଥାଏ ।

୧୯୪୭ ସାଲ ଡ଼ିସେମ୍ବର ୧୪ ତାରିଖରେ କଟକ ସର୍କିଟ ହାଉସରେ ଗଡ଼ଜାତ ରାଜା, ପ୍ରଜାମଣ୍ଡଳ ନେତା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କର ଏକ ବୈଠକ ବସିଲା । ସର୍ଦ୍ଦାର ପଟେଲ, ହରେକୃଷ୍ଣ ମହତାବ ପ୍ରମୁଖ ଏଥିରେ ଯୋଗ ଦେଲେ । ସମସ୍ତ ଗଡ଼ଜାତ ଓଡ଼ିଶାରେ ମିଶିଯାଉ ବୋଲି ପ୍ରସ୍ତାବ ଗୃହୀତ ହେଲା । ମାତ୍ର ବଲାଙ୍ଗିର ସୋନପୁର, କଳାହାଣ୍ଡି, ସୁନ୍ଦରଗଡ଼, କେନ୍ଦୁଝର, ନୟାଗଡ଼ ପ୍ରଭୃତି ଗଡ଼ଜାତର ରାଜାମାନେ ଏଥିରେ ଅମଙ୍ଗ ହେଲେ ।

ପୁଣି ତହିଁ ପରଦିନ କଟକ ନାରୀ ସେବା ସଦନରେ ସଭା ହେଲା । ଛଅଟି ଗଡ଼ଜାତ ବ୍ୟତୀତ ଅନ୍ୟ ଗଡ଼ଜାତମାନେ ଓଡ଼ିଶାରେ ସାମିଲ ହେଲେ । ଶେଷରେ ବହୁ ତର୍କ ବିତର୍କ ପରେ ଛଅ ଜଣ ରାଜା ମଧ୍ୟ ମତ ପରିବର୍ତ୍ତନ କରି ସର୍ଦ୍ଦାର ପଟେଲଙ୍କ ପାଖକୁ ଧାଇଁଲେ । ସମସ୍ତ ଗଡ଼ଜାତ ଓଡ଼ିଶା ସହ ସାମିଲ ହୋଇ ସ୍ୱାଧୀନ ହେଲା । ଭାରତୀୟ ଜନତା ସହ ବଲାଙ୍ଗିର ଜିଲ୍ଲାବାସୀ ମଧ୍ୟ ସ୍ୱାଧୀନତା ରବିର ସୁନେଲି ସ୍ପର୍ଶ ପାଇଲେ ।

ଏଡ଼ଭୋକେଟ, ସାଗରପଡ଼ା
ବଲାଙ୍ଗିର - ୭୬୭ ୦୦୧

# ଢେଙ୍କାନାଳରେ ଗଣଆନ୍ଦୋଳନ

ଶ୍ରୀ ବ୍ରଜକିଶୋର ଧଳ


ଶ୍ରୀ ବ୍ରଜକିଶୋର ଧଳ

ଢେଙ୍କାନାଳର ପୂର୍ବତନ ରାଜା ସ୍ୱର୍ଗୀୟ ସୁର ପ୍ରତାପ ମହୀନ୍ଦ୍ର ବାହାଦୁରଙ୍କର ୧୯୧୮ ମସିହାରେ ପରଲୋକ ହୋଇଗଲା । ଏହାର ଅଠର ବର୍ଷ ପରେ ତାଙ୍କର ପୁଅ ଶଙ୍କର ପ୍ରତାପ ରାଜ୍ୟର ଶାସନ ଭାର ଗ୍ରହଣ କରିଥିଲେ । ଏହି ଅଠର ବର୍ଷ ଧରି ଢେଙ୍କାନାଳ Court of words ଶାସନାଧୀନ ରହିଯିବାରୁ ଲୋକେ ମୋଗଲବନ୍ଦୀ ଲୋକଙ୍କ ପରି ନିର୍ଭୀକ ଭାବେ ଚଳପ୍ରଚଳ ହେଉଥିଲେ । ଶାସନ ମୁଖ୍ୟ ସୁପରିଟେଣ୍ଡେଣ୍ଟ ରାୟବାହାଦୁର ରାଜକିଶୋର ତ୍ରିପାଠୀ ଶାସନ ଅନୁମୋଦିତ ପନ୍ଥାରେ ଶାସନ ଚଳାଉଥିଲେ । ଏହାସତ୍ତ୍ୱେ ପ୍ରଜାମାନେ ସୁରପ୍ରତାପଙ୍କ ସୁଗୁଣାବଳୀ ସ୍ମରଣ କରି ତାଙ୍କ ପୁଅ ରାଜ୍ୟ ପାଇବୁ ବୋଲି ଆଶା କରୁଥିଲେ । କାର୍ଯ୍ୟତଃ ଲୋକମାନଙ୍କର ଆଶା ପୂରଣ ହେଲା ଓ ଶଙ୍କର ପ୍ରତାପ ୧୯୨୬ ରେ ଢେଙ୍କାନାଳର ରାଜା ହେଲେ ।

ମାତ୍ର ଲୋକଙ୍କର ଆଶା ଖୁବ୍ ଶୀଘ୍ର ନୈରାଶ୍ୟରେ ପରିଣତ ହେଲା । ଯାବତୀୟ ଅନ୍ୟାୟ ଅତ୍ୟାଚାର ଶୋଷଣ, ବେଠି ବେଗାରି, ଗୃହଦାହ, ଅନ୍ୟାୟ ଟିକସ ଅସୁଲ, ମନମୁଖୀ ଶାସନ, ନାରୀଧର୍ଷଣ, ମିଥ୍ୟା ମକଦ୍ଦମାରେ ଜେଲଦଣ୍ଡ, ରାଜ୍ୟ ଭିତରେ ବିଶିଷ୍ଟ ବ୍ୟକ୍ତି ଓ ବାହାରର ଆଗନ୍ତୁକଙ୍କ ପ୍ରତି ଲାଞ୍ଛନା, ଅର୍ଥାଗମ ପାଇଁ ଚାଉଳ, ଲୁଣ, କିରୋସିନି, ପାନ, ଗଞ୍ଜେଇ, ଅଫିମ, ଲାଖ, ଚମଡ଼ା ତେନ୍ତୁଳି, କୋଚିଲା, ଆଖୁଖାଇ ଇତ୍ୟାଦି ଜିନିଷ ଉପରେ ଏକଚାଟିଆ କାରବାର କରି ପ୍ରଜାମାନଙ୍କୁ ବିଶେଷ ହଇରାଣ କରାଗଲା । ସେମାନଙ୍କର ଆର୍ଥିକ ମେରୁଦଣ୍ଡ ଭାଙ୍ଗିପଡ଼ିଲା ।

ଶଙ୍କର ପ୍ରତାପଙ୍କ ଶାସନର ବିଶେଷତ୍ୱ ହେଲା ''ନୀତେ ପାଇଲେ ଅଧିକାର, ଉଶିଙ୍କୁ ବୁହାଇଲେ ଭାର'' । ରାଜା ଶଙ୍କର ପ୍ରତାପ ଏହି ପ୍ରବଚନକୁ ଅତି ଦକ୍ଷତାର ସହିତ କାର୍ଯ୍ୟକାରୀ କଲେ । ଏହାଙ୍କର ଶାସନରେ ହେଉଥିବା ଅତ୍ୟାଚାରର ଅନ୍ୟତମ ସ୍ମାରକୀ ସ୍ୱରୂପ 'ଯତନ ନଗର କୋଠା' ଯାହା ବେଠିରେ ନିର୍ମିତ ହୋଇଥିଲା । ଏହି ଯତନ ନଗର ରାଜାଙ୍କର ପତନର ଅନ୍ୟତମ କାରଣ ।

ଏଠାରେ ବିଚାର ବିଭାଗ ଏକ ପ୍ରହସନରେ ପରିଣତ ହୋଇଥିଲା । ପୁଲିସ ଓ ନନ୍ଦପେଷ୍କାର (ରାଜାଙ୍କ ପେଷ୍କାର) ଶାସନର ମୁଖ୍ୟ ପରିଚାଳକ ଥିଲେ । କେତେକ ଅସତ୍ ଗୁଣ୍ଡା ପ୍ରକୃତିର ଲୋକଙ୍କୁ ନିଯୁକ୍ତି ଦେଇ, ବିଭିନ୍ନ ପଦବୀରେ ଭୂଷିତ କରି ସେମାନଙ୍କ ଜରିଆରେ ଅତ୍ୟାଚାର ଚଳାଉଥିଲେ । ଏହି ସମୟକୁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ କଂଗ୍ରେସ ଆରମ୍ଭ କରି, ୧୯୨୧ ବେଳକୁ ବିରାଟ ଆକାର ଧାରଣ କରିଥିଲା । ମାତ୍ର ଗଡ଼ଜାତମାନଙ୍କରେ ଏହାର କୌଣସି ପ୍ରଭାବ ପଡ଼ି ନଥିଲା । ତେବେ ଯେତିକି ପଡ଼ିଥିଲା ତାହାକୁ କମ୍ କୁହାଯିବ ନାହିଁ । କେତେକ ଛାତ୍ର ଗାନ୍ଧୀଙ୍କ ଆହ୍ୱାନକ୍ରମେ ସ୍କୁଲ ବର୍ଜନ କରିଥିଲେ । କଂଗ୍ରେସରେ ଯୋଗ ଦେଇଥିଲେ । ଲୋକେ କେବଳ ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନଙ୍କର ନାମ ଶୁଣି ଭବିଷ୍ୟତରେ ଏମାନଙ୍କର ଦୁଃଖ ଏହି ନେତାମାନେ ହରଣ କରିବେ ବୋଲି ଆଶା ପୋଷଣ କରିଥିଲେ । ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ କ୍ରମେ ବୃଦ୍ଧି ପାଇ ୧୯୩୮ ମସିହାରେ ଚରମ ଅବସ୍ଥାରେ ପହଞ୍ଚିଥିଲା ।

୧୯୨୬ରେ ମୁଁ ଢେଙ୍କାନାଳ ହାଇସ୍କୁଲର ଛାତ୍ର (ବର୍ତ୍ତମାନ ବି.ବି. ହାଇସ୍କୁଲ) । ସେ ସମୟରେ ନିକଟବର୍ତ୍ତୀ ଗଡ଼ଜାତଗୁଡ଼ିକରେ ଅନୁରୂପ ଶିକ୍ଷାନୁଷ୍ଠାନ ନଥିଲା । ସେତେବେଳେ ଏହି ସ୍କୁଲରେ ବହୁ ଦେଶପ୍ରେମୀ ସ୍ୱାଧୀନଚେତା ଶିକ୍ଷକ ଥିଲେ । ସେମାନଙ୍କ ମଧ୍ୟରେ ପ୍ରଧାନ ଶିକ୍ଷକ ରାଜେନ୍ଦ୍ର ଲାଲ ଦତ୍ତ, ସହକାରୀ ଶିକ୍ଷକ ମନମୋହନ ଘୋଷ, ଗୋପବନ୍ଧୁ ଦାସଙ୍କ ସହକର୍ମୀ ବାସୁଦେବ ମହାପାତ୍ର ଓ ତାଙ୍କ ଛାତ୍ର ହରିହର ମହାପାତ୍ର ଏହି ଅନୁଷ୍ଠାନରେ ଶିକ୍ଷକତା କରୁଥିଲେ । ଏମାନଙ୍କର ପ୍ରଭାବ ଛାତ୍ରମାନଙ୍କ ଉପରେ ଖୁବ୍ ପଡୁଥିଲା । ଛାତ୍ରମାନେ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହେଉଥିଲେ । ସେହିମାନଙ୍କ ପ୍ରେରଣା ଫଳରେ ମୋ ପରି କେତେକ ଛାତ୍ର ଦେଶସେବାରେ ନିଜକୁ ନିୟୋଜିତ କରିବାକୁ ଶପଥ ନେଇଥିଲେ ଏବଂ ରାଜା ଶଙ୍କର ପ୍ରତାପଙ୍କ ବିରୁଦ୍ଧରେ ସଂଗ୍ରାମ କରି ନିକଟବର୍ତ୍ତୀ ଗଡ଼ଜାତମାନଙ୍କରେ ଆନ୍ଦୋଳନ କରି ସଫଳକାମୀ ହୋଇଥିଲେ । ଏହି ଛାତ୍ରମାନଙ୍କ ମଧ୍ୟରେ ସର୍ବଶ୍ରୀ ଲକ୍ଷ୍ମୀଧର ସାହୁ, ଶ୍ରୀକାନ୍ତ ରାଉତ, ନେତ୍ରାନନ୍ଦ ନାୟକ, କୃତ୍ତିବାସ ପ୍ରଧାନ, ବୈଷ୍ଣବ ଚରଣ ପଟ୍ଟନାୟକ, ଗତିକୃଷ୍ଣ ଭଂଜ, ଅଭିନ୍ନ ପଟ୍ଟନାୟକ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଶଙ୍କର ପ୍ରତାପଙ୍କ ଶାସନରେ ସ୍କୁଲରେ ବାଧ୍ୟତାମୂଳକ ସ୍କାଉଟ ଓ ଡ୍ରିଲ ଇତ୍ୟାଦି ପ୍ରବର୍ତ୍ତନ ହୋଇଥିଲା । ତାଙ୍କର ବିଶ୍ୱସ୍ତ କେତେକ ନିମ୍ନଶ୍ରେଣୀର କର୍ମଚାରୀଙ୍କ ଦ୍ୱାରା ଏହା ଶିକ୍ଷା ଦିଆ ଯାଉଥିଲା । ଏହି ଛୋଟ କର୍ମଚାରୀଙ୍କ ବ୍ୟବହାର ହେତୁ ଛାତ୍ର ମହଲରେ ଅସନ୍ତୋଷ ସୃଷ୍ଟି ହୋଇ ଥିଲା ଏବଂ କେତେକ ଶିକ୍ଷକ ଏହା ବରଦାସ୍ତ କରି ନପାରି ସ୍କୁଲ ଛାଡ଼ି ଚାଲି ଯାଉଥିଲେ । ଏହି ସମୟରୁ ରାଜଶାସନ ବିରୁଦ୍ଧରେ ଆମମାନଙ୍କର ଘୃଣାଭାବ ସୃଷ୍ଟି ହୋଇଥିଲା । ରାଜ ଅତ୍ୟାଚାର ଓ ଖିଆଲି ଶାସନର ପ୍ରତିଶୋଧ ନେବା ପାଇଁ ଆମେ କେତେକ ଛାତ୍ର ସୁଯୋଗ ଅପେକ୍ଷାରେ ଥିଲୁ । ଆମେ ଯେଉଁ ଛାତ୍ରମାନେ ଚଳିଆ କର୍ମଚାରୀଙ୍କ ଦ୍ୱାରା ଅପଦସ୍ତ ଓ ଅପମାନିତ ହେଉଥିଲୁ, ସ୍କୁଲ ଛାଡ଼ିବା ପରେ କିଛିକାଳ ଆମେ ପରସ୍ପରଠାରୁ ଦୂରରେ ରହିଥିଲେ ହେଁ ନିଜ ନିଜ ଉପାୟରେ ରାଜ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଚେଷ୍ଟା କରୁଥିଲୁ ।

ରାଜ୍ୟରେ ଅତ୍ୟାଚାର ବୃଦ୍ଧି ପାଇବାକୁ ଲାଗିଲା । କେତେକ ପ୍ରଜା ରାଜ୍ୟ ଛାଡ଼ି ପଳାଇଲେ । ତେଣୁ ମୋଗଲବନ୍ଦୀରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲା ଓ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ସେତେବେଳକୁ ଡକ୍ଟର ହରେକୃଷ୍ଣ ମହତାବ କଂଗ୍ରେସର କାର୍ଯ୍ୟକାରୀ କମିଟିର ସଭ୍ୟ ଥାଆନ୍ତି । ଢେଙ୍କାନାଳ ଲୋକମାନେ ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ସଂପର୍କରେ ଆସିବାର ସୁଯୋଗ ପାଇଲେ । ଫଳରେ ରାଜଶାସନ ବିରୁଦ୍ଧରେ ଆନ୍ଦୋଳନ ଚଳାଇବାର ସୁଯୋଗ ସେମାନଙ୍କୁ ମିଳିଲା । ଦୈବକ୍ରମେ ରାଜା ଓ ତାଙ୍କର ଭାଇ ମଧ୍ୟରେ ବିଭିନ୍ନ କାରଣରୁ ଆପଣାର ସ୍ୱାର୍ଥ ପାଇଁ ମତାନ୍ତର ହେଲା । ସମ୍ବାଦପତ୍ରମାନଙ୍କରେ ଆମେମାନେ ଢେଙ୍କାନାଳ ଅତ୍ୟାଚାର କଥା ପ୍ରକାଶ କଲୁ । ଏହା ଫଳରେ ଢେଙ୍କାନାଳର ବୁଦ୍ଧିଜୀବୀ ଲୋକେ ଲୁଚିଛପି ଏ ସଂବାଦ ପଢ଼ିବାକୁ ଆରମ୍ଭ କଲେ । ସାଧାରଣ ଲୋକେ ଧୀରେ ଧୀରେ ରାଜ୍ୟରେ କିପରି ଶାସନ ଚାଲିଛି ଜାଣିବାର ସୁରାକ ପାଇଲେ ।

୧୯୩୭ ବେଳକୁ ସାରା ରାଜ୍ୟରେ ଆନ୍ଦୋଳନର ଗୋଟିଏ ବାତାବରଣ ସୃଷ୍ଟି ହୋଇ ଯାଇଥିଲା । କେବଳ ଢେଙ୍କାନାଳ ନୁହେଁ ଭାରତର ପୂର୍ବତନ ଗଡ଼ଜାତମାନଙ୍କରେ ଏକ ନୂତନ ଆଲୋଡ଼ନ ପ୍ରଜାମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ଓ ପଟ୍ଟାଭି ସୀତାରାମାୟାଙ୍କ ନେତୃତ୍ୱରେ ନିଖିଳ ଭାରତ ଗଡ଼ଜାତ ପ୍ରଜାସମ୍ମିଳନୀ ଗଠନ କରାଯାଇ ସେଥିରେ ଓଡ଼ିଶାରୁ ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କୁ ସଭ୍ୟରୂପେ ଗ୍ରହଣ କରାଯାଇଥିଲା । ଶ୍ରୀଯୁକ୍ତ ଦାସ ନିଜେ ଢେଙ୍କାନାଳର ଲୋକ । ସେ ଆମେରିକାରୁ କୃଷି ବିଶାରଦ ହୋଇ ଫେରିବା ପରେ କୃଷିର ଉନ୍ନତି ନିମନ୍ତେ ଲୋକଙ୍କୁ ତାଲିମ ଦେବାକୁ ଚନ୍ଦବାରଖାନା ବସାଇ ଥିଲେ । ମାତ୍ର ରାଜା ଏହା ସହ୍ୟ କରିପାରିଲେ ନାହିଁ । ନାନା ଭାବେ ତାଙ୍କୁ ଅପମାନିତ କଲେ । ତାଙ୍କ କଳକାରଖାନା ନଷ୍ଟ କରିଦେଲେ । ତେଣୁ ସେ ଢେଙ୍କାନାଳ ତଥା ଅନ୍ୟାନ୍ୟ ଗଡ଼ଜାତ ପ୍ରଜାମାନଙ୍କର ଦୁଃଖ ଦୂର କରିବା ଲାଗି ଦୃଢ଼ପ୍ରତିଜ୍ଞ ହୋଇଥିଲେ । ଗଡ଼ଜାତ ପ୍ରଜାସମ୍ମିଳନୀରେ ସେ ଢେଙ୍କାନାଳର ଅତ୍ୟାଚାର କଥା ବିଶେଷଭାବେ ଉପସ୍ଥାପିତ କରି ତାହା ମହାତ୍ମାଗାନ୍ଧୀ ତଥା ଅନ୍ୟାନ୍ୟ ନେତୃବୃନ୍ଦଙ୍କ ଦୃଷ୍ଟିକୁ ଆଣି ପାରିଥିଲେ ।

ରାଜ୍ୟମଧ୍ୟରେ ନାଗରିକ ସ୍ୱାଧୀନତା ନଥିବାରୁ ଲୋକେ ଲୁଚି ଛପି ରାଜ ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ ଚଳାଇଲେ । ଏ ମଧ୍ୟରେ ପଟ୍ଟାଭିସୀତାରାମାୟା ଓଡ଼ିଶା ଆସି ପ୍ରଜାସମ୍ମିଳନୀର ଶାଖା ଗଠନ କରି ଗଡ଼ଜାତର ପ୍ରଜାମାନଙ୍କୁ ପ୍ରକାଶ୍ୟ ବିଦ୍ରୋହ ଲାଗି ଆହ୍ୱାନ ଜଣାଇଲେ । ଏହାଦ୍ୱାରା ଆନ୍ଦୋଳନ ତେଜି ଉଠିଲା । ଏହା ୧୯୩୭ ମସିହା କଥା ।

ପ୍ରଥମେ ରାଜ୍ୟର ବିଭିନ୍ନ ସ୍ଥାନରେ ଲୋକମାନେ ଯଜ୍ଞ କରିବା ନାମରେ ହଜାର ହଜାର ସଂଖ୍ୟାରେ ଏକତ୍ର ହୋଇ ପ୍ରଜା ଆନ୍ଦୋଳନ କରିବା ଲାଗି ସଂକଳ୍ପବଦ୍ଧ ହୋଇଥିଲେ । ଢେଙ୍କାନାଳର ଅନ୍ୟତମ ବିଶିଷ୍ଟ ନେତା ଶ୍ରୀ ମହେଶ ଚନ୍ଦ୍ର ସୁବାହୁସିଂହଙ୍କ ନେତୃତ୍ୱରେ ପରଜଙ୍ଗ ଅଞ୍ଚଳର କୁଆଳୁ, ମାଣିକମରା ପ୍ରଭୃତି ଗ୍ରାମମାନଙ୍କରେ ବିରାଟ ଯଜ୍ଞସଭାମାନ ଅନୁଷ୍ଠିତ ହୋଇଥିଲା । ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଏହିପରି ଯଜ୍ଞ ସଭାମାନ ଅନୁଷ୍ଠିତ ହୋଇଥିଲା । ଢେଙ୍କାନାଳ ଟାଉନ୍‌ର ସର୍ବଶ୍ରୀ ଲକ୍ଷ୍ମୀଧର ସାହୁ, ବୈଷ୍ଣବ ପଟ୍ଟନାୟକ ପ୍ରଭୃତି ଯୁବ ବନ୍ଧୁମାନେ ଢେଙ୍କାନାଳ ଟାଉନ୍ ଓ ତାର ନିକଟବର୍ତ୍ତୀ ଅଞ୍ଚଳମାନଙ୍କରେ ସଭା ସମିତି କରିବାକୁ ଉଦ୍ୟମ ଚଳାଇଲେ ।

ପ୍ରଥମେ ଢେଙ୍କାନାଳର ବୟୋଜ୍ୟେଷ୍ଠ କୁଳବୃଦ୍ଧ ପଣ୍ଡିତ ଶ୍ରୀଯୁକ୍ତ ଭୁବନେଶ୍ୱର ମିଶ୍ରଙ୍କ ସଭାପତିତ୍ୱରେ ଏକ ସଭା ହୋଇ ରାଜ ଅତ୍ୟାଚାରର ପ୍ରତିବାଦ କରାଯାଇଥିଲା । ପଣ୍ଡିତ ଶ୍ରୀଯୁକ୍ତ କାଶୀନାଥ ମିଶ୍ର, ନବୀନ ଚନ୍ଦ୍ର ସ୍ୱାଇଁ,. ଲିଙ୍ଗରାଜ ଦାସ, ଆନନ୍ଦ ଚନ୍ଦ୍ର ସାହୁ, ଅଭିନ୍ନ ପଟ୍ଟନାୟକ, ଲାଲୁ ମହମ୍ମଦ, ରାଜମୋହନ ଦାସ, ବନମାଳୀ ସିଂ ପ୍ରମୁଖ ଏଥିରେ ଭାଗ ନେଇଥିଲେ । ପଣ୍ଡିତ କାଶୀନାଥ ମିଶ୍ର, ଲକ୍ଷ୍ମୀଧର ସାହୁ ପ୍ରମୁଖ ମିଳିତ ହୋଇ ପ୍ରଜାମଣ୍ଡଳର ଏକ ଦାବୀପତ୍ର ଚିଠା ପ୍ରସ୍ତୁତ କରିଥିଲେ । ଏହାର କିଛି ଦିନ ପରେ ଢେକାପୁରଠାରେ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ ଢେଙ୍କାନାଳ ରାଜ୍ୟର ସବୁ ଅଞ୍ଚଳର ଲୋକଙ୍କ ଏକ ବିରାଟ ସଭାରେ ବିଧିବଦ୍ଧ ଭାବରେ ପ୍ରଥମ ଢେଙ୍କାନାଳ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା । ଏଥିରେ ହରମୋହନ ପଟ୍ଟନାୟକ ସଭାପତି, ଶ୍ରୀମହେଶଚନ୍ଦ୍ର ସିଂ ଉପସଭାପତି, ଶ୍ରୀ ଲକ୍ଷ୍ମୀଧର ସାହୁ ସଂପାଦକ ଏବଂ ଉଦ୍ଧବ ସାହୁ କୋଷାଧ୍ୟକ୍ଷ ରୂପେ ନିର୍ବାଚିତ ହୋଇଥିଲେ । ପନ୍ଦର ଜଣଙ୍କୁ ନେଇ ଗୋଟିଏ କାର୍ଯ୍ୟକାରୀ କମିଟି ଏବଂ ଏକଶହ ସଭ୍ୟଙ୍କୁ ନେଇ କେନ୍ଦ୍ରକମିଟି ଗଠନ କରାଯାଇଥିଲା । ଏହି ସଭାରେ ଗୃହୀତ ପ୍ରଜାମଣ୍ଡଳର ଦାବୀପତ୍ର ଗ୍ରାମେ ଗ୍ରାମେ ବାଣ୍ଟି ଦିଆଯିବା ସଙ୍ଗେ ସଙ୍ଗେ ତାର କପି ଢେଙ୍କାନାଳ ରାଜା ଓ ପଲିଟିକାଲ ଏଜେଣ୍ଟଙ୍କୁ ପଠାଯାଇଥିଲା । ଏଥିରେ ଅନ୍ୟାନ୍ୟ ଦାବୀ ସହିତ ନାଗରିକ ସ୍ୱାଧୀନତା ଓ ଦାୟିତ୍ୱମୂଳକ ଶାସନ ମୁଖ୍ୟ ଦାବୀ ଥିଲା । ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଦେବୀ ପ୍ରମୁଖଙ୍କୁ ନେଇ ଏକ ପରାମର୍ଶଦାତା କମିଟି ଗଠନ କରାଯାଇଥିଲା । ସେହି ସଭାରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ପ୍ରଜାମଣ୍ଡଳ ଗଠନ କରାଯିବାର ନିଷ୍ପତ୍ତି ନିଆଯାଇଥିଲା ।

ଏହି ନିଷ୍ପତ୍ତି ଅନୁଯାୟୀ ମୁଁ ପ୍ରଥମେ ଆମ ଗାଁ ଗଂଜେଇଡିହ ସ୍କୁଲଠାରେ ୧୮।୮।୩୮ ତାରିଖ ଗହ୍ମାପୂର୍ଣ୍ଣମୀ ଦିନ ଏକ ସଭା ଡକାଇଥିଲି । ଏଥିରେ ପାଞ୍ଚଶହରୁ ଅଧିକ ଲୋକ ଯୋଗ ଦେଇଥିଲେ । ଏଥିରେ ମୁଁ ମୋ ଅଞ୍ଚଳ (ଛଦେଶ) ରେ ପ୍ରଜାମଣ୍ଡଳ ଗଠନ କରିବା ପ୍ରସ୍ତାବ ଦେବାରୁ ସେଥିରେ ସମସ୍ତେ ଏକମତ ହୋଇଥିଲେ । ପ୍ରଥମେ ଗଂଜେଇଡିହ ଓ ଝୁମୁଡ଼ିଆ ଦୁଇ ଗାଁକୁ ନେଇ ଗୋଟିଏ ଗ୍ରାମ ସଭା ଗଠନ କରାଗଲା । ଏଥିରେ ମୁଁ ସଭାପତି, ଘନଶ୍ୟାମ ପରିଡ଼ା, (ଗଂଜେଇଡିହ) ଉପସଭାପତି, ଶ୍ରୀ ଅଭିମନ୍ୟୁ ମଲ୍ଲ (ଝୁମୁଡ଼ିଆ) ସଂପାଦକ ରୂପେ

ମନୋନୀତ ହୋଇଥିଲେ । ପରବର୍ତ୍ତୀ ସଭାରେ ଅଣାଖଣ୍ଡ ଗ୍ରାମର ଦୁଇ ହଜାରରୁ ଅଧିକ ଲୋକ ଯୋଗ ଦେଇଥିଲେ । ଏହି ଯଜ୍ଞସଭା ମୋ ଗାଁ ସ୍କୁଲଠାରେ ୨।୮।୩୮ ତାରିଖରେ ଅନୁଷ୍ଠିତ ହୋଇଥିଲା । ପ୍ରଥମେ ଲୋକମାନେ ସଭାକୁ ଆସିବାକୁ ଭୟ କରୁଥିଲେ । ଗାଁ ଗାଁ ବୁଲି ନିର୍ଭୟରେ ଆସି ସଭାରେ ଯୋଗ ଦେବାକୁ ମୁଁ ଲୋକଙ୍କୁ ବୁଝାଇଥିଲି । ଏହି ସଭାରେ ମୁଁ ସଭାପତିତ୍ୱ କରିଥିଲି । ସେଦିନ ସଭାରେ ମୁଁ ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ନିର୍ଭୀକ ଭାବେ ଲୋକମାନଙ୍କୁ ବୁଝାଇଥିଲି । ସରକାରଙ୍କ ସହିତ ସମସ୍ତ ପ୍ରକାର ଅସହଯୋଗ କରି ସରକାରୀ କଳକୁ ଅଚଳ କରି ଦେବାକୁ, ଗ୍ରାମେ ଗ୍ରାମେ ସ୍ୱେଚ୍ଛାସେବକ ବାହିନୀ ଗଠନ କରିବା ନିମନ୍ତେ ଏବଂ ସମସ୍ତେ ପ୍ରଜାମଣ୍ଡଳର ସଭ୍ୟ ହେବାକୁ ନିବେଦନ କରିବାରେ ସଭାରେ ତାହା ସାଦରେ ଗୃହୀତ ହୋଇଥିଲା ।

ଉପସ୍ଥିତ ଲୋକମାନେ ଗ୍ରାମ କମିଟି ଓ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଲୋକଙ୍କ ମନରୁ ଭୟ ଦୂର କରିବା, ପ୍ରଜାମଣ୍ଡଳ ଆନ୍ଦୋଳନ ପାଇଁ ଶେଷ ପର୍ଯ୍ୟନ୍ତ ଚାନ୍ଦା ଓ ମୁଠି ଚାଉଳ ସଂଗ୍ରହ ପ୍ରସ୍ତାବ ସ୍ଥିର ହୋଇଥିଲା । ଶଙ୍ଖ ଓ ବିଗୁଲ ବଜାଇ ଲୋକଙ୍କୁ ଏକତ୍ରିତ ହେବା ଲାଗି ବୁଝାଇ ଦିଆଯାଉଥିଲା । ପ୍ରତିଗ୍ରାମକୁ ଖବର କାଗଜ ମଗାଇବାକୁ ସ୍ଥିର ହେଲା । ଏହି ସଭାରେ ଆଠଗଡ଼, ତିଗିରିଆ ଓ ଅନ୍ୟାନ୍ୟ ଗଡ଼ଜାତର ଲୋକମାନେ ଯୋଗ ଦେଇଥିଲେ । ଛଦେଶ ପ୍ରଜାମଣ୍ଡଳ ସଂସ୍ଥା ଏଠାରେ ଗଠନ କରାଯାଇଥିଲା । ସଭାପତି ରୂପେ ମୁଁ, ଯୁଗ୍ମ ସଂପାଦକ ରୂପେ ଗଂଗେଇଡ଼ିହର ଶ୍ରୀ ଘନଶ୍ୟାମ ପରିଡ଼ା, ଭାପୁରର ଗୌରହରି ପଣ୍ଡା, କୋଷାଧ୍ୟକ୍ଷ ରୂପେ ଓ୍ୱାରଖମାର ଶ୍ରୀ ହରେକୃଷ୍ଣ ମହାପାତ୍ର ନିର୍ବାଚିତ ହୋଇଥିଲେ । ଆମ ଚାରି ଜଣଙ୍କ ବ୍ୟତୀତ ପ୍ରତ୍ୟେକ ଗ୍ରାମର ପ୍ରତିନିଧିଙ୍କୁ ନେଇ ଏକ କାର୍ଯ୍ୟକାରୀ କମିଟି ଗଠନ କରାଯାଇଥିଲା । ଏହାପରେ ତା ୧୬।୮।୩୮ ରେ ଦ୍ୱିତୀୟ ବିରାଟ ସାଧାରଣ ସଭା ଛଦେଶ, ଆଠଗଡ଼, ତିଗିରିଆ ଲୋକଙ୍କୁ ନେଇ ପଣିମେଣ୍ଟର ମନ୍ଦିରଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଦଶହଜାର ଲୋକ ଯୋଗ ଦେଇଥିଲେ । ସେହି ସଭାରେ ଇନିସ୍‌ପେକ୍ଟର ସାଧୁଚରଣ ଦାସ ମୋତେ ଓ ଅନ୍ୟକେତେଜଣଙ୍କୁ ରାଜା ଡ଼କାଇଛନ୍ତି ବୋଲି କହିଲେ । ତାପରଦିନ ମୁଁ ଓ ଅନ୍ୟମାନେ ଯାଇ ରାଜାଙ୍କୁ ସାକ୍ଷାତ୍ କରିଥିଲୁ । ଏହି ସାକ୍ଷାତ ବେଳେ ଢେଙ୍କାନାଳ ରାଜାଙ୍କ ସହିତ ବୌଦ୍ଧ ଓ ସନ୍ତେରଖଣ୍ଡା, ହିନ୍ଦୋଳ, ତାଳଚେର, ଆଠଗଡ଼ ଏବଂ ତିଗିରିଆର ରାଜାମାନେ ଉପସ୍ଥିତ ଥିଲେ । ମୋର ସହକର୍ମୀମାନଙ୍କୁ ବିଦା କରିଦେଇ ସେମାନେ ମୋ ସଙ୍ଗେ ମୁଖ୍ୟତଃ ପ୍ରଜାମଣ୍ଡଳ ଆନ୍ଦୋଳନ ସଂପର୍କରେ ଆଲୋଚନା କରିଥିଲେ ଏବଂ ମୋତେ ସେଥିରୁ ନିବୃତ୍ତ ହେବା ଲାଗି ଧମକ ଦେବା ସଙ୍ଗେ ସଙ୍ଗେ ବହୁ ପ୍ରଲୋଭନ ଦେଖାଇଥିଲେ ।

ରାଜାଙ୍କ ନିକଟରୁ ଫେରି ସେହିଦିନ ମହେଶ୍ୱର ସୁବାହୁ ସିଂହଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ମୋ ଅଞ୍ଚଳ ଛଦେଶ ଓ ତାଙ୍କ ଅଞ୍ଚଳ ପରଜଙ୍ଗରେ ପ୍ରଜା ଆନ୍ଦୋଳନ ସଫଳ କରିବା ନିମନ୍ତେ ଆମେ ଦୁହେଁ ଶପଥ କରିଥିଲୁ । ଢେଙ୍କାନାଳର ପଣ୍ଡିତ କାଶୀନାଥ ମିଶ୍ର, ଲକ୍ଷ୍ମୀଧର ସାହୁ ଓ ଅନ୍ୟମାନଙ୍କ ସହ ସାକ୍ଷାତ ହେବାରୁ ରାଜାଙ୍କ ସଙ୍ଗେ ହୋଇଥିବା ଆଲୋଚନା କଥା ମୁଁ ସେମାନଙ୍କୁ କହିଲି । ସେମାନେ ରାଜାଙ୍କର ଦେଶନୀତି ଓ ଓଡ଼ିଶାର ନେତାମାନଙ୍କର ପରାମର୍ଶ ସଂପର୍କରେ କେତେକ କଥା କହିଥିଲେ । ଏହି ସମୟରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ପ୍ରଜାମଣ୍ଡଳର ବହୁ ସଭାସମିତି ଚାଲିଥାଏ । ଏଣେ ରାଜା ରାଜଭକ୍ତ ଦଳ ଗଠନ କରି ପ୍ରଜାମଣ୍ଡଳକୁ ଭାଙ୍ଗିବାକୁ ସମସ୍ତ ପ୍ରକାର ଉଦ୍ୟମ କରୁଥିଲେ ।

ପ୍ରଜା ଆନ୍ଦୋଳନକୁ ଦୃଢ଼ୀଭୂତ କରିବାକୁ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଭକ୍ତ କରି କାର୍ଯ୍ୟ କରିବା ନିମନ୍ତେ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଦାୟିତ୍ୱ ଦିଆଯାଇଥିଲା । ସେମାନେ ହେଲେ ସର୍ବଶ୍ରୀ ମହେଶଚନ୍ଦ୍ର ସୁବାହୁସିଂ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଦିବାକର ସାହୁ, ଶ୍ରୀକାନ୍ତ ରାଉତ, ନେତ୍ରାନନ୍ଦ ନାୟକ, ଶ୍ୟାମ ସୁନ୍ଦର ସାହୁ, ଗୋଲକ୍ ବିହାରୀ ପାତ୍ର, ବ୍ରଜ ମହାନ୍ତି, ନରୋତ୍ତମ ଦାସ, କୃତ୍ତିବାସ ପ୍ରଧାନ, ମହନ୍ତ ପ୍ରଧାନ, ଭାଗବତ ମିଶ୍ର, ପାର୍ବତୀ ଚରଣ ମହାପାତ୍ର, ବ୍ରଜ ବିହାରୀ ପଟ୍ଟନାୟକ, ମୁକ୍ତା ମଲ୍ଲିକ, ଧନେଶ୍ୱର ପଣ୍ଡା, ଅଚ୍ୟୁତାନନ୍ଦ ନାୟକ, ରତ୍ନାକର ରଥ, ଦାମୋଦର ସାହୁ, ଧନେଶ୍ୱର ସାହୁ, ଶ୍ରୀଧର ସାହୁ, ଶ୍ରୀନାଥ ପଟ୍ଟନାୟକ, ଦେବରାଜ ପାତ୍ର ।

ମୋ ନିଜ ଦାୟିତ୍ୱରେ ଛଦେଶ ଓ ଲକ୍ଷ୍ମୀ ପ୍ରସାଦ ଅଞ୍ଚଳ ଥିଲା । ଲକ୍ଷ୍ମୀ ପ୍ରସାଦର ସର୍ବଶ୍ରୀ ଆନନ୍ଦଚନ୍ଦ୍ର ସାହୁ, ବ୍ରଜପଟ୍ଟନାୟକ, ବଂଶୀଧର ଜେନା, ଯୋଗେନ୍ଦ୍ର ବେହେରା, ଅନନ୍ତ ଚରଣ ସାହୁ, କପିଳ ସାହୁ ପ୍ରମୁଖ ମୋତେ ବିଶେଷ ସାହାଯ୍ୟ କରୁଥିଲେ ।

ବିଭିନ୍ନ ଅଞ୍ଚଳରେ କେନ୍ଦ୍ର ସଭାମାନ ଗଠନ କରି ସରକାରଙ୍କ ସହ ପୂର୍ଣ୍ଣ ଅସହଯୋଗ କରାଗଲା । ତା ୫।୯।୧୯୩୮ ରେ ଆମେ ଓ୍ୱାରଖମା ଗାଁ ରେ ଗୋଟିଏ ପ୍ରଜାମଣ୍ଡଳ ହାଟ ଚୋଟା ବସାଇଲୁ । ବିନା ଲାଇସେନ୍ସରେ ଏ ହାଟ ଚାଲୁହେଲା । ଢେଙ୍କାନାଳର ଅନ୍ୟାନ୍ୟ ଅଞ୍ଚଳରେ ସରକାରୀ ହାଟକୁ ବାସନ୍ଦ କରାଗଲା । ରାଜ୍ୟରେ ଗ୍ରାମ ସଂଗଠନ ମଜବୁତ ହୋଇ ଯିବାରୁ ମାମଲାମକଦ୍ଦମା ପାଇଁ ଲୋକେ କଚେରିକୁ ଗଲେ ନାହିଁ । କୋର୍ଟ କଚେରି ଏକ ରକମ ଫାଙ୍କ ପଡ଼ିଗଲା । ପ୍ରଜାମଣ୍ଡଳ ଦୃଢ଼ ହେବାରୁ ସରକାରୀ କର୍ମଚାରୀମାନେ ପ୍ରଜାମଣ୍ଡଳକୁ ପରୋକ୍ଷ ସମର୍ଥନ ଜଣାଇଥିଲେ । ଏ ମଧ୍ୟରେ ରାଜାଙ୍କ ପକ୍ଷରୁ ବିଭିନ୍ନ ଘୋଷଣାମାନ ପ୍ରକାଶ ପାଇଥିଲା । ସେ ମଧ୍ୟରେ ଲୋକେ ଚାହିଁଲେ ବଜାରରୁ ପାନ କଡ଼େ କିଣିପାରିବେ । ବାଡ଼ି ବଗିଚାରୁ ଗଛ କାଟି ଗଲେ ଜଂଗଲ ବିଭାଗର ବିନାନୁମତିରେ ତାହା ବ୍ୟବହାର କରି ପାରିବେ । କେନ୍ଦୁ, କୁସୁମ ଓ ଶିଶୁକାଠ ଏବଂ କାଉଁଶ ପାଇଁ ଛାଡ଼ର ଆବଶ୍ୟକତା ନାହିଁ ଇତ୍ୟାଦି । ଏହି ଘୋଷଣାର ପ୍ରଚାର ନିମନ୍ତେ ଗାଁ ଗାଁରେ ମାଜିଷ୍ଟ୍ରେଟମାନେ ବୁଲି ଲୋକଙ୍କୁ କହିଥିଲେ ।

ଗାଁ ଗହଳରେ ତଥା ଢେଙ୍କାନାଳରେ ଲୋକେ ନିର୍ଭୟରେ ସମାଜ, କୃଷକ, ଲୋକମତ ଇତ୍ୟାଦି ପଢ଼ିବାକୁ ଆରମ୍ଭ କଲେ । ପ୍ରଥମେ ଲାଲୁ ମହମ୍ମଦ ନାମକ ଜଣେ ମୁକ୍ତଙ୍କ ଢେଙ୍କାନାଳ ଟାଉନରେ ହେଡ଼ଲାଇନ ପାଟିକରି ଡ଼ାକିବାରେ ଚହଳ ପଡ଼ିଯାଇଥିଲା । ଏଥିରେ ରାଜା ବିରକ୍ତ ହୋଇ ରାଜ୍ୟରେ ୧୪୪ ଧାରା ଜାରି କରିଦେଲେ । ଏହାର ପ୍ରତିବାଦରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ସଭା ସମିତିମାନ ହୋଇ ଥିଲା । ତା ୧୦।୯।୩୮ ତାରିଖରେ ଓ୍ୱାରଖମା ହାଟଚୋଟାରେ ଏକ ବିରାଟ ସଭା ମୋର ସଭାପତିତ୍ୱରେ ହୋଇଥିଲା । ଏଥିରେ ଦଶହଜାରରୁ ଅଧିକ ଲୋକ ଯୋଗ ଦେଇଥିଲେ । ପ୍ରଥମ କରି ଏହି ସଭାରେ ଦୁଇଶହରୁ ଅଧିକ ସ୍ତ୍ରୀ ଲୋକ ଯୋଗ ଦେଇଥିଲେ । ଏହି ସଭାରେ ସ୍ଥାନୀୟ ବ୍ୟକ୍ତିମାନଙ୍କ ବ୍ୟତୀତ

ଆଠଗଡ଼ର ଦୁର୍ଯ୍ୟୋଧନ ଜେନା, ଅଚ୍ୟୁତାନନ୍ଦ ଦାସ, ଅର୍ଜୁନ ସାହାଣି, ଚିନ୍ତାମଣି କର, ଦେବରାଜ ପଟ୍ଟନାୟକ ପ୍ରମୁଖ ଭାଷଣ ଦେଇଥିଲେ ।

ତାପରଦିନ ପ୍ରଜାମଣ୍ଡଳର ମୁଖ୍ୟନେତାମାନଙ୍କୁ ଗିରଫ କରିବାକୁ ପରୱାନା ବାହାରି ପଡ଼ିଲା ।

ମୋତେ ଗିରଫ କରିବା ଲାଗି ସବଇନ୍ସପେକ୍ଟର ୱାଇଜ୍ - ମହମ୍ମଦ ଓ ପନ୍ଦର ଜଣ ସିପାହୀ ମୋ ଗାଁଠାରୁ ଦୁଇମାଇଲ ଦୂର ରାମ୍ପୁର ଠାରେ ପହଞ୍ଚିଥିବା ସଂବାଦ ପାଇ୍ ମୋତେ ଗିରଫ କରାଇ ନଦେବା ପାଇଁ ରାମ୍ପୁର ଥାନା ଓ ମୋ ଗାଁକୁ ଘେରି ରହିଲେ । ଏହା ଏକ ଅଭିନବ ଘଟଣା ହୋଇଥିବାରୁ ସବୁଗାଁ ଲୋକେ ମୋ ସଙ୍ଗେ ବ୍ୟକ୍ତିଗତ ଭାବେ କଥା ହେବାକୁ ଚାହିଁଥିଲେ । ଏହା ଫଳରେ କିଛି ସମୟ ପାଇଁ ଚଳାଚଳତା ହୋଇ ଗାଁଟି ଅଚଳ ହୋଇ ପଡ଼ିଥିଲା । କେତେକେ ଶିଡ଼ି ପକାଇ ମୋ ଘର ଉପରେ ଚଢ଼ି କ'ଣ କରିବାକୁ ହେବ ମୋ ନିର୍ଦ୍ଦେଶ ଚାହିଁଥିଲେ । ପାଞ୍ଚ ହଜାରରୁ ଅଧିକ ଲୋକ ମୋ ଗାଁରେ ଜମା ହୋଇ ଯାଇଥିଲେ । ଲୋକଙ୍କ ଘେର ଭାଙ୍ଗି ପୁଲିସକୁ ମୋ ଘର ଭିତରକୁ ଯାଇ ଗିରଫ କରିବା ସମ୍ଭବ ହୋଇ ନଥିଲା ଓ ସେମାନେ ବାଧ୍ୟ ହୋଇ ଫେରି ଯାଇଥିଲେ । ସେଦିନ ରାଜ୍ୟରେ କୌଣସି ନେତାଙ୍କୁ ଗିରଫ କରିବା ସମ୍ଭବ ହୋଇ ନଥିଲା ।

ସ୍ୱର୍ଗତଃ ଗୋପୀନାଥ ଦାସ (ଝୁଂପୁଡ଼ିଆ) ଆନ୍ଦୋଳନ ସମୟରେ ସର୍ବଦା ମୋ ସଙ୍ଗେ ସଙ୍ଗେ ରହି ପ୍ରଜାମଣ୍ଡଳର ବିଭିନ୍ନ କାର୍ଯ୍ୟ କରୁଥିଲେ ।

### ଛଦେଶ ଲାଲ ବାହିନୀ

ପ୍ରଜା ଆନ୍ଦୋଳନକୁ ଶୃଙ୍ଖଳିତ ଭାବେ ପରିଚାଳିତ କରିବା ଲାଗି ମୁଁ ଏକ ବଳିଷ୍ଠ ସକ୍ରିୟ ସ୍ୱେଚ୍ଛାସେବକ ବାହିନୀ ଗଠନର ଆବଶ୍ୟକତା ଏକାନ୍ତ ଅନୁଭବ କରିଥିଲି । ପ୍ରଥମେ ମୋ ଗାଁ ଗଂଜେଇଡ଼ିହର ଚାଳିଶ ଜଣ ଯୁବକଙ୍କୁ ନେଇ ଏହି ସ୍ୱେଚ୍ଛାସେବକ ବାହିନୀ ଗଠନ କରାଯାଇଥିଲା । ପରେ ଏମାନଙ୍କ ସଂଖ୍ୟା ଦେଢ଼ହଜାରକୁ ବୃଦ୍ଧି ପାଇଥିଲା ।

ପ୍ରଥମେ ଏମାନଙ୍କୁ ଡ୍ରିଲଶିକ୍ଷା ଦିଆଯାଇ ସବୁ ପ୍ରକାର ତ୍ୟାଗ ଏପରିକି ପ୍ରାଣ ବଳୀ ଦେବା ଲାଗି ପ୍ରତିଜ୍ଞାବଦ୍ଧ କରାଯାଇଥିଲା । ଗାନ୍ଧିଜୀଙ୍କ ଅହିଂସା ନୀତି ପାଳନ କରିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାର ମାଦକ ଦ୍ରବ୍ୟ ସେବନରୁ ବିରତ ହେବା, ଅସ୍ପୃଶ୍ୟତା ନିବାରଣ ଓ ଗ୍ରାମ ସଫେଇ ପାଇଁ ବିଧିବଦ୍ଧ ଶିକ୍ଷା ଦିଆଯାଇଥିଲା ।

ବିଗୁଲବଜାଇ ସ୍ୱେଚ୍ଛାସେବକମାନଙ୍କୁ ଏକତ୍ରିତ କରାଯାଉଥିଲା । ଯେଉଁଠାରେ ବିଗୁଲ ନଥିଲା ସେଠାରେ ଶଂଖଧ୍ୱନି ହେଲେ ସମସ୍ତେ ଏକତ୍ରିତ ହେଉଥିଲେ । ବିଗୁଲ ବଜାଇ ତାଳଦେଇ ମାର୍ଚ୍ଚ କରିବାରେ ଏମାନେ ଧୂରନ୍ଧର ଥିଲେ । ଧଳାହାଫ୍ ପ୍ୟାଣ୍ଟ, ଖଇରା ହାପ୍ ସାର୍ଟ, ଗାନ୍ଧୀ ଟୋପି ପରିଧାନ ସହ ହାତରେ ଗୋଟିଏ ଲଉଡ଼ି ସେମାନେ ବ୍ୟବହାର କରୁଥିଲେ । କାଳକ୍ରମେ ଏମାନଙ୍କୁ ସତ୍ୟାଗ୍ରହ କରିବାର ବିଭିନ୍ନ କୌଶଳ ଶିକ୍ଷା ଦିଆଯାଉଥିଲା ।

ଏହି ସ୍ୱେଚ୍ଛାସେବକ ବାହିନୀ ତିଗିରିଆ, ଆଠଗଡ଼, ବଡ଼ମ୍ବା ନରସିଂହ ପୁର ପ୍ରଜାମଣ୍ଡଳ ସଭାମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରି ସାଧାରଣଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିଥିଲେ । ବିଭିନ୍ନ ଗ୍ରାମର ସ୍ୱେଚ୍ଛାସେବକ ବାହିନୀର ଫଟୋ ଉଠାଯାଇ ଗ୍ରାମର କେନ୍ଦ୍ରସ୍ଥଳରେ ରଖାଯାଉଥିଲା । ଏହି ଫଟୋଗୁଡ଼ିକ ଖ୍ୟାତନାମା ସାହିତ୍ୟିକ ଶ୍ରୀଯୁକ୍ତ ଅନ୍ନଦା ଶଙ୍କର ରାୟଙ୍କ ସାନଭାଇ ଅଜୟ କୁମାର ରାୟ ଗାଁ ଗାଁ ବୁଲି ଉଠାଇ ଥିଲେ ।

ଭାରତ ସମ୍ବିଧାନ ପ୍ରଣୟନ ପାଇଁ Constituent Assembly କୁ ହୋଇଥିବା ନିର୍ବାଚନରେ ସାରଙ୍ଗଧର ଦାସଙ୍କୁ ଜିତାଇବାରେ ଏମାନେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ଭୋଟ ସଂପର୍କରେ ସେତେବେଳେ ଲୋକଙ୍କର ବିଶେଷ ଧାରଣା ନଥିଲା । ଢେଙ୍କାନାଳର ଛଦେଶ ଓ ଲକ୍ଷ୍ମୀ ପ୍ରସାଦ ଅଞ୍ଚଳର ପ୍ରତ୍ୟେକ ଗାଁର ସ୍ୱେଚ୍ଛାସେବକମାନେ ଯେପରି ବହୁ ସଂଖ୍ୟାରେ ଯୋଗ ଦିଅନ୍ତି ସେଥିନିମନ୍ତେ ମୋତେ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । ପ୍ରତ୍ୟେକ ସ୍ୱେଚ୍ଛ ସେବକ ବାହିନୀରେ ଆଦିବାସୀ ଓ ହରିଜନମାନେ ସ୍ଥାନ ପାଇଥିଲେ । ଫଳରେ ଆଦିବାସୀ ଓ ଅଣଆଦିବାସୀମାନଙ୍କ ମଧ୍ୟରେ ଭେଦଭାବ ଦୂର ହୋଇଥିଲା । ଏହି ସ୍ୱେଚ୍ଛାସେବକ ବାହିନୀର ପଂକ୍ତି ଭୋଜନ ସେ କାଳରେ ଗୋଟିଏ ଉଲ୍ଲେଖନୀୟ ଘଟଣା । ମୁଁ ଏହି ସ୍ୱେଚ୍ଛାସେବକମାନଙ୍କୁ ନେଇ ଢେଙ୍କାନାଳର ଅନ୍ୟତମ ଶିବପୀଠ ପଞ୍ଚିମେଶ୍ୱର ମନ୍ଦିରରେ ଶହ ଶହ ହରିଜନ ଓ ଆଦିବାସୀଙ୍କୁ ପ୍ରବେଶ କରାଇବାରେ ସେମାନେ ପ୍ରଜାମଣ୍ଡଳ ପ୍ରତି ଅନୁରକ୍ତ ରହିଥିଲେ ।

ଏହି ଆଞ୍ଚଳିକ ସ୍ୱେଚ୍ଛାସେବକ ବାହିନୀର ଦଳପତି ଥିଲେ, ମୋର ଜ୍ଞାପୁଅ ଭାଇ ସ୍ୱର୍ଗତ ରସାନନ୍ଦ ଧଳ ଓ ତାଙ୍କ ପରେ ଥିଲେ ବିଗୁଲବାଦକ ଶ୍ରୀ ମଙ୍ଗୁଳି ଚରଣ ପରିଡ଼ା । ଏହି ସ୍ୱେଚ୍ଛାସେବକ ବାହିନୀ ସେସମୟରେ 'ଛଦେଶ ଲାଲ ବାହିନୀ' ନାମରେ ପରିଚିତ ଥିଲା, ସେ ସମୟରେ ମୋ ଗ୍ରାମର ସ୍ୱେଚ୍ଛାସେବକମାନେ ଗ୍ରାମ ସଫେଇ, ମାଦକଦ୍ରବ୍ୟ ସେବନରୁ ବିରତ ହେବାରେ ସୁନାମ ଅର୍ଜନ କରିଥିଲେ ।

ସେ ସମୟରେ ଏହି ଲାଲବାହିନୀ ଢେଙ୍କାନାଳ ଟାଉନରେ କଂଗ୍ରେସ ସଭାପତି ଡ଼. ପଟ୍ଟାଭିସୀତାରାମାୟା, ରାଜ୍ୟପାଳ ଡକ୍ଟର କୈଳାଶ ନାଥ କାଟଜୁ, ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ, ବମ୍ବେର ରାଜ୍ୟପାଳ ଭୂପେ ଡକ୍ଟର ହରେକୃଷ୍ଣ ମହତାବ, ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ତଥା ଓଡ଼ିଶା ଭିତର ଓ ବାହାରର ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ସେମାନେ ସମସ୍ତେ ଲାଲବାହିନୀର ଭୂମିକାର ଭୂୟସୀ ପ୍ରଶଂସା କରିଯାଇଛନ୍ତି । ରାଜ୍ୟ ଭିତରେ ଓ ବାହାରେ ବିଭିନ୍ନ ସ୍ଥାନରେ ଏହି ଲାଲବାହିନୀକୁ ଜନସାଧାରଣ ଯେପରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଛନ୍ତି, ତାହା ଭୁଲି ପାରିବି ନାହିଁ । ଉକ୍ତ ସ୍ୱେଚ୍ଛାସେବକ ବାହିନୀ ସାହାଯ୍ୟରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ସଫଳତା ଲାଭ କରିବାରେ ମୋର ଶ୍ରମ ସାର୍ଥକ ହୋଇଛି । ଏହି ଲାଲବାହିନୀକୁ ସୁଦୃଢ଼ କରିବାରେ ଯେଉଁ ଅଗଣିତ ଜନସାଧାରଣ ବିଭିନ୍ନ ଉପାୟରେ ମୋତେ ସାହାଯ୍ୟ କରିଥିଲେ, ସେମାନଙ୍କ ନିକଟରେ ମୁଁ ଗଭୀର କୃତଜ୍ଞତା ଜଣାଉଅଛି ।

ଗ୍ରାମ - ଗଂଜେଇଡ଼ିହ
ପୋ : ଚନ୍ଦ୍ରଶେଖର ପ୍ରସାଦ,
ଢେଙ୍କାନାଳ

# କୋରାପୁଟରେ ସ୍ୱାଧୀନତା ଆନ୍ଦୋଳନ

ମହମ୍ମଦ ବାକୀ

ମୁଁ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲି । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ସେତେବେଳର କୋରାପୁଟ ଜିଲ୍ଲା ଆଜି ୪ ଟି ଜିଲ୍ଲାରେ ବିଭକ୍ତ ହୋଇଛି । ସେହି ଅବିଭକ୍ତ କୋରାପୁଟ ଜିଲ୍ଲାରେ ଜାତି, ଧର୍ମ, ବର୍ଣ୍ଣ ଓ ଭାଷା ନିର୍ବିଶେଷରେ ଯେପରି ଭାରତଛାଡ଼ ଆନ୍ଦୋଳନ ସଂଗଠିତ ହୋଇଥିଲା, ତାହା ଭାରତର ଅନ୍ୟ କୌଣସି ଆଦିବାସୀ ଜିଲ୍ଲାରେ କିମ୍ବା ପାର୍ବତ୍ୟ ଅଞ୍ଚଳରେ ହୋଇନାହିଁ ।

ମୁଁ ପ୍ରଧାନତଃ ନବରଙ୍ଗପୁର, ଜୟପୁର, ପାପଡ଼ାହାଣ୍ଡି ଓ ଉମରକୋଟ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲି । ସେଥିପାଇଁ ବ୍ରିଟିଶ ସରକାର ମୋ' ନାମରେ ମିଥ୍ୟା କେସ୍ ରୁଜୁ କରି ମୋତେ ଗିରଫ କଲେ ।

ମାଥିଲି ଥାନାରେ ଯେଉଁମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ, ସେ ସମୟରେ ସରକାରୀ କର୍ମଚାରୀଙ୍କୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କ ସହ ଗିରଫ ହୋଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଆଜୀବନ କାରାଦଣ୍ଡ ଆଦେଶ ପାଇଲେ । ବିଚାର ଶେଷ ହେବା ପରେ ପରେ ସେମାନଙ୍କୁ ଏକ ଅଦ୍ଭୁତ ଦଣ୍ଡ ଦିଆଗଲା । ସେମାନଙ୍କ ଦୁଇ ଗୋଡ଼ରେ ଲୁହାବଳା ପିନ୍ଧାଇ ଦିଆଗଲା ଓ ସେହି ବଳା ଦୁଇଟିକୁ ଯୋଡ଼ି ଗୋଟିଏ ଦେଢ଼ଫୁଟ ଲମ୍ବର ଲୁହାରଡ଼ ଲଗାଇ ଦିଆଗଲା । ସେହି ଦୁଇ ଗୋଡ଼ର ବଳାରୁ ପୁଣି ୨ ଟି ଲୁହା ରଡ଼ ପ୍ରାୟ ୨ ଫୁଟ ଲମ୍ବର ବାହାରିଥିବ । ସେହି ରଡ଼ ଦୁଇଟିର ଅପର ପାର୍ଶ୍ୱ ମୁଦି ପରି ହୋଇଥିବ । ବନ୍ଦୀ ତାକୁ ହୁଏତ ହାତରେ ଧରି ଚାଲିବ, ନଚେତ ତା ଭିତରେ ଗାମୁଛାକୁ ଦଉଡ଼ି ପରି ଗଳାଇ ଅଣ୍ଟାରେ ବାନ୍ଧିବ । ଯଦି ଲୁହାଛଡ଼ ଦୁଇଟିକୁ ଏପରି ଧରା ନଯାଏ ତେବେ ତାହା ଗୋଡ଼ ପାଖରେ ପଡ଼ି ରହିବ, ଯା' ଫଳରେ ଚାଲିବା ସମ୍ଭବ ହେବନାହିଁ । ଏହାକୁ ଦଣ୍ଡାବେଡ଼ି କୁହାଯାଉଥିଲା । ମୁଁ ଜାଣିନାହିଁ, ବ୍ରିଟିଶ ସରକାର ତାଙ୍କର ଅନୁଗତ ରାଜକର୍ମଚାରୀମାନଙ୍କୁ ଏପରି ଦଣ୍ଡ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ କି ନାହିଁ ଓ ଭାରତରେ ଅନ୍ୟତ୍ର ଏପରି ଦଣ୍ଡର ବ୍ୟବସ୍ଥା ଥିଲା କି ନାହିଁ କିନ୍ତୁ ଏହା ଏକ ଅତ୍ୟାଚାର ବୋଲି ମୁଁ ଅନୁଭବ କଲି । ସେହି ଦଣ୍ଡାବେଡ଼ି ପିନ୍ଧି କଏଦୀମାନଙ୍କୁ ମୁରଗା ଗଛର ପତ୍ର ଛେଚି ଝୋଟ ବାହାର କରିବାକୁ ପଡ଼େ । ସେମାନଙ୍କ ଦେହରେ ମୁରୁଗା ପତ୍ରର ରସ ଛିଟିକି ଆସି ପଡ଼େ ଓ ଯେଉଁ ଜାଗାରେ ସେ ରସ ପଡ଼େ ସେହି ଜାଗାରେ କୁଣ୍ଡାଇ ହୋଇ ଭିବିଭିବି ଫଟିଯାଏ । କୋରାପୁଟିଆ କଏଦୀ, ମନେ ମନେ ଧରି ନେଇ ଯାଉଥାଏ ସେ ଦେଶର ସ୍ୱାଧୀନତା ପାଇଁ ଏସବୁ କଷ୍ଟ ସହିବାକୁ ପଡ଼େ ।

ଜେଲ୍‌ରେ ଯେତିକି ବନ୍ଦୀଙ୍କ ପାଇଁ ବ୍ୟବସ୍ଥା ଥିଲା ତା' ଠାରୁ ବହୁ ଅଧିକ ସଂଖ୍ୟକ ରାଜନୈତିକ ବନ୍ଦୀ ଥିଲେ । ଗୋରୁ ଗୁହାଳପରି ଲମ୍ୱାସେଡ଼ମାନଙ୍କରେ ଶହ ଶହ କଏଦୀ ଭର୍ତ୍ତି ହେଉଥିଲେ । ଅସ୍ୱାସ୍ଥ୍ୟକର ପରିବେଶ, ଶୋଇବାର ସୁବିଧା ନାହିଁ, ଖାଇବା ପାଇଁ ଭାତ ମୁଣ୍ଡାଏ ଓ ଡ଼ାଲି । ରୋଗ ହେଲେ ଚିକିତ୍ସାର ମଧ୍ୟ ଭଲ ବ୍ୟବସ୍ଥା ନଥିଲା ।

ଚିକିତ୍ସା ଅଭାବରୁ ଜେଲରେ ଅନେକ ବନ୍ଦୀ ମରିଗଲେ । ସେମାନଙ୍କର ଏକ ନାମ ତାଲିକା ମୁଁ ସଂଗ୍ରହ କଲି । ତାହା ନିମ୍ନରେ ଦିଆଗଲା ।

### ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଜୀବନ ଦେଇଥିବା କୋରାପୁଟ ଜିଲ୍ଲାର ବୀର ଶହୀଦ ଗଣ

| କ୍ର. ଶହୀଦଙ୍କନାମ | ଗ୍ରାମ, | ଥାନା | ଶହୀଦସ୍ଥାନ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|
| ୧. ଲକ୍ଷ୍ମଣ ନାଏକ | ଟେଣ୍ଟୁଲି ଗୁମା | ମାଥିଲି | ବ୍ରହ୍ମପୁର ଜେଲରେ | ଶତ୍ରୁର ଫାଶୀରେ |
| ୨. ସନାବିଶି ନାଏକ | ମିତ୍ରଶିଗୁଡ଼ା | ମାଥିଲି | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୩. ନରସିଂହ ଭୂଇ | ଦୁଆପଡ଼ା | ମାଥିଲି | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୪. ଅର୍ଜୁନ ଭୂମିଆ | ଖୁର୍ଦ୍ଦକଗୁଡ଼ା | ମାଥିଲି | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୫. ଲିଙ୍ଗ ଭୂମିଆ | ଟିମାଗୁଡ଼ା | ମାଥିଲି | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୬. ଖଗପତି ଅମାନାତ୍ୟ | ଭଣ୍ଡା | ନବରଙ୍ଗପୁର | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୭. ଭୁଦୁ ଭତରା | ନଦାହାଣ୍ଡି | ନବରଙ୍ଗପୁର | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୮. ଧାନେଇ ଗୋଡ଼ | ଦୁବୁଗୁଡ଼ା | ନବରଙ୍ଗପୁର | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୯. ଦଶି ଭତରା | ଭଣ୍ଡା | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୦. ଦୁଦୁ ଅମାନାତ୍ୟ | ଛତୁଲିପଦର | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୧. ରତନ ଭଲାରା | ଦୁତୁଲି | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୨. ଶାମନ୍ତୁ ଅମାନାତ୍ୟ | ପୁପୁଗାଁ | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୩. ପାଣ୍ଡିଜାନି | ପୁଆ ଗାଁ | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୪. ଶୁକ୍ରୁ ମୁଦୁଲି | ଶୁଭାବାର | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୫. ରତନ ପୂଜାରି | ଛତୁଲିପଦର | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |
| ୧୬. ଶାମନ୍ତୁ ଜାନି | ପୂଆଗାଁ | ଟେଣ୍ଟୁଲିଖୁଣ୍ଟି | ପାପଡ଼ା ହାଣ୍ଡି ନଦୀତଟରେ | ଶତ୍ରୁର ଗୁଳିରେ |

# ପୁରୀ ଜିଲ୍ଲାରେ 'ଭାରତଛାଡ଼' ଆନ୍ଦୋଳନ

*ଶ୍ରୀ ଚନ୍ଦ୍ରଶେଖର ନାୟକ*

ମହାତ୍ମାଗାନ୍ଧୀଙ୍କ ପରିଚାଳିତ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନ ପରେ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଅନ୍ତିମ ସଂଗ୍ରାମ ଲକ୍ଷ୍ୟରେ ଦେଶବାସୀଙ୍କୁ ପ୍ରସ୍ତୁତ ଓ ସଂଗଠିତ କରାଇବାକୁ ମହାତ୍ମାଗାନ୍ଧୀ ଗଠନାତ୍ମକ କାର୍ଯ୍ୟକ୍ରମ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ୧୯୩୫ ମସିହା ଭାରତ ଶାସନ ଆଇନକୁ ଗ୍ରହଣ କରି ପ୍ରଥମ ହୋଇ କଂଗ୍ରେସ ପ୍ରାଦେଶିକ ଶାସନ ଦାୟିତ୍ୱ ଗ୍ରହଣ କରିବାରୁ ତତ୍କାଳୀନ ଦେଶର ୧୧ ଟି ପ୍ରଦେଶରୁ ନିର୍ବାଚନ ସୂତ୍ରରେ ୮ ଗୋଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । ପୁରୀ ଜିଲ୍ଲାରୁ ଓଡ଼ିଶା ବିଧାନସଭାକୁ ୰ମୋହନ ଦାସ, ୰ଜଗବନ୍ଧୁ ସିଂ, ୰ବେଣି ବେହେରା, ୰ ଜଗନ୍ନାଥ ମିଶ୍ର, ୰ପ୍ରାଣନାଥ ପଟ୍ଟନାୟକ ଓ ୰ଗୋଦାବରୀଶ ମିଶ୍ର ନିର୍ବାଚିତ ହୋଇଥିଲେ । ଏମାନେ ସମସ୍ତେ କଂଗ୍ରେସ ସଭ୍ୟ । ୰ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଓଡ଼ିଶା ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । ଖଦୀ, ମୌଳିକ ଶିକ୍ଷା, ରାଷ୍ଟ୍ରଭାଷା ପ୍ରସାର, ନିଶାବର୍ଜନ, ଛାତ୍ର, କୃଷକ ଓ ଆଦିବାସୀଙ୍କ ଉନ୍ନତି ବିଧାନ ଇତ୍ୟାଦି ଗଠନାତ୍ମକ କାର୍ଯ୍ୟକ୍ରମକୁ ସରକାରୀ ସ୍ତରରେ କାର୍ଯ୍ୟକାରୀ କରାଇବାକୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ନିଷ୍ଠାପର ଉଦ୍ୟମ କରିଥିଲେ । ମନ୍ତ୍ରୀମଣ୍ଡଳ ପୁରା ମିଆଦ ଭୋଗ କରିବା ପୂର୍ବରୁ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ଭାରତର ସୈନିକମାନଙ୍କୁ କେନ୍ଦ୍ରରେ ପ୍ରତିଷ୍ଠିତ ମନ୍ତ୍ରୀମଣ୍ଡଳର ବିନା ପରାମର୍ଶରେ ଭାରତର ବଡ଼ଲାଟ ଯୁଦ୍ଧରେ ଲଗାଇ ଦେବାରୁ ତାହାକୁ ମର୍ଯ୍ୟାଦା ହାନିକର ମନେକରି ଅଖିଳ ଭାରତ କଂଗ୍ରେସର ନିର୍ଦ୍ଦେଶରେ ବିଭିନ୍ନ ପ୍ରଦେଶରେ ଗଠିତ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେଲେ ।

## ଧ୍ୱନି ସତ୍ୟାଗ୍ରହ

ଏହାପରେ ଆରମ୍ଭ ହେଲା ସ୍ୱାଧୀନତା ସଂଗ୍ରାମର ଚତୁର୍ଥ ପର୍ଯ୍ୟାୟ ଧ୍ୱନି ସତ୍ୟାଗ୍ରହ । ''ଇଂରେଜ ସରକାରଙ୍କ ଯୁଦ୍ଧ ଉଦ୍ୟମକୁ ଧନଜନ ଦେଇ ସାହାଯ୍ୟ କରିବା ଅନ୍ୟାୟ''- ଉଚ୍ଚାରଣ ଦ୍ୱାରା ଯୁଦ୍ଧ ବିରୋଧୀ ପ୍ରଚାର ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଇସ୍ତଫା ଦେଇଥିବା ଖୋଦ ପ୍ରଧାନମନ୍ତ୍ରୀ ୰ ବିଶ୍ୱନାଥ ଦାଶ କଟକରେ ଏହି ଧ୍ୱନି ଉଚ୍ଚାରଣ ପୂର୍ବକ ସତ୍ୟାଗ୍ରହ ସଂଗ୍ରାମ ଓଡ଼ିଶାରେ ଉଦ୍‌ଘାଟନ କରି ଗିରଫ ହେବାପରେ ବିଭିନ୍ନ ସ୍ଥାନରେ ବିଧାନସଭାରୁ ଇସ୍ତଫା ଦେଇଥିବା କଂଗ୍ରେସ ସଦସ୍ୟମାନେ ଧ୍ୱନି ସତ୍ୟାଗ୍ରହ କରି ଗିରଫ ହେଲେ । ପୁରୀ ଜିଲ୍ଲାରୁ କେବଳ ଗୋଦାବରୀଶ ମିଶ୍ରଙ୍କୁ ଛାଡ଼ି ଅନ୍ୟ ସଦସ୍ୟମାନେ ସତ୍ୟାଗ୍ରହରେ ଯୋଗଦେଇ ଗିରଫ ହୋଇଥିଲେ । ଗୋଦାବରୀଶ ଦଳ ତ୍ୟାଗ କଲେ ।

ସେତେବେଳେ ପୁରୀ ଜିଲ୍ଲା କଂଗ୍ରେସର ସଂଚାଳକ ଥାଆନ୍ତି ୰ ଲୋକନାଥ ମିଶ୍ର (ପଙ୍କ ବାବୁ) । ପୁରୀ ସିଂହଦ୍ୱାରରେ ସ୍ୱାଧୀନତା ଦିବସ, ଜାନୁୟାରୀ ୨୬, ଜାତୀୟ ସପ୍ତାହ ଅପ୍ରେଲ ୬ ରୁ ୧୩, ଗାନ୍ଧୀ ଜୟନ୍ତୀ ଅକ୍ଟୋବର ୨, କଂଗ୍ରେସର ଶହୀଦ ଦିବସ ମାର୍ଚ୍ଚ ୧ ଇତ୍ୟାଦି ଜାତୀୟ ଦିବସ ପ୍ରତିପାଳନ ମାଧ୍ୟମରେ ୰ ମୁରାରୀ ତ୍ରିପାଠୀ, ପଣ୍ଡିତ ବୈକୁଣ୍ଠ ନାଥ ପ୍ରତିହାରୀ, ପଣ୍ଡିତ ରଘୁନାଥ ମିଶ୍ର, ୰ ଆଚାର୍ଯ୍ୟ ହରିହର, ୰ପଣ୍ଡିତ କୃପାସିନ୍ଧୁ ହୋତା, ୰ ପଣ୍ଡିତ ନୀଳକଣ୍ଠ, ୰ ଅନ୍ଧ ସତ୍ୟାଗ୍ରହୀ ବାମଦେବ ଦାସ ପ୍ରମୁଖ କଂଗ୍ରେସର ନେତୃବୃନ୍ଦ ଓଜସ୍ୱିନୀ ବକ୍ତୃତାରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥାନ୍ତି । ଏହି ଚତୁର୍ଥ ପର୍ଯ୍ୟାୟଟି ପଞ୍ଚମ ପର୍ଯ୍ୟାୟ ପାଇଁ ପଥ ପରିଷ୍କାର କରିଦେଇଥିଲା ।

ଅନ୍ତିମ ସ୍ୱାଧୀନତା ସଂଗ୍ରାମ ପାଇଁ କଂଗ୍ରେସର ପ୍ରସ୍ତୁତି ପର୍ବ ଯେପରି ଦୀପ୍ତଦର୍ପରେ ଆଗେଇ ଚାଲିଥାଏ, ଆନ୍ଦୋଳନକୁ ଭଣ୍ଡୁର କରିଦେବା ପାଇଁ ସରକାରୀ ସତର୍କତା ତାଳ ମିଳାଇ ଗତି କରୁଥାଏ ।

## ଭାରତ ଛାଡ଼

ଅଗଷ୍ଟ ଆନ୍ଦୋଳନରେ ପୁରୀ ଜିଲ୍ଲାର ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ହୋତା, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପତିତପାବନ ହୋତା, ଗୋଲାମ ମୁସ୍ତାଫା ଖାଁ ପ୍ରମୁଖ ବହୁ ସ୍ୱନାମଧନ୍ୟ ନେତାଙ୍କୁ ଅଟକବନ୍ଦୀ ରୂପେ ନିଆ ହୋଇଯିବାରୁ ସେମାନଙ୍କର ମାର୍ଗ ଦର୍ଶନ ଆନ୍ଦୋଳନରେ ମିଳିନଥିଲା । ତଥାପି ବହୁ ନୂଆନୂଆ କର୍ମୀ ବାହାରିପଡ଼ିଲେ ଓ ଆନ୍ଦୋଳନରେ ନିଜକୁ ସମର୍ପି ଦେଲେ । ବ୍ରହ୍ମଗିରି ଓ କଣାସ ଅଞ୍ଚଳର ସ୍ୱନାମଧନ୍ୟ ନେତା ୰ ବିଶ୍ୱନାଥ ପରିଡ଼ା ଜଣେ ବିପ୍ଳବୀ ଥିଲେ । କାୟାଶୀର୍ଣ୍ଣ, ତନ୍ତୁ ଭ ଶରୀର । ଅଣ୍ଟାରେ ଖଡ଼ି ଗୋଟାଳି; ମାତ୍ର ବିଚାରରେ ବିପ୍ଳବ ଭରା ଥିଲା । ଓଡ଼ିଶାରେ ଆନ୍ଦୋଳନର ଗୋପନ ସଂଗଠକ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହିତ ତାଙ୍କର ଯୋଗସୂତ୍ର ଥିଲା । ଜଣେ ଲୋକର ଗୁହାଳ ଭାଡ଼ିରେ ପୋଷେ ଚୂଡ଼ାଖାଇ ସାତଦିନ ଆତ୍ମଗୋପନ କଲାପରେ ସେ ଗିରଫ ହୋଇଥିଲେ । ଇଂରାଜୀରେ ଦରଖାସ୍ତ ଲେଖିବାରେ ସେ ଅତ୍ୟନ୍ତ ଧୂରନ୍ଧର ଥିଲେ । ପୁରୀ ବନ୍ଦୀଶାଳାରେ ରାଜବନ୍ଦୀ ଓ ସାଧାରଣ କଏଦୀ

ସମସ୍ତଙ୍କର ସୁଖ ସୁବିଧା ପାଇଁ ଦରଖାସ୍ତ ଲେଖିବାରେ ସେ ବହୁତ ସମୟ ଦେଉଥିଲେ । ସେ ନିଜେ ସୂର୍ଯ୍ୟ ନମସ୍କାର କରୁଥିଲେ ଓ ଅନ୍ୟମାନଙ୍କୁ ଶିଖାଉଥିଲେ ।

### ଛାତ୍ର ସଂଘର ଭୂମିକା

ସେତେବେଳେ ରାମକୃଷ୍ଣ ମିଶନ ଲାଇବ୍ରେରୀରେ ଛାତ୍ର ସଂଘର ଅଫିସ ଥିଲା । ୰ ନରସିଂହ ତ୍ରିପାଠୀ ଓ ଶ୍ରୀ ଉପେନ୍ଦ୍ର ମହାନ୍ତି ପ୍ରମୁଖ ଛାତ୍ରମାନଙ୍କୁ ସଂଗଠନ କରୁଥିଲେ । କଟକ ମେଡ଼ିକାଲ ଧର୍ମଘଟ ସମର୍ଥନରେ ପୁରୀରେ ଛାତ୍ର ଆନ୍ଦୋଳନ, ଜଗନ୍ନାଥ ବଲ୍ଲଭ ମଠରେ ଛାତ୍ରମାନଙ୍କର ସଭା, ପ୍ରେମାଶ୍ରମରେ ବାଗ୍ମିତା ପ୍ରତିଯୋଗିତା ମାଧ୍ୟମରେ ଛାତ୍ରମାନଙ୍କର ମାନସିକ ଦକ୍ଷତା ବୃଦ୍ଧି, ପୁରୀରେ ଯୁବ-ଛାତ୍ର ସମ୍ମିଳନୀ ଓ ସେଠାକୁ ରାମକୃଷ୍ଣ ପତି ଓ ନବକୃଷ୍ଣ ଚୌଧୁରୀ ପ୍ରମୁଖଙ୍କୁ ଆମନ୍ତ୍ରଣ ଇତ୍ୟାଦି ବହୁ ଜାତୀୟ କାର୍ଯ୍ୟକ୍ରମ ସେମାନେ ଅନୁଷ୍ଠାନ କରୁଥିଲେ ।

ପୁରୀ ରାମଚଣ୍ଡୀ ସାହିରେ ବିପ୍ଳବୀ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଘର । ସେହି ଘରଟି ସେତେବେଳେ ଆନ୍ଦୋଳନର ଅନ୍ୟତମ କେନ୍ଦ୍ର ଥିଲା । କମଳାକାନ୍ତ ଚାଟାର୍ଜୀ, ବିଶ୍ୱନାଥ ମୁଖାର୍ଜୀ, ଜ୍ୟୋତି ବସୁ ଓ ବିହାରର ବିଶ୍ୱନାଥ ଦୁବେ ପ୍ରମୁଖ ପୁରୀରେ ନିର୍ବାସିତ ବଙ୍ଗୀୟ ବିପ୍ଳବୀ ଦାଦା ସତ୍ୟେନ୍ଦ୍ର ନାଥ ଗୁହଙ୍କ ପାଖକୁ ଆସୁଥିଲେ । ଭଗବତୀ ବାବୁଙ୍କ ଘରେ ଏହି ନେତୃମଣ୍ଡଳୀଙ୍କ ବୈଠକରେ ବହୁ ବିଚାର ବିମର୍ଶ ହେଉଥିଲା ।

ପୁରୀ କେନାରୀ ଗଛ ଗଳିରେ ଜିଲ୍ଲା କଂଗ୍ରେସର ଅଫିସ ଥିଲା । ଡେଲାଙ୍ଗ ଅଞ୍ଚଳର ୰ ରଘୁନାଥ ବାରିକ ଓ ରଣପୁରର ୰ ଗଙ୍ଗାଧର ମିଶ୍ର ଅଫିସ ଦାୟିତ୍ୱରେ ରହୁଥିଲେ । ଆନ୍ଦୋଳନ ଆରମ୍ଭ ହୋଇ ଯିବାରୁ କଂଗ୍ରେସ ବେଆଇନ ଘୋଷିତ ହେଲା । ଅଫିସରେ ପୋଲିସ ତାଲା ପକାଇ ଦେଲେ । ଗଙ୍ଗାଧର ମିଶ୍ର ଗିରଫ ହେଲେ । ରଘୁନାଥ ବାରିକ ଆତ୍ମଗୋପନ କରି ବେରବୋଇର ଲୋକନାଥଙ୍କ ଘରେ ଗ୍ରାମବାସୀଙ୍କୁ ଏକାଠି କରି ଆଇନ ଅମାନ୍ୟର ଯୋଜନା କଲେ । ଭୁବନେଶ୍ୱରର ୰ ରଘୁନାଥ ମହାପାତ୍ରଙ୍କ ସହଯୋଗରେ ବି.ଏମ ହାଇସ୍କୁଲର ଛାତ୍ରମାନଙ୍କୁ ସଂଗଠିତ କଲେ । ଛାତ୍ର ଶ୍ରୀ ନୀଳକଣ୍ଠ ମିଶ୍ର (ଘର କଣ୍ଟାବାଡ଼, ଖୋରଧା) ଆନ୍ଦୋଳନରେ ଯୋଗଦେଇ ଗିରଫ ହେଲେ । ପୁରୀ ବନ୍ଦୀଶାଳାରେ ଥିବାବେଳେ ତାଙ୍କର (ଶ୍ରୀ ମିଶ୍ରଙ୍କର) ପିତୃ ବିୟୋଗ ଘଟିଲା । ଜୋରିମାନା ଦେଇ ମୁକ୍ତ ହେବା ପ୍ରସ୍ତାବ ତାଙ୍କ ଆତ୍ମୀୟ ଆଦୃ ଆସିଥିଲେ ମଧ୍ୟ ସେ ପ୍ରତ୍ୟାଖ୍ୟାନ କଲେ । ପିତାଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେଇ ପାରିଲେ ନାହିଁ । ତାଙ୍କୁ ବେତ୍ରାଘାତ ଦଣ୍ଡ ମଧ୍ୟ ହୋଇଥିଲା । ଏରୋଡ୍ରମ ପାଖ ଟେଲିଫୋନ ଲାଇନ୍ ବିଚ୍ଛିନ୍ନ କରିବା ଓ ଭୁବନେଶ୍ୱରରେ ଗଣେଶ ଶୋଭାଯାତ୍ରାକୁ ଜାତୀୟ ସଂଗ୍ରାମର ପ୍ରତୀକ କରାଇବା ଅଭିଯୋଗରେ ସେ ଗିରଫ ହୋଇ ଦଣ୍ଡ ପାଇଥିଲେ ।

ଅନନ୍ତର ଶ୍ରୀ ରଘୁନାଥ ବାରିକ ବାଲିଅନ୍ତା ଯାଇ ଜଣେ ଗୁଡ଼ିଆଙ୍କ ସହଯୋଗରେ ସଂଗ୍ରାମୀ ଶିକ୍ଷକ ଦାଶରଥୀ ମହାନ୍ତି ଓ ବୀରବର ଜେନାଙ୍କୁ ଭେଟିଲେ । ଉଭୟେ ସଂଗ୍ରାମରେ ଯୋଗଦେଲେ । ବୀରବର ବନ୍ଦୀ ହେଲେ । ଏହା ପରେ ସେ ଡେଲାଙ୍ଗ ଆସି ଜୋକଳନ୍ଦୁଆ ଗାଁରେ ଦୀନବନ୍ଧୁ ସ୍ୱାଇଁଙ୍କ ପାଖେ ଆଶ୍ରୟ ନେଲେ । ବାସୁଦେବ, ଗଜେନ୍ଦ୍ର, ଜୟକୃଷ୍ଣ ନାୟକ, ପୂର୍ଣ୍ଣଚନ୍ଦ୍ର ବେହେରା ଓ ପ୍ରାଣନାଥ ନାୟକଙ୍କ ସହ ମୋଟରୀ ଷ୍ଟେସନରେ ଟେଲିଫୋନ ତାର ସଂଯୋଗକୁ ବିଚ୍ଛିନ୍ନ କରି ଗିରଫ ହେଲେ ।

ପୂର୍ବରୁ ଘୋଡ଼ଡ଼ିଆଠାରେ ଯୁଦ୍ଧ ବିରୋଧୀ ସଭାକରି ପଦ୍ମବାବୁ, ସତ୍ୟବାଦୀ ନନ୍ଦ, ମୋହନ ଦାସ ଓ ଭଗବାନ୍ ପ୍ରତିହାରୀ ଗିରଫ ହୋଇଥିଲେ । କୁଶ୍ୱେଇ ହାଟରେ ଆନ୍ଦୋଳନ ବାର୍ତ୍ତା ପ୍ରଚାର କରି ଶ୍ୟାମସୁନ୍ଦର ସ୍ୱାଇଁ ଓ ଗୁଣନିଧି ସାହୁଙ୍କ ସହ ଶ୍ରୀ କୃପାସିନ୍ଧୁ ପରିଡ଼ା ଗିରଫ ହେଲେ । ୰ କୃଷ୍ଣ ଚନ୍ଦ୍ର ରଥ- ଗ୍ରାମ ଭାଣପୁର (ଶୁକଳ) ସତ୍ୟବାଦୀରେ ସଭା କରି ଗିରଫ ହେଲେ । ଜୋରିମାନ ବାବଦକୁ ତାଙ୍କ ଘର କୋରଖ ହୋଇଥିଲା । ପରେ ସେ ଅଟକ ବନ୍ଦୀ ଓ ନିଜଘରେ ଅନ୍ତରୀଣ ବନ୍ଦୀ ଆଦେଶକୁ ଅବଜ୍ଞା କରି ଦ୍ୱିତୀୟବାର କାରାଦଣ୍ଡ ଭୋଗ କଲେ । ହରେକୃଷ୍ଣ ମହାନ୍ତି ପୁରୀ ମରିଚିକୋଟ ଗଳିରେ ନୂଆମଠ ପାଖରେ ଜଣେ ସାଧାରଣ ପାନ ଦୋକାନୀ । ସେ ଆନ୍ଦୋଳନରେ ଯୋଗଦେଇ ଗିରଫ ହେଲେ । ଗୋପଥାନା ମଲ୍ଲଗାଁର ଶ୍ରୀ ଗୋପୀନାଥ ଦାସ । କଟକ ଜିଲ୍ଲା ବରୀ ଅଞ୍ଚଳରେ ମୌଳିକ ଶିକ୍ଷକ ଥିଲେ । ଆନ୍ଦୋଳନରେ ଯୋଗଦେଇ କଟକ, ବ୍ରହ୍ମପୁର ଓ କୋରାପୁଟ ଜେଲରେ ଥିଲେ । ବନ୍ଦୀଶାଳାରେ ବନ୍ଦୀମାନଙ୍କୁ ମଣିଷ ଭଳି ଦେଖିବାକୁ ସେ ଆନ୍ଦୋଳନ କରିଥିଲେ । ସେ ନିଜେ ରାଷ୍ଟ୍ରଭାଷା ପ୍ରବୀଣ ଥିବାରୁ ବନ୍ଦୀମାନଙ୍କୁ ହିନ୍ଦୀ ଶିକ୍ଷା ଦେଉଥିଲେ । ସେହି ମଲ୍ଲଗାଁର ୰ ଈଶ୍ୱର ଚନ୍ଦ୍ର ମିଶ୍ର ନିଜ ଗ୍ରାମରେ କଂଗ୍ରେସ ସେବାଦଳ ଗଠନ କରିଥିଲେ । ଏରବଙ୍ଗ ଖଦୀ ଶିବିରରେ ଟ୍ରେନିଂ ପାଇଥିଲେ । ହନ୍ତସରା ଗ୍ରାମର ବୈଦ୍ୟନାଥ ଚୌଧୁରୀଙ୍କ ପତ୍ନୀ ସୁନାଙ୍କ ଆଶ୍ରୟରେ ସେ ଦୀର୍ଘଦିନ ଆତ୍ମଗୋପନ କରିଥିଲେ । ୰ ଲିଙ୍ଗରାଜ ରଥଙ୍କ ସହ ଗୋପ କୃଷ୍ଣପୁର ହାଟରେ ସଭାକରି ଗିରଫ ହେଲେ ।

ଗୋପଥାନା ଗଡ଼କୁପାଣ ଗ୍ରାମର ଶ୍ରୀ ଗୌରଶ୍ୟାମ ସାମନ୍ତରାୟ । ତାଙ୍କ ସହଯୋଗୀ ୰ ନରେନ୍ଦ୍ର ପାତ୍ର ପାଖ ଜଙ୍ଗଲରେ ଘାଟି ସ୍ଥାପନ କରି ଖଜଣା ବନ୍ଦ ଓ ଦଫାଦାର ଚୌକିଦାରଙ୍କ ପୋଷାକ ପୋଡ଼ି ଆନ୍ଦୋଳନରେ ଭାଗ ନେଇଥିଲେ । ଗୁର୍ଖା ପୋଲିସଙ୍କ ଦ୍ୱାରା ସେମାନେ ଗୋପରେ ଗିରଫ ହେଲେ । ଥାନାରେ ସେମାନଙ୍କୁ ବହୁ ଦୈହିକ ନିର୍ଯ୍ୟାତନା ଭୋଗ କରିବାକୁ ହୋଇଥିଲା । ଗୋପରୁ ପୁରୀକୁ ୨୧ ମାଇଲ ରାସ୍ତା ଚଲାଇ ଚଲାଇ ପୋଲିସ ସେମାନଙ୍କୁ କଚେରୀକୁ ଆଣିଥିଲେ । ବିଚାରରେ ସେମାନେ ଦଣ୍ଡିତ ହେଲେ ।

ଆଠଗଡ଼ ପ୍ରଜାମଣ୍ଡଳରେ କର୍ମୀ ଶ୍ରୀ ଲିଙ୍ଗରାଜ ଜେନା ଆନ୍ଦୋଳନରେ ଭାଗନେଇ ପୁରୀ ବନ୍ଦୀଶାଳାରେ ଥିଲେ । ସାକ୍ଷୀଗୋପାଳ ବିଶ୍ୱନାଥପୁରର କାଶୀନାଥ ମହାପାତ୍ର, ବୀରପୁରୁଷୋତ୍ତମପୁରର ୰ ଜନାର୍ଦ୍ଦନ ମିଶ୍ର, ଗୋପ ଏରବଙ୍ଗର ୰ ପ୍ୟାରୀମୋହନ ସ୍ୱାଇଁ, ଗଣେଶ୍ୱର- ପୁରର ଶ୍ରୀ ରଘୁନାଥ ଦାଶ, ୰ କୁଞ୍ଜମଣି ଦାଶ, ଗୋପର ୰ ରାମଚନ୍ଦ୍ର ସାହୁ ଆନ୍ଦୋଳନରେ ଯୋଗଦେଇ ଗିରଫ ହୋଇଥିଲେ । ବୀରଡୁଙ୍ଗା ଗ୍ରାମର ଶ୍ରୀ ଅନନ୍ତପାତ୍ର କଲିକତାରେ ନେତାଜୀ ସୁଭାଷ ଓ ପ୍ରଫୁଲ୍ଲ ସେନଙ୍କ ସହ ସଂପର୍କ ରଖିଥିଲେ । ୰ ବିଶ୍ୱନାଥ ପରିଡ଼ା ଓ

ଶ୍ରୀ ଲୋକନାଥ ସେନାପତିଙ୍କ ସହ ସଂପର୍କ ରକ୍ଷା କରି କଟକରେ ଗିରଫ ହୋଇଥିଲେ ।

## ଦ୍ୱିବେଦୀ ଷଡ଼ଯନ୍ତ୍ର ମାମଲା

ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଅଗଷ୍ଟ ବିପ୍ଳବକୁ ଓଡ଼ିଶାରେ ଗୋପନ ସଂଗଠନ କରୁଥିଲେ । ପୁରୀ ଜିଲ୍ଲାର ଦୁଇଜଣ ସଂଗ୍ରାମୀ ଯଦୁମଣି ଜେନା ଓ ୰ ବିଶ୍ୱନାଥ ପରିଡ଼ା ପୁରୀ ଜିଲ୍ଲାରୁ ତାଙ୍କ ଅନୁଗାମୀ ଥିଲେ । ବିଶ୍ୱନାଥ ପରିଡ଼ା ଗିରଫ ହେଲାପରେ ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ଅନ୍ୟ ସଂଗ୍ରାମୀମାନଙ୍କ ସହିତ ସେଶାନ ଜଜ୍ ଜେ.ଇ. ମେହେରଙ୍କ ଦ୍ୱାରା ୨୩.୩.୧୯୪୩ରେ ଭାରତୀୟ ପିନାଲ କୋର୍ଡ଼ର ୧୨୦ (ଖ) ଓ ଭାରତରକ୍ଷା ଆଇନର ୩୮ (୫) ଧାରାରେ ୪ ବର୍ଷ କାରାଦଣ୍ଡ ପାଇଥିଲେ ।

ଶ୍ରୀ ଯଦୁମଣି ଜେନା ପୁରୀ ସହର ଅଦୂରବର୍ତ୍ତୀ ବାଲିଗୁଆଳୀ ଗ୍ରାମର ଅଧିବାସୀ । ତାଙ୍କ ଦାଦା ୰ ଗୋପୀନାଥ ଜେନା କଂଗ୍ରେସର ପୃଷ୍ଠପୋଷକ ଥିଲେ ।

''ଭାରତ-ଛାଡ଼'' ଆନ୍ଦୋଳନ ବେଳେ ୰ ଗୋପୀନାଥ ଜେନା ଗିରଫ ହୋଇ ପୁରୀ ବନ୍ଦୀଶାଳାରେ ଥିଲେ । ପୁରୀ ନୂଆମଠରେ ଆତ୍ମଗୋପନ କରିଥିବା ୰ ବିଶ୍ୱନାଥ ପରିଡ଼ାଙ୍କ ସହ ଯୋଗସୂତ୍ର ରକ୍ଷା କରି ଶ୍ରୀ ଯଦୁମଣି ଜେନା ଦ୍ୱିବେଦୀଙ୍କ ଦ୍ୱାରା ପ୍ରକାଶିତ ସଂଗ୍ରାମବାର୍ତ୍ତା ବିଭିନ୍ନ ସ୍ଥାନରେ ପ୍ରଚାର କରି ଆତ୍ମଗୋପନ କରିଥିଲେ । ପରବର୍ତ୍ତୀ ସମୟରେ ସୁପ୍ରତିଷ୍ଠିତ ଯେଉଁ ଜାତୀୟ ଭାବାପନ୍ନ ବ୍ୟକ୍ତିମାନେ ତାଙ୍କୁ ଗୋପନ ସହଯୋଗିତା ଦେଇଥିଲେ ସେମାନେ ହେଲେ ଅଧ୍ୟାପକ ସର୍ବେଶ୍ୱର ଦାଶ, ଗୌରାଙ୍ଗ ଚରଣ ରାଉତରାୟ, ରାଧାଶ୍ୟାମ ବରାଳ, ଭୂତାକାଣ୍ଡି, ମୁକୁନ୍ଦ ମାଳ ଓ ପଗୁ ବାରିକ । ରାଉତରାୟଙ୍କ ଘରେ ଏକମାସ ରହିଥିଲେ । ଖାଦ୍ୟପେୟ, ବସବାସର ବହୁ ଅସୁବିଧା ସତ୍ତ୍ୱେ ଦୀର୍ଘ ୩ ମାସ ସେ ଆନ୍ଦୋଳନ ବାର୍ତ୍ତା ପ୍ରଚାର କରିଥିଲେ । ତାଙ୍କୁ ଧରାଇଦେବା ପାଇଁ ପୁରସ୍କାର ଘୋଷଣା କରାଯାଇଥିଲା । କୌଣସିମତେ ତାଙ୍କର ସନ୍ଧାନ ନେଇ ସେହି ବର୍ଷ ନଭେମ୍ବର ୬ ତାରିଖ ରାତିରେ ପୁରୀ ଆର୍ମଷ୍ଟ୍ରଙ୍ଗ ରୋଡ଼ରେ ପୋଲିସ ତାଙ୍କୁ ଗିରଫ କଲେ ।

କଟକ ଜଜ୍ କୋର୍ଟରେ ଷଡ଼ଯନ୍ତ୍ର ମାମଲାର ବିଚାର ହେଲା । ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ବନ୍ଦୀ ସଂଗ୍ରାମୀମାନଙ୍କ ତରଫରୁ ସ୍ୱନାମଧନ୍ୟ ଆଇନଜୀବୀ ୰ ଦୀନବନ୍ଧୁ ସାହୁ ଲଢୁଥିଲେ । ଯଦୁମଣିଙ୍କୁ ପ୍ରମାଣ ଅଭାବରୁ ଷଡ଼ଯନ୍ତ୍ର ମାମଲାରୁ ମୁକ୍ତ କରାଗଲା । ମାତ୍ର ସରକାର ତାଙ୍କୁ ଛାଡ଼ି ନ ଦେଇ ଅଟକବନ୍ଦୀ କରି ବ୍ରହ୍ମପୁର ଜେଲକୁ ପଠାଇଲେ । ସେଠାରେ ଓଡ଼ିଶାର ପ୍ରମୁଖ ନେତୃସ୍ଥାନୀୟ ସଂଗ୍ରାମୀଙ୍କ ଗହଣରେ ରହି ଶ୍ରୀ ଜେନା ନିଜକୁ ଜଣେ ଉତ୍ସର୍ଗୀକୃତ କର୍ମୀ ଭାବରେ ଗଢ଼ିବାର ସୁଯୋଗ ପାଇଥିଲେ । ୰ ନବକୃଷ୍ଣ ଚୌଧୁରୀଙ୍କଠାରୁ ଜମିଜମା ଓ ଭୂସଂସ୍କାର, ୰ ଗୋପବନ୍ଧୁ ଚୌଧୁରୀ ଓ ୰ ଆଚାର୍ଯ୍ୟ ହରିହରଙ୍କଠାରୁ ନିଃସ୍ୱାର୍ଥପର ଜନସେବା ଓ ୰ ନୀଳାମ୍ବର ଦାଶଙ୍କଠାରୁ ଜଳଚିକିତ୍ସା ଶିକ୍ଷା ପାଇଥିଲେ ।

## ମଙ୍ଗୁମଠ

ପୁରୀ ସହରର ମଙ୍ଗୁମଠ ସ୍ୱାଧୀନତା ସଂଗ୍ରାମର ଏକ ସାଧନାପୀଠ ଥିଲା । ଜୟକୃଷ୍ଣ ମହାନ୍ତି, ୰ କୃଷ୍ଣ ଚନ୍ଦ୍ର ରଥ, ଯଦୁମଣି ଜେନା, ୰ ଧ୍ରୁବଚରଣ ମହାନ୍ତି, ନାଥ ପ୍ରଧାନ, ଗୋବିନ୍ଦ ତ୍ରିପାଠୀ, ଫକୀର ମିଶ୍ରଙ୍କ ଭଳି ସଂଗ୍ରାମୀ ଛାତ୍ରମାନେ ବିଦ୍ୟାର୍ଥୀ ଭାବରେ ମଙ୍ଗୁମଠରେ ଆଶ୍ରୟ ଗ୍ରହଣ କରିଥିଲେ । ସେତେବେଳେ ୰ ସତ୍ୟେନ୍ଦ୍ର ନାଥ ଗୁହ ନାମକ ଜଣେ ବଙ୍ଗୀୟ ବିପ୍ଳବୀ ସ୍ୱର୍ଗଦ୍ୱାର ପାଖେ ନିର୍ବାସିତ ଜୀବନ ଯାପନ କରୁଥାନ୍ତି । ମଙ୍ଗୁମଠର ସେହି ଛାତ୍ରମାନଙ୍କ ସହିତ ୰ ବନମାଳୀ ପଟ୍ଟନାୟକ, ୰ ମୁକୁନ୍ଦ ମିଶ୍ର, ସର୍ବଶ୍ରୀ ଉପେନ୍ଦ୍ର ମହାନ୍ତି, ଚନ୍ଦ୍ରଶେଖର ନାୟକ, ଭଗବତୀ ଚରଣ ଚାନ୍ଦ, ବିପିନ ବିହାରୀ ପଟ୍ଟନାୟକ, ନିତ୍ୟାନନ୍ଦ ମହାନ୍ତି, ୰ ବ୍ରଜମୋହନ ପାଣି, ଶ୍ରୀ ନିତ୍ୟାନନ୍ଦ ମିଶ୍ର ପ୍ରମୁଖ ଛାତ୍ରନେତାଗଣ ନିୟମିତ ସେହି ବିପ୍ଳବୀଙ୍କ ସାନିଧ୍ୟ ଲାଭ କରି ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉଥିଲେ । ସଂପ୍ରତି ଭି.ଆଇ.ପି. ମାର୍ଗରେ ୧୯୦୫ ରୁ ପ୍ରତିଷ୍ଠିତ ପ୍ରେମାଶ୍ରମ ନାମକ ଯେଉଁ ବ୍ରହ୍ମ ସମାଜ ପୀଠଟି ଅଛି, ସେହିଠାରେ ହିଁ ସଂଗ୍ରାମୀ ଛାତ୍ରମାନେ ମିଳିତ ହୋଇ ଆଲୋଚନାରେ ଭାଗ ନେଉଥିଲେ । ମଙ୍ଗୁମଠରେ ରହୁଥିବା ପ୍ରାୟ ସମସ୍ତ ଛାତ୍ର ବିଭିନ୍ନ ସ୍ଥାନରେ ଗିରଫ ହୋଇଗଲେ ।

## ପୁରୀ ସହରରେ

ପୁରୀ ସିଂହଦ୍ୱାରସ୍ଥିତ ଗୋପବନ୍ଧୁ ପ୍ରତିମୂର୍ତ୍ତି ପାଖେ ପ୍ରାୟ ସବୁ ସଭା ସମିତି ହେଉଥିଲା । ୰ପଦ୍ମଚରଣ ମହାପାତ୍ର ଜଣେ ଜଗନ୍ନାଥ ଫଟୋ ବିକାଳି । ସେ ପ୍ରଚାରପତ୍ର ବାଣ୍ଟି ଗିରଫ ହେଲେ । ତାଙ୍କ ପରେ ୰ ଉଦୟ ନାଥ ଖୁଣ୍ଟିଆ, ୰ ଗୋପୀନାଥ ନାରାୟଣ ବ୍ରହ୍ମଚାରୀ, ୰ ଜଗନ୍ନାଥ ନାରାୟଣ ବ୍ରହ୍ମଚାରୀ ଓ ଶ୍ରୀ ରାମକୃଷ୍ଣ ନନ୍ଦ ପୁରୀ ସହରସ୍ଥିତ ବହୁ ଯାଗାଘରୁ ଲୋକମାନଙ୍କୁ ନେଇ ଏକ ବିରାଟ ଶୋଭାଯାତ୍ରାରେ ସହର ପରିକ୍ରମା କରାଇ ସିଂହଦ୍ୱାରରେ ଏକ ବିରାଟ ସାଧାରଣ ସଭାରେ ''ଭାରତଛାଡ଼'' ଆନ୍ଦୋଳନର ବାର୍ତ୍ତା ପ୍ରଚାର କରି ଗିରଫ ହେଲେ । ଏହି ସଭାରେ ଜନତାଙ୍କୁ ଛତ୍ରଭଙ୍ଗ କରାଇବା ପାଇଁ ପୁଲିସ ଲାଠି ଚାଳନା ଓ ଫାଙ୍କା ଗୁଳିଚାଳନା କରିଥିଲେ ।

ବ୍ରହ୍ମଗିରିରେ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରି ଶ୍ରୀ ନିତ୍ୟାନନ୍ଦ ମିଶ୍ର, ୰ ବ୍ରଜମୋହନ ପାଣି (ଘନଶ୍ୟାମ ପଟ୍ଟନାୟକ), ୰ ବଂଶୀଧର ମଙ୍ଗରାଜ, ଶ୍ରୀ ଦୁର୍ଗାଚରଣ ମହାନ୍ତି ( ରାମ ପ୍ରସାଦ ମହାନ୍ତି) ବିଭିନ୍ନ ସ୍ଥାନରେ ଗିରଫ ହୋଇଥିଲେ । କଟକ ରେଭେନ୍‌ସା କଲେଜର ଛାତ୍ର ଆନ୍ଦୋଳନର ପୁରୋଭାଗରେ ଥିବା ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ବ୍ରହ୍ମଗିରି ଅଞ୍ଚଳରେ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରୁଥିଲେ ମଧ୍ୟ ପୁଲିସ ତାଙ୍କୁ ଧରିପାରି ନଥିଲା । କଟକ ରେଭେନ୍ସା କଲେଜ ଛାତ୍ର ଆନ୍ଦୋଳନରେ ଭାଗ ନେଇ ଲାଠିମାଡ଼ରେ ଆହତ ହୋଇଥିବା ଶ୍ରୀ ଚନ୍ଦ୍ରଶେଖର ନାୟକ ପୁରୀରେ ଗିରଫ ହୋଇଥିଲେ ।

ପୁରୀ ମାଟିମଣ୍ଡପ ସାହିର ଡାକ୍ତର ବୀର କିଶୋର ମହାନ୍ତି ଛାତ୍ରାବସ୍ଥାରୁ ବିପ୍ଳବୀ ଥିଲେ । ୧୯୩୮ -୩୯ ବେଳେ କଟକ ମେଡ଼ିକାଲ

ଧର୍ମଘଟରେ ତାଙ୍କର ପ୍ରମୁଖ ଭୂମିକା ଥିଲା । ୧୯୪୨ ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀରେ ଏକାକୀ ସାତସାହିରେ ଢେଣ୍ଡୁରା ପିଟି ସିଂହଦ୍ୱାର ପାଖେ ଏକ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ । ପୁରୀ ସହରର ଆଉ ଯେଉଁମାନେ ଭାରତଛାଡ଼ ଆନ୍ଦୋଳନରେ ବନ୍ଦୀ ହୋଇଥିଲେ, ସେମାନେ ହେଲେ ଶ୍ରୀ ରାମଚନ୍ଦ୍ର ଗୋଛିକାର, ଶ୍ରୀ ହରିହର ପୃଷ୍ଟିପଣ୍ଡା ।

## ନିମାପଡ଼ାରେ ଗୁଳିକାଣ୍ଡ

ଅଗଷ୍ଟ ଆନ୍ଦୋଳନରେ ନିମାପଡ଼ା ଥାନା ଦଖଲ ଏକ ଉଲ୍ଲେଖନୀୟ ଘଟଣା । ମଣିଜଙ୍ଗ ସାଆନ୍ତ ପରିବାରର ବଧୂ ୰ ପଦ୍ମଚରଣ ସାମନ୍ତସିଂହାରଙ୍କ ବୋଉ, ବାଲିଅନ୍ତା ସାମନ୍ତ ପରିବାରର କନ୍ୟା, ସାଆନ୍ତାଣୀ ୰ ସୁଲକ୍ଷଣା ମାଳି ଜେମା ଏଥିପାଇଁ ବିହିତ ମାର୍ଗଦର୍ଶନ ଦେଇଥିଲେ । ୧୯୪୨ ସେପ୍ଟେମ୍ବର ୧୬ ତାରିଖରେ ନିମାପଡ଼ା ଅଞ୍ଚଳର ସହସ୍ରାଧିକ ବ୍ୟକ୍ତି ବାଡ଼ବାଡ଼ି ପଡ଼ିଆରେ କଂଗ୍ରେସ ପତକା ଉଠାଇ ଥାନା ଦଖଲ ପାଇଁ ଆଗେଇ ଆସିଲେ । ୰ ପଦ୍ମଚରଣ ସାମନ୍ତ ସିଂହାର, ଭବାନୀ ଚରଣ ପଟ୍ଟନାୟକ, ଲୋକନାଥ ସେନାପତି, ୰ ମହେଶ୍ୱର ମହାନ୍ତି, ଶ୍ରୀ ପୂର୍ଣ୍ଣଚନ୍ଦ୍ର ସାହୁ ପ୍ରମୁଖ ଏହାର ନେତୃତ୍ୱ ନେଇଥିଲେ । ଏହି ଅଭିଯାନରେ ପ୍ରତିରୋଧକାରୀ ପୁଲିସଙ୍କୁ ଗୁଳିଚାଳନା କରିବାକୁ ପଡ଼ିଥିଲା । ଉସବ ମଲ୍ଲିକ ଘଟଣାସ୍ଥଳରେ ନିହତ ହୋଇ ଶହୀଦତ୍ୱ ପ୍ରାପ୍ତ ହେଲେ । ୧୨ ଜଣ ଗୁଳିରେ ଆହତ ହୋଇଥିଲେ । ଏହି ଅଭିଯାନରେ ୪୧ ଜଣ ଗିରଫ ହୋଇ ବିଭିନ୍ନ ଦଫାରେ ଦୀର୍ଘ ମିଆଦୀ ସଜା ଭୋଗ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଶହୀଦ ଉସବ ମଲ୍ଲିକଙ୍କ ପୁତ୍ର ଶ୍ରୀ ଗଜେନ୍ଦ୍ର ନାଥ ମଲ୍ଲିକ, ପୀତବାସ ସାହୁ, ଫକୀର ଚରଣ ସ୍ୱାଇଁ, ଫକୀର ସାହୁ, ଚୈତନ୍ୟ ରାଉତ, ସଦାମଲ୍ଲିକ, ପରମ୍ଭୁ ସ୍ୱାଇଁ, ନରୋତ୍ତମ ସେଠୀ, ନରହରି ସାହୁ, ବୈକୁଣ୍ଠ ନାଥ ସେନାପତି, କୁଞ୍ଜ ବିହାରୀ ସେନାପତି, ଭୁବନାନନ୍ଦ ମହାନ୍ତି, ନୀଳଦାସ, ରାଜନ ସାହୁ, ଯଦୁମଣି ପରିଡ଼ା, ୰ ଯାଦବ ବିଶ୍ୱାଳ, ଲକ୍ଷ୍ମଣ ସାହୁ, ଗଙ୍ଗାଧର ପଟ୍ଟନାୟକ, ୰ ସୋମନାଥ ପଣ୍ଡା, ୰ ଦୀନବନ୍ଧୁ ଭୂତି, ୰ ଲକ୍ଷ୍ମଣ ବାରିକ ପ୍ରମୁଖ ବନ୍ଦୁ ସଂଗ୍ରାମୀ ଓ ସଞ୍ଚାଳକ ବୃନ୍ଦ ।

ତା ୨୫.୧.୪୩ ରେ ବନ୍ଦୀ ଶ୍ରୀ ଲୋକନାଥ ସେନାପତି ଓ ଶ୍ରୀ ଅଲେଖ ପାତ୍ର ପୁରୀ ଜେଲ ପାଚେରୀ ଡେଇଁ ପଳାଇ ଯାଇଥିଲେ । ସେତେବେଳେ ପୁରୀ ଜେଲରେ ବନ୍ଦୀଥିବା ୰ ନବକୃଷ୍ଣ ଚୌଧୁରୀଙ୍କଠାରୁ ମାର୍ଗ ଦର୍ଶନ ମିଳିଥିଲା । ସର୍ବଶ୍ରୀ ଭଗବାନ ପ୍ରତିହାରୀ, ଯଦୁମଣି ଜେନା, ନିତ୍ୟାନନ୍ଦ ଓଝା, ବ୍ରଜ ସୁନ୍ଦର ଦାସ, ଫକୀର ଚରଣ ସ୍ୱାଇଁ ପ୍ରମୁଖ ବନ୍ଦୀ ସଂଗ୍ରାମୀମାନଙ୍କ ସହ ଜେଲ ଡ଼ାକ୍ତର ଦୁର୍ଗାବାବୁ ଓ କେତେକ ୱାର୍ଡ଼ର ଏଥିରେ ସହଯୋଗ କରିଥିଲେ । ଜେଲରୁ ଖସିଯିବା ପରେ ଲୋକନାଥ ଛଦ୍ମବେଶରେ ବାଲେଶ୍ୱର ଯାଇ ସେଠାରେ ଡ଼ଃ. ରାମ ମନୋହର ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ନେତୃତ୍ୱରେ ଗଠିତ ଗୋପନ ସଂଗଠନରୁ ପ୍ରଚାରପତ୍ର ପାଇ ବାଲେଶ୍ୱର ଅଞ୍ଚଳରେ ପ୍ରଚାର କରିଥିଲେ । ଉତ୍ତର ବାଲେଶ୍ୱରରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ କାଙ୍ଗାଳ ଶୋଭାଯାତ୍ରାର ନେତୃତ୍ୱ ନେଇ ଧନୀଙ୍କଙ୍କ ଖମାରରୁ ଖାଦ୍ୟଶସ୍ୟ ଲୁଣ୍ଠନ କରି ଦୁଃଖୀ ରଙ୍କିଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ୨୮.୮.୪୩ ରେ ପୁନରାୟ ଗିରଫ ହୋଇ ୨୫.୪.୧୯୪୬ ରେ ତଦାନିନ୍ତନ ପ୍ରଧାନମନ୍ତ୍ରୀ ୰ ହରେକୃଷ୍ଣ ମହତାବଙ୍କର ଏକ ସ୍ୱତନ୍ତ୍ର ଆଦେଶ ବଳରେ ଖଲାସ ହେଲେ ।

ଅନ୍ୟତମ ପଳାୟନକାରୀ ଶ୍ରୀ ଅଲେଖପାତ୍ର କଲିକତା ଯାଇ ଜଣେ ସଲିସିଟରଙ୍କ ପାଖେ କିଛିଦିନ ଛଦ୍ମନାମରେ ରହି ପୁରୀ ଆସିଲେ । ସେତେବେଳକୁ ମହାତ୍ମାଗାନ୍ଧୀ ଅନଶନ କରୁଥାନ୍ତି । ମୋହରିର ଶ୍ରୀ ଦାଶରଥି ନାୟକ ଅଲେଖଙ୍କୁ ଆଶ୍ରୟ ଦେଲେ । ଘଟଣାକ୍ରମେ ପୁରୀ ଷ୍ଟେସନରେ ଗିରଫ ହେଲେ ଓ ୧୯୪୬ ଫେବୃଆରୀରେ ଖଲାସ ହେଲେ ।

## ଚରଖାର ଅବଦାନ

ଗାନ୍ଧିଜୀଙ୍କ ପରିଚାଳିତ ସ୍ୱାଧୀନତା ସଂଗ୍ରାମରେ ଚରଖା ଥିଲା ସାର୍ବଜନୀନ ଆୟୁଧ । ପିଲାମାନେ ଗାନ୍ଧିଜୀଙ୍କଠାରୁ ହାତଲେଖା ଆଣିବାକୁ ଗଲାବେଳେ ସେ ପିଲାମାନଙ୍କ ଖାତାରେ ଗୋଟିଏ ମାତ୍ର ବାକ୍ୟ ଲେଖି ଦେଉଥିଲେ - ସ୍ୱରାଜକେ ଖାତିର କାତୋ - "Spin for Swaraj" ଚରଖାର ସୂତା ଖିଅରେ କି ମୋହନ ମନ୍ତ୍ର ଥିଲା କେଜାଣି ଶତସହସ୍ର ସଂଖ୍ୟାରେ ସର୍ବ ସାଧାରଣ ଭାରତୀୟ ତଥା ବହୁ ଗୁଣୀମାନୀ ବ୍ୟକ୍ତି ଚରଖାର ମାୟାରେ ପଡ଼ିଯାଇଥିଲେ । ସେତେବେଳେ କଂଗ୍ରେସ ହିଁ ଖଦୀ ଓ ଖଦୀହିଁ କଂଗ୍ରେସ ଥିଲା । ତେଣୁ ଭାରତଛାଡ଼ ଆନ୍ଦୋଳନରେ ବହୁ ଖଦୀକର୍ମୀ ପ୍ରତ୍ୟକ୍ଷ ଆନ୍ଦୋଳନ କରି ନଥିଲେ ମଧ୍ୟ ଗିରଫ ହୋଇଯାଇଥିଲେ ।

ସତ୍ୟବାଦୀର ଗୋପବନ୍ଧୁ ସେବାସଦନ, ଡେଲାଙ୍ଗର ବେରବୋଇ, ଗୋପର ସୁବର୍ଣ୍ଣପୁର, କାଙ୍କଟପୁରର ଦହିଖିଆ ଓ ମୂଳାଗଡ଼, ବେଗୁନିଆର ଚମ୍ପାଇଲୋ, ବୋଲଗଡ଼ର ସୁନାଖଳା ଓ ଦିଘିର ଭଳି ଖଦୀ କେନ୍ଦ୍ର ଓ ଆଶ୍ରମ ଉପରେ ସରକାର ଛଡ଼ାଉ କରିଥିଲେ । ବୀରବଲଭଦ୍ରପୁରର ୰ ମଧୁସୂଦନ ନନ୍ଦ ନିଜକୁ ମୋହନ ଦାଶ କହି ଖୋର୍ଦ୍ଧା କଚେରୀ ଯେଉଁଠାରେ ଅସହଯୋଗୀ ଗୋପବନ୍ଧୁଙ୍କର ବିଚାର କରି ତତ୍‌କାଳୀନ ମାଜିଷ୍ଟ୍ରେଟ ନେତାଜୀ ସୁଭାଷଙ୍କ ସହୋଦର ସୁରେଶ ଚନ୍ଦ୍ର ବୋଷ ରାୟ ଦେଇଥିଲେ- ସେହିଠାରେ ବସି ସୂତା କାଟୁଥିବା ଅବସ୍ଥାରେ ଗିରଫ ହୋଇଥିଲେ ।

ପୁରୀ ଜିଲ୍ଲାରେ ୰ ମୋହନ ଦାଶ, ଗୋକୁଳ ମୋହନ ରାୟଚୂଡ଼ାମଣି, ୰ ସର୍ଦ୍ଦାର ରତିକୃଷ୍ଣ ସ୍ୱାଇଁ, ୰ ନାରାୟଣ ଦାଶ, ୰ ଶ୍ୟାମସୁନ୍ଦର ସ୍ୱାଇଁ ପ୍ରମୁଖ ନାମକରା କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନରେ ଗିରଫ ହୋଇ ଦୀର୍ଘ ଦିନ ଧରି ବନ୍ଦୀ ଯାପନ କରିଥିଲେ ।

## ଜାତୀୟ ଯୁଦ୍ଧ ସାହାଯ୍ୟ

ଓଡ଼ିଶାରେ ସେତେବେଳେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଦାୟିତ୍ୱ ଗ୍ରହଣ କରିଥାଏ । ୰ ଗୋଦାବରୀଶ ମିଶ୍ର କଂଗ୍ରେସରୁ ଯାଇ ସେହି ମନ୍ତ୍ରୀମଣ୍ଡଳରେ ଶିକ୍ଷା

ମନ୍ତ୍ରୀ ଥାନ୍ତି । ଜାତୀୟ ସ୍ତରରେ କାମ କରିଥିବା ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ୰ ପଣ୍ଡିତ ନୀଳକଣ୍ଠ ଦାସ କଂଗ୍ରେସରୁ ବାହାରି ଯାଇ ସେହି ମନ୍ତ୍ରୀମଣ୍ଡଳକୁ ସମର୍ଥନ ଜଣାଇଲେ । ତାଙ୍କ ନେତୃତ୍ୱରେ ଓଡ଼ିଶାରେ ସରକାରୀ ସ୍ତରରେ ଜାତୀୟ ଯୁଦ୍ଧ ସାମ୍ମୁଖ୍ୟ (National war front) ଗଠିତ ହେଲା । ସେମାନେ ଦ୍ୱିତୀୟ ମହାଯୁଦ୍ଧର ଅଂଶୀଦାର ବିଲାତ ସରକାରଙ୍କୁ ସମର୍ଥନ କରି ଯୁଦ୍ଧ ସପକ୍ଷରେ ଜନମତ ସୃଷ୍ଟିକଲେ । ନୀଳକଣ୍ଠଙ୍କ ଦେଖାଦେଖି ତାଙ୍କର କେତେକ ଅନୁଗାମୀ ଯେଉଁମାନେ କି ପୂର୍ବରୁ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ, ସେମାନେ ''ଭାରତଛାଡ଼'' ଆନ୍ଦୋଳନରୁ ଓହରି ଗଲେ । ସଂଗ୍ରାମୀ ଜନତା ସେମାନଙ୍କୁ ଆଦୌ ସୁଖ ପାଉଲେ ନାହିଁ । ସ୍ୱାଧୀନତା ଲାଭର ଅବ୍ୟବହିତ ପୂର୍ବରୁ ନୀଳକଣ୍ଠ ପ୍ରମୁଖ ନେତା ଓ କର୍ମୀମାନେ ବର୍ଷାକୁ ଛତା ନ୍ୟାୟରେ ପୁଣି ଇଂରେଜ ଶାସନ ବିରୋଧରେ ଓ କଂଗ୍ରେସ ସପକ୍ଷରେ ପ୍ରଚାର କଲେ । ପ୍ରବେଶରେ ପାରଳାଖେମୁଣ୍ଡିଙ୍କ ମନ୍ତ୍ରୀମଣ୍ଡଳ ଓ ଜାତୀୟ ସାମ୍ମୁଖ୍ୟର ଭିତିର ଉଦ୍ଦେଶ୍ୟ ବୁଝାଇ ସେମାନେ କହି ବୁଲିଲେ ଯେ ନେତାଜୀ ସୁଭାଷଙ୍କ ନିର୍ଦ୍ଦେଶରେ ସେମାନେ ଏହା କରିଛନ୍ତି । ନେତାଜୀ ସୁଭାଷଙ୍କ ଦ୍ୱାରା ଗଠିତ ''ଆଜାଦ ହିନ୍ଦ ଫୌଜ'' ଭାରତ ଭୂଇଁରୁ ଇଂରେଜ ଶାସନକୁ ହଟାଇ ଦେବା ପାଇଁ ଜଳ ଓ ସ୍ଥଳ ପଥରେ ଭାରତ ଭୂଇଁରେ ପ୍ରବେଶ କଲାବେଳେ ଓଡ଼ିଶା ମନ୍ତ୍ରୀମଣ୍ଡଳ ଓଡ଼ିଶା ଭୂଇଁରେ ସେମାନଙ୍କୁ ସ୍ୱାଗତ କରିଥାନ୍ତେ ।

## ସଂଗ୍ରାମର ସହଯୋଗୀ

ସଂଗ୍ରାମରେ ପ୍ରତ୍ୟକ୍ଷ ଭାଗ ନ ନେଇ ବହୁ ବ୍ୟକ୍ତି ସଂଗ୍ରାମକୁ ବିଭିନ୍ନ ସୂତ୍ରରେ ଗୋପନ ସାହାଯ୍ୟ ଓ ସହଯୋଗ କରୁଥିଲେ ।

## ବାବାମଠ

ପୁରୀ ଗୁଣ୍ଡିଚାଘର ପାଖରେ ବାବାମଠ ନାମକ ଝାଞ୍ଜିପିଟା ମଠର ଏକ ଶାଖା ସଂସ୍ଥା ଅଛି । ସେଠାରେ ସେତେବେଳେ ଜଣେ ବାବାଜୀ ଆନ୍ଦୋଳନକୁ ସମର୍ଥନ କରୁଥିଲେ । ବ୍ରହ୍ମଗିରି ଗୌଡ଼ସାହି ଗ୍ରାମର ଶ୍ରୀ ବାଞ୍ଛାନିଧି ଦେ ଓ ତାଙ୍କ ପତ୍ନୀ ହାରାମଣି, ସେତେବେଳେ ବ୍ରହ୍ମଗିରି ଅଂଚଳରେ ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିବା ସର୍ବଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ୰ ରାଧାଶ୍ୟାମ ଦାସ ଓ ନିତ୍ୟାନନ୍ଦ ମିଶ୍ରଙ୍କୁ ଆଶ୍ରୟ ଦେଇଥିଲେ । ଏହି ସଂଗ୍ରାମୀମାନେ ସେଠାରୁ ପୁରୀ ଆସି ପ୍ରୋକ୍ତ ବାବାଜୀଙ୍କ ସହ ଯୋଗରେ ବାବାମଠରେ ରହିଲେ । ରାଧାଶ୍ୟାମ ଦାସ ସେହିଠାରେ ଗିରଫ ହେଲେ । ନିତ୍ୟାନନ୍ଦ ମିଶ୍ର ଆତ୍ମଗୋପନ କରି ରହିବା ପରେ ଅନ୍ୟତ୍ର ଗିରଫ ହେଲେ ।

## ଦଧିମାଛଗାଡ଼ିଆ

ଦଧିମାଛଗାଡ଼ିଆର ଶ୍ରୀ ଲକ୍ଷ୍ମୀକାନ୍ତ ପଟ୍ଟନାୟକଙ୍କ ପରିବାର ଜାତୀୟବାଦୀ ଥିଲେ । ଓକିଲିଂରେ ପଢୁଥିବା ବେଳେ ଶ୍ରୀମାନ୍ ଲକ୍ଷ୍ମୀକାନ୍ତ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ପଣ୍ଡିତ ନେହେରୁ କଂଗ୍ରେସର ବାର୍ତ୍ତା ପ୍ରଚାର ପାଇଁ ଏକଦା ପୁରୀ ଆସିଥିଲା ବେଳେ ତତ୍‌କାଳୀନ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଣ୍ଡିତ ନୀଳକଣ୍ଠଙ୍କ ଗହଣରେ ଖୋର୍ଦ୍ଧାରୁ ବାଲୁଗାଁ ଅଭିମୁଖେ ଆସୁଥିଲାବେଳେ ବାଟରେ କଳିଆଠାରେ ମଲାଗୁଣି ନଦୀ ପଡ଼ିଲା । ସେତେବେଳେ ପୋଲ ନଥାଏ । ଲୋକେ ଡଙ୍ଗାରେ ପାରିହେଉଥାନ୍ତି । ନେହେରୁଜୀ ଆସିଲାବେଳକୁ ଦେଖିବା ପାଇଁ ସେଠାରେ ଜନଗହଳି ଭିତରେ ଥାନ୍ତି ଶ୍ରୀମାନ୍ ଲକ୍ଷ୍ମୀକାନ୍ତ ତାଙ୍କ ସହପାଠୀ ନୟାଗଡ଼ର ୰ ରାସାନନ୍ଦ ପଟ୍ଟନାୟକ ଓ ଲୋପାନାଥ ସୁନ୍ଦରା ନାମକ ଆଉଜଣେ ଛାତ୍ର । ସେମାନେ ନଈରେ ପଶି ନୌକା ଆଣି ପଣ୍ଡିତ ନେହେରୁ ଓ ତାଙ୍କ ଦଳଙ୍କୁ ପାରି କରାଇ ଦେଇଥିଲେ । ପଣ୍ଡିତ ନେହେରୁ ଆନନ୍ଦ ଉଲ୍ଲାସରେ ଏହି ପିଲାମାନଙ୍କୁ ଫୁଲମାଳ ପିନ୍ଧେଇ ଥିଲେ ।

''ଭାରତଛାଡ଼'' ଆନ୍ଦୋଳନ ବେଳକୁ ସେହି ଲକ୍ଷ୍ମୀକାନ୍ତ ବାଣପୁର ତହସିଲରେ କିରାଣି । ତାଙ୍କ ବୋଉ ହୃଦୟମଣି ଘରେ ଥାନ୍ତି । ସଂଗ୍ରାମୀ ଶ୍ରୀ ଉପେନ୍ଦ୍ର ମହାନ୍ତି ଦଧିମାଛଗାଡ଼ିଆରେ ପହଞ୍ଚି ଲକ୍ଷ୍ମୀକାନ୍ତଙ୍କ ଘରେ ଆଶ୍ରୟ ନେଲେ । ସେ ଛଦ୍ମବେଶରେ ରହୁଥିଲେ । ହୃଦୟମଣି ତାଙ୍କ ସମସ୍ତ ତତ୍ତ୍ୱ ନେଉଥିଲେ । ଦୀର୍ଘଦିନ ପରେ କୌଣସି ସୂତ୍ରରୁ ଖବର ପାଇ ପୁଲିସ ସେଠାରେ ପହଞ୍ଚିଲେ । ୧୯୪୩ ମସିହା ଦୋଳ ପୂର୍ଣ୍ଣିମା ପୂର୍ବକଥା । ଉପେନ୍ଦ୍ର ଏକ ମହିଳା ବେଶରେ ବହିର୍ଗମନ ପାଇଁ ଯାଉଥିବାବେଳେ ଅତାନକଭାବେ ଗିରଫ ହେଲେ । ସେହି ଗ୍ରାମର ଶ୍ରୀ ବିପିନ ବିହାରୀ ପଟ୍ଟନାୟକ ଙ୍କ ମଧ୍ୟ ଇଂରାଜୀ ବିଦ୍ୟାଳୟର ଶିକ୍ଷକ ଥାଇ ଆନ୍ଦୋଳନକୁ ନାନାଭାବରେ ସାହାଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସେ ଭାରତ ସରକାରଙ୍କ ଲୋକ ସଂପର୍କ ଅଫିସର ହେଲେ ।

## ନିମାପଡ଼ାରେ

ନିମାପଡ଼ା ଢେଙ୍ଗୁଥର ଶ୍ରୀ ଅଭିନନ୍ଦ ସାବତ ନିମାପଡ଼ା ଥାନା ଦଖଲ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଥାନା ଇନ୍‌ସପେକ୍ଟର ସତୀଶ ବାନାର୍ଜୀଙ୍କୁ ପୁଷ୍ପହାର ପିନ୍ଧାଇଥିଲେ । ସେ ଲଲ ପଢୁଥିଲେ । ଏହି ଘଟଣାରେ ସ୍କୁଲରୁ ଫ୍ରିସିପ୍ ଓ ଅନ୍ୟାନ୍ୟ ସୁବିଧା ତାଙ୍କର ବନ୍ଦ ହୋଇଯାଇଥିଲା । ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କ ସହିତ ତାଙ୍କର ସଂପର୍କ ଥିଲା । ପରବର୍ତ୍ତୀ ସମୟରେ ସେ ପୁଣି ପାଠ ପଢ଼ି ଶିକ୍ଷକତା କଲେ । ଡିହକାରିର ଶ୍ରୀ କାଶୀନାଥ ମହାନ୍ତି, ଆଳିପିଙ୍ଗଳର ସ୍ୱପ୍ନେଶ୍ୱର ସାହୁ ଏହି ଆନ୍ଦୋଳନର ସହଯୋଗୀ ଥିଲେ ।

ଗୋପଥାନା ପୋଇତରା ଗ୍ରାମର ଚତୁର୍ଭୁଜ ପ୍ରଧାନ ବିଭିନ୍ନ ହାଟବଜାରରୁ ଅର୍ଥ ଓ ଦ୍ରବ୍ୟ ସଂଗ୍ରହ କରି ସୁବର୍ଣ୍ଣପୁର ଆଶ୍ରମକୁ ଯୋଗାଉଥିଲେ । ସଦରଥାନା ନୂଆଗାଁର ଶ୍ରୀ ବୃନ୍ଦାବନ ଷଡ଼ଙ୍ଗୀ ସାକ୍ଷୀଗୋପାଳ ଓ ଗୋପ ଅଞ୍ଚଳରେ ଆନ୍ଦୋଳନ ବାର୍ତ୍ତା ପ୍ରଚାର କରିଥିଲେ ।

## ଖୋର୍ଦ୍ଧାରେ

ବୋଲଗଡ଼ ଦିବ୍ୟ ସିଂହ ପୁର ଗ୍ରାମର ଶ୍ରୀ ଜୟକୃଷ୍ଣ ମିଶ୍ର ଓ ଶ୍ରୀ ସୁଦର୍ଶନ ମହାପାତ୍ର ଆନ୍ଦୋଳନ ପ୍ରଚାର କରିଥିଲେ । ପୁରୀର ଦେଉଳିଆଡ଼ି ନିଶା ପ୍ରସାର ବିରୋଧୀ କର୍ମୀ ଥିଲେ । ଖୋର୍ଦ୍ଧାର ୰ ନିରଞ୍ଜନ

ମହାନ୍ତି ଗୋପବନ୍ଧୁଙ୍କ ଅମଳର କର୍ମୀ । ଆନ୍ଦୋଳନରେ ତାଙ୍କର ଗୋପନ ଭୂମିକା ଥିଲା ।

## ବ୍ରହ୍ମଗିରି ଓ କଣାସରେ

କଣାସ ବ୍ଲକ ଭାଟପଡ଼ା ଗ୍ରାମର ଶ୍ରୀ ସୋମନାଥ ମହାପାତ୍ର, ବ୍ରହ୍ମଗିରି ସାହୁ ପଡ଼ାର ୰ ଇନ୍ଦ୍ରମଣି ମଙ୍ଗରାଜ, ଗୁଆଡ଼ିଆ ଗାଁର ୰ ଶ୍ରୀନାଥ ପ୍ରଧାନ, ଚନ୍ଦ୍ରକୋଟର ୰ ରାମଚନ୍ଦ୍ର ଦାଶ, ନିରାକାରପୁର ଅଞ୍ଚଳର ଶ୍ରୀ ବଳରାମ ପାଇକରାୟ, କୋଇଗଡ଼ ଖଜୁରିଆର ଜନାର୍ଦ୍ଦନ ପଟ୍ଟନାୟକ ଓ ୰ ବନଚନ୍ଦ୍ର ସାହୁ ପ୍ରମୁଖ ଖଦୀକର୍ମୀମାନେ ଆନ୍ଦୋଳନର ଗୋପନ ସହାୟକ ଥିଲେ । ଅନ୍ୟ ଯେଉଁମାନେ "ଭାରତ-ଛାଡ଼" ଆନ୍ଦୋଳନରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଖୋରଧାର ଶ୍ରୀ କୁଦନରାମ, କୋଣାର୍କ ଅଞ୍ଚଳର ରାଧାଶ୍ୟାମ ବୀରବର ମର୍ଦ୍ଦରାଜ, ଗୋପ ଅଞ୍ଚଳର ବାଞ୍ଛାନିଧିରଥ ଓ ବ୍ରଜବନ୍ଧୁ ମିଶ୍ର, ସତ୍ୟବାଦୀ ଅଞ୍ଚଳର ୰ ସୁନାମଣି ଦେବୀ, ଅସ୍ତରଙ୍ଗର ବିମଳା ଦିବ୍ୟା, ପୁରୀ ସଦର ଚାରିନଳାର ନଟବର ପୃଷ୍ଟି, ବାଲୁଗାଁର ଡ଼ାକ୍ତର ନୃସିଂହ ଚରଣ ସାମନ୍ତ ସିଂହାର, ପୁରୀର ଶ୍ରୀ ବିବୁଧେନ୍ଦ୍ର ମିଶ୍ର ଓ ଗୌରମୋହନ ଚାଟାର୍ଜୀ, ଚନ୍ଦ୍ର ଶେଖର ମହାପାତ୍ର ଦେଲାଙ୍ଗର କସ୍ତୁରି ଚରଣ ନାୟକ, ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଶ୍ରୀ ବ୍ରଜସୁନ୍ଦର ଦାଶ (ଅନୁଗୁଳ) ବାଲିପାଟଣା ସୋଧୁଆ ଗ୍ରାମର ନରସିଂହ ଚରଣ ଦାସ, ଚନ୍ଦନପୁରର ଫକୀର ମୋହନ ସାହୁ ଛାତ୍ର ବୃନ୍ଦାବନ ଚନ୍ଦ୍ର ଜେନା ଓ ଭଗବାନ୍ ଶତପଥୀ ପ୍ରମୁଖ ବହୁ କଂଗ୍ରେସ କର୍ମୀ ଓ ପ୍ରେମୀ ।

## ଆଜାଦ ହିନ୍ଦ୍ ଫୌଜ

ଦ୍ୱିତୀୟ ମହାଯୁଦ୍ଧରେ ବିପର୍ଯ୍ୟୟ ବରଣ କରି ବର୍ମାରୁ ଭାରତୀୟ ସୈନ୍ୟମାନଙ୍କୁ ଛାଡ଼ି ବ୍ରିଟିଶ ସେନାବାହିନୀ ଆତ୍ମରକ୍ଷା ପାଇଁ ପଳାଇ ଆସିବା ସୁଯୋଗରେ ପରିତ୍ୟକ୍ତ ଭାରତୀୟ ସେନା ତଥା ଶ୍ରମଜୀବୀ ଭାବରେ ବର୍ମାରେ ଜୀବନ ଯାପନ କରୁଥିବା ଭାରତୀୟମାନଙ୍କୁ ନେଇ ନେତାଜୀ ସୁଭାଷ ଓ ରାସବିହାରୀ ବସୁ ପ୍ରମୁଖ "ଆଜାଦ ହିନ୍ଦ୍ ଫୌଜ" ଗଠନ କରିଥିଲେ । ପୁରୀ ଜିଲ୍ଲାର ରଣପୁର, ବେଗୁନିଆ, ସିକୋ, ଜଙ୍କିଆ, ଟାଙ୍ଗୀ, ବାଣପୁର ଇତ୍ୟାଦି ଅଞ୍ଚଳର ବର୍ମାରେ ଥିବା ଶତଶତ ଶ୍ରମଜୀବୀ "ଆଜାଦ ହିନ୍ଦ୍ ଫୌଜ"ରେ ଯୋଗ ଦେଇଥିଲେ । ପୁରୀର କର୍ଣ୍ଣେଲ ର୍ୟାଙ୍କରେ ଥିବା ୰ ଡ଼ାଃ ବ୍ରଜମୋହନ ପଟ୍ଟନାୟକଙ୍କ ଅବଦାନ "ଆଜାଦ ହିନ୍ଦ୍ ଫୌଜ" ରେ ସ୍ମରଣୀୟ ହୋଇ ରହିଛି । ପୁରୀ ଜିଲ୍ଲାରୁ ଦୁଇ ଶତାଧିକ ଆଜାଦ ହିନ୍ଦ୍ ସୈନିକ ସରକାରଙ୍କ ଦ୍ୱାରା ସ୍ୱୀକୃତି ପ୍ରାପ୍ତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ସର୍ବଶ୍ରୀ ଜଗନ୍ନାଥ ସାହୁ (ବଉଳା ବନ୍ଧ) ହଜାରି ରାଉତ (ଘୁମୁସର ପଦର) ଓ ଗୋବିନ୍ଦ ଜେନା (ବାଲିଆ) ଙ୍କ ନାମ ବେହେରା ପ୍ରମୁଖ ଅନ୍ୟତମ ।

## ସିଂହଦ୍ୱାରରେ ପ୍ରାର୍ଥନା ସଭା

ଆଗାଖାଁ ପ୍ରାସାଦରେ ବନ୍ଦୀ ଥିବା ଅବସ୍ଥାରେ ସର୍ବତ୍ର କୃତ୍ରିମ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ଦୁଃଖରେ ଜର୍ଜରିତ ହୋଇ ମହାତ୍ମାଗାନ୍ଧୀ ୨୧ ଦିନ ଉପବାସ କରିଥିଲେ । ଏହାର ଭୀଷଣ ପ୍ରତିକ୍ରିୟା ବିଭିନ୍ନ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା । ଶ୍ରୀ ରାଧାଚରଣ ଦାସ ପୁରୀର ବହୁ ଲୋକଙ୍କୁ ଏକାଠି କରି ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ପ୍ରାର୍ଥନା କରିବାକୁ ଅଟକାଉଥିବା ରକ୍ଷୀମାନଙ୍କୁ ପ୍ରତିରୋଧ କରି ମନ୍ଦିରରେ ଧସାଇ ପଶିବା ବେଳେ ପୁଲିସଙ୍କ ଲାଠି ମାଡ଼ରେ ଆହତ ହୋଇଥିଲେ । ପୁରୀର ୰ କେଲୁ ତିଆଡ଼ି ଓ ପୂର୍ଣ୍ଣଚନ୍ଦ୍ର ମହାନ୍ତି ପ୍ରମୁଖ ଏହି ଆନ୍ଦୋଳନରେ ସହଯୋଗ କରିଥିଲେ ।

## ଆନ୍ଦୋଳନର ସାଫଲ୍ୟ

୧୯୪୫ ବେଳକୁ ବନ୍ଦୀମାନେ ସମସ୍ତେ ଖଲାସ ହୋଇଗଲେ । ଭାରତକୁ ସ୍ୱାଧୀନତା ଦେବା ଲକ୍ଷ୍ୟରେ ସରକାରୀ ସ୍ତରରେ ପ୍ରକ୍ରିୟା ଆରମ୍ଭ ହୋଇଗଲା । କଂଗ୍ରେସର ଅସୀମ ତ୍ୟାଗ ଦେଖି କଂଗ୍ରେସକୁ ସୁଖ ପାଉନଥିବା ଭାରତୀୟମାନେ ପ୍ରମାଦ ଗଣିଲେ । ଶାସନ କଳରେ ଥିବା କର୍ମଚାରୀମାନେ କଂଗ୍ରେସ କର୍ମୀଙ୍କ ନେତାମାନଙ୍କୁ ସ୍ୱତଃସ୍ଫୂର୍ତ୍ତ ସମ୍ମାନ ପ୍ରଦର୍ଶନ କଲେ । ଏପରିକି ମସ୍ତକରେ ଗାନ୍ଧୀଟୋପି, କାନ୍ଧରେ ଝୁଲାମଣି ଓ ଖଦୀ ବସ୍ତ୍ରଧାରୀ ସାଧାରଣ କଂଗ୍ରେସ କର୍ମୀଙ୍କୁ ଦେଖିଲେ ସରକାରୀ କର୍ମଚାରୀ ନିଜ ସ୍ଥାନରୁ ଉଠି ସମ୍ମାନ ପ୍ରଦର୍ଶନ କରୁଥିଲେ ।

ସର୍ବତ୍ର କଂଗ୍ରେସର ବିଜୟୋଲ୍ଲାସ । ୧୯୪୬ ମସିହାରେ ସ୍ୱାଧୀନତା ଲାଭର ପୂର୍ବବର୍ତ୍ତୀ ବିଧାନସଭା ପାଇଁ ଯେଉଁ ନିର୍ବାଚନ ହୋଇଥିଲା ସେଥିରେ କଂଗ୍ରେସ ବିରୁଦ୍ଧରେ ଯିବାକୁ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ଓ ଗୋଷ୍ଠୀ ଉଦ୍ୟମ କରି ମଧ୍ୟ ବିଫଳ ହୋଇଥିଲେ । ପୁରୀ ଜିଲ୍ଲାରୁ ଶ୍ରୀ ଜୟକୃଷ୍ଣ ମହାନ୍ତି, ୰ ଲୋକନାଥ ମିଶ୍ର (ପକବାବୁ) ୰ ଲିଙ୍ଗରାଜ ମିଶ୍ର, ୰ ପୂର୍ଣ୍ଣଚନ୍ଦ୍ର ସାମଲ, ୰ ବନମାଳୀ ପଟ୍ଟନାୟକ ଓ ୰ ସତ୍ୟବାଦୀ ନନ୍ଦ କଂଗ୍ରେସ ପ୍ରାର୍ଥୀମାନେ ୬ଟି ଯାକ ଆସନରେ ଜୟଯୁକ୍ତ ହୋଇଥିଲେ ।

ବାଲେଶ୍ୱର ଜିଲ୍ଲା ସବୁଠାରୁ ବଳିଯାଇଥିଲା । ଜିଲ୍ଲାର ୬ ଟି ଯାକ ଆସନରେ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, କୈଳାସ ଚନ୍ଦ୍ର ମହାନ୍ତି, କରୁଣାକର ପାଣିଗ୍ରାହୀ, ହରେକୃଷ୍ଣ ମହତାବ, ଭାଗବତ ସାହୁ ଓ ବୃନ୍ଦାବନ ଚନ୍ଦ୍ର ଦାଶ କଂଗ୍ରେସ ପ୍ରାର୍ଥୀମାନେ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲେ । କଂଗ୍ରେସର ଏହି ବିପୁଳ ବିଜୟରେ ଆତ୍ମହରା ହୋଇ ପଣ୍ଡିତ କୃପାସିନ୍ଧୁ ହୋତା ଗୋଟିଏ ମାତ୍ର ପଦରେ ବାଲେଶ୍ୱର ବାସୀଙ୍କୁ ଶୁଭେଚ୍ଛା ଜଣାଇଥିଲେ - "ସାବାସ୍ ବାଲେଶ୍ୱର ।"

"ଭାରତଛାଡ଼" ଆନ୍ଦୋଳନରେ ପୁରୀ ଜିଲ୍ଲାର ଅବଦାନ ଐତିହାସିକ ଦୃଷ୍ଟିକୋଣରୁ କୌଣସି ଗୁଣରେ ନ୍ୟୂନ୍ ନୁହେଁ ।

ସଂପାଦକ
ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସମିତି, ପୁରୀ

—୦—

# ସ୍ୱାଧୀନତା ସଂଗ୍ରାମରେ ଅନୁଗୁଳର ଅବଦାନ

ଡ଼ାକ୍ତର ବିପିନବିହାରୀ ସାହୁ

''ଅଗଷ୍ଟର ସେ ବିପ୍ଳବେ ତୁହି ଭୁଲି ନାହୁଁ ତୋର ଦାନ
''କୋଶଳା'' ''ପରା'' ରେ ସୈନିକ ଘେନି ରଚିଥିଲୁ ଅଭିଯାନ
X X X X
ବେନ ତୋର ଅନୁକୂଳ
ଅନୁଗୁଳ ଅନୁଗୁଳ -

ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ

ବଣ ପର୍ବତ ଘେରା ଅନୁଗୁଳ ଏକ ମାଳ ଅଂଚଳ, ପ୍ରାକୃତିକ ପ୍ରାଚୁର୍ଯ୍ୟଭରା । ଓଡ଼ିଶାର କେନ୍ଦ୍ରସ୍ଥଳରେ ଅବସ୍ଥିତ । ଶିକ୍ଷା, ଗମନାଗମନ, ଡ଼ାକସେବା ଆଦିର ଅଭାବ, ଉତ୍କଟ ଦାରିଦ୍ର୍ୟ, ନିର୍ମମ ବ୍ରିଟିଶ ଅତ୍ୟାଚାର । ଏହାସତ୍ତ୍ୱେ ଅନୁଗୁଳ ଭାରତ ସ୍ୱାଧୀନତା ସଂଗ୍ରାମରେ ଅପୂର୍ବ ବୀରତ୍ୱ, ଅସୀମ ସାହସ ଓ ଧୈର୍ଯ୍ୟ ପ୍ରଦର୍ଶନ କରିଥିଲା । କିପରି ? ଭାବିଲେ ବିସ୍ମୟ ଜାତ ହୁଏ । ଅନୁଗୁଳର କୋଶଳା ଥିଲା ତାଳଚେର (ଗଡ଼ଜାତ) ପ୍ରଜା ଆନ୍ଦୋଳନର ପ୍ରାଣକେନ୍ଦ୍ର । ଅତ୍ୟାଚାରିତ ଗଡ଼ଜାତ ସଂଗ୍ରାମୀମାନଙ୍କୁ ଅନୁଗୁଳ ଆଶ୍ରୟ, ସାହାଯ୍ୟ ଓ ସାହସ ଦେଲା । ଊର୍ଦ୍ଧ୍ୱଚାଳିଶ ହଜାର ତାଳଚେର ଶରଣାର୍ଥୀଙ୍କୁ ବର୍ଷାଧିକ କାଳ ଆଶ୍ରୟ ଓ ଆତିଥ୍ୟ ପ୍ରଦାନକଲା । ବିଶ୍ୱ ବିସ୍ମିତ; ବ୍ରିଟିଶ ପାର୍ଲାମେଣ୍ଟ ପ୍ରକମ୍ପିତ, ମହାତ୍ମାଗାନ୍ଧୀ ବିଚଳିତ । ଗାନ୍ଧିଜୀଙ୍କ ପ୍ରତିନିଧି ମୀରାବେନ, ସାର ଆଣ୍ଡ୍ରୁଜ, ଠକ୍କର ବାପା, ବ୍ରିଟିଶ ସାଂସଦ ମିସ୍ ଆଗାଥା ହାରିସନ୍, ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀଦେବୀ, ଦେଶ ବିଦେଶର ବହୁ ସମାଜସେବୀ, ଜନନାୟକ, ପତ୍ରକାର, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅନୁଗୁଳରେ ପଦାର୍ପଣ କଲେ । ଏହାସତ୍ତ୍ୱେ ଇତିହାସ ଅନୁଗୁଳ ପ୍ରତି ନୀରବ । ଏହି ଅବହେଳିତ ଅଧ୍ୟାୟଟିକୁ ଲୋକଲୋଚନକୁ ଆଣିବା ଏ ପ୍ରବନ୍ଧର ଲକ୍ଷ୍ୟ ।

## ପ୍ରାକ୍ ସୂଚନା

ଅନୁଗୁଳ ୧୮୪୮ ପର୍ଯ୍ୟନ୍ତ ବ୍ରିଟିଶ ଅଧୀନସ୍ଥ ଏକ ଦେଶୀୟ ରାଜ୍ୟ ବା ଗଡ଼ଜାତ ଥିଲା । ରାଜା ସୋମନାଥ ସିଂ ଜଗଦେବ ଥିଲେ ପ୍ରଜାବତ୍ସଳ, ସ୍ୱାଭିମାନୀ, ସ୍ୱାଧୀନଚେତା । ବ୍ରିଟିଶ କୁଶାସନର ସେ ପ୍ରତିବାଦ ଓ ବିଦ୍ରୋହ କଲେ । ବ୍ରିଟିଶ ସର୍କାର ଯୁଦ୍ଧ କଲା; ଚବିଶଦିନ ପର୍ଯ୍ୟନ୍ତ ଅନୁଗୁଳ ଦୁର୍ଗ ଭେଦ କରିପାରିଲା ନାହିଁ । ଦିୱାନ କମଳ ଲୋଚନ ପଟ୍ଟନାୟକ ବିଶ୍ୱାସଘାତକତା କଲେ । ରାଜା ଧରା ପଡ଼ିଲେ । ହଜାରୀବାଗ୍ ଜେଲ ଓ ପରେ କଟକରେ ଗୃହବନ୍ଦୀ ଭାବେ ଜୀବନ ତ୍ୟାଗକଲେ । ଅନୁଗୁଳ ଖାସ ହେଲା ଅର୍ଥାତ୍ ପ୍ରତ୍ୟକ୍ଷ ବ୍ରିଟିଶ ଶାସନାଧୀନ ହେଲା । ଅନୁଗୁଳ ଓ କନ୍ଧମାଳ ମିଶି ଏକ ଜିଲ୍ଲା ଗଠିତ ହେଲା । ଇଏ ୧୮୪୮ ଘଟଣା । ଡ଼େପୁଟି କମିଶନର ହେଲେ ଅନୁଗୁଳର ହର୍ତ୍ତାକର୍ତ୍ତା ଦଇବ ବିଧାତା ।

## ମୁଖ ଆଇନ-ବ୍ରିଟିଶ କୁଶାସନ

ପ୍ରତିଶୋଧ ପରାୟଣ ବ୍ରିଟିଶ ପଲ୍ଟନ, ପୁଲିସ ଓ କଳାଗୋରା ଅନ୍ୟ କର୍ମଚାରୀମାନେ ରାଜଅନୁଗତ କର୍ମଚାରୀ ତଥା ସାଧାରଣ ପ୍ରଜାଙ୍କ ଉପରେ ନାନା ଅତ୍ୟାଚାର କଲେ । ଲୋକଙ୍କର ମୌଳିକ ଅଧିକାର ରହିଲା ନାହିଁ । ଡ଼େପୁଟି କମିସନରଙ୍କ ବିନାନୁମତିରେ କେହି ନିଜଘରେ କୁଣିଆ ରଖିବା ଦଣ୍ଡନୀୟ ଅପରାଧ । ବେଠି ବେଗାରି, ନାନା କରଭାର । ଡ଼େପୁଟି କମିସନରଙ୍କ ମୁଖ ନିସୃତ ବାଣୀ ହେଲା ଆଇନ୍, ବେଦର ଗାର । ଶାସନ ଅର୍ଥ ବେଠି ବେଗାରି, ଲୁଣ୍ଠନ, ଧର୍ଷଣ, ଉତ୍ପୀଡ଼ନ । ଦିଟି ଉଦାହରଣରୁ ଏହାର ଭୟାବହତା ଅନୁମିତ ହେବ ।

**ହାତୀଖେଦା :** କର୍ମଚାରୀମାନଙ୍କ ଗସ୍ତ, ମାଲପରିବହନ ତଥା ଯୁଦ୍ଧ ନିମିତ୍ତ ହାତୀ ଉପରେ ନିର୍ଭର କରିବାକୁ ପଡ଼ିଲା । ଅନୁଗୁଳ ଜଙ୍ଗଲରେ ହାତୀ ପ୍ରବଳ । ସରକାର ହାତୀ ସଂଗ୍ରହ କଲେ । ଇଏ ହେଲା ହାତୀଧରା ବା ହାତୀଖେଦା ।

ଘଞ୍ଚବାଉଁଶ ବଣ ଭିତରେ ପ୍ରଶସ୍ତ ମୁକ୍ତ ଜାଗାଟିଏ ନିରୂପିତ ହୁଏ । ଶାଳ ଅସନର ବିରାଟ ଗଣ୍ଡିମାନ ଗଭୀରଭାବେ ପୋତି ଶକ୍ତ ଉଚ୍ଚା ଗୋଇଡ଼ା ତିଆରି ହୁଏ । କାଠ ଗଣ୍ଡିର ଭିତର ପାଖରେ ଏକ ଫୁଟିଆ ଦୁଇମୁହିଁ ଗୋଜିଆ ମୋଟା ଲୁହାକଣ୍ଟାମାନ ପିଟା ହୁଏ । ଗୋଇଡ଼ା ଭିତରକୁ ହାତୀମାନଙ୍କ ପାଇଁ ପ୍ରବେଶ ପଥ ଥାଏ । କାଠ ଗଡ଼ର ଏକ ଶକ୍ତ ପାଟକ ଶକ୍ତ ରସିରେ ବନ୍ଧାହୋଇ ଲମ୍ବାୟିତ ଭାବେ ଝୁଲୁଥାଏ । ଗୋଇଡ଼ାର ଭିତର ବାହାର କଣ୍ଟାଡ଼ାଳ, ଘାସ ପତ୍ରରେ ଆଚ୍ଛାଦିତ ହୁଏ । ବହୁ ଦୂରରୁ ପାଟକ ପର୍ଯ୍ୟନ୍ତ ବିସ୍ତୃତ ଅଂଚଳରେ କଦଳୀ ବଗିଚା ସୃଷ୍ଟି କରାହୁଏ । ହାତୀମାନେ ଦଳବାନ୍ଧି ରହନ୍ତି । କଦଳୀବଣର ଦୁଇ ପାଖରେ ଅଳ୍ପ ଅଳ୍ପ ବ୍ୟବଧାନରେ ଦୁଇ ଦୁଇଜଣ ପ୍ରଜା ଗୋଟିଏ ଗୋଟିଏ ଦଳ ବା ଖେଦା କରି ବସନ୍ତି । ଦିନରେ ଶୁଖିଲା କାଠ ସଂଗ୍ରହ କରନ୍ତି; ନିଆଁଜାଳି ରାତିସାରା ଜଗନ୍ତି ।

ତବେ ପ୍ରଜା ଅତ୍ୟନ୍ତ ସତର୍କତାସହ ହାତୀପଲକୁ କଦଳୀ ବଣ ଆଡ଼କୁ ମୁହେଁଇ ଦିଅନ୍ତି । କଦଳୀଗଛ ଖାଇ ଖାଇ ହାତୀମାନେ ଗୋରଡ଼ାପାଟକ ଆଡ଼କୁ ଅଗେଇ ଆସନ୍ତି । କୌଣସି ହାତୀ ଏପାଖ ସେପାଖ ହେଲେ ନିଆଁ ଦେଖି ମଝିରାସ୍ତାକୁ ଫେରି ଆସନ୍ତି । ହାତୀପଲ ଗୋରଡ଼ାରେ ପଶିଲେ ଝୁଲନ୍ତା ପାଟକକୁ ପକେଇ ଦିଆଯାଏ । ସାତଦିନ ପର୍ଯ୍ୟନ୍ତ ହାତୀମାନଙ୍କୁ ଖାଦ୍ୟପେୟ ଦିଆ ଯାଏ ନାହିଁ । ହାତୀମାନେ ଦୁର୍ବଳ ହୋଇଗଲେ ପୋଷାହାତୀ ସାହାଯ୍ୟରେ ବଡ଼ ବଡ଼ ଗଛରେ ବନ୍ଧା ହୁଅନ୍ତି । ପ୍ରଜାମାନେ ନିଜଘରୁ ଧାନ ଚାଉଳ ପନିପରିବା ପଳମୂଳ ମାଗଣାରେ ଆଣି ହାତୀଙ୍କୁ ଖାଇବାକୁ ଦିଅନ୍ତି । ମାର୍ଗଶିରରେ ଆରମ୍ଭ ହୋଇ ମାସାଧିକ କାଳ ହାତୀଖେଦା ଚାଲେ ।

ଏ ସମସ୍ତ କାମ ବେଠିରେ ହୁଏ । ପ୍ରଜାମାନେ ନିଜଘରୁ ଛତୁଆଚାଉଳ ବାନ୍ଧିଧରି ଯାଆନ୍ତି । ଯା'ର ନାହିଁ ସେ ଉପାସ । କିଛିଏ ଭୁଲେଇ ପଡ଼ିଲେ ଅଶ୍ରାବ୍ୟ ଗାଳି ଲାଠି ବୁଟ୍ ମାଡ଼ । ପ୍ରଜାସଂଗ୍ରହ ଦାୟିତ୍ୱ ପ୍ରଧାନର । ସାମାନ୍ୟତମ ଅବହେଳା ହେଲେ ଲାଠି ବୁଟ୍‌ମାଡ଼, ଅର୍ଥଦଣ୍ଡ, ଅନ୍ତରେ ଦଉଡ଼ି ହାତରେ କଡ଼ି । ହାତୀର ଦନ୍ତାଚକଟା, ବାଘଭାଲୁ, ମେଲେରିଆ, ଜଳାଜ୍ୱରରେ ଅନେକ ମରନ୍ତି ।

ସରକାର ଆଦେଶ କଲେ ଗୋଟିଏ ଗାଁର ଗୋରୁ ଅନ୍ୟ ଗାଁର ଗୋଚରରେ ପ୍ରବେଶ କରି ପାରିବ ନାହିଁ । ପ୍ରଜାମାନେ ହତସତ ହେଲେ । କଂଜରା ପ୍ରଧାନ ପ୍ରତିବାଦ କରିବାରୁ ହୀନସ୍ତା ହେଲେ । ପଦବୀ ହରେଇଲେ ।

ଗସ୍ତରେ ଯିବା କର୍ମଚାରୀମାନଙ୍କୁ ପ୍ରଜାମାନେ ବୋହି ନେଉଥିଲେ । ମାଗଣାରେ ଖାଦ୍ୟପେୟ ବା ରସଦ ଯୋଗାଡ଼ି ଦେଉଥିଲେ । ରାତିରେ ଜଳାଶୟର ପାଣି ବାଡ଼େଇ ବେଙ୍ଗମାନଙ୍କ ରଡ଼ି ବନ୍ଦ କରୁଥିଲେ । ରାତିସାରା ମଶାରୀକୁ ଟେକିଧରୁଥିଲେ- ମଶାରୀ ବାନ୍ଧିବା ସୁବିଧା ନଥିଲେ ।

## ସ୍ୱାଧୀନତା ଆନ୍ଦୋଳନର ସୂତ୍ରପାତ

ବ୍ରିଟିଶ କୁଶାସନ ଚରମ ସୀମାରେ ପହଞ୍ଚିଲା । ଅତିଷ୍ଠ ଉଠିହୁଏ । ଦେଶରେ ପ୍ରତିବାଦ, ବିଦ୍ରୋହ, ବିପ୍ଳବ, ହିଂସାକାଣ୍ଡମାନ ଘଟିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ଅହିଂସା ଓ ସତ୍ୟାଗ୍ରହ ମାର୍ଗରେ ବ୍ୟାପକ ହେଲା । କଂଗ୍ରେସ ଥିଲା ସେବା ଓ ସଂଗ୍ରାମର ବୃହତ୍ତମ ଅନୁଷ୍ଠାନ । ୧୯୨୦ ରେ ଉତ୍କଳ କଂଗ୍ରେସ ଗଠିତ ହେଲା । ଗୋପବନ୍ଧୁ ଦାସ ସଭାପତି, ଡାକ୍ତର ଏକରାମ ରସୁଲ ଉପସଭାପତି ଓ ଓକିଲ ଭାଗିରଥୀ ମହାପାତ୍ର ସମ୍ପାଦକ ।

## ଲବଣ ସତ୍ୟାଗ୍ରହ ଓ ଅନୁଗୁଳ

ସଂଗ୍ରାମର କୌଣସି ବିଧିବଦ୍ଧ ଅନୁଷ୍ଠାନ ନଥିବା ସତ୍ତ୍ୱେ ଅନୁଗୁଳରୁ ଚାରିଜଣ ସଂଗ୍ରାମୀ ଉତ୍କଳର ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହରେ ଯୋଗଦେଲେ, ଜେଲଗଲେ । ଏମାନେ ହେଲେ ଡ଼ା କୃପାସିନ୍ଧୁ ହୋତା (ଖାଲୁରା), ହାବିଲଦାର ଗୋପାଳଚନ୍ଦ୍ର ପ୍ରଧାନ (ରାଇଝରଣ), ସ୍କୁଲ ଛାତ୍ର ଆନନ୍ଦଚନ୍ଦ୍ର ପ୍ରଧାନ (ବାଗଡ଼ିଆ) ଓ ଛାତ୍ର ରତ୍ନାକର ନାୟକ (ବଡ଼କେରଜାଙ୍ଗ) ।

## ଅନୁଗୁଳରେ କଂଗ୍ରେସ ମଂଚ - ୧୯୩୧

ଲବଣ ସତ୍ୟାଗ୍ରହର ବିପୁଳ ବିଜୟ ପରେ ଗାନ୍ଧିଜୀ କର୍ମୀମାନଙ୍କୁ ବିଭିନ୍ନ ସଂଗଠନ ସେବା ଓ ଗଠନାତ୍ମକ କାମରେ ନିୟୋଜିତ କଲେ । କର୍ମୀ ଆବଶ୍ୟକ । ତେଣୁ ଗାଁ ସହରରେ ପ୍ରଚାର ଓ ସଂଗଠନ ହେବା ଦରକାର । ସ୍ୱଦେଶୀ ଆଗ୍ରହ, ବିଦେଶୀ ବର୍ଜନ, ଶିକ୍ଷା ପ୍ରସାର, ନିଶା ନିବାରଣ, ଖଦୀପ୍ରସାର, ସମାଜ ସେବା ମାଧ୍ୟମରେ ଜନ ସେବା ଓ ଜନଚେତନା ସୃଷ୍ଟି କରିବା ହେଲା ଲକ୍ଷ୍ୟ ।

କଂଗ୍ରେସ ସଂଗଠନ ନିମିତ୍ତ ଅନୁଗୁଳ ଆସିଲେ ଯଦୁମଣି ମଙ୍ଗରାଜ, ଗୋପବନ୍ଧୁ ଚୌଧୁରୀ, ବାନରସେନା ଅଦ୍ୱୈତବଲ୍ଲଭ ରାୟ । ସଭା କରିବାକୁ ଡେପୁଟି କମିସନର ମନା କରିଦେଲେ । ଯଦୁମଣି ଡେପୁଟି କମିସନରଙ୍କୁ ସାକ୍ଷାତ କଲେ -

''ଆଜ୍ଞା ବହୁତ ଲୋକ ଜମା ହୋଇଛନ୍ତି । ଆପଣଙ୍କ ନିଷେଧାଦେଶଟା ଲୋକଙ୍କୁ ବୁଝେଇ ଦେବାକୁ ଅନୁମତି ମିଳୁ ।''

ମଦନ ମୋହନ ଛକରେ ପ୍ରବଳ ଜନସମାଗମ । ଗୋଟାଏ ଶଗଡ଼ରୁ ବଳଦ ଫିଟେଇ ଲୋକେ ଟେକିଧରିଲେ । ଏଇ ହେଲା ମଂଚ । ମଙ୍ଗରାଜେ ତାଙ୍କ ''ଜବରିଆ'' ଢଙ୍ଗରେ କହିଲେ -

''ଭାଇମାନେ, ଗାନ୍ଧିଜୀ କହୁଛନ୍ତି ବ୍ରିଟିଶ ବେପାରୀ, ତୁମେ ଆମଦେଶ ଛାଡ଼ି ଚାଲିଯାଅ । ନହିଲେ ଆମେ ତଡ଼ିଦେବୁ । ମାତ୍ର ଗାନ୍ଧିଜୀ ଏକଥା ତମକୁ କହିପାରିବେ ନାହିଁ । ଏଠିକା ସରକାର ତାଙ୍କ ତୁଣ୍ଡରେ ତାଲା ପକେଇ ଦେଲେ । ହଉ ଆମେ କଂଗ୍ରେସ ମଂଚ ପୋତିଦେଇ ଯାଉଛୁ । ଏହାକୁ ଗଛ କରିବା ଦାୟିତ୍ୱ ଅନୁଗୁଳ ଭାଇ ଭଉଣୀମାନଙ୍କର ।''

## ଅନୁଗୁଳ କଂଗ୍ରେସର ଅଙ୍କୁରୋଦ୍‌ଗମ୍

ଯଦୁମଣି ମଙ୍ଗରାଜଙ୍କ ସଭା ଦେଖିବାକୁ କୋଶଳାରୁ ପାଞ୍ଚଜଣ ପ୍ରତିନିଧି ଆସିଥିଲେ । ଭଗବାନ୍ ପ୍ରଧାନ, ସର୍ବେଶ୍ୱର ପ୍ରଧାନ, ନୀଳଦାସ, ଭଜମନ ପ୍ରଧାନ ଓ ନନ୍ଦୀବାରିକ । ରାତିରେ ଗାଁରେ ସଭା ହେଲା । ''କୋଶଳା କଂଗ୍ରେସ ସ୍ୱେଚ୍ଛାସେବୀ ବାହିନୀ'' ଗଠିତ ହେଲା । ଇଏ ହେଲା ଅନୁଗୁଳର ପ୍ରଥମ କଂଗ୍ରେସ ସଂଗଠନ ତଥା ପ୍ରଥମ ସ୍ୱାଧୀନତା ସଂଗ୍ରାମ ସଂଗଠନ । ବୟସ ନିର୍ବିଶେଷରେ ବହୁବ୍ୟକ୍ତି ଏଥିରେ ଯୋଗଦେଲେ ଅନ୍ତର୍ଯ୍ୟାମୀ ପ୍ରଧାନ, ରମାନନ୍ଦ ପ୍ରଧାନଙ୍କ ପରି ୧୫।୧୬ ବର୍ଷର ତରୁଣଙ୍କ ସମେତ ।

୧୯୩୧ । ସରକାରୀ ପ୍ରତିବନ୍ଧକ ହେତୁ ଅନୁଗୁଳ ଜିଲ୍ଲା କଂଗ୍ରେସ ଗଠିତ ହୋଇ ପାରିଲା ନାହିଁ । ତଥାପି ଅନୁଗୁଳର କର୍ମୀମାନେ କଟକ ଜିଲ୍ଲା କଂଗ୍ରେସରେ ସାମିଲ ହେଲେ । କଟକ ଓ ଅନୁଗୁଳରେ ସେବା ସଂଗଠନ ଓ ସଂଗ୍ରାମ କଲେ । ୧୯୩୬ ରେ ଅନୁଗୁଳ ବଜାରରେ

ପୁରୁଣାଗଡ଼ ନିବାସୀ ବିଦ୍ୟାଧର ମୁଦ୍ୟାରଙ୍କ ଠାରୁ ବାର ଡ଼େସିମିଲ ଜାଗା ଅଶିଟଙ୍କାରେ କଟକ ଜିଲ୍ଲା କଂଗ୍ରେସ ସଭାପତି ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ନାମରେ କିଣା ହେଲା । ପାଞ୍ଚବଖରା ଚାଳ ନିର୍ମିତ ହୋଇ କଂଗ୍ରେସ ଆଶ୍ରମ ପ୍ରତିଷ୍ଠିତ ହେଲା । କର୍ମୀମାନେ ରଚନାତ୍ମକ କାମ ସହ ବିପ୍ଳବର ବାର୍ତ୍ତା ପ୍ରଚାର କଲେ । କୁଶାସନର ପ୍ରତିବାଦ, ଅସହଯୋଗ, ବିଦେଶୀ ବସ୍ତ୍ର ପୋଡ଼ି, ବିଦେଶୀ ବସ୍ତ୍ର ଦୋକାନ ତଥା ଅବକାରୀ ଦୋକାନ ଆଗରେ ପିକେଟିଂ, ସ୍ୱଦେଶୀ ଆଗ୍ରହ, ବିଦେଶୀ ବର୍ଜନ, ଖଦୀ କୁଟୀର ଶିଳ୍ପ ପ୍ରସାର, ଅଶିକ୍ଷା, କୁସଂସ୍କାର ଦୂରୀକରଣ ଆଦି ଆନ୍ଦୋଳନ କଲେ । ଲାଠିମାଡ଼, ବୁଟମାଡ଼, ଜେଲ ଜୋରିମାନା ସହିଲେ । ବନ୍ଧୁ ପରିବାର ନିର୍ଯ୍ୟାତିତ ହେଲେ । ଗ୍ରାମବାସୀ ତଥା ଆଶ୍ରୟଦାତାମାନେ ଅତ୍ୟାଚାରିତ ହେଲେ । କୋଶଳା ଓ ଡୁକୁଡ଼ା ଗ୍ରାମବାସୀଙ୍କ ଉପରେ 'ଲାଠିଚାର୍ଜ' ହେଲା । ଡୁକୁଡ଼ାର ମାଗତା ସେଠୀ, ପ୍ରାଣବନ୍ଧୁ ପ୍ରଧାନ, ଅଜାତି ସାହୁ ମାଡ଼ଖାଇ ଥାନାରେ ଢୁକିଲେ - ଅପରାଧ ସଂଗ୍ରାମୀମାନଙ୍କୁ ଆଶ୍ରୟ ଦାନ ।

## ଅନୁଗୁଳ ଜେଲରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ

(୨୬.୭.୧୯୯୫ ରେ ଅନୁଗୁଳ ବାଳିଛାତ୍ର ବାସରେ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଭାଷଣର ଅଂଶ)

୧୯୩୧ ଗାନ୍ଧି-ଇରଉଇନ୍ ଚୁକ୍ତି ବଳରେ ସତ୍ୟାଗ୍ରହୀମାନେ ଜେଲରୁ ଖଲାସ ହୋଇଥାନ୍ତି । ଗଠନମୂଳକ କାମ ଆରମ୍ଭ ହୋଇଥାଏ । ଅନୁଗୁଳ କଂଗ୍ରେସ କମିଟି ଆୟବ୍ୟୟ ହିସାବ ଦେଖିବାକୁ ମୁଁ ଅନୁଗୁଳ ଆସିଥାଏ । ଦେଖିଲି ଏଠିକା ଲୋକଙ୍କର ମୌଳିକ ଅଧିକାର ନାହିଁ । ଚାରି ଜଣରୁ ଅଧିକ ଲୋକ ଏକାଠି ଚାଲି ପାରିବେ ନାହିଁ । ଡେପୁଟିକମିଶନରଙ୍କ ବିନାନୁମତିରେ କେହି ନିଜଘରେ ଅତିଥି ରଖିବା ଅପରାଧ । ଖବର କାଗଜ ପଢ଼ିବା ମନା । ପ୍ରତିବାଦରେ ଏଠିକା କଂଗ୍ରେସ କର୍ମୀମାନେ ''ସମାଜ'' ଆଣି ଡ଼ାକି ଡ଼ାକି ବିକନ୍ତି, ମୁଖ୍ୟତଃ ଆନନ୍ଦ ଚନ୍ଦ୍ର ସାହୁ । ପୋଲିସ କାଗଜ ପୋଡ଼ିଦିଏ । ଏମାନଙ୍କୁ ହାଜତରେ ରଖି ଦିଏ । ସନ୍ଧ୍ୟାରେ ଛାଡ଼ି ଦିଏ । ଇମିତି ପ୍ରତିଦିନ ଚାଲେ । ବୁଢ଼ୀଠାକୁରାଣୀ ପାହାଡ଼ରେ ପତ୍ର କୁଡ଼ିଆଟିଏ କରି ଏମାନେ ଥାଆନ୍ତି । ଅନୁଗୁଳ ଛାଡ଼ି ଚାଲିଯିବାକୁ ଏମାନଙ୍କୁ ନୋଟିସ ଦିଆଯାଇଥାଏ, Tresspass Act ରେ । ଆମେ ସେଇ ପତ୍ର କୁଡ଼ିଆରେ ପତ୍ର ପକାଇ ରାତ ଖାଉଥାଉ । ପୁଲିସ ଖାଉବା ପତ୍ରରୁ ଟାଣିନେଇ ଆମକୁ ଗିରଫ କଲା । ଆମକୁ ଜାମିନ କିଏ ନେବ ? ଏମାନେ ଜାମିନରେ ଯିବାକୁ ବା ମକଦ୍ଦମା ଲଢ଼ିବାକୁ ଚାହୁଁନଥାନ୍ତି । କଟକ ଖାନନଗରରୁ ଆସି ଏଠି ବ୍ୟବସାୟ କରୁଥିବା ବିଶ୍ୱନାଥ ସାହୁ ମୋତେ ଜାମିନ୍‌ରେ ନେଲେ । ଅନ୍ୟମାନଙ୍କୁ ଗିରିଜାଭୂଷଣ ଦତ୍ତ । ସତ୍ୟନାରାୟଣ ସେନଗୁପ୍ତ ଓ ନିତ୍ୟାନନ୍ଦ କାନୁନ୍‌ଗୋ ଆମ କେସ୍ ଲଢ଼ିଲେ । ବିଚାର ପ୍ରହସନ ଚାଲିଲା । ମୋ ଉପରେ ନୋଟିସ ହୋଇ ନଥିବାରୁ ଚାରିଦିନ ପରେ ମୁଁ ଖଲାସ ହେଲି । ଅନ୍ୟମାନଙ୍କୁ ୬ ମାସ ଜେଲ ହେଲା । ଗଣ୍ଡଗୋଳ ଆଶଙ୍କାରେ ଏମାନଙ୍କୁ କଟକ ଓ ପରେ ପାଟଣା କ୍ୟାମ୍ପ ଜେଲକୁ ପଠେଇ ଦିଆଗଲା । ଅନ୍ୟ କର୍ମୀମାନେ ଗିରିଜାଭୂଷଣ ଦତ୍ତଙ୍କ ବଜାର ଘରେ ଗୋପ୍ୟ ରହି ଆନ୍ଦୋଳନ କରୁଥାନ୍ତି । ନାଗରମଲ୍ଲ ମୋଦୀଙ୍କ ନେତୃତ୍ୱରେ ମାରୱାଡ଼ୀ ଯୁବକମାନେ ଏମାନଙ୍କ ଖାଦ୍ୟପେୟ ସେବାଯତ୍ନ କରନ୍ତି । ଦିନେ ପୁଲିସ ସନ୍ଦେହ ହେତୁ ଏମାନେ ଖାଦ୍ୟପେୟ ପଠେଇ ପାରିଲେ ନାହିଁ । ସଂଗ୍ରାମୀମାନେ ବିଳମ୍ବିତ ରାତ୍ରିରେ ଅନ୍ଧକାରରେ ବିଲମାନ ଭିତରେ ଯାଇ ନରସିଂହାରେ ବାମଦେବ ପ୍ରଧାନଙ୍କ ଘରେ ପହଞ୍ଚିଲେ । ସେବା ସନ୍ତ୍ୱାର ସାହାଯ୍ୟ ପାଇ ରାତି ଭିତରେ ଗୁପ୍ତ କେନ୍ଦ୍ରକୁ ଫେରି ଆସିଲେ ।

କର୍ମୀମାନେ ପାଟଣା କ୍ୟାମ୍ପ ଜେଲରୁ ଖଲାସ ହୋଇ ଗାଁକୁ ଫେରିଲେ । ପୁଲିସ ଗୁଇନ୍ଦା ଏମାନଙ୍କ ପିଛା ଧରିଥାଏ । ସୁରେନ୍ଦ୍ରନାଥ ଦ୍ୱିବେଦୀ ଛଦ୍ମ ବେଶରେ କୋଶଳା ଆସିଲେ । କେତେଜଣ କର୍ମୀଙ୍କ ସହ ରାତିର ଅନ୍ଧକାର ମଧ୍ୟରେ ହିଂସ୍ରଜନ୍ତୁ ଭରା ବଣ ପାର ହୋଇ ପହଞ୍ଚିଲେ ତାଳଚେର । ସେଠାରୁ ଟ୍ରେନ ଯୋଗେ କଟକ । କର୍ମୀମାନେ ସ୍ୱରାଜ ଆଶ୍ରମ, ଜୈନ ମନ୍ଦିରରେ ରହି କଟକରେ ଆନ୍ଦୋଳନ କଲେ ।

## ମେଳଣରେ ମେଳି

୧୯୩୨ ଫଗୁଣ । କୋଶଳାରେ ବିରାଟ ଫଗୁଣ ମେଳା । ହଜାର ହଜାର ଲୋକଙ୍କ ସମାଗମ । ପ୍ରସାଦ ସେବନ ପରେ ହଠାତ୍ ଆକାଶରେ ଉଡ଼ିଲା ତ୍ରିରଙ୍ଗା ପତକା । ଇନ୍‌କିଲାବ ଜିନ୍ଦାବାଦ, ବ୍ରିଟିଶ ସରକାର ମୁର୍ଦ୍ଦାବାଦ, ଭାରତମାତା କୀ ଜୟ ଧ୍ୱନି । ଚାଲିଲା ଲାଠି ମାଡ଼, ବୁଟମାଡ଼ । ବ୍ୟାପକ ଗିରଫଦାରୀ । ଲାଠିମାଡ଼ରେ ହୃଷିକେଶ ତ୍ରିପାଠୀଙ୍କ ଦାନ୍ତ ଭାଙ୍ଗିଗଲା । ପ୍ରବଳ ରକ୍ତସ୍ରାବ । ସେ ବେହୋସ ପଡ଼ିଗଲେ । ତଥାପି ବୁଟମାଡ଼ ଚାଲିଥାଏ । କୋଶଳା କର୍ମୀମାନଙ୍କ ବ୍ୟତୀତ ହୃଷିକେଶ ତ୍ରିପାଠୀ (ବେଲପୁର) ମହେଶ୍ୱର ପ୍ରଧାନ (ସନ୍ତରାବନ୍ଧ), ନାରାୟଣ ଗଡ଼ନାୟକ (ପୋଢ଼ାପଡ଼ା) ବଳରାମ ଦେହୁରୀ (ମାଛକୁଟା) ଗିରଫ ହେଲେ ।

## ଯାତ୍ରାରେ ବିଦ୍ରୋହ

୧୯୩୨ । କୋଶଳା ଭାଦ୍ରବ ଯାତ୍ରା ବା ରାମଚଣ୍ଡୀ ଯାତ୍ରା । ରାଜ୍ୟ ଓ ରାଜ୍ୟ ବାହାରର ହଜାର ହଜାର ଭକ୍ତ, ଦର୍ଶକ, ବ୍ୟବସାୟୀଙ୍କ ସମାଗମ । କର୍ମୀମାନେ ହଠାତ୍ ତ୍ରିରଙ୍ଗା ପତକା ଉଡ଼ାଇ ଭାରତ ମାତାକୀ ଜୟ ଧ୍ୱନି ଦେଲେ । ବିଶେଶ୍ୱର ପ୍ରଧାନ ଛଦ୍ମବେଶରେ କଟକରୁ ନିଷିଦ୍ଧ କଂଗ୍ରେସ ପ୍ରଚାର ପତ୍ରମାନ ଆଣିଥାନ୍ତି । ପ୍ରଚାର ପତ୍ର ବଣ୍ଟା ହେଲା । ମାଡ଼, ଗିରଫଦାରୀ । ଯାତ୍ରା ଶୂନଶାନ । ବିଶେଶ୍ୱର ପ୍ରଧାନ, ରସାନନ୍ଦ ପ୍ରଧାନ, ଛାଲୁ ସାହୁ, ବାଇସେଠୀ, ହୃଷିକେଶ ଗଡ଼ନାୟକ, ସର୍ବେଶ୍ୱର ଦେହୁରୀ ଆଦି ଗିରଫ ହେଲେ ।

## ଅବକାରୀ ଦୋକାନ ଆଗରେ ପିକେଟିଂ

ଅବକାରୀ ଦୋକାନ ଆଗରେ ପିକେଟିଂ କରି ବେତ୍ରାଘାତ ସହ ଗିରଫ ହେଲେ ଗଣେଶ୍ୱର ସାହୁ, ବେଦେଶ୍ୱର ସାହୁ, ଡମ୍ବରୁ ବାରିକ, ପଠାଣିମିଶ୍ର, ଚିଦାନନ୍ଦ ରଥ, ଅନ୍ତର୍ଯ୍ୟାମୀ ପ୍ରଧାନ ଓ ଅନ୍ୟମାନେ ଫେରାର ହୋଇ ଅନ୍ୟତ୍ର ଆନ୍ଦୋଳନ କଲେ ।

## ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା

ଗାନ୍ଧିଜୀ ୭।୧୧।୧୯୩୩ ରେ ହରିଜନ ପଦଯାତ୍ରା ଆରମ୍ଭ କଲେ । ଅନୁଗୁଳର ପଶ୍ଚିମ ଦ୍ୱାରରେ ପ୍ରବେଶ କଲେ ୧୯୩୪ ମେ ୬ ତାରିଖରେ । ନିଙ୍ଗରା ସେତୁ ଅତିକ୍ରମ କଲା ମାତ୍ରେ ପୁଲିସ ଓ ପଦାଳ ଗତିରୋଧ କଲା । ଅନୁଗୁଳ ଭିତରକୁ ପ୍ରବେଶ କରିବାକୁ ଦେଲା ନାହିଁ । ଡେପୁଟି କମିସନର ଷ୍ଟର୍ଲିଂଙ୍କ ଆଦେଶ । ଗାନ୍ଧିଜୀ କହିଲେ -

''ଏଠି ଏମିତି ଗୋଟାଏ ସରକାର ଅଛି ଯେକି ମୋ ଭଳି ସାମାନ୍ୟ ଲୋକଟାକୁ ଡ଼ରୁଛି । ହଉ ଆମେ ତାଙ୍କ ଅଂଚଳ ବାହାରେ ଯିବୁ । ଯଦି ଟାଉନରେ ସଭା କରିବା ମନା, ତେବେ ଗାଁ ସଭା କରିବା, ଗାଁରେ ରହିବା ।''

ଗାନ୍ଧିଜୀ ଟାଉନ ବାହାର ପଶ୍ଚିମ ରାସ୍ତାରେ ଯାଇ ରାଣୀ ଗୋଡ଼ାତୋଟାରେ ବିଶ୍ରାମ ନେଲେ । ସେଦିନ ରବିବାର । ତଥାପି ସମସ୍ତ ସ୍କୁଲ ଓ ଅଫିସ ଖୋଲାଥାଏ । ଗାଁ ଗାଁରେ ପୁଲିସ ଆଉ ସରକାର ଲୋକଙ୍କୁ ତାଗିଦ କରିଥାଏ ସଭାକୁ ନଆସିବାକୁ । ଫଳ ଓଲଟା ହେଲା । ହଜାର ହଜାର ସଂଖ୍ୟାରେ ଆବାଳ ବୃଦ୍ଧ ବନିତା ଦିନକ ପୂର୍ବରୁ ଅନୁଗୁଳ ଟାଉନରେ ହାଜର, କିଏ ଚାଲି ଚାଲି ତ କିଏ ଶଗଡ଼ରେ । ରାସ୍ତାଧାରରେ ବିଶ୍ରାମ, ରୋଷେଇ, ଖିଆ ପିଆ - ସେ ଦୃଶ୍ୟ ବିହ୍ୱଳକ । ଲୋକେ ଗାନ୍ଧିଜୀଙ୍କୁ ଦର୍ଶନ କଲେ, ତାଙ୍କ କଥା ଶୁଣିଲେ । ଜୟ ଜୟ ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଲା । କିଏ ଅଣ୍ଟାରୁ କିଏ ପଣତରୁ କିଏ କଚାଟରୁ କିଏ ବା ଗାଣ୍ଠିଆରୁ ତମ୍ବାର ପାହୁଲା, ଅଧଲା, ପଇସା, ଡ଼ବଲ ପଇସା, ସୁନା ରୁପା ଭେଟି ଦେଲେ । ଗରିବମାନଙ୍କର ଏ ଦାନରେ ଗାନ୍ଧୀ ବିହ୍ୱଳିତ । ଭାରଭାର ତମ୍ବା ପଇସା ବୁହାହୋଇ ହରିଜନ ପାଣ୍ଠି ନିମିତ୍ତ ଗଲା । ଗାନ୍ଧିଜୀ ବିଦାୟ ନେଲେ । ପରେ ପରେ କୋଶଳାରେ ହରିଜନମାନଙ୍କୁ ମନ୍ଦିର ପ୍ରବେଶ କରାଗଲା ।

## ଗଡ଼ଜାତ ପ୍ରଜା ଆନ୍ଦୋଳନ - ହିଜରାତ ଓ ଅନୁଗୁଳ, ୧୯୩୮

ଗଡ଼ଜାତମାନଙ୍କରେ ମନମୁଖୀ ଶାସନ । ତାଳଚେର ଓ ଢେଙ୍କାନାଳର ରାଜଶାସନ ଥିଲା ଅତି ଅମାନୁଷିକ ଓ ଜଘନ୍ୟ । ହତ୍ୟା, ଲୁଣ୍ଠନ, ଧର୍ଷଣ ଶୋଷଣ, ଗୃହଦାହ, ଉତ୍ପୀଡ଼ନରେ ପ୍ରଜାମାନେ ତ୍ରାହି ତ୍ରାହି ଡ଼ାକ ଦେଉଥିଲେ । ତାଳଚେରର ଚନ୍ଦ୍ର ବିଲ ଗ୍ରାମରେ ପ୍ରଜାମାନେ ବାଲିରେ ଅଟକିଥିବା ପୁଲିସ ଗାଡ଼ିକୁ ଠେଲିବାକୁ ମନାକଲେ । ଗୁଳିଚାଳିଲା । ବିଜୁ ନାଏକ ଚଳି ପଡ଼ିଲେ । ଭୟଭୀତ ପ୍ରଜାମାନେ ନିକଟସ୍ଥ କୋଶଳା ଗ୍ରାମକୁ ପଳେଇ ଆସିଲେ । ହେଡ଼ପଣ୍ଡିତ କଲ୍ୟାଣ ସାହୁ ସ୍କୁଲ ବନ୍ଦକରି ସ୍କୁଲକୁ ଶରଣାର୍ଥୀ ଶିବିରରେ ପରିଣତ କରିଦେଲେ । ଶିକ୍ଷକ, ଛାତ୍ର, ଗ୍ରାମବାସୀ ଏମାନଙ୍କ ସେବା ସତ୍କାର କଲେ । ଦଣ୍ଡ ସ୍ୱରୂପ କଲ୍ୟାଣ ସାହୁଙ୍କର ସ୍ଥାନାନ୍ତର ହେଲା ।

ତାଳଚେରରେ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ବ୍ୟାପକ ଆନ୍ଦୋଳନ ଚାଲିଥାଏ । ୧୯୩୮ ସେପ୍ଟେମ୍ବରରେ ତାଳଚେର ପ୍ରଜାମଣ୍ଡଳ କୋଶଳାରେ ଗଠିତ ହେଲା । ଅତ୍ୟାଚାର ବଢ଼ି ଚାଲିଲା । ଗାନ୍ଧିଜୀ ନିର୍ଦ୍ଦେଶ ଦେଲେ 'ହିଜରାତ୍' କର ଅର୍ଥାତ୍ ଦେଶଛାଡ଼ି ନିରାପଦ ଅଂଚଳକୁ ପଳେଇ ଯାଅ । ଅନୁଗୁଳ ଖାସ ବ୍ରିଟିଶ ଅଂଚଳ, ତାଳଚେରର ସୀମା ସଂଲଗ୍ନ । ତାଳଚେରର ପ୍ରାୟ ୪୦ ହଜାର ପ୍ରଜା ଅନୁଗୁଳ ଭିତରକୁ ପଳେଇ ଆସିଲେ । କୋଶଳା, କମ୍ପସଲା, ନଡ଼ଡ଼ା, ପାଣିଓଲାରେ ପତ୍ରକୁଡ଼ିଆର ଶରଣାର୍ଥୀ ଶିବିର ମାନ ଗଢ଼ି ଉଠିଲା । କେବଳ କୋଶଳା କ୍ୟାମ୍ପରେ ପଚିଶ ହଜାରରୁ ଊର୍ଦ୍ଧ୍ୱ ଶରଣାର୍ଥୀ ଆଶ୍ରୟ ନେଲେ । ଗାନ୍ଧିଜୀ ମର୍ମାହତ । ତାଙ୍କ ସ୍ୱତନ୍ତ୍ର ପ୍ରତିନିଧି ମୀରାବେନ ଅନୁଗୁଳ ଆସିଲେ । ଶିବିରମାନ ପରିଦର୍ଶନ କଲେ । ସାର ଆଣ୍ଡ୍ରୁଜ, ଠକ୍କରବାପା, ବିଶ୍ୱନାଥ ଦାଶ, (ଓଡ଼ିଶାର ପ୍ରଧାନମନ୍ତ୍ରୀ) ହରେକୃଷ୍ଣ ମହତାବ, ମାଳତୀଦେବୀ, ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ ଆଦି ଉପସ୍ଥିତ ହେଲେ । ସାରା ବିଶ୍ୱ ବିସ୍ମିତ ହେଲା । ବ୍ରିଟିଶ ପାର୍ଲାମେଣ୍ଟରେ କମ୍ପନ । ବ୍ରିଟିଶ ସାଂସଦ ମିସ୍ ଆଗାଥା ହାରିସନ ଶିବିର ପରିଦର୍ଶନ କଲେ । ଦେଶ ବିଦେଶର ବହୁ ପତ୍ରକାର, ସମାଜସେବୀ, ସ୍ୱେଚ୍ଛାସେବୀ ଆସି ପହଞ୍ଚିଲେ । ବିଶ୍ୱଜନମତର ଚାପହେତୁ ବ୍ରିଟିଶ ସର୍କାର ତାଳଚେର ରାଜାଙ୍କୁ ବାଧ୍ୟକଲେ ପ୍ରଜାଙ୍କ ସହ ସନ୍ଧି କରିବାକୁ । ସନ୍ଧିହେଲା ପରେ ରାଜା ସନ୍ଧିକୁ ଉପେକ୍ଷା କଲେ ।

## ମାଳତୀ ଆଶ୍ରମ

୧୯୩୮ । ମାଳତୀଦେବୀ ନବ ବାବୁଙ୍କ ସହ କଟକ ଛାଡ଼ି ଅନୁଗୁଳରେ ଅବସ୍ଥାନ କଲେ । ଶରଣାର୍ଥୀମାନଙ୍କ ସେବା, ଗଡ଼ଜାତ ପ୍ରଜା ଆନ୍ଦୋଳନର ନିୟନ୍ତ୍ରଣ, ଅନୁଗୁଳର ସଂଗ୍ରାମକୁ ଦିଗ୍‌ଦର୍ଶନ ଦେଲେ । ପାଟଣାର ସଂଭ୍ରାନ୍ତ ପରିବାର, ବାରିଷ୍ଟର ପିତା, ମହୀୟସୀ ଜନନୀ, ଜଣେ ଭାଇ ଆୟକର କମିସନର, ଅନ୍ୟଭାଇ ଡ଼ାକ୍ତରୀ ନିର୍ଦ୍ଦେଶକ, ସର୍ବୋପରି କବିଗୁରୁଙ୍କ ମାନସୀକନ୍ୟା, ପ୍ରସିଦ୍ଧ ଚଉଧୁରୀ ପରିବାରର କୁଳବଧୂ ସର୍ବସ୍ୱ ତ୍ୟାଗ କରି ଗିରିଜାବରଙ୍କ ଝାଟିମାଟି ଘେରା ବଗିଚା ଘରେ ବାସ୍ କଲେ । ତାଙ୍କ ନେତୃତ୍ୱରେ ଅନୁଗୁଳରେ ବିପ୍ଳବର ବହ୍ନି ଶତଗୁଣ ପ୍ରଜ୍ଜ୍ୱଳିତ ହେଲା । ଅନୁଗୁଳର ଘରେ ଘରେ ସେ ଅତି ଆପଣାର ।

## ବ୍ୟକ୍ତିଗତ ସତ୍ୟାଗ୍ରହ - ୧୯୪୦

୧୯୩୯ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ । ବ୍ରିଟେନ ତା ସପକ୍ଷରେ ଯୁଦ୍ଧ କରିବାକୁ ଭାରତକୁ ଟାଣିନେଲା । ଜୋର ଜବରଦସ୍ତ ଧନ ଜନ, ଘୋଡ଼ା, ଓଟ, ହାତୀ, ଗାଡ଼ି ଆଦି ସଂଗ୍ରହ କଲା । ପ୍ରତିବାଦ କରି ସମସ୍ତ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ମହାତ୍ମାଗାନ୍ଧୀ ବ୍ୟକ୍ତି ସତ୍ୟାଗ୍ରହର ଆହ୍ୱାନ ଦେଲେ । କିଏ କେବେ କେଉଁଠି ସତ୍ୟାଗ୍ରହ କରିବ ମହାତ୍ମାଗାନ୍ଧୀ ନିଜେ ସ୍ଥିର କରୁଥିଲେ । ବାଗଡ଼ିଆରେ ନବବାବୁ ପ୍ରଥମେ ସତ୍ୟାଗ୍ରହ ଆରମ୍ଭକରି ଗିରଫ ହେଲେ । ପରାରେ ଭଗବାନ୍ ବେହେରା । ପୁଲିସ ଝିଅ ବୋହୂକୁ ଗିରଫ କଲା । ଦିବାକର ପ୍ରଧାନଙ୍କ ସାଇକେଲ ପଛରେ ଧାଇଁଲେ ମାଳତୀ ଦେବୀ । ଝିଅ ବୋହୂ ଛାଡ଼ ପାଇଲେ ।

ଏହି ସତ୍ୟାଗ୍ରହର ବାର୍ତ୍ତା ଥିଲା ''ଧନଜନ ଦେଇ ଏ ଯୁଦ୍ଧକୁ ସାହାଯ୍ୟ କରିବା ମହାପାପ ।'' ଏ ସତ୍ୟାଗ୍ରହରେ ବିଭିନ୍ନ ସ୍ଥାନରେ ଗିରଫ

ହେଲେ ହୃଷିକେଶ ତ୍ରିପାଠୀ, ବଳଭଦ୍ରମିଶ୍ର, ବୃନ୍ଦାବନ ସାହୁ, ରାଦଗ୍ରାହୀ ପ୍ରଧାନ, ଭଗବାନ ବେହେରା, ଦିବାକର ମିଶ୍ର, ରଘୁନନ୍ଦ, ବାଳକୃଷ୍ଣ ସେଠୀ ଅଚ୍ଛବାନନ୍ଦ ପ୍ରଧାନ, ଧୋବେଇ ସାହୁ, ଲୋକନାଥ ପ୍ରଧାନ ଆଦି । ଛୋଟ ଶିଶୁଥିବା ହେତୁ ମାଳତୀଦେବୀଙ୍କୁ ଗିରଫ କରାଗଲା ନାହିଁ । ୧୯୪୧ ରେ ବ୍ୟକ୍ତି ସତ୍ୟାଗ୍ରହ ବନ୍ଦ ହେଲା । ଏମାନେ ମୁକ୍ତ ହେଲେ ।

## ଅନ୍ତିମ ସଂଗ୍ରାମ : ଭାରତଛାଡ଼ ୧୯୪୨

ବ୍ରିଟିଶ ଶାସନ ପ୍ରତି ଗାନ୍ଧିଜୀଙ୍କର ଆଉ କ୍ଷୀଣତମ ଆସ୍ଥା ରହିଲା ନାହିଁ । ଗାନ୍ଧିଜୀ ଅନ୍ତିମ ମୀମାଂସକ ସଂଗ୍ରାମ ନିମିତ୍ତ ଆହ୍ୱାନ ଦେଲେ । ୧୯୪୨ ଅଗଷ୍ଟ ଆଠ ତାରିଖର ରାତ୍ରି । ବମ୍ବେରେ କଂଗ୍ରେସ କମିଟି ବୈଠକ । ସରକାରଙ୍କୁ ଅନ୍ତିମ ନିର୍ଦ୍ଦେଶ ଦିଆଯିବ - ଭାରତଛାଡ଼, Quit India : ଲୋକଙ୍କୁ ଶେଷ ଆହ୍ୱାନ - କର ବା ମର, Do or Die । ଗାନ୍ଧିଜୀ ବଡ଼ଲାଟଙ୍କୁ ସାକ୍ଷାତ କରିବେ । ଆଲୋଚନା ବିଫଳ ହେଲେ ଏ ସଂଗ୍ରାମ ଆରମ୍ଭ ହେବ । କେବେ ? ମହାତ୍ମା ସ୍ଥିର କରିବେ । ଗାନ୍ଧିଜୀ ବିଶ୍ରାମ କରିବାକୁ ଗଲେ । ସଦସ୍ୟମାନେ ନିଜ ନିଜ ରାଜ୍ୟକୁ ଫେରିଲେ । ସରକାର ଛାନିଆଁ । ଅର୍ଦ୍ଧରାତ୍ରରେ ବିଛଣାରୁ ଉଠେଇ ଗାନ୍ଧିଜୀଙ୍କୁ ପୁଲିସ ଗିରଫ କଲା । ରାସ୍ତା ଘାଟରୁ ନେତାମାନେ ଗିରଫ ହେଲେ । ଦେଶ ସାରା ବ୍ୟାପକ ଗିରଫଦାରୀ । ଜୟ ପ୍ରକାଶ, ଅରୁଣା ଆସଫଅଲ୍ଲୀ ଆଦି ଗୋପ୍ୟହେଲେ- ସଂଗ୍ରାମ ଚଳେଇଲେ । ଏଏ ହେଲା ଅଗଷ୍ଟ ବିପ୍ଳବ । ଓଡ଼ିଶାରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଗୁପ୍ତରେ ଏ ଆନ୍ଦୋଳନର ନେତୃତ୍ୱ ନେଲେ । ଦେଶ ନେତାଶୂନ୍ୟ । ତଥାପି ଆନ୍ଦୋଳନ ଦାବାଗ୍ନିପରି ଓଡ଼ିଶାରେ ବ୍ୟାପୀଗଲା । ଅନୁଗୁଳ ବାଦ ପଡ଼ିଲାନି । ପ୍ରଥମେ ଆରମ୍ଭ ହେଲା କୋଶଳାରେ ।

କୋଶଳାର ପ୍ରସିଦ୍ଧ ରାବ୍ରବ ଯାତ୍ରା । ରାଜ୍ୟ, ରାଜ୍ୟ ବାହାରର ସହସ୍ର ସହସ୍ର ଭକ୍ତ, ଦର୍ଶକ, ବ୍ୟବସାୟୀ ସମାବେଶ । ଦିବାକର ମିଶ୍ର ତ୍ରିରଙ୍ଗା ପତକା ଉଡ଼େଇ ମଂଚ ଉପରେ ଚଢ଼ିଲେ । ଓଜସ୍ୱିନୀ ଭାଷଣରେ ଅଗ୍ନିବର୍ଷଣ କଲେ । ଗିରଫ ହେଲେ । ଉଠିଲେ ଆନନ୍ଦଚନ୍ଦ୍ର ସାହୁ, ଗିରଫ ହେଲେ । ପରେ ପରେ ଅନ୍ୟମାନେ । ଉତ୍ୟକ୍ତ ଜନତା ଟେକାମାଡ଼ କରି ପୁଲିସ ହାତରୁ ସଂଗ୍ରାମୀମାନଙ୍କୁ ଛଡ଼େଇ ନେଲା । ଫରେଷ୍ଟ ବିଟ୍ ଘର ପୋଡ଼ିଦେଲା । ପୁଲିସ ଛତ୍ରଭଙ୍ଗଦେଲା । ପୁଲିସ ଅତ୍ୟାଚାର ଆଶଙ୍କାରେ ଗ୍ରାମବାସୀ ରାତାରାତ ଘରଦ୍ୱାର ଛାଡ଼ି ବଣ ଜଙ୍ଗଲକୁ ପଳେଇ ଗଲେ । ସଂଗ୍ରାମୀମାନେ ଫେରାର ହୋଇ ଅନ୍ୟତ୍ର ସଂଗ୍ରାମ କଲେ । ପୁଲିସ୍ ଅଚ ଫଉଜ ପହଞ୍ଚିଗଲେ । ଚାଲିଲା ମାଡ଼, ଲୁଣ୍ଠନ, ଧର୍ଷଣ, ଗିରଫଦାରୀ । ସନ୍ଧ୍ୟା ଆଇନ୍ । ଅସ୍ଥାୟୀ ଥାନା ଛମାସ ପାଇଁ ଗଠିତ ହେଲା । ଫଉଜ ଜଗି ରହିଲେ । ବହୁ ପ୍ରବୋଧନା ପରେ ସାତ ଆଠ ଦିନପରେ ପ୍ରଜାମାନେ ଗାଁକୁ ଫେରିଲେ । ସ୍କୁଲଘରେ ଥାନା ହେଉଥାଏ । ପ୍ରତିବାଦରେ କେହି ସ୍କୁଲ ଘର ପୋଡ଼ିଦେଲା । ଗାଁରେ ପିଟୁଣି ଟିକସ ବସିଲା । ଗ୍ରାମବାସୀଙ୍କୁ ରକ୍ଷା କରିବା ନିମିତ୍ତ ଗଣେଶ୍ୱର ସାହୁ (ହନୁମାନ) ନିଜେ ପୋଡ଼ିଥିବା କଥା କହି ୧୫ ବର୍ଷ କାରାଦଣ୍ଡ ପାଇଲେ । ଫେରାର ସଂଗ୍ରାମୀମାନେ ରାତିରେ ଟାକୁଣ୍ଡା ପାଳରେ ଏକତ୍ର ହେଲେ । ରାତି ରାତି ଚାଲିଲେ ଅନୁଗୁଳ ଅଭିମୁଖେ ଜଙ୍ଗଲ ଭିତରେ । ସର୍ବକନିଷ୍ଠ ଦିବାକର ପ୍ରଧାନ କ୍ଳାନ୍ତ ହୋଇ ବାଟରେ ଶୋଇଲେ । ବାଘ ଗର୍ଜନ । ସଂଗ୍ରାମୀମାନେ ବଡ଼କେରାଙ୍ଗ ଦେଇ ପହଞ୍ଚିଲେ ଅନୁଗୁଳରେ । ସେପ୍ଟେମ୍ବର ୧୫ ରେ ଅନୁଗୁଳର ଖାଦ୍ୟାସ୍ତ୍ର କଂଗ୍ରେସ ଆଶ୍ରମକୁ ଦଖଲ କରି ଗିରଫ ହେଲେ ।

କୋଶଳା ସଂଗ୍ରାମର ନେତୃତ୍ୱ ନେଇଥିଲେ ଗଣେଶ୍ୱର ସାହୁ ଓ ଦିବାକର ପ୍ରଧାନ । ଲିରାଙ୍ଗ ଗଦୀକେନ୍ଦ୍ରରେ ଥାଇ ଅନ୍ତର୍ଯ୍ୟାମୀ ପ୍ରଧାନ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ଯୋଗାଯୋଗ କରୁଥାନ୍ତି । ପରେ ସେ ରାସ୍ତାରୁ ଗିରଫ ହେଲେ । ସକାରେ ସମସ୍ତ କର୍ମୀ ୧୬ ବର୍ଷ ପର୍ଯ୍ୟନ୍ତ ଜେଲ ଭୋଗିଲେ । ୧୯୪୬ ରେ ଭାରତ ସ୍ୱାଧୀନ ହେବା ନିଶ୍ଚିତ ହେବାରୁ ଖଲାସ ହେଲେ । ୧୯୪୭ ରେ ଦେଶ ସ୍ୱାଧୀନ ହେଲା ।

## ସଂଗ୍ରାମ ସରିନାହିଁ

ଜେଲରୁ ଫେରିଲେ ମାଳତୀ ଦେବୀ । ସଂଗ୍ରାମୀମାନଙ୍କର ଅବହେଳିତ ସନ୍ତାନ ଆଦିବାସୀ ଶିଶୁମାନଙ୍କ ବିଷୟ ଚିନ୍ତା କଲେ । ନିଜ ଗହଣା ବିକି ଜାଗା କିଣିଲେ । 'ବାଜି' ଛାତ୍ରୀ ବାସ ପ୍ରତିଷ୍ଠା କଲେ । ପରେ ପରେ 'ନବ ଜୀବନ ମଣ୍ଡଳ' । ନବବାବୁ ଶେଷଶ୍ୱାସ ତ୍ୟାଗକଲେ । ମାଳତୀଦେବୀ ବୟାନବେ ବର୍ଷ ବୟସ, ଚୈତନ୍ୟ ସାମୟିକ ଅବଲୁପ୍ତ - ତଥାପି ସେ ସଂଗ୍ରାମରତ । ସଜ୍ଞା ଫେରିବାମାତ୍ରେ ଅନୁଗୁଳର ଦୁର୍ଦ୍ଦଶା, ଶିଶୁମାନଙ୍କ ଯତ୍ନ ଆଦି ବିଷୟରେ ଚିନ୍ତାଶୀଳ । ନିକଟରେ ଧ୍ରୁକୁଟୀ ଗ୍ରାମର ଅଗ୍ନି ବିପନ୍ନ ଲୋକଙ୍କୁ ଦେଖିବାକୁ ସେ ବ୍ୟଗ୍ର ହେଲେ ଧ୍ରୁକୁଟୀ ଯିବା ପାଇଁ । ସଂଗ୍ରାମ ସରିନାହିଁ । ଏକି ସଂଗ୍ରାମ ? ସେବା ସାମାଜିକ ନ୍ୟାୟ ପାଇଁ ସଂଗ୍ରାମ । ଅସରନ୍ତି ଏ ସଂଗ୍ରାମ ।

[illegible]
ଅନୁଗୁଳ

—0—

# କେନ୍ଦୁଝରରେ ଭୂୟାଁ ବିଦ୍ରୋହ

କେନ୍ଦୁଝର ରାଜା ବଳଭଦ୍ର ନାରାୟଣ ଭଞ୍ଜ ୧୭୯୨ ସାଲରେ ଗାଦି ଆରୋହଣ କଲେ । ତାଙ୍କ ରାଜତ୍ୱବେଳେ କେନ୍ଦୁଝରରେ କେତେକ ଅଶାନ୍ତି ରହିଥିଲା । ତା ହେଉଛି କେନ୍ଦୁଝରର ପଡ଼ୋଶୀ ମୟୂରଭଞ୍ଜ ମହାରାଜା ୧୭୯୬ ସାଲରେ ମୃତ୍ୟୁବରଣ କରିବାରୁ ପୁତ୍ର ଅଭାବରୁ ତାଙ୍କ ରାଣୀ ସୁମିତ୍ରାଦେବୀ ରାଜ୍ୟାଧିକାର ପାଇଲେ । କିନ୍ତୁ ମୟୂରଭଞ୍ଜ ସଙ୍ଗେ କେନ୍ଦୁଝରର ବଂଶଗତ ଏକତା ଓ ଭାତୃ ସମ୍ବନ୍ଧ ଥିବା ହେତୁ ଜନାର୍ଦ୍ଦନ ଭଞ୍ଜ ଦାବୀକଲେ ଯେ ତାଙ୍କ ଭ୍ରାତା ତ୍ରିବିକ୍ରମଭଞ୍ଜଙ୍କୁ ମୟୂରଭଞ୍ଜର ରାଜାରୂପେ ସ୍ୱୀକାର କରିବାକୁ ହେବ । କିନ୍ତୁ ରାଣୀ ସୁମିତ୍ରାଦେବୀ ଏଥିରେ ସ୍ୱୀକୃତ ନହୋଇ ତତ୍କାଳୀନ ଇଷ୍ଟଇଣ୍ଡିଆ କମ୍ପାନୀ ନିକଟରେ ଦାବୀକଲେ କି ସେ ନିଜେ ମୟୂରଭଞ୍ଜ ରାଜ୍ୟର ଶାସନ ଚଳାଇବାକୁ ଏକମାତ୍ର ଅଧିକାରିଣୀ । କମ୍ପାନୀ ସରକାର ସେତେବେଳେ ମୟୂରଭଞ୍ଜ ପରି ଗୋଟିଏ ବିଶାଳ ଓ ବଳିଷ୍ଠ ଦେଶୀୟ ରାଜ୍ୟକୁ ସନ୍ତୁଷ୍ଟ କରି ରଖିବା ଚେଷ୍ଟାରେ ରହିଥାନ୍ତି । କାରଣ ସେମାନେ ବଙ୍ଗଳାରୁ ଆକ୍ରମଣ ଚଳାଇ କିପରି ମରହଟ୍ଟାମାନଙ୍କ ହାତରୁ ଓଡ଼ିଶା ଅଧିକାର କରିବେ ସେହିଚେଷ୍ଟାରେ ରହିଥାନ୍ତି । ତେଣୁ ବିନା ଆପତ୍ତିରେ ସୁମିତ୍ରା ଦେବୀଙ୍କ ଦାବୀ ସେ ଗ୍ରହଣ କଲେ । କିନ୍ତୁ କେନ୍ଦୁଝରକୁ ମଧ୍ୟ ଅସନ୍ତୁଷ୍ଟ କରିବା ସାହସ ତାଙ୍କର ନଥିଲା । ତେଣୁ ସୁମିତ୍ରା ଦେବୀଙ୍କୁ ମନାଇ ନାବାଳକ ତ୍ରିବିକ୍ରମ ଭଞ୍ଜଙ୍କୁ ତାଙ୍କର ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାକୁ ସ୍ଥିର କରି ଉଭୟ ରାଜ୍ୟକୁ ସନ୍ତୁଷ୍ଟ କରିଥିଲେ ।

୧୮୦୫ ସାଲରେ ପାଲଲହଡ଼ା ରାଜ୍ୟଟି ଜନାର୍ଦ୍ଦନ ଭଞ୍ଜଙ୍କ ହାତକୁ ଆସିଗଲା । କାରଣ ତାଙ୍କ ରାଣୀ କୃଷ୍ଣପ୍ରିୟା ଦେବୀ ଥିଲେ ପାଲଲହଡ଼ାର ଭୂତପୂର୍ବ ରାଜା ମୁନିପାଳଙ୍କ କନ୍ୟା । ପୁତ୍ରହୀନ ଅବସ୍ଥାରେ ତାଙ୍କର ମୃତ୍ୟୁ ଘଟିଥିଲା । ତେଣୁ ୧୮୦୫ ସାଲରେ କମ୍ପାନୀ ସରକାର ପାଲଲହଡ଼ାକୁ ଜନାର୍ଦ୍ଦନଙ୍କ ହାତରେ ସମର୍ପଣ କଲେ । କିନ୍ତୁ ୧୮୨୫ରେ ପାଲଲହଡ଼ାର ରାଜସ୍ୱ ସ୍ୱତନ୍ତ୍ର ହୋଇଗଲା ।

ଏହାପରେ ୧୮୫୭ ମସିହାରେ ଭାରତର ସିପାହୀ ବିଦ୍ରୋହ ବେଳେ ଗଦାଧର ଭଞ୍ଜ କେନ୍ଦୁଝରର ରାଜାଥିଲେ । ସେତେବେଳେ ସିପାହୀ ବିଦ୍ରୋହ ଦମନରେ ସାହାଯ୍ୟ କରିଥିବାରୁ ତାଙ୍କ ପ୍ରତି ସରକାରଙ୍କର ବନ୍ଧୁତା ଦୃଢ଼ ହୋଇଥିଲା ।

ଗଦାଧର ଭଞ୍ଜଙ୍କର ଦୁଇ ରାଣୀଙ୍କ ମଧ୍ୟରୁ ଜ୍ୟେଷ୍ଠ ବିଷ୍ଣୁପ୍ରିୟା ଦେବୀଙ୍କର ପୁତ୍ର ସନ୍ତାନ ନଥିଲା । କିନ୍ତୁ ଦ୍ୱିତୀୟ ରାଣୀଙ୍କର ଧନୁର୍ଜୟଭଞ୍ଜ ନାମରେ ଗୋଟିଏ ପୁତ୍ର ଥିଲା । ଉଭୟ ରାଣୀଙ୍କ ମଧ୍ୟରେ କଳହଜାତ ହୋଇ ଗଦାଧର ଭଞ୍ଜଙ୍କର ମୃତ୍ୟୁ ପରେ ବିଷ୍ଣୁପ୍ରିୟା ଚେଷ୍ଟା କଲେ ଯେପରି ଦ୍ୱିତୀୟ ରାଣୀଙ୍କ ପୁତ୍ର ରାଜ୍ୟ ଅଧିକାର ପାଇବେ ନାହିଁ । କିନ୍ତୁ ରାଜା ଗଦାଧର ଭଞ୍ଜ ମୃତ୍ୟୁ ପୂର୍ବରୁ ଧନୁର୍ଜୟଙ୍କ ସପକ୍ଷରେ ଗୋଟିଏ ପତ୍ର ଲେଖି ଦେଇଥିଲେ । ବିଷ୍ଣୁପ୍ରିୟା ମୟୂରଭଞ୍ଜ ରାଜାଙ୍କର ପୌତ୍ର ବୃନ୍ଦାବନଭଞ୍ଜଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିବାରୁ ସେ ରାଜଗାଦିର ଅଧିକାରୀ ବୋଲି ସରକାରଙ୍କଠାରେ ଦାବୀ କଲେ । ତତ୍କାଳୀନ ଗଡ଼ଜାତ ମହଲର ନିର୍ଦ୍ଦେଶକ (Superintendent) ରେଭେନ୍‌ସା ସାହେବ ରାଣୀଙ୍କ ସେହି ଦାବୀ ଗ୍ରହଣ ନକରିବାରୁ ରାଣୀ ପ୍ରଥମେ କଲିକତା ହାଇକୋର୍ଟ ଓ ପରେ ପି.ସି. କାଉନ୍‌ସିଲ ରେ ମକଦ୍ଦମା କରି ହାରିବାରୁ ଧନୁର୍ଜୟ ଭଞ୍ଜ ହିଁ କେନ୍ଦୁଝରର ଉତ୍ତରାଧିକାରୀ ରୂପେ ସରକାରଙ୍କ ପକ୍ଷରୁ ଗୃହୀତ ହେଲେ । ସେତେବେଳେ ନାବାଳକ ଧନୁର୍ଜୟ କଟକରେ ଶିକ୍ଷାଲାଭ କରୁଥିଲେ । ୧୮୬୭ ସାଲରେ ତାଙ୍କର ନାବାଳକତ୍ୱ ଯିବାରୁ କେନ୍ଦୁଝର ସିଂହାସନ ରେ ତାଙ୍କ ଅଭିଷେକ କାର୍ଯ୍ୟ ସମ୍ପନ୍ନ ହେଲା । କିନ୍ତୁ ରାଣୀ ବିଷ୍ଣୁପ୍ରିୟା ପ୍ରତିଶୋଧ ନେବା ପାଇଁ ଗୁପ୍ତରେ ଭୂୟାଁ ପୀଢ଼ର ସର୍ଦ୍ଦାରଙ୍କୁ ଡକାଇ କହିଲେ, ''ତମେମାନେ ଥାଉ ବୃନ୍ଦାବନ ଭଞ୍ଜଙ୍କୁ କେନ୍ଦୁଝରର ରାଜାବୋଲି ସ୍ୱୀକାର କରିଥିଲ, ଏବେ ବିଦେଶର ଇଂରେଜ ସରକାର ମନାକରି ଦେଉଛି; ଏହା କିପରି କଥା ? ତୁମେ ସର୍ଦ୍ଦାର ହୋଇ ଏଥିରେ ନ୍ୟାୟ କର ।'' ଭୂୟାଁ ସର୍ଦ୍ଦାର ଆଦିବାସୀମାନଙ୍କର ଜଣେ ବଳିଷ୍ଠ ନେତା । ସେ ରାଜ୍ୟରେ ବିଦ୍ରୋହ ଆରମ୍ଭ କରିଦେଲେ । ୧୮୬୭ ଡିସେମ୍ବର ୫ ତାରିଖରେ ରେଭେନ୍‌ସା ନିଜେ କେନ୍ଦୁଝର କୁ ଯାଇ ଦୁଇରାଣୀଙ୍କ ମଧ୍ୟରେ ଥିବା କଳହ ସମାଧାନ କରିବାକୁ ଚେଷ୍ଟା କଲେ । ତାଙ୍କ ଚେଷ୍ଟାରେ ଧନୁର୍ଜୟ ଭଞ୍ଜଙ୍କୁ କେନ୍ଦୁଝରର ରାଜାରୂପେ ରାଣୀ ବିଷ୍ଣୁପ୍ରିୟା ଗ୍ରହଣ କଲେ । ଏହାପରେ ଦ୍ୱିତୀୟ ଥର ପାଇଁ ୧୮୬୮ ଫେବୃୟାରୀ ୧୩ ତାରିଖ ଦିନ ଧନୁର୍ଜୟଙ୍କ ଅଭିଷେକ ଉତ୍ସବ ସମାପନ ହେଲା । ଏଥିରେ ରାଣୀ ବିଷ୍ଣୁପ୍ରିୟା ଓ ଭୂୟାଁ ସର୍ଦ୍ଦାର ମଧ୍ୟ ଯୋଗଦେଇଥିଲେ । ଏହାର କିଛି ଦିନପରେ କେନ୍ଦୁଝର ରାଜାଙ୍କ ଦେୱାନ୍ ନନ୍ଦଧନ ଭୂୟାଁ ସର୍ଦ୍ଦାରଙ୍କ ବିରୁଦ୍ଧରେ ଚାପ ଦେବାରୁ ସର୍ଦ୍ଦାରଙ୍କ ମନରେ ତୀବ୍ର ପ୍ରତିକ୍ରିୟା ହେଲା । ସେ ୧୮୬୮ ରେ ଦ୍ୱିତୀୟ ଥର

ଭୂୟାଁପୀଡ଼ ଆଦିବାସୀଙ୍କୁ ନେଇ ରାଜାଙ୍କ ଶାସନ ବିରୋଧରେ ବିଦ୍ରୋହ କରେ । କେନ୍ଦୁଝର ସହରରେ ଆଦିବାସୀମାନଙ୍କ ଉପଦ୍ରବ ଉତ୍କଟ ରୂପ ଧାରଣ କଲା । ଦେୱାନଙ୍କୁ ସେମାନେ ହରଣ କରି ନେଇଗଲେ । ଇଂରେଜ ସରକାର କାଳବିଳମ୍ବ ନକରି କେନ୍ଦୁଝର ବିଦ୍ରୋହ ଦମନ କରିବାକୁ ଲାଗିଲେ । ସିଂହଭୂମି ଓ କଲିକତାରୁ ସୈନ୍ୟ ପଠାଗଲା । କର୍ଣ୍ଣେଲ୍ ଡ୍ରାଲ୍‌ଟନ୍ ଓ ଡ଼ଃ ହୟେସ୍‌ଙ୍କ ଅଧୀନରେ ଛୋଟନାଗପୁରରୁ ଏକ ବିରାଟ ସୈନ୍ୟବାହିନୀ ଉପସ୍ଥିତ ହେଲେ । ମାନ୍ଦ୍ରାଜର ଦେଶୀ ସିପାହୀଙ୍କ ସଙ୍ଗେ ମି: ରେଭେନ୍ସା ଆନନ୍ଦପୁରକୁ ଯାତ୍ରାକଲେ । ଏହି ସାମରିକ ବ୍ୟବସ୍ଥା ଫଳରେ ଭୂୟାଁ ମାନଙ୍କ ବିଦ୍ରୋହ ପ୍ରଶମିତ ହେଲା ଓ ଭୂୟାଁ ସର୍ଦ୍ଦାର ଆତ୍ମସମର୍ପଣ କଲେ । ରତ୍ନନାୟକ ନାମକ ଆଦିବାସୀ ନେତା ପାଲଲହଡ଼ାରେ ଧରାଗଲେ । ସେମାନଙ୍କର ତୁରନ୍ତ ବିଚାର ହୋଇ ଅତି ନିଷ୍ଠୁର ଦଣ୍ଡ ଦିଆଗଲା ।

ରାଣୀ ବିଷ୍ଣୁପ୍ରିୟାଙ୍କୁ କେନ୍ଦୁଝର ଛାଡ଼ି ଆଜୀବନ ପୁରୀରେ ରହିବାକୁ ବାଧ୍ୟ କରାଗଲା । ଏହାପରେ କେନ୍ଦୁଝର ରାଜାଙ୍କ ଦରବାର ପକ୍ଷରୁ ଆଦିବାସୀ ଭୂୟାଁଙ୍କ ଉପରେ ନିଷ୍ଠୁର ବ୍ୟବହାର ଲାଗି ରହିଲା । ସେମାନଙ୍କ ଠାରୁ ଅର୍ଥ ଶୋଷଣ ଏବଂ ବେଠିରେ ବାଧ୍ୟତାମୂଳକ କାମ ଆଦାୟ କରାଗଲା ।

ଭୂୟାଁମାନଙ୍କ ମଧ୍ୟରେ ଧରଣୀଧର ଥିଲେ ଭୂମିମାପ କରିବା ଅମିନ । ସେ କଟକ ସର୍ଭେସ୍କୁଲରେ ପଢ଼ିଥିବାରୁ ଓ ଶିକ୍ଷିତ ହୋଇଥିବାରୁ ତାଙ୍କ ଜାତିର ଦୁର୍ଦ୍ଦଶା ବୁଝିପାରି ସେଥିର ପ୍ରତିକାର ପାଇଁ ଚେଷ୍ଟା କରୁଥିଲେ । ତଥାପି ସେ କେନ୍ଦୁଝର ଦରବାର ପକ୍ଷରୁ ଜଣେ ସର୍ଭେ ଅମିନ କାମ୍‌ରେ ନିଯୁକ୍ତ ହୋଇଥିବାରୁ ଜାତିପାଇଁ କିଛି କରିପାରୁ ନଥିଲେ । ତାଙ୍କ ବ୍ୟବହାରରୁ ଦରବାର ପକ୍ଷରୁ ତାଙ୍କ କାର୍ଯ୍ୟକଳାପ ସନ୍ଦେହ ଚକ୍ଷୁରେ ଲକ୍ଷ୍ୟ କରାଯାଉ ଥିଲା । ସେତିକିବେଳେ ସିଂହଭୂମି ଓ କେଉଁଝର ସୀମା ନେଇ ବିବାଦ ଚାଲିଥାଏ । ସେ ସୁଯୋଗରେ ଦରବାର ପକ୍ଷରୁ ସର୍ଭେ ମାପଚୁପ୍ ବାହାନାରେ ଧରଣୀଧରଙ୍କୁ ସେଠାକୁ ପଠାଇ ତାଙ୍କ ଜାତିଭାଇଙ୍କ ଠାରୁ ତାଙ୍କୁ ଅଲଗା କରି ଦିଆଗଲା । ସେତେବେଳେ ଦରବାର ପକ୍ଷରୁ ଭୂୟାଁମାନଙ୍କୁ ଜୋର ଜବରଦସ୍ତି କରି ପାହାଡ଼ ଓ ବନଜଙ୍ଗଲ ଦେଇ କେନ୍ଦୁଝରଗଡ଼ ପର୍ଯ୍ୟନ୍ତ ଗୋଟିଏ ଦୂର ନଦୀରୁ କେନାଲ ଖୋଳିବା ବେଠି କାମରେ ଲଗାଇ ଦିଆଗଲା । ଯେଉଁମାନେ କାମରେ ଅବହେଳା କରୁଥିଲେ ସେମାନଙ୍କୁ ମାଡ଼ ଓ ଜେଲ ଦିଆଗଲା । ଏହା ଶୁଣି ଧରଣୀଧରଙ୍କର କ୍ରୋଧ ବୃଦ୍ଧି ପାଇଲା । ସେ ଦରବାର ଚାକିରୀରୁ ଇସ୍ତଫା ଦେଇ ରାଜାଙ୍କ ଅତ୍ୟାଚାରର ଉପଯୁକ୍ତ ଜବାବ ଦେବାକୁ ଭୂୟାଁମାନଙ୍କୁ ସଂଗଠିତ କରି ରାଜ୍ୟର ଶସ୍ୟଭଣ୍ଡାର ଓ ରାଜାଙ୍କର ଅସ୍ତ୍ରଶସ୍ତ୍ର ଲୁଟ କଲେ । କେନ୍ଦୁଝରରୁ ରାଜ ଦରବାରକୁ ମୂଳପୋଛ କରିବାକୁ ସେ ପଣ କରିଥିଲେ ।

ରାଜା ନିଜେ ଭୂୟାଁ ବିଦ୍ରୋହ ଶାନ୍ତ କରିବାକୁ ଘଟଗାଁ ଠାକୁ ଯାଉଥିବା ବେଳେ ୧୮୯୧, ମେ ୧୨ ତାରିଖ ଦିନ ବହୁ ସଂଖ୍ୟାରେ ଭୂୟାଁ କେନ୍ଦୁଝର ଗଡ଼ଭିତରେ ପଶି ରାଜ ପ୍ରାସାଦ ଉପରେ ଚଢ଼ାଉ କଲେ । କିନ୍ତୁ ପ୍ରବଳ ଭାବେ ବନ୍ଧୁକ ଚାଳନା ହେତୁ ସେମାନେ ହଟିଗଲେ । ଏ ଖବର ପାଇ ରାଜା ଆନନ୍ଦପୁରକୁ ଫେରିଆସିଲେ । ଯେଉଁ ସମୟର ଘଟଣା କୁହାଯାଉଛି, ସେତେବେଳେ ବ୍ୟାସକବି ଫକୀରମୋହନ କେନ୍ଦୁଝର ଦରବାରର ଆସିଷ୍ଟାଣ୍ଟ ଦେୱାନ କାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି । ଭୂୟାଁ ବିଦ୍ରୋହ ଶାନ୍ତ କରିବାକୁ ରାଜା ତାଙ୍କୁ ଆଦେଶ ଦେଲେ । ଫକୀରମୋହନ ଅଳ୍ପ ସୈନ୍ୟ ସଙ୍ଗେ ରାଇସୁଆଁକୁ ଯାତ୍ରାକଲେ । ଇତି ମଧ୍ୟରେ ଭୂୟାଁ ସର୍ଦ୍ଦାର ଓ ଅନ୍ୟାନ୍ୟ ଆଦିବାସୀମାନେ ତାଙ୍କ ଜାତିଭାଇ ଧରଣୀଧରଙ୍କୁ ସେମାନଙ୍କର ରାଜା ବୋଲି ସମ୍ମାନିତ କରିଥିଲେ । କେନ୍ଦୁଝରର ସିପାହୀମାନଙ୍କୁ ଦୂରରେ ଛାଡ଼ିଦେଇ ଫକୀରମୋହନ ଭୂୟାଁ ଶିବିରକୁ ଯାଇ ଚତୁରତା ସହିତ ଧରଣୀଧରଙ୍କର ବିଶ୍ୱାସ ଭାଜନ ହେଲେ ଏବଂ ତାଙ୍କ ଦଳର ମେନେଜର ରୂପେ ଅବସ୍ଥାନ କଲେ । ସେତେବେଳେ ଭୂୟାଁମାନେ ତାଙ୍କ ସର୍ଦ୍ଦାର ଧରଣୀଧରଙ୍କୁ ରାଜା କରି ଦେଇଥିବାରୁ ଫକୀରମୋହନଙ୍କ ପରି ଜଣେ ବୟସ୍କ ଶିକ୍ଷିତ ମେନେଜରଙ୍କର ଆବଶ୍ୟକତା ବୋଧ ହୋଇଥିଲା । ଦିନେ ଫକୀରମୋହନ ଧରଣୀଧରଙ୍କୁ କହିଲେ, "ମହାରାଜ ! ମୋର ପାନ ଖାଇବା ଅଭ୍ୟାସ ଅଛି । ଏଠାରେ ପାନ, ଗୁଆ କିଛି ନପାଇ ଭାରି ହଇରାଣ ହେଉଛି । ମୋ ନିଜର ଗୋଟିଏ ପାନ ବରଜ ଗଡ଼ରେ ଅଛି । ଆଦେଶ ହେଲେ କିଛି ପାନ ପାଇଁ ଚିଠିଲେଖିଲେ ମୋ ଚାକର ଭୋଳାନାଥ ପଠାଇ ଦେବ ।" ମେନେଜରଙ୍କ ଅନୁରୋଧ ମଞ୍ଜୁର ହେଲା । କିନ୍ତୁ ସେ ଯେଉଁ ଚିଠି ପଠାଇଲେ, ତାହା ନିଜେ ଧରଣୀଧର ପାଠ କରିବେ ବୋଲି କହିଲେ । ଗୁପ୍ତ ଅର୍ଥପୂର୍ଣ୍ଣ ଗୋଟିଏ ପତ୍ର ଫକୀର ମୋହନ ଲେଖି ଭୂୟାଁ ରାଜା ଧରଣୀଧରଙ୍କୁ ପଢ଼ିବାକୁ ଦେଲେ । ଧରଣୀଧର ତାହା ପଢ଼ିଲେ, କିନ୍ତୁ ସେଥିର ଗୁପ୍ତ ଅର୍ଥ ବୁଝିପାରିଲେ ନାହିଁ । ଯଥା ସମୟରେ ପତ୍ରଟି ଫକୀରମୋହନଙ୍କ ନିଜ ଚାକର ହାତରେ ଦେଇ ଗଡ଼କୁ ପଠାଗଲା । ପତ୍ରରେ ଲେଖା ଥିଲା :

ତା ୧୬।୫।୧୮୯୧<br>
ସ୍ଥାନ - ରାଇସୁଆଁ

ଭୋଳାନାଥ ଖମାରିଆ ଜାଣିବୁ ।

ମହାରାଣୀଙ୍କ ପୂଜା ପାଇଁ ଅତି ଜରୁରୀ ଶହେଟି ପାନ ଓ ଦୁଇଶହଟି ଗୁଆ ପଠାଇବୁ । ବିଳମ୍ବ ନକରି ଆମ୍ବବାଡ଼ିରେ ପାଣି ମଡ଼ାଇବୁ । ଆଉ ମଧ୍ୟ ଭଲଭ ଆଳୁ ଆଣ୍ଡରେ ବାଡ଼ ଦେବୁ । ତା ନହେଲେ ଆମ୍ବବାଡ଼ ଧ୍ୱଂସ ହୋଇଯିବ ।

॥ ଇତି ॥<br>
ଫକୀର ମୋହନ ସେନାପତି

ଯଥା ସମୟରେ ପତ୍ରଟି କେନ୍ଦୁଝର ଗଡ଼ରେ ପହଞ୍ଚିଲା । ରାଜା ଓ ଦରବାର ପଣ୍ଡିତମାନେ ପତ୍ରଟି ପଢ଼ି ସେଥିର ଗୁପ୍ତ ଅର୍ଥ ବୁଝିପାରିଲେ । ସେମାନେ ଜାଣିଲେ ଯେ, ପାନପତ୍ର ଓ ଗୁଆର ପ୍ରକୃତ ଅର୍ଥ ହେଉଛି ଯଥାକ୍ରମେ ସିପାହୀ, ବନ୍ଧୁକ ଓ ଗୁଳି । ଆମ୍ବକିଆରୀ ହେଉଛି କେନ୍ଦୁଝରର ରାଜଧାନୀ (ଗଡ଼), ଯେଉଁଠାକୁ ପ୍ରତିରୋଧ ନିମିତ୍ତ ଚକ୍ରଳ ଉପର ଦିଗରୁ ପଠାଯିବ ।

ଏହି ଗୁପ୍ତ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରାଗଲା । ସିପାହୀମାନେ ଚାଇଁବସା ଆଡୁ କେଉଁଝରକୁ ଚାଲିଲେ । ଏହାପରେ ଭୂୟାଁ ବିଦ୍ରୋହ ଆନନ୍ଦପୁର ଆଡୁ ଦମନ କରାଯାଇଥିଲା । ପଦ୍ମାମୋହନଙ୍କ ଉପଦେଶ ଅନୁସାରେ ଧରଣୀଧର ମିଲିଟାରୀ ଅଫିସରଙ୍କୁ ସାକ୍ଷାତ୍ କରିବାରୁ ତାଙ୍କୁ ବନ୍ଦୀକରି କଟକ ଜେଲକୁ ପଠାଗଲା । ଗଡ଼ଜାତ ମହଲର ସୁପରିଣ୍ଟେଣ୍ଡେଣ୍ଟ ଭୂୟାଁ ବିଦ୍ରୋହୀମାନଙ୍କର ବିଚାର କରି ତାଙ୍କ ପୂର୍ବବର୍ତ୍ତୀ ଶାସକଙ୍କ ପରି ନିଷ୍ଠୁର ଦଣ୍ଡ ନଦେଇ ସେମାନଙ୍କ ଅଜ୍ଞତା ଓ ନିରୀହତା ଦୃଷ୍ଟିରୁ କୋହଳ ବ୍ୟବସ୍ଥା କରିଥିଲେ । ଧରଣୀଧରଙ୍କୁ ୫ ବର୍ଷ ଜେଲଦଣ୍ଡ ଦିଆଗଲା । ଟେଯନବି ସାହେବ କେନ୍ଦୁଝର ରାଜାଙ୍କ ଦାୟିତ୍ୱହୀନ ଓ ନିଷ୍ଠୁର ଶାସନର ନିନ୍ଦାକରି ରାୟ ଦେଇଥିଲେ । ଏହାପରେ ମୟୂରଭଞ୍ଜର ମେନେଜର ମି.ୱିଲି ସାହେବଙ୍କୁ କିଛି କାଳ ପାଇଁ କେନ୍ଦୁଝରର ଶାସନ କାର୍ଯ୍ୟରେ ନିଯୁକ୍ତ କରାଯାଇଥିଲା । ବଙ୍ଗର ଛୋଟଲାଟ (Lieutenant Governer) ଙ୍କ ଠାରେ ଏପରି ବ୍ୟବସ୍ଥା ବିରୁଦ୍ଧରେ ଦରଖାସ୍ତ ହେବାରୁ ଗଭର୍ଣ୍ଣର ତାଙ୍କ ଉଦ୍ରଖ ଆଗମନ ବେଳେ ରାଜା ଓ ଭୂୟାଁ ସର୍ଦ୍ଦାର ଉଭୟଙ୍କୁ ଦେଖାଦେଲେ । ରାଜାଙ୍କ ସପକ୍ଷରେ ବାରିଷ୍ଟର ମଧୁସୂଦନ ଦାସ ଯୁକ୍ତି କରିବା ଫଳରେ ରାଜାଙ୍କୁ ତାଙ୍କ ଗାଦୀରେ ବସିବା ଅଧିକାର ଦିଆଗଲା । କିନ୍ତୁ କେନ୍ଦୁଝରରେ ଶାନ୍ତିଶୃଙ୍ଖଳା ରକ୍ଷାକରିବା ସକାଶେ ଜଣେ ଦେଶୀୟ ଅଫିସରଙ୍କୁ ସର୍କାରଙ୍କ ଦ୍ୱାରା ନିଯୁକ୍ତ କରାଗଲା । ଏଥିରେ ନନ୍ଦକିଶୋର ଦାସ ପ୍ରଥମେ ନିଯୁକ୍ତ ହେଲେ । ତାଙ୍କ ପରେ ମି:ୱିଲି: ସାହେବ ସେହି କାମ ପାଇଁ ନିଯୁକ୍ତ ହେଲେ ।

କେନ୍ଦୁଝରରେ ଆଦିବାସୀ ଭୂୟାଁମାନେ ଯେଉଁ ବିଦ୍ରୋହ କରି ନିଜର ସ୍ୱାଧୀନତା ପାଇଁ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଥିଲେ, ତାହା ନାନା କୌଶଳ ଓ ବଳ ପ୍ରୟୋଗ ଦ୍ୱାରା ଦବାଇ ଦିଆଯାଇଥିଲା ସତ୍ୟ, କିନ୍ତୁ ଓଡ଼ିଶାରେ ଯେଉଁସବୁ ଆଦିବାସୀ ଅଞ୍ଚଳରେ ଶାସନ ବିରୁଦ୍ଧରେ ବିଦ୍ରୋହ ହୋଇଛି, ସେଥିମଧ୍ୟରେ ଭୂୟାଁମାନଙ୍କ ସ୍ୱାଧୀନତା ସଂଗ୍ରାମକୁ ଉପେକ୍ଷାକରି ପାରିବା ନାହିଁ ।

ଓଡ଼ିଶାର ଅନ୍ୟାନ୍ୟ ଗଡ଼ଜାତ ପରି ୧୯୩୮ ରେ କେନ୍ଦୁଝରରେ ମଧ୍ୟ ପ୍ରଜାଆନ୍ଦୋଳନର ସୂତ୍ରପାତ ହୋଇଥିଲା । କିନ୍ତୁ ତାହା ନିଷ୍କ୍ରିୟ ହୋଇ ରହିଲା । କାରଣ ଏ ଦିଗରେ ନେତାମାନେ କିଛି କରିବା ପୂର୍ବରୁ ସେମାନେ ରାଜାଙ୍କ ଦ୍ୱାରା ଜେଲ ବରଣ କରିଥିଲେ । ତା ଛଡ଼ା ତତ୍କାଳୀନ ଶାସକ ଲୋକମାନଙ୍କ ପ୍ରତି ସହାନୁଭୂତିଶୀଳ ଏବଂ କେନ୍ଦୁଝରର ସମୂହ ଉନ୍ନତି କାର୍ଯ୍ୟରେ ବ୍ୟାପୃତ ଥିବାରୁ ପ୍ରଜା ଆନ୍ଦୋଳନର ବିଶେଷ ଆବଶ୍ୟକତା ପଡ଼ିନଥିଲା ।

—0—

ଆମେ ନାରୀଗଣ କୋଣରୁ ବାହାରି
ଧରିବୁଁ ଅସହଯୋଗ ତରବାରୀ ।
ଶାନ୍ତି ସତ୍ୟାଗ୍ରହ ମହାରଣସ୍ଥଳେ
ଶୋଭାଯାତ୍ରା କରି ଯିବୁଁ ଦଳେଦଳେ ।
ଆମେ ଭାରତର ଶକତି, ସଂହତି,
ତିଳେ ଭୀତି ଚିତ୍ତେ ନାହିଁ ବୈରୀ ପ୍ରତି ।
ଦେଇ ସେ ଆମକୁ ଧରି କାରାଦଣ୍ଡ,
କରୁ ସୁକୋମଳ ଦେହ ଖଣ୍ଡ ଖଣ୍ଡ
ଟାଙ୍ଗୁଥାଉ ଫାଶିଖୁଣ୍ଟେ ଆମ ମୁଣ୍ଡ,
ଆମେ ଯେ ନ ଡରୁଁ ଚିତା ଅଗ୍ନିକୁଣ୍ଡ ।
ଉଠିବୁଁ ଗୋ ଚଣ୍ଡୀ ଚାମୁଣ୍ଡା, ପ୍ରଚଣ୍ଡ,
ବୈରୀଶକ୍ତି ନିଶ୍ଚେ ହେବ ଲଣ୍ଡ ଭଣ୍ଡ ।
ହେ ପୁରୁଷେ ଉଠ ପାର୍ଥ, ପୃଥ୍ୱୀରାଜ,
ଭୀମ, ରାମ, କୃଷ୍ଣ ସାଜ ସାଜ ସାଜ ।
ବାନ୍ଧିଦେବୁଁ ଶିରେ ରକ୍ତ ଶିରତାଜ
ପିନ୍ଧାଇବୁ ପୁତ୍ର ହାତେ ରଣସାଜ ।
ଭାରତର ନାରୀ ନୋହୁଁ ଆମେ ହୀନା,
ଷୋଳକୋଟି ଆମେ ନୋହୁଁ ଅତି କ୍ଷୀଣା ।
ଆମ ମାଆ ଥିଲେ ଲକ୍ଷ୍ମୀ, ଦୁର୍ଗାବତୀ,
ଆମେ କର୍ମଦେବୀ ପଦ୍ମିନୀ ସନ୍ତତି
ସାଧନ ଆମର ଭାରତ ଉଦ୍ଧାର,
ମହାଶକ୍ତି ଅସ୍ତ୍ରେ ମ୍ଳେଚ୍ଛର ସଂହାର ।
ପ୍ରଭୁ ଜଗନ୍ନାଥ ସହାୟ ତୁମର,
ମା ଭୈଃ'' ନାଦେ ହୁଅ ଅଗ୍ରସର ।
ଘଂଟ ଘୋଡ଼ାଇଣ ରଖିବେ ଶ୍ରୀହରି,
ଜୟ ସୁନିଶ୍ଚିତ, ନାଶ ଯିବ ଅରି
ଜୟ ଜଗନ୍ନାଥ ଉଚ୍ଚେ ଦେଇ ଡ଼ାକ
ଆସ ଭାରତର ବୀର ପୁତ୍ରଯାକ ।
ଆଜି ରଣକ୍ଷେତ୍ରେ ମହା ସମ୍ମିଳନ
କର ବୀର ମୃତ୍ୟୁ ସ୍ୱାଧୀନତା ଧନ,
ସ୍ୱାଧୀନ ଭାରତ ନୀଳାମ୍ବର ତଳେ
ସ୍ୱାଧୀନ ଜୀବନଯାତ୍ରା କୁତୁହଳେ ।
ସ୍ୱରାଜ୍ୟ ଆମର ଜନ୍ମ ଅଧିକାର,
କାମ୍ୟ ସ୍ୱାଧୀନତା ଧ୍ୟେୟ ଶ୍ରେଷ୍ଠ ସାର ।
ସେହି ଅଧିକାର ଲାଭ ହେତୁ ଭାଇ,
ଚାଲ ଚାଲ ବୀରେ ଆଗକୁ ଅନାଇ ।
ସାବରମତିର ସ୍ୱରାଜ୍ୟ ସୈନିକ,
ଉଠ ଭାରତର ଯୁବକ ନିର୍ଭିକ ।
ଉଠ ଭାରତର ବୀରପୁତ୍ର ଯାକ,
ସେନାପତି ଆଜି ଦେଇଛନ୍ତି ଡାକ ।

**କୁନ୍ତଳା କୁମାରୀ ସାବତ**

# ସ୍ୱାଧୀନତା ସଂଗ୍ରାମରେ ସମ୍ବଲପୁରର ଅବଦାନ

ସ୍ୱାଧୀନତା ଆନ୍ଦୋଳନରେ ସମ୍ବଲପୁର ଜିଲ୍ଲା ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାଭଳି ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

୧୮୫୭ ରୁ ୧୮୬୪ ମସିହା ପର୍ଯ୍ୟନ୍ତ ସମ୍ବଲପୁରରେ ବ୍ରିଟିଶ ଶାସନ ବିରୁଦ୍ଧରେ ବିପ୍ଳବର ବହ୍ନି ଜଳାଇ ରଖିଥିବା ଯୋଗୁଁ ବୀର ସୁରେନ୍ଦ୍ର ସାଏ ଚିରସ୍ମରଣୀୟ ହୋଇ ରହିବେ । ୧୮୫୮ ମସିହା ସୁଦ୍ଧା ଭାରତବର୍ଷର ଅନ୍ୟ ସବୁ ସ୍ଥାନରେ ବିପ୍ଳବର ବହ୍ନି ନିର୍ବାପିତ ହୋଇଥିଲା, ମାତ୍ର ସମ୍ବଲପୁରରେ ସୁରେନ୍ଦ୍ର ସାଏ ଓ ତାଙ୍କର ସହକର୍ମୀଗଣ ବ୍ରିଟିଶ ଶାସନ ବିରୁଦ୍ଧରେ ଦୀର୍ଘ ସାତବର୍ଷକାଳ ଗରିଲା ଯୁଦ୍ଧ ଚଳାଇ ରଖିଥିଲେ ।

୧୯୨୧ ମସିହାରେ ଗାନ୍ଧୀଙ୍କ ନେତୃତ୍ୱରେ ଯେତେବେଳେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା, ସେତେବେଳେ ସେଥିରେ ସମ୍ବଲପୁର ଜିଲ୍ଲା ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ସମ୍ବଲପୁରର ଭଗୀରଥ ମିଶ୍ର ଏବଂ ତାଙ୍କର ସାଥୀମାନେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବା ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଅନୁରୋଧ କଲେ ଯେ ସେ ସମ୍ବଲପୁର ଆସି ଏକ ଜାତୀୟ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହୁଅନ୍ତୁ । ପଣ୍ଡିତ ନୀଳକଣ୍ଠ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଚାକିରି ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ଛାତ୍ରମାନଙ୍କୁ ସରକାରୀ ସ୍କୁଲ, କଲେଜ ବର୍ଜନ କରିବାକୁ ଓ ଓକିଲମାନଙ୍କୁ କୋର୍ଟ କଚେରୀ ବର୍ଜନ କରିବାକୁ ମହାତ୍ମା ଗାନ୍ଧୀ ଡ଼ାକରା ଦେଇଥାନ୍ତି । ପଣ୍ଡିତ ନୀଳକଣ୍ଠ ସମ୍ବଲପୁର ଆସିଲା ପରେ ଚନ୍ଦ୍ରଶେଖର ବେହେରାଙ୍କ ନେତୃତ୍ୱରେ ଜାତୀୟ ବିଦ୍ୟାଳୟ ସମ୍ବଲପୁର ଟ୍ରେବର ବ୍ଲକରେ ଆରମ୍ଭ ହେଲା, ଯେଉଁଠାରେ ଲେଡ଼ି ଲୁଇସ୍ ଉଚ୍ଚ ବାଳିକା ବିଦ୍ୟାଳୟ ଅଛି, ସେତେବେଳେ ସେଠାରେ ସରକାରୀ ଜିଲ୍ଲା ସ୍କୁଲ ଥିଲା । ସରକାରୀ ସ୍କୁଲରୁ ବହୁ ଛାତ୍ର ଚାଲି ଆସି ଜାତୀୟ ବିଦ୍ୟାଳୟରେ ଯୋଗଦେଲେ । ଜାନୁଆରୀ ପ୍ରଥମ ସପ୍ତାହରୁ ସମ୍ବଲପୁର ଜାତୀୟ ବିଦ୍ୟାଳୟରେ ପଢ଼ାପଢ଼ି ଆରମ୍ଭ ହେଲା ।

ଜାତୀୟ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷା ମଧ୍ୟ ଦିଆଯାଉଥିଲା । ଅନ୍ୟାନ୍ୟ ପାଠ୍ୟକ୍ରମ ସହିତ ସୂତାକଟା, ଲୁଗାବୁଣା ଓ ବଢ଼େଇର କାମ ମଧ୍ୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଚନ୍ଦ୍ରଶେଖର ବେହେରାଙ୍କ ଜାମାତା ଗଣେଶ ପ୍ରସାଦ ପାଢ଼ୀ ପିଲାମାନଙ୍କୁ ଲୁଗାବୁଣା କାମ ଶିଖାଉଥିଲେ ।

୧୯୨୧ ପୂର୍ବରୁ ମଧ୍ୟ ଜାଲିଓ୍ୱାନାବାଲା ହତ୍ୟାକାଣ୍ଡ ପରେ ମହାତ୍ମା ଗାନ୍ଧୀଙ୍କ ଡ଼ାକରାରେ ଯେଉଁ ହରତାଳ, ସଭା ସମିତି ଓ ଏପ୍ରିଲ ମାସରେ ଜାତୀୟ ସପ୍ତାହ ପାଳନ କରାଯାଉଥିଲା, ସେଥିରେ ସମ୍ବଲପୁରର ଜନଜାଗରଣ ଓଡ଼ିଶା ବାହାରେ କଲିକତା ଆଦି ଅଞ୍ଚଳରେ ମଧ୍ୟ ପ୍ରଶଂସିତ ହୋଇଥିଲା ।

ଜାତୀୟ ବିଦ୍ୟାଳୟରେ ପିଲାମାନେ ସୂତାକାଟି ଖଦୀ ଲୁଗା ବୁଣୁଥିଲେ । ସେହି ସବୁ ଲୁଗା ରବିବାର ଓ ଛୁଟି ଦିନମାନଙ୍କରେ ସହରର ସଡ଼କମାନଙ୍କରେ ଛାତ୍ରମାନେ ବୁଲି ବୁଲି ବିକ୍ରି କରୁଥିଲେ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ଏ ଦେଶକୁ ବିଲାତରୁ ବହୁତ ଲୁଗା-ଏପରିକି ଧୋତି ଓ ଶାଢ଼ୀ ମଧ୍ୟ ଆସୁଥିଲା । ଅସହଯୋଗ ଆନ୍ଦୋଳନର ଏକ କାର୍ଯ୍ୟକ୍ରମ ରୂପେ ବିଦେଶୀ ଦ୍ରବ୍ୟ ବର୍ଜନ ଅନ୍ୟତମ ଥିଲା । ଏହି ସମୟରେ ଅସହଯୋଗ ଆନ୍ଦୋଳନର ସଭା ସହିତ ବିଲାତି ଲୁଗା ଏକତ୍ର କରି ସଭା ପାଖରେ ପୋଡ଼ାଇବା ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା ।

ଓକିଲମାନଙ୍କର ଅଦାଲତ ବର୍ଜନ ମଧ୍ୟ ସମ୍ବଲପୁରରେ ଅନେକାଂଶରେ ସଫଳ ହୋଇଥିଲା । ଏଥିରେ ନେତୃତ୍ୱ ନେଇଥିଲେ ଦେଶପ୍ରେମୀ ଚନ୍ଦ୍ରଶେଖର ବେହେରା । ବୋଧରାମ ଦୁବେ, ଅଚ୍ୟୁତାନନ୍ଦ ପୁରୋହିତ, ଭଗୀରଥ ମିଶ୍ର ପ୍ରମୁଖ ଯୁବକ ଓକିଲମାନେ ଓକିଲାତି ଛାଡ଼ି ଅସହଯୋଗ ବାର୍ତ୍ତା ପ୍ରଚାର କରୁଥିଲେ । ଭଗୀରଥ ମିଶ୍ର 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା ଅସହଯୋଗ ଆନ୍ଦୋଳନର ପ୍ରଚାର ପାଇଁ ସମ୍ବଲପୁରରୁ ପ୍ରକାଶ କଲେ । ଅଚ୍ୟୁତାନନ୍ଦ ପୁରୋହିତ 'ଗାନ୍ଧୀ ଭାଗବତ' ନାମକ ଏକ ପୁସ୍ତକ ନବାକ୍ଷରୀ ଛନ୍ଦରେ ପରେ ପ୍ରକାଶ କଲେ । ବୋଧରାମ ଦୁବେ ୧୯୩୭ ମସିହାରେ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳରେ ଶିକ୍ଷାମନ୍ତ୍ରୀ ହେଲେ ।

ଅସହଯୋଗ ଆନ୍ଦୋଳନରେ ସମ୍ବଲପୁର ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଉଲ୍ଲେଖଯୋଗ୍ୟ ଜନଜାଗରଣ ଦେଖାଗଲା । ଡ଼ାଲପଟିଆର ଚିନ୍ତାମଣି ପୂଜାରୀ, ଝରସୁଗୁଡ଼ାର ମହାବୀର ସିଂହ, ବରପାଲିର ଭାଗୀରଥି ପଟ୍ଟନାୟକ, ମାନପୁରର ଘନଶ୍ୟାମ ପାଣିଗ୍ରାହୀ ଓ ଗଣନାଥ ପାଣିଗ୍ରାହୀ, ପାଣିପୋଲର ଯଶୋବନ୍ତ ଭୋଇ ଆଦି ବିଶେଷ

ଉତ୍ସାହପ୍ରଦ ନେତୃତ୍ୱ ନେଇଥିଲେ । ସମ୍ବଲପୁରରେ ଯୁବକମାନଙ୍କ ମଧ୍ୟରେ ଲକ୍ଷ୍ମୀନାରାୟଣ ମିଶ୍ର, ନୃସିଂହ ଗୁରୁ, ବେନିମାଧବ ସୁପକାରଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

ସମ୍ବଲପୁରରେ ଖଦୀ ଆନ୍ଦୋଳନ ସଫଳ ହେଲା । କାରଣ ୧୯୨୦ ପୂର୍ବରୁ ମଧ୍ୟ ସମ୍ବଲପୁରରେ ହସ୍ତତନ୍ତ ବୟନଶିଳ୍ପର ନାମ ଥିଲା । ସମ୍ବଲପୁରୀ ଶାଢ଼ୀ ଓ ସମ୍ବଲପୁରୀ ଗାମୁଛା ବିଶେଷ ଭାବେ ଆଦୃତ ହେଉଥିଲା । ସମ୍ବଲପୁରରେ ସ୍ତ୍ରୀ ଲୋକମାନେ କେବଳ ସମ୍ବଲପୁରୀ ଶାଢ଼ୀ ଛଡ଼ା ଅନ୍ୟ କୌଣସି ବସ୍ତ୍ର ବ୍ୟବହାର କରୁନଥିଲେ । ମାତ୍ର ହସ୍ତତନ୍ତ ବସ୍ତ୍ର ବ୍ୟବସାୟ କେବଳ ଭୁଲିଆ, କୋଷ୍ଟା ଓ ଗଣ୍ଡା ଜାତିର ଲୋକମାନଙ୍କର ବ୍ୟକ୍ତିଗତ ବୃତ୍ତି ଥିଲା । ଏହି ଶିଳ୍ପକୁ ସଙ୍ଗଠିତ କରିବା ବିଶେଷ ଦରକାର ଥିଲା ।

ସ୍ୱର୍ଗତଃ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ସେହି ଦାୟିତ୍ୱ ଗ୍ରହଣ କଲେ । ପୂର୍ବେ ସମ୍ବଲପୁରୀ ଶାଢ଼ୀର ରଙ୍ଗ ଅନେକ ଥର କାଚିଲା ପରେ ଫିକା ପଡ଼ି ଯାଉଥିଲା । କିନ୍ତୁ କୃତାର୍ଥ ଆଚାର୍ଯ୍ୟ ପ୍ରଥମେ ସୂତା ଚିରସ୍ଥାୟୀ ରଙ୍ଗ କରିବାର କୌଶଳ ପ୍ରଚଳନ କଲେ । ସେ ବରଗଡ଼ଠାରେ ସମ୍ବଲପୁରୀ ବସ୍ତ୍ରାଳୟ ନାମକ ଏକ ସମବାୟ ଅନୁଷ୍ଠାନ ସ୍ଥାପନ କଲେ । ଏହା ଫଳରେ ବୁଣାକାରମାନଙ୍କୁ ଆଉ ଘର ଘର ବୁଲି ଶାଢ଼ୀ ଗାମୁଛା ବିକିବା ଦରକାର ପଡ଼ିଲା ନାହିଁ । ସେମାନେ ଅଧିକ ସମୟ ଲୁଗାବୁଣାରେ ଅତିବାହିତ କଲେ ।

୧୯୨୨ ମସିହାରେ ଚୌରୀଚୌରା କାଣ୍ଡ ପରେ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କଲେ । ଏହାଫଳରେ ବହୁ ସ୍ଥାନରେ ନୈରାଶ୍ୟ ଦେଖାଗଲା । ସମ୍ବଲପୁରର ଜାତୀୟ ବିଦ୍ୟାଳୟ ଭାଙ୍ଗିଗଲା । ଛାତ୍ରମାନେ ପୁଣି ଜିଲ୍ଲା ସ୍କୁଲରେ ଯୋଗଦେଲେ । ମୋତିଲାଲ ନେହେରୁ, ଚିତ୍ତରଞ୍ଜନ ଦାସ ଆଦିଙ୍କ ନେତୃତ୍ୱରେ ଯେଉଁ ସ୍ୱରାଜ ପାର୍ଟି ଗଢ଼ାଯାଇ ବିଧାନ ପରିଷଦ ପାଇଁ ନିର୍ବାଚନ କରିବାର କାର୍ଯ୍ୟକ୍ରମ ହେଲା, ସେଥିରେ ସମ୍ବଲପୁର କୌଣସି ଭୂମିକା ଗ୍ରହଣ କଲା ନାହିଁ । ଚନ୍ଦ୍ରଶେଖର ବେହେରା ବହୁ ବର୍ଷ ଧରି ସମ୍ବଲପୁର ମ୍ୟୁନିସିପାଲଟିର ଚେୟାରମ୍ୟାନ କାର୍ଯ୍ୟ କଲେ । ମାତ୍ର ବିହାର-ଓଡ଼ିଶାର କାଉନ୍‌ସିଲକୁ ନିର୍ବାଚିତ ହେଲେ ରାମନାରାୟଣ ମିଶ୍ର । ସେ ଯୁଗରେ କେବଳ ବଡ଼ ଚାଷୀ ଓ ପାଠୁଆମାନଙ୍କର ଭୋଟଦାନର ଅଧିକାର ଥିଲା । ବିହାର-ଓଡ଼ିଶା କାଉନ୍‌ସିଲରେ କଂଗ୍ରେସ ଲୋକଙ୍କର ସଂଖ୍ୟା ଅଳ୍ପ ଥିଲା । ନିର୍ବାଚିତ ସଭ୍ୟ ସଂଖ୍ୟା ମଧ୍ୟ ଉଲ୍ଲେଖଯୋଗ୍ୟ ନଥିଲା ।

୧୯୨୮ ମସିହାରେ ମହାତ୍ମା ଗାନ୍ଧୀ ସସ୍ତ୍ରୀକ ସମ୍ବଲପୁରକୁ ପ୍ରଥମ ଥର ପାଇଁ ଆସିଲେ । ସେ ଚନ୍ଦ୍ରଶେଖର ବେହେରାଙ୍କ ଘରେ ରହିଥିଲେ । ତାଙ୍କର ଆଗମନ ସମୟରେ ବିଶେଷ ଜନସମାଗମ ହୋଇଥିଲା । ମହାନଦୀ ବାଲିରେ ଏକ ବିରାଟ ସଭାରେ ସେ ଭାଷଣ ଦେଇଥିଲେ । ସମ୍ବଲପୁର ଫେରି ସେ କଲିକତା କଂଗ୍ରେସରେ ଯୋଗଦେଲେ ।

ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନ ସମୟରେ ପଣ୍ଡିତ ଗୋପବନ୍ଧୁ ଦାସ ଅନେକଥର ସମ୍ବଲପୁର ଆସିଥିଲେ । ବାଲିବନ୍ଧା ଘାଟଠାରେ ସେ ଅନେକ ସଭାରେ ବକ୍ତୃତା ଦେଇଛନ୍ତି । ତାଙ୍କର ବକ୍ତୃତାର ସାରମର୍ମ ଜାତୀୟ ବିଦ୍ୟାଳୟର ଛାତ୍ରମାନେ ଟିପି ରଖୁଥିଲେ । ପଣ୍ଡିତ ଗୋପବନ୍ଧୁଙ୍କର ବକ୍ତୃତା ଶୈଳୀ ଥିଲା ଅନନ୍ୟ ସାଧାରଣ । ସେ ଶ୍ରୋତାମାନଙ୍କୁ ଉଦ୍ଧାସମୟ ଭାଷଣରେ କନ୍ଦାଇ ପାରୁଥିଲେ, ହସାଇ ପାରୁଥିଲେ ।

ଅସହଯୋଗ ଆନ୍ଦୋଳନ ଫଳରେ ବହୁ ବିଶିଷ୍ଟ ବ୍ୟକ୍ତି କାରାବରଣ କଲେ । ପୂର୍ବରୁ ବିଶେଷତଃ ଅପରାଧୀମାନେ ଜେଲ ଯାଉଥିବାରୁ ଜେଲଦଣ୍ଡ ଜୀବନର ଏକ କଳଙ୍କ ବୋଲି ବିବେଚିତ ହେଉଥିଲା । ସମ୍ଭ୍ରାନ୍ତ କୁଳର ଲୋକେ ଜେଲରୁ ମୁକ୍ତି ପାଇଲା ପରେ ପ୍ରାୟଶ୍ଚିତ କରୁଥିଲେ, କାରଣ ଜେଲରେ ଯେ କୌଣସି ଲୋକର ରୋଷେଇ ଖାଦ୍ୟ ଭୋଜନ କରିବାକୁ ପଡୁଥିଲା । କିନ୍ତୁ ଅସହଯୋଗ ଆନ୍ଦୋଳନରେ ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ସ୍ୱେଚ୍ଛାରେ ରାଜନୈତିକ କାରଣରୁ ଅର୍ଥାତ୍ ଦେଶକୁ ସ୍ୱାଧୀନ କରିବା ପାଇଁ ୧୪୪ ଧାରା ଭଙ୍ଗ ପାଇଁ ସାଧାରଣ ବିଷୟରେ ଜେଲ ଭୋଗ କରିବାରୁ ଜେଲଯାତ୍ରା ତୀର୍ଥ ଯାତ୍ରାରେ ପରିଣତ ହେଲା ।

ଜେଲ ସହିତ ଜୋରିମାନା ଦଣ୍ଡ ମଧ୍ୟ ହେଉଥିଲା । ଅସହଯୋଗୀମାନେ ସ୍ୱେଚ୍ଛାରେ ଜୋରିମାନା ଦେଉ ନଥିବାରୁ ସେମାନଙ୍କର ଜିନିଷପତ୍ର ଜୋରଖ ହୋଇ ଅଳ୍ପ ମୂଲ୍ୟରେ ନିଲାମ ହେଉଥିଲା ।

ଲବଣ ସତ୍ୟାଗ୍ରହରେ ସମ୍ବଲପୁରରୁ ସତ୍ୟାଗ୍ରହୀମାନେ ଉତ୍କଳ ଯାଇ ଗିରଫ ହୋଇଥିଲେ । ସେହିପରି ଭାରତ ଛାଡ଼ ଆନ୍ଦୋଳନରେ ସମ୍ବଲପୁର ଅଞ୍ଚଳ ଏକ ଗୌରବମୟ ଭୂମିକା ଗ୍ରହଣ କରିଥିଲା ।

୧୯୪୦ ମସିହାରେ ସମ୍ବଲପୁର ଜିଲ୍ଲା ପାଇଁ ବ୍ୟକ୍ତିଗତ ସତ୍ୟାଗ୍ରହର ନିର୍ଦ୍ଦେଶକ ଥିଲେ ଦୟାନନ୍ଦ ଶତପଥୀ । ଜିଲ୍ଲାରେ ତତ୍କାଳୀନ ଜିଲ୍ଲା କଂଗ୍ରେସ ସଭାପତି ପ୍ରହଲ୍ଲାଦ ରାୟ ଲାଠ, ମନ୍ତ୍ରୀତ୍ୱ ଛାଡ଼ିଥିବା ବୋଧରାମ ଦୁବେ, ଘନଶ୍ୟାମ ପାଣିଗ୍ରାହୀ, ଭାଗିରଥୀ ପଟ୍ଟନାୟକ, ଉପେନ୍ଦ୍ର ପାଣିଗ୍ରାହୀ, ଧନଞ୍ଜୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ଦିବ୍ୟସୁନ୍ଦର ସାହୁ, ଡମ୍ବରୁଧର ଦୁଆନ୍, ମହେଶ୍ୱର ସାହୁ, ଦାଶରଥି ମହାପାତ୍ର, ପୁରୁଷୋତ୍ତମ ସାହୁ ଓ ନିର୍ଦ୍ଦେଶକ ଦୟାନନ୍ଦ ଶତପଥୀ ଭାଗ ନେଇଥିଲେ ।

'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହୋଇଥିବା ଜାତୀୟ କଂଗ୍ରେସର ଅଧିବେଶନରେ ଓଡ଼ିଶାରୁ ମୋଟ ୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ସମ୍ବଲପୁରର ଥିଲେ ଦୁଇଜଣ । ପ୍ରତିନିଧିମାନେ ହେଲେ, ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ଲକ୍ଷ୍ମୀନାରାୟଣ ମିଶ୍ର, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ପ୍ରହଲ୍ଲାଦ ରାୟ ଲାଠ ।

ସମ୍ବଲପୁର ଜିଲ୍ଲାରେ ଭାରତଛାଡ଼ ଆନ୍ଦୋଳନ ବ୍ୟାପକ ରୂପ ଧାରଣ କରିଥିଲା । ବମ୍ବେରୁ ଫେରିବା ରାସ୍ତାରେ ପଣ୍ଡିତ ଲକ୍ଷ୍ମୀନାରାୟଣ

ମିଶ୍ର ଗିରଫ ହୋଇଥିଲେ । ଭାଗିରଥୀ ପଟ୍ଟନାୟକଙ୍କ ପତ୍ନୀ ଜୟନ୍ତୀ ଦେବୀ ବିହାରର ଦୁମକାଠାରେ ଗିରଫ ହୋଇଥିଲେ । ଭାଗିରଥୀ ପଟ୍ଟନାୟକ ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ଧମା, ସୋନପୁର, ବଉଦ ଗସ୍ତ କରିଥିଲେ । ତାଙ୍କୁ ବରଗଡ଼ଠାରୁ ଭାରତ ରକ୍ଷା ଆଇନରେ ଗିରଫ କରାଗଲା । ପ୍ରାରମ୍ଭରେ ଦୟାନନ୍ଦ ଶତପଥୀ ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟରୁ ବିଭିନ୍ନ ଗ୍ରାମ୍ୟ କେନ୍ଦ୍ର ସହ ଯୋଗାଯୋଗ କରି ଆନ୍ଦୋଳନ ପରିଚାଳନା କରୁଥିଲେ । ନୃସିଂହ ଗୁରୁ, ରାମରକ୍ଷା ଶୁକ୍ଳା, ଦୁର୍ଗା ପ୍ରସାଦ ଗୁରୁଙ୍କ ସମେତ ଦୟାନନ୍ଦ ଶତପଥୀଙ୍କୁ ଭାରତରକ୍ଷା ଆଇନ୍‌ରେ ଗିରଫ କରି ନିଆଯିବା ପରେ ଶିବନାରାୟଣ ପାଢ଼ୀ ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟରୁ ଆନ୍ଦୋଳନର ପରିଚାଳନା କରିଥିଲେ । ତାଙ୍କୁ ଛାତ୍ର ଦୁର୍ଗା ପ୍ରସାଦ ନାୟକ ସହଯୋଗ କରୁଥିଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ କଟକରେ ଗିରଫ ହେବା ପରେ ତାଙ୍କ ଡାଇରୀରେ ଜାନ୍ତାରାମ ପୁରୋହିତ ଓ ଲକ୍ଷ୍ମୀନାରାୟଣ ବାବୁଙ୍କ ନାମ ଉଲ୍ଲେଖ ଥିବାରୁ ସେମାନଙ୍କୁ ଗିରଫ କରାଯାଇଥିଲା । ଏ ଦୁହେଁ ଶିବନାରାୟଣ ପାଢ଼ୀଙ୍କୁ ଆନ୍ଦୋଳନ ପରିଚାଳନାରେ ସହଯୋଗ କରୁଥିଲେ । ସେ ସମୟରେ ଭୈରବ ଚନ୍ଦ୍ର ମହାନ୍ତି ସମ୍ବଲପୁରରେ ପ୍ରହ୍ଲାଦ ରାୟ ଲାଠଙ୍କ ଘରେ ଆତ୍ମଗୋପନ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ଜିଲ୍ଲାର ଗ୍ରାମାଞ୍ଚଳର ସଂଗ୍ରାମୀମାନେ ଅଧିକ ସକ୍ରିୟ ଥିଲେ । ପାଣିମୋରା, ରେମଣ୍ଡା, ବରପାଲି, ଭେଡ଼େଁରିଆ, ମାନପୁର, ବାଲିଟିକିରା, ପାଇକମାଳ, ସମଲେଇପଦର ଓ ପଦ୍ମପୁରରେ ଆନ୍ଦୋଳନ ତୀବ୍ର ହୋଇଥିଲା । ନିୟମିତ ଶାରୀରିକ ବ୍ୟାୟାମ, ଲାଠି ଓ ଅସ୍ତ୍ରଶସ୍ତ୍ର ବ୍ୟବହାରର ଅଭ୍ୟାସ ଚାଲୁଥିଲା । ଏହି ଦଳର ନେତା ଓ ବ୍ୟାୟାମ ଶିକ୍ଷକଙ୍କୁ ଗିରଫ କରାଗଲା । ଓଡ଼ିଆ, ହିନ୍ଦୀ ଓ ଇଂରାଜୀ ଭାଷାରେ ମୁଦ୍ରିତ କଂଗ୍ରେସ ବାର୍ତ୍ତା ଜିଲ୍ଲା ସାରା ପ୍ରଚାରିତ ହେଲା । ବରଗଡ଼ ଥାନା ଘେରାଉ ଓ ଏସ୍.ଡି.ଓଙ୍କୁ ଆକ୍ରମଣ ହେବାରୁ ୧୮ ଜଣ ଗିରଫ ହେଲେ । ଏହି ଆନ୍ଦୋଳନରେ ପାଣିମୋରା ଭଳି ଛୋଟିଆ ଗ୍ରାମରୁ ମୋଟ ୩୨ ଜଣ ଗିରଫ ହୋଇଥିଲେ ।

ସମ୍ବଲପୁର ଜିଲ୍ଲାରେ ଭାରତ ଛାଡ଼ ଆନ୍ଦୋଳନରେ ଘନଶ୍ୟାମ ପାଣିଗ୍ରାହୀ, ପ୍ରଭାବତୀ ଦେବୀ, ଯୁଧିଷ୍ଠିର ମେହେର, ଫୁଲଶର ପ୍ରଧାନ, ଫକୀର ବେହେରା, ରାଜେନ୍ଦ୍ର ପଣ୍ଡା, ଧନସିଂହ ପ୍ରଧାନ, ଶଙ୍କର ପ୍ରଧାନ, ରଷି ସରାପ୍, ରାମଭରୋସେ, ଦୟାନିଧି ନାୟକ, ଜିତେନ୍ଦ୍ରିୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ରାଘବଚନ୍ଦ୍ର ପ୍ରଧାନ, ଦିବାକର ମିଶ୍ର, ବିରଞ୍ଚି ନାରାୟଣ ପ୍ରଧାନ, ରାମଚନ୍ଦ୍ର ପୁରୀ, ପାର୍ବତୀ ଗିରି, ମାୟାଧର ପୁରୋହିତ, କୁବେର ଗିରି, ବୈରାଗୀ ରଣା, ଚୈତନ୍ୟ ସାହୁ, ବିଦ୍ୟାଧର ପ୍ରଧାନ, ଲକ୍ଷ୍ମଣ ପୂଜାରୀ, ଚମରୁ ପରିଡ଼ା, ଦିବ୍ୟ ସୁନ୍ଦର ସାହୁ, ଉଗ୍ରସେନ ବନଛୋର, ମୀନକେତନ ସରାଫ, ଦମ୍ବରୁଧର ଦୁଆନ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ରାଧେଶ୍ୟାମ ମେହେର, ସନ୍ତୋଷ ସ୍ୱାଇଁ, ବିହାରୀରାମ ତଣ୍ଡୀ, ମଙ୍ଗଳ ପ୍ରସାଦ ଗିରି, ଶ୍ରୀବତ୍ସ ନାୟକ, ଯୋଗେନ୍ଦ୍ର ଦୋରା, ପ୍ରେମାନନ୍ଦ ମେହେର, ଦେବାନନ୍ଦ ଗୁପ୍ତ, ଆନନ୍ଦ ଚନ୍ଦ୍ର ମେହେର, ହୃଷିକେଶ ନାୟକ, ଚନ୍ଦ୍ରଭାନୁ ପରିଡ଼ା, କୁଞ୍ଜବିହାରୀ ବାଣ, ବିଶ୍ୱେଶ୍ୱର ଦାଶ, ତୀର୍ଥବାସୀ ପୁରୋହିତ, ରାମଚନ୍ଦ୍ର ନନ୍ଦ, ଭୀମସେନ ସାହୁ, ଦ୍ୱାରିକାନାଥ ମହାପାତ୍ର, ବାବାଜୀ ମେହେର, ଅର୍ଜୁନ ଗୁପ୍ତ, ମଦନ ଭୂଏ, ଶୁକଶାରଣ ଭୂଏ, ହରିହର ଭୋଇ, ଦାଶରଥି ନାୟକ, କଏରା ସାହୁ, ଦ୍ୱାଦଶ ରଣା, ସୁନାଧର ସାହୁ, ଯଶୋବନ୍ତ ଭୋଇ; ଚୈତନ୍ୟ ସରାଫ, ଧନୁ ସାହୁ, ପ୍ରଭାକର ପ୍ରଧାନ, ଗୋକୁଳ ଚନ୍ଦ୍ର ନାୟକ, କହ୍ନାଇଲାଲ ସାହୁ, ଚନ୍ଦ୍ରଶେଖର ସାହୁ, ଧନେଶ୍ୱର ପ୍ରଧାନ, ଧନଞ୍ଜୟ ପ୍ରଧାନ ପ୍ରମୁଖ ଗିରଫ ହୋଇଥିଲେ । ପାଇକମାଳର ଅଲେଖ ପାତ୍ର ନିମାପଡ଼ାରେ ଗିରଫ ହୋଇଥିଲେ । ସମ୍ବଲପୁର ବାସିନ୍ଦା ତତ୍କାଳୀନ ରେଭେନ୍‌ସା କଲେଜ ଛାତ୍ର ବିଷ୍ଣୁ ପ୍ରସାଦ ମିଶ୍ର କଟକରେ ଗିରଫ ହୋଇଥିଲେ ।

ଭାରତ ଛାଡ଼ ଆନ୍ଦୋଳନରେ ସମ୍ବଲପୁର ଜିଲ୍ଲାର ଦୟାନନ୍ଦ ଶତପଥୀ ସର୍ବାଧିକ ସାଢ଼େ ତିନି ବର୍ଷ କାରାବରଣ କରିଥିଲେ । ୧୯୪୫ ମସିହାରେ ବ୍ରହ୍ମପୁର ଜେଲରୁ ଖଲାସ ହେବା ପରେ ମଧ୍ୟ ତାଙ୍କୁ ଏକ ବର୍ଷ ଗୃହବନ୍ଦୀ ଭାବରେ ରଖାଯାଇଥିଲା ।

—o—

# କରେ ମୁଁ ପ୍ରଣିପାତ

ଡ଼ଃ. ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଯାହାର ଶ୍ରମେ କେଦାର ହୁଏ ଶସ୍ୟ ସୁଶୋଭିତ
ନଗର ହୁଏ ହର୍ମ୍ୟମୟୀ ହୁଏ ତା' ଆଲୋକିତ
ଯୋଗାଏ ଯିଏ ଅନ୍ନବାସ ଜିଇବେ ଦେଶ ଭରେ
ସେଇ ଶ୍ରମିକ, କୃଷକଗଣେ ସ୍ୱାଗତ ମୁଁ କରେ ॥୧॥

ତୁହିନ ଗିରି ମରୁକାନ୍ତାର ଜଳଧି ଧାରେ ଧାରେ
ସୀମାନ୍ତର ସୁରକ୍ଷା ଯେ କରଇ ନୀରବରେ
ଶତ୍ରୁଜୟୀ ମରଣକୁ ଯେ ଡ଼ରଇ ନାହିଁ ତିଳେ
ଏଦେଶ ବୀର ସୈନିକ ସେ ପ୍ରଣାମ ତାକୁ କରେ ॥୨॥

ଅନୁଭବେ ଯେ ବହୁଜନର ବେଦନା ମରମରେ
ତେଜି ଆପଣା ସୁଖ ଯେ ଲାଗେ ପରର ଉପକାରେ
ହୃଦୟେ ଯା'ର୍ ଅସୀମ ବଳ କଲ୍ୟାଣ ଯା ବ୍ରତ
ସେଇ ସେବକ ମହାମାନବେ କରେ ମୁଁ ପ୍ରଣିପାତ ॥୩॥

ଅନ୍ୟାୟର ସମ୍ମୁଖେ ଯେ ନ ହୁଏ ନତଶିର
ଅଳସ ତେଜି କର୍ମ ପଥେ ଯେ ହୁଏ ଆଗୁସାର
ଲକ୍ଷ୍ୟ ଯାର ଦେଶ ପ୍ରଗତି ଜଣାଏ ତାରେ ନତି
ଏଇ ଦେଶର ସନ୍ନିହିତ ସଜାଗ ଜନଶକ୍ତି ॥ ୪॥

ଲଳିତ କଳା ସୃଷ୍ଟି ଯା'ର ଅତୀବ କମନୀୟ
ନୃତ୍ୟ ଯା'ର ନିଖିଳ ଜନ ମାନସ କଲା ଜୟ
ମୈତ୍ରୀ ଦେବ ଜଗତନାଥ ଯେଉଁଠି ବିରାଜିତ
ସେଇ ମୋ ଦେଶ ତାହାକୁ ମୁହିଁ କରଇ ପ୍ରଣିପାତ ॥୫॥

ଗୀତିକା,
ଜୟଦେବ ନଗର,
ଭୁବନେଶ୍ୱର -୨



କୌଶଲ୍ୟାଗଙ୍ଗ ମତ୍ସ୍ୟଚାଷ ଗବେଷଣା କେନ୍ଦ୍ରଠାରେ ଏସିଆ ମହାଦେଶରେ କାର୍ପ ଜାତୀୟ ମାଛ ବଂଶବୃଦ୍ଧି ଉପରେ ଆୟୋଜିତ ଏକ କର୍ମଶାଳାକୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ସଚିବାଳୟ କନଫରେନ୍ସ କକ୍ଷରେ +୨ ବିଜ୍ଞାନ ଫଳ ପ୍ରକାଶନ ଅବସରରେ ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି



ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମୃତ୍ୟୁ ବାର୍ଷିକ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବିଧାନସଭା ପରିସର ମଧ୍ୟରେ ଥିବା ତାଙ୍କ
ପ୍ରତି ମୂର୍ତ୍ତିରେ ମାଲ୍ୟାର୍ପଣ କରୁଛନ୍ତି



ବିଦେଶ ଗସ୍ତରୁ ଫେରିବା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ସାମ୍ବାଦିକମାନଙ୍କୁ ଭେଟୁଛନ୍ତି । ପାର୍ଶ୍ୱରେ ନବନିଯୁକ୍ତ ମୁଖ୍ୟ ଶାସନ ସଚିବ
ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଉପସ୍ଥିତ ଅଛନ୍ତି

ଯାଜପୁରର ହରିଚନ୍ଦନ ପୁରଠାରେ ଚିତ୍ରୋତ୍ପଳା ନଦୀ ଉପରେ ନବନିର୍ମିତ ସାଇଫନ୍
ଓ ସେତୁକୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି



ସଚିବାଳୟଠାରେ ଭାରତ ଆନ୍ତର୍ଜାତୀୟ ମେଳା ୧୯୯୬ ସଂପର୍କରେ ଆହୂତ
ବୈଠକରେ ସୂଚନା ଓ ଲୋକ ସଂପର୍କ ବିଭାଗମନ୍ତ୍ରୀ ଶ୍ରୀଯୁକ୍ତ ନେତ୍ରାନନ୍ଦ ମଲ୍ଲିକ ଓ
ବିଭାଗୀୟ ଶାସନ ସଚିବ ଶ୍ରୀ ରାମ୍ ବେହେରା

ହିଂଚିରିକାପୁର କାଠି ନୃତ୍ୟ ଶିଳ୍ପୀମାନଙ୍କ ଦ୍ୱାରା ପରିବେଷିତ କାଠି ନୃତ୍ୟକୁ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉପଭୋଗ କରୁଛନ୍ତି



ସଚିବାଳୟ ତୃତୀୟ ମହଲା ସମ୍ମିଳନୀ କକ୍ଷରେ ଆହୂତ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ
କମିଟି ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଧ୍ୟକ୍ଷତା କରୁଛନ୍ତି



ପୁରୀ ବଡ଼ ଦାଣ୍ଡରେ ତିନି ଠାକୁରଙ୍କ ସୁନାବେଶ



ସାକ୍ଷୀ ଗୋପାଳଠାରେ ସୂଚନା ଓ ଲୋକ ସଂପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମଲ୍ଲିକ୍ ଏକ ସୂଚନା କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି । ସ୍ଥାନୀୟ ବିଧାୟକ ଶ୍ରୀ ପ୍ରସାଦ ହରିଚନ୍ଦନ ଉପସ୍ଥିତ ଅଛନ୍ତି



ରଥଯାତ୍ରା ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପୁରୀଠାରେ ରଥ ଟାଣୁଛନ୍ତି



ଓଡ଼ିଶା ହାଇକୋର୍ଟର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ମାନ୍ୟବର ରାଜ୍ୟପାଳ
ଶ୍ରୀ ଗୋପାଳ ରାମାନୁଜମ କେକ୍ କାଟି ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଉଦ୍‌ଘାଟନ କରୁଛନ୍ତି



ଦକ୍ଷିଣ କୋରିଆର ସୁପ୍ରସିଦ୍ଧ କମ୍ପାନୀ ଏଲ୍.ଜି. ଇଣ୍ଟରନ୍ୟାସନାଲ କର୍ପୋରେସନର
ସଭାପତି ମିଃ. ଏସ୍. ଏଚ୍. ଲି. ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ସଂପର୍କରେ ମୁଖ୍ୟମନ୍ତ୍ରୀ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ ଆଲୋଚନା କରୁଛନ୍ତି



କଲିକତା ଠାରେ ଅବସ୍ଥାପିତ ଆମେରିକାର କନସଲ ଜେନେରାଲ ମିସ୍ ବେରିଲ
ଜେ.ସିମ୍ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ
ପ୍ରକୋଷ୍ଠରେ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।



ରାଜ୍ୟ ସଚିବାଳୟ ସମ୍ମିଳନୀ କକ୍ଷରେ ଆହୂତ ଏକ ସାମୟିକ ସମ୍ମିଳନୀରେ
ପର୍ଯ୍ୟଟନ ଓ ସଂସ୍କୃତିମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ସୂଚନା ଦେଉଛନ୍ତି । ଶାସନ ସଚିବ
ଶ୍ରୀ ଡି.ଏନ୍ ପାଢ଼ୀ ଉପସ୍ଥିତ ଅଛନ୍ତି



କଳାହାଣ୍ଡି, କୋରାପୁଟ, ବଲାଙ୍ଗୀର ଓ ନୂଆପଡ଼ା ଜିଲ୍ଲାର ମରୁଡ଼ିର ସ୍ଥାୟୀ ପ୍ରତିକାର ପାଇଁ ଶ୍ରୀ କେନ୍ଦୁ ହାସାନଙ୍କ ନେତୃତ୍ୱରେ ଆସିଥିବା ଉଚ୍ଚସ୍ତରୀୟ କେନ୍ଦ୍ର ପ୍ରତିନିଧି ଦଳ ସଚିବାଳୟଠାରେ ଉପମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳଙ୍କ ସହ ଆଲୋଚନା କରୁଛନ୍ତି



ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଆୟୋଜିତ ସାରସ୍ୱତ ସମ୍ମାନ ପୁରସ୍କାର ଉତ୍ସବରେ ପ୍ରବୀଣ ଲେଖକ ଶ୍ରୀ ଶାରଦା ପ୍ରସାଦ ମିଶ୍ରଙ୍କୁ ସଂସ୍କୃତି ମନ୍ତ୍ରୀ ଶ୍ରୀଯୁକ୍ତ ଭୂପିନ୍ଦର ସିଂହ ମାନପତ୍ର ପ୍ରଦାନ କରୁଛନ୍ତି

# ଓଡ଼ିଶାରେ ଜାତୀୟତାର ବିକାଶ

ଡକ୍ଟର ନିହାର ରଞ୍ଜନ ପଟ୍ଟନାୟକ

ଅତୀତର କଳିଙ୍ଗ ଯୁଦ୍ଧ ସହ ଉତ୍କଳୀୟ ନରପତିମାନଙ୍କ ଦିଗ୍‌ବିଜୟ, ଦରିଆପାରିର ବଣିକ ଓଡ଼ିଆମାନଙ୍କ ମନରେ ଦୁଃସାହସିକ ବୀରତ୍ୱର ଅପୂର୍ବ ଉନ୍ମାଦନା ଯେତିକି ଆଣିଦିଏ; ଉଦୟଗିରି, ରତ୍ନଗିରି, ରାଜାରାଣୀ, କୋଣାର୍କ ଆଦିର କଳାକୃତି ସାଂସ୍କୃତିକ କ୍ଷେତ୍ରରେ ସେତିକି ବିସ୍ମୟ ସୃଷ୍ଟି କରେ । କିନ୍ତୁ ଦୁର୍ଭାଗ୍ୟବଶତଃ ମଧ୍ୟଯୁଗରେ ଶୋଇ ପଡ଼ିଲା ଏଇ ଓଡ଼ିଆ ଜାତି । ସତେ ଯେପରି ସେ କ୍ଳାନ୍ତ । ଏତେ ବିଜୟ, ଏତେ ଅନୁପମ ସୃଷ୍ଟି ପରେ ସେ ନେଲା ବିଶ୍ରାମ । କଳା ସଂସ୍କୃତିର ପ୍ରବାହ ହେଲା ରୁଦ୍ଧ । ଇତିମଧ୍ୟରେ ଦେଶ ହେଲା ପରାଧୀନ । ଓଡ଼ିଶା ହେଲା ଇଂରେଜ ଶାସନାଧୀନ କିନ୍ତୁ କେତେକାଳ ଏକ ସ୍ୱାଭିମାନୀ ଜାତି ପରାଧୀନତାର ଶୃଙ୍ଖଳ ପିନ୍ଧିରହିଥାଆନ୍ତା ? କେତେଦିନ ଆଉ ଓଡ଼ିଆ ଜାତି ବିଶ୍ରାମ ନେଇଥାଆନ୍ତା? ସେ ଜାଗି ଉଠିଲା । ଜାତିର ଜାତୀୟତା ଜାଗିଉଠିଲା । ବିପ୍ଳବର ଆହ୍ୱାନ ଦେଇ ସେ ସ୍ୱାଧୀନତାର ସଙ୍ଗୀତ ବୋଳିଲା । ନିଜ ମାତୃଭୂମି ପ୍ରତି ପ୍ରବଳ ଅନୁରାଗ, ନିଜ ସଂସ୍କୃତି ପ୍ରତି ଅକଳନ ଶ୍ରଦ୍ଧା, ବିଦେଶୀ ଶାସନ ଶୃଙ୍ଖଳ ଛିନ୍ନ କରି ମୁକ୍ତ ହେବାର ଅଦମ୍ୟ ବାସନାରୁ ଓଡ଼ିଶାରେ ଅଙ୍କୁରିତ ହେଲା ଜାତୀୟତା ।

୧୮୦୩ ମସିହାରେ ଓଡ଼ିଶା ଇଂରେଜ ଶାସନାଧୀନ ହେବାଠାରୁ ଧୀରେ ଧୀରେ ଓଡ଼ିଶାବାସୀଙ୍କ ମଧ୍ୟରେ ପାଶ୍ଚାତ୍ୟ ପ୍ରଭାବ ପରିଲକ୍ଷିତ ହୋଇଥିଲା, ଇଂରେଜ ଭାଷା ପ୍ରବର୍ତ୍ତିତ ହେବା ଦ୍ୱାରା ଶିକ୍ଷିତ ଓଡ଼ିଶାବାସୀ ପାଶ୍ଚାତ୍ୟ ଲେଖା ପଢ଼ିବାର ସୁଯୋଗ ପାଇଲେ । ଫଳରେ ସେମାନେ ସ୍ୱାଧୀନତାର ଗୌରବମୟ ସଙ୍ଗୀତରେ ଉଦଘୋଷିତ ବାଇରନ୍‌ଙ୍କ ଲେଖା, ଜାତୀୟତାଭାବ, ଗଣତନ୍ତ୍ର ଏବଂ ସ୍ୱାୟତ୍ତଶାସନର ମହାନ୍ ଚିନ୍ତାଧାରାରେ ମୁଖରିତ ଲକ୍, ମିଲ୍, ମେକଲେ, ବର୍କ, ରୁଷୋ ଓ ଭଲଟାୟାର ଆଦି ପ୍ରସିଦ୍ଧ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ରଚନାବଳୀ ପାଠ କରିଥିଲେ । ଏଥିସହିତ ସାମ୍ୟ, ମୁକ୍ତି, ଭାତୃତ୍ୱ ଆଦି ମୌଳିକ ଚିନ୍ତାଧାରା ପ୍ରଚାର କରିଥିବା ଆମେରିକାର ସ୍ୱାଧୀନତା ସଂଗ୍ରାମ, ଫରାସୀ ବିପ୍ଳବ, ଇଟାଲୀ ଏକତ୍ରୀକରଣ, ଜର୍ମାନୀ ଏକତ୍ରୀକରଣ ଓ ସ୍ୱାଧୀନତା ଯୁଦ୍ଧର ଲୋମହର୍ଷଣକାରୀ ବିବରଣୀ ଓଡ଼ିଶାବାସୀଙ୍କୁ ଅନୁପ୍ରାଣିତ କରିଥିଲା । ଏ ସମସ୍ତ ଜାତୀୟତାଭାବ ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

ଜାତୀୟତାର ବିକାଶପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବାରେ ପରୋକ୍ଷଭାବେ ଖ୍ରୀଷ୍ଟିୟାନ ମିଶନାରୀମାନେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ସେମାନେ ହିନ୍ଦୁମାନଙ୍କର ରକ୍ଷଣଶୀଳତା, ପ୍ରତିମାପୂଜା, ଅନ୍ଧବିଶ୍ୱାସ ଓ କୁସଂସ୍କାରଗୁଡ଼ିକୁ ସମାଲୋଚନା କରି ଖ୍ରୀଷ୍ଟଧର୍ମର ଶ୍ରେଷ୍ଠତା ପ୍ରତିପାଦିତ କରିବାକୁ ଚେଷ୍ଟାକଲେ । ଏଥିରେ ଅନୁପ୍ରାଣିତ ହୋଇ ଓଡ଼ିଶାରେ ଅନେକ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ । ସେମାନେ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପାରସ୍ପରିକ ସହଯୋଗ ଦ୍ୱାରା ଗୋଷ୍ଠୀ ଜୀବନ କିପରି ଉନ୍ନତତର ହୋଇପାରିବ, ସେଥିପାଇଁ ଉଦ୍ୟମ କରିଥିଲେ । ଓଡ଼ିଶାରେ ଜନପ୍ରିୟ ଶିକ୍ଷା ବିଶେଷତଃ ନାରୀ ଶିକ୍ଷାର ପ୍ରସାର ପାଇଁ ମିଶନାରୀମାନେ ବିଭିନ୍ନ ସ୍ଥାନରେ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ପୁନଶ୍ଚ ସତୀ, ଶିଶୁବଳି ଓ ନରବଳି ଆଦି ନିଷ୍ଠୁର ସାମାଜିକ ପ୍ରଥା ବିରୁଦ୍ଧରେ ସେମାନେ ସଂଗ୍ରାମ କରିଥିଲେ । ସେମାନଙ୍କର ଏହିପରି ପଦକ୍ଷେପ ତତ୍କାଳୀନ ଆବଶ୍ୟକତାକୁ ଚାହିଁ ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ସଂସ୍କାର ତଥା ପୁନଃର୍ଗଠନର ଏକ ପ୍ରକ୍ରିୟା ସୃଷ୍ଟି କରିଥିଲା ।

ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଓ ଶିକ୍ଷା ବହୁଳ ପ୍ରସାର ହେତୁ, ଉନବିଂଶ ଶତାବ୍ଦୀରେ ଓଡ଼ିଶାବାସୀଙ୍କ ମନରେ ଅଭୂତପୂର୍ବ ପରିବର୍ତ୍ତନ ଦେଖାଦେଲା । ଏପରିକି ପୁରୀର ରକ୍ଷଣଶୀଳ ବ୍ରାହ୍ମଣ ପୂଜକମାନେ ନିଜ ସନ୍ତାନମାନଙ୍କୁ ଇଂରେଜୀ ଶିକ୍ଷା ଲାଭ କରିବା ପାଇଁ ଇଂଲିଶ ସ୍କୁଲକୁ ପଠାଇଲେ । ବିଦ୍ୟାଳୟ ପ୍ରତି ଛାତ୍ରଛାତ୍ରୀମାନଙ୍କୁ ଅଧିକ ଆକୃଷ୍ଟ କରିବା ପାଇଁ ଇଂରେଜ ସରକାର ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିଥିଲେ । ନାରୀମାନେ ମଧ୍ୟ କେବଳ ଗୃହ ମଧ୍ୟରେ ଆବଦ୍ଧ ନରହି ଉଚ୍ଚତର ଶିକ୍ଷା ପାଇଁ ଆଗ୍ରହ ଦେଖାଇଲେ । ଶିକ୍ଷାର ଦ୍ରୁତ ପ୍ରସାର ସହ ପାଶ୍ଚାତ୍ୟ ପ୍ରଭାବ ଓଡ଼ିଶାବାସୀଙ୍କ ମଧ୍ୟରେ ସାମାଜିକ ଓ ରାଜନୈତିକ ଚେତନା ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

ଓଡ଼ିଶାରେ ମୁଦ୍ରଣଶାଳାର ପ୍ରତିଷ୍ଠା ତଥା ତତ୍‌ଜନିତ ପୁସ୍ତକ ଓ ସମ୍ବାଦପତ୍ରର ପ୍ରକାଶନ ଜାତୀୟତା ବିକାଶ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ପ୍ରଥମ କରି ୧୮୩୮ ମସିହାରେ କଟକରେ ମିସନ ପ୍ରେସ ନାମରେ ଏକ ଛାପାଖାନା ପ୍ରତିଷ୍ଠା କରାଗଲା । ଓଡ଼ିଶାର ପ୍ରଥମ ଓଡ଼ିଆ ପତ୍ରିକା 'ଜ୍ଞାନାରୁଣ' ଏହିଠାରେ ଛାପା ଯାଇଥିଲା । ପରେ 'ପ୍ରବୋଧ ଚନ୍ଦ୍ରିକା' ଓ 'ଅରୁଣୋଦୟ' ନାମକ ଦୁଇଟି ପତ୍ରିକା ଯଥାକ୍ରମେ ୧୮୪୯-୧୮୬୧ ମସିହାରେ ପ୍ରକାଶ ଲାଭ କଲା । ଅବଶ୍ୟ ଖ୍ରୀଷ୍ଟିୟାନ ମିଶନାରୀଙ୍କ ଦ୍ୱାରା ପ୍ରକାଶିତ ହେଉ ଥିବାରୁ ଏହି ପତ୍ରିକାଗୁଡ଼ିକରେ ଖ୍ରୀଷ୍ଟଧର୍ମର ବିଷୟବସ୍ତୁ ଅଧିକ ସ୍ଥାନ ପାଇଥିଲା । ଏଗୁଡ଼ିକ ତତ୍କାଳୀନ

ରାଜନୈତିକ ଅଥବା ସାମାଜିକ ଅସନ୍ତୋଷ ବା ସ୍ଥାଣୁତା ଉପରେ ଗୁରୁତ୍ୱ ଦେଉନଥିଲେ । ଇତିମଧ୍ୟରେ କଟକ ସହରରେ କଟକ ପ୍ରିଣ୍ଟିଂପ୍ରେସ' ନାମରେ ଏକ ମୁଦ୍ରଣଶାଳା ସ୍ଥାପିତ ହେଲା । ଏହି ଛାପାଖାନାରୁ ଖ୍ୟାତନାମା ପତ୍ରିକା 'ଉତ୍କଳ ଦୀପିକା' ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଓ ସମାଜସେବୀ ଗୌରୀଶଙ୍କର ରାୟଙ୍କ ଦ୍ୱାରା ୧୮୬୬ ମସିହାରେ ପ୍ରକାଶିତ ହେଲା । ଓଡ଼ିଶାର ଏହା ପ୍ରଥମ ପତ୍ରିକା ଯେଉଁଟି ସର୍ବସାଧାରଣ ଜଡ଼ିତ ଘଟଣା ଓ ସମସ୍ୟା ଉପରେ ଆଲୋକପାତ କଲା । ଓଡ଼ିଶାର ରାଜନୈତିକ ଅବସ୍ଥା ଓ ତତ୍କାଳୀନ ସମାଜକୁ ଦୃଷ୍ଟିରେ ରଖି 'ଉତ୍କଳଦୀପିକା' ଓଡ଼ିଶାବାସୀଙ୍କ ଦୁଃଖ କଷ୍ଟକୁ ସଠିକ୍‌ଭାବେ ପ୍ରତିଫଳିତ କରିପାରିଥିଲା । ଏହାପରେ ଭଗବତୀ ଚରଣ ଦାସଙ୍କ ସମ୍ପାଦନାରେ 'ଉତ୍କଳ ଶୁଭକରୀ' ନାମକ ପତ୍ରିକା ପ୍ରକାଶ ପାଇଥିଲା । ସେହିପରି ବାଲେଶ୍ୱରରେ ପି.ଏମ୍. ସେନାପତି ଏଣ୍ଡ କୋ ଉତ୍କଳ ପ୍ରେସ ନାମରେ ଏକ ଛାପାଖାନା ପ୍ରତିଷ୍ଠା କରାଯାଇ ଫକୀରମୋହନ ସେନାପତିଙ୍କ ସମ୍ପାଦନାରେ 'ବୋଧଦାୟିନୀ' ଓ 'ବାଲେଶ୍ୱର ସମ୍ବାଦ ବାହିକା' ନାମରେ ଏକ ସମ୍ବାଦପତ୍ର ଆତ୍ମପ୍ରକାଶ କଲା । ପରେ ଏହାର ପ୍ରକାଶ ବନ୍ଦ ହୋଇ 'ସମ୍ବାଦ ବାହିକା' ନାମରେ ପୁନଃ ପ୍ରକାଶିତ ହୋଇଥିଲା । ୧୮୬୯ ମସିହାରେ ଓଡ଼ିଶାର ପ୍ରଥମ ଇଂରାଜୀ ପତ୍ରିକା "Cuttack Argus" ପ୍ରକାଶିତ ହୋଇଥିଲା । ରାଜା ସୁଦଳ ଦେବଙ୍କ ପୃଷ୍ଠପୋଷକତାରେ 'ବାମଣ୍ଡା ପ୍ରେସ' ସ୍ଥାପନ କରାଯାଇ 'ସମ୍ବଲପୁର ହିତୈଷିଣୀ' ନାମରେ ଏକ ସମ୍ବାଦପତ୍ର ପ୍ରକାଶିତ ହେଲା । ଏହିପରି ଭାବେ ଗୋଟିଏ ପରେ ଗୋଟିଏ ଛାପାଖାନାର ପ୍ରତିଷ୍ଠା ଓ ତତ୍ ସହିତ ପତ୍ରିକା ଏବଂ ସମ୍ବାଦପତ୍ରମାନଙ୍କର ପ୍ରକାଶନ ଏବଂ ସର୍ବୋପରି ସାମ୍ବାଦିକତାର ବିକାଶ ଯୋଗୁଁ ଓଡ଼ିଶାବାସୀଙ୍କ ମନରେ ଜାତୀୟ ଚେତନାର ଅଭ୍ୟୁଦୟ ଘଟିଲା । ଏହି ସମ୍ବାଦପତ୍ର ଓ ପତ୍ରିକାଗୁଡ଼ିକ କେବଳ ଯେ ସ୍ଥାନୀୟ ସମସ୍ୟାଗୁଡ଼ିକୁ ନେଇ ସମ୍ବାଦ ପ୍ରକାଶ କଲେ ତାହା ନୁହେଁ , ସର୍ବଭାରତୀୟ ସ୍ତରରେ ଥିବା ଜାତୀୟ ସମସ୍ୟାମାନଙ୍କୁ ଗୁରୁତ୍ୱ ଦେଇ ବିଶ୍ଳେଷଣ କଲେ । ତଦ୍ୱାରା ଓଡ଼ିଶାବାସୀଙ୍କ ହୃଦୟରେ ଦେଶପ୍ରୀତି, ଜାତିପ୍ରୀତି ଅଧିକରୁ ଅଧିକ ଦେଖା ଦେଲା ।

ଜାତୀୟତାର ବିକାଶ କ୍ଷେତ୍ରରେ ଓଡ଼ିଆ ସାହିତ୍ୟ ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲା । ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ଏକ ନୂତନ ଚୈତନ୍ୟର ଆବିର୍ଭାବ ଘଟିଥିଲା । ସଚେତନାରେ ହେଉ ଅଥବା ଅଜ୍ଞତାରେ ହେଉ, ଏ ଶତାବ୍ଦୀର ରଚନାଗୁଡ଼ିକ ସେ ସମୟର ଆଦର୍ଶ,ଆଶା, ଆକାଂକ୍ଷା ଗୁଡ଼ିକର ସଠିକ ପ୍ରତିଫଳନ କରିଥିଲା । କେତେକ ଲେଖକ ନିଜ ରଚନା ମାଧ୍ୟମରେ ଅତୀତର ଗୌରବମୟ ସଂସ୍କୃତିକୁ ପରିସ୍ଫୁଟ କରି ସେଥିର ପୁନର୍ଜାଗରଣ ଚାହିଁଥିଲା ବେଳେ, ଅନ୍ୟ କେତେକ ଲେଖକ ରଚନାରେ ସାମାଜିକ ସଂସ୍କାର ସହ ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଉପରେ ଗୁରୁତ୍ୱ ଦେଇଥିଲେ । ଏହିସବୁ ସାହିତ୍ୟିକଙ୍କ ମଧ୍ୟରୁ ଅଗ୍ରଣୀ ଥିଲେ ରାଧାନାଥ ରାୟ, ଫକୀରମୋହନ ସେନାପତି, ମଧୁସୂଦନ ରାଓ ଓ ଗଙ୍ଗାଧର ମେହେର ।

ଶିକ୍ଷା ବିଭାଗର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ ହୋଇପାରିଥିବା କବି ରାଧାନାଥ ରାୟ ନିଜର ଅଦମ୍ୟ ଚେଷ୍ଟା ଯୋଗୁଁ ଓଡ଼ିଶାରେ ଇଂରେଜୀ ଶିକ୍ଷାର ନୂତନ ବ୍ୟବସ୍ଥାକୁ ଲୋକପ୍ରିୟ କରାଇ ପାରିଥିଲେ । ମୁଖ୍ୟତଃ ଜଣେ ପ୍ରକୃତି କବି ଭାବରେ ରାଧାନାଥଙ୍କ ସାହିତ୍ୟରେ ପାଶ୍ଚାତ୍ୟ ଚିନ୍ତାଧାରାର ଛାପ ଦେଖାଦେଇଥିଲା । ସେ ଥିଲେ ପ୍ରଥମ ବହୁଚର୍ଚ୍ଚିତ କବି, ଯିଏ ନିଜ କବିତାରେ ସ୍ଥାନୀୟ ସ୍ଥିତି ଓ ସମସ୍ୟାଗୁଡ଼ିକୁ ପ୍ରତିଫଳିତ କରିଥିଲେ । ରାଧାନାଥଙ୍କର ପ୍ରସିଦ୍ଧିଲାଭ କରିଥିବା ଜାତୀୟବାଦୀ କବିତାଗୁଡ଼ିକ ହେଲା 'ମହାଯାତ୍ରା' 'ଦରବାର' ଓ 'ଚିଲିକା' । ମହାଯାତ୍ରା ଥିଲା ରାଧାନାଥଙ୍କ ଏକ ପୌରାଣିକ ବୃତ୍ତାନ୍ତ, ଯେଉଁଥିରେ କବି ଭାରତର ମହାନ୍ ସଂସ୍କୃତିର ଅବକ୍ଷୟର କାରଣ ସୂଚାଇ ଥିଲେ । ସେ ଦର୍ଶାଇଥିଲେ ଯେ, ଜାତୀୟ ଚରିତ୍ରର ଅଧୋଗତିକୁ ଅଟକାଇବାରେ ଗୌତମ ବୁଦ୍ଧଙ୍କ ମହାନ୍‌ବାଣୀ ଅଥବା ଅଶୋକଙ୍କ ଧର୍ମପ୍ରଚାର ଫଳପ୍ରଦ ହୋଇ ନଥିଲା । ହିନ୍ଦୁମାନଙ୍କ ମଧ୍ୟରେ ପାରସ୍ପରିକ କଳହ ଯୋଗୁଁ ହିଁ ଭାରତ ତା'ର ସ୍ୱାଧୀନତା ହରାଇ ବିଦେଶୀ ଶାସନାଧୀନ ହେଲା । ତୀବ୍ର ଦେଶପ୍ରେମର ଭାବକୁ ପ୍ରତିଫଳିତ କରୁଥିବା ରାଧାନାଥଙ୍କ ଅନ୍ୟ ଏକ କୃତି ଥିଲା 'ଦରବାର' । ଏଥିରେ ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କର ତତ୍କାଳୀନ ରାଜାମାନଙ୍କୁ ସେ ନଗ୍ନଭାବେ ସମାଲୋଚନା କରିଥିଲେ । ବିଭିନ୍ନ ଶ୍ରେଣୀର ଯେଉଁ ବ୍ୟକ୍ତିବିଶେଷ ନିଜର ବ୍ୟକ୍ତିଗତ ସ୍ୱାଧୀନତାକୁ ଜଳାଞ୍ଜଳି ଦେଇ ରାଜ୍ୟ ତଥା ବିଦେଶୀ ଶାସକମାନଙ୍କ ନିକଟରେ ନୀତିହୀନ ଭାବେ ମୁଣ୍ଡ ନୋଇଁଥିଲେ, ସେମାନଙ୍କୁ ସେ କଠୋର ଭର୍ତ୍ସନା କରିଥିଲେ । ଏଥି ସଙ୍ଗେ ସଙ୍ଗେ ସାମାଜିକ ପ୍ରଗତି ପାଇଁ ନିଜକୁ ପରିବର୍ତ୍ତନ କରି ଉଦାରବାଦୀ ହେବା ପାଇଁ ସମାଜର ଶିକ୍ଷିତ ଲୋକଙ୍କୁ ରାଧାନାଥ ଆହ୍ୱାନ କରିଥିଲେ । ରାଧାନାଥଙ୍କ ଅନ୍ୟ ଏକ ଅନବଦ୍ୟ ସୃଷ୍ଟି ହେଲା 'ଚିଲିକା' । ଏହି କାବ୍ୟରେ ସେ ଓଡ଼ିଶା ରାଜ୍ୟର ଅନଗ୍ରସରତା ପାଇଁ ନିଜର ଦୁଃଖ ପ୍ରକାଶ କରି ଏଥିପାଇଁ ଶିକ୍ଷା କ୍ଷେତ୍ରରେ ଅବହେଳା ହିଁ ମୁଖ୍ୟ କାରଣ ବୋଲି ମତ ଦେଇ ଥିଲେ ।

ମଧୁସୂଦନ ରାଓ ଥିଲେ ଊନବିଂଶ ଶତାବ୍ଦୀର ଅନ୍ୟଜଣେ ଲବ୍ଧପ୍ରତିଷ୍ଠ କବି । ଭକ୍ତକବି ନାମରେ ଆଖ୍ୟାୟିତ ମଧୁସୂଦନ ଥିଲେ ଆଦର୍ଶବାଦର ଜଣେ ମୂର୍ତ୍ତିମନ୍ତ ପ୍ରତୀକ । ଶିକ୍ଷକତା କରୁଥିବା ସମୟରେ ସେ ନିଜର ସମସ୍ତ ସମୟକୁ ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ଉତ୍ସର୍ଗ କରିଥିଲେ । ଯେତେବେଳେ ସ୍କୁଲ ଛାତ୍ରମାନଙ୍କ ପାଇଁ ପାଠ୍ୟପୁସ୍ତକ ପ୍ରାୟ ନଥିଲା କହିଲେ ଚଳେ, ସେତେବେଳେ ଓଡ଼ିଆ ଅକ୍ଷର ଶିକ୍ଷା କରିବା ପାଇଁ ପ୍ରସିଦ୍ଧ ଲୋକପ୍ରିୟ ପୁସ୍ତକ 'ବର୍ଣ୍ଣବୋଧ'ର ରଚୟିତା ଥିଲେ ମଧୁସୂଦନ । ପାଶ୍ଚାତ୍ୟ ଚିନ୍ତାଧାରାରେ ପ୍ରଭାବିତ ହୋଇ ସେ ନିଜ ଲେଖାଗୁଡ଼ିକରେ ସାମାଜିକ ସଂସ୍କାରର ଆବଶ୍ୟକତା ଉପରେ ଆଲୋକପାତ କରିଥିଲେ । ଧର୍ମ ତଥା ସମାଜରେ ରହିଥିବା ପୁରାତନ ଅନ୍ଧବିଶ୍ୱାସଗୁଡ଼ିକୁ ସେ କଠୋରଭାବେ ସମାଲୋଚନା କରିଥିଲେ । ରାଜା ରାମମୋହନ ରାୟ ଓ ତାଙ୍କ ଅନୁଷ୍ଠାନ 'ବ୍ରାହ୍ମସମାଜ' ମଧୁସୂଦନଙ୍କୁ ଗଭୀର ଭାବେ ଅନୁପ୍ରାଣିତ କରିଥିଲା । ବ୍ରାହ୍ମଧର୍ମର ଜଣେ ଅନୁଗାମୀ ରୂପେ ସେ ପୁରାତନ ଧର୍ମୀୟ ଅନୀତି ଓ ଦୁରାଚାରକୁ ପରିତ୍ୟାଗ କରି ସ୍ୱାଧୀନତା ପାଇଁ ଚିନ୍ତା କରିବାକୁ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ ।

ଜାତୀୟତାଭାବର ଅଙ୍କୁରକୁ ଓଡ଼ିଶାବାସୀଙ୍କ ମାନସପଟରେ ପରିସ୍ଫୁଟ କରିବାରେ ମଧୁସୂଦନଙ୍କ ଆପ୍ରାଣ ଉଦ୍ୟମ ପ୍ରଶଂସନୀୟ । ବିଶେଷତଃ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଜାତୀୟଚେତନାକୁ

ଆଧାର କରି ସେ ଅନେକଗୁଡ଼ିଏ କବିତା ସୃଷ୍ଟି କରିଥିଲେ । ମଧୁସୂଦନଙ୍କ କବିତା ସଂକଳନ 'ଉତ୍କଳଗାଥା' ପ୍ରଚଣ୍ଡ ଦେଶପ୍ରେମର ସ୍ୱାକ୍ଷର ବହନ କରିଥିଲା । ଏଥିରେ ସେ ସନ୍ନିବେଶିତ କରିଥିବା ନିମ୍ନଲିଖିତ ପଦ୍ୟାଂଶ ମାତୃଭୂମି ପ୍ରତି ତାଙ୍କ ନିଜର ଗଭୀର ନିଷ୍ଠା ଓ ଭକ୍ତି ସୂଚେଇ ଥାଏ ।

''ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ
ଏମାନଙ୍କ ଜନ୍ମ ହେଉ ସଫଳ ମୋହର
ଏହି ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।''

ମଧୁସୂଦନ ରାଓ ପୁଣି ନିମ୍ନ ପ୍ରକାରେ ଲେଖିଛନ୍ତି :

''ହିରଣ୍ମୟ ହେବ କିରଣ ଦେଖ ଭାରତ ଶିରେ
ବିଚ୍ଛିନ୍ନ ବିଭିନ୍ନ ଭାରତ ଏକ ହେଉଛି ଧୀରେ
ବର୍ଣ୍ଣଭେଦ ଧର୍ମ ଭେଦରେ ଦିନ ହେଉଛି ଶେଷ
ମହାଯୋଗେ ହେବ ଭାରତ ମୋହ ଭାରତବର୍ଷ ।''

'ଉତ୍କଳଗାଥା'ରେ ସଂକଳିତ ଅନେକ କବିତାରେ କବି ମଧୁସୂଦନ ଓଡ଼ିଶାର ଗୌରବମୟ ଅତୀତକୁ ପୁନର୍ଜାଗରିତ କରିବାକୁ ଚେଷ୍ଟା କରିଛନ୍ତି । ଦେଶମାତୃକାର ପ୍ରଗତି ପାଇଁ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ଅଧିବାସୀ ନିଜକୁ ଉତ୍ସର୍ଗ କରନ୍ତୁ ବୋଲି ସେ ଆହ୍ୱାନ କରିଥିଲେ । ଜାତି, ବର୍ଣ୍ଣ, ଧର୍ମଗତ ପାର୍ଥକ୍ୟକୁ ଭୁଲିଯାଇ ସମସ୍ତ ଓଡ଼ିଶାବାସୀ ଏଥିପାଇଁ ଏକଜୁଟ ହେବା ଉଚିତ୍ ବୋଲି ସେ ମତ ଦେଇଥିଲେ । 'ଉତ୍କଳଗାଥା' ବ୍ୟତୀତ ମଧୁସୂଦନଙ୍କ ଅନ୍ୟ କେତେକ କବିତା ଓଡ଼ିଶାବାସୀଙ୍କ ମନରେ ଗଭୀର ଜାତୀୟ ଭାବଧାରା ସୃଷ୍ଟି କରିଥିଲା । ସେଗୁଡ଼ିକ ହେଲା 'ପୃଥିବୀପ୍ରତି', 'ଭାରତଭାବନା', 'ଭାରତ ବନ୍ଦନା', 'ଉତ୍କଳ ବନ୍ଦନା' ଓ 'ଜନ୍ମଭୂମି' ।

ଫକୀର ମୋହନ ସେନାପତି ଥିଲେ ଓଡ଼ିଆ ସାହିତ୍ୟାକାଶର ଅନ୍ୟତମ ଜ୍ୟୋତିଷ୍କ, ଯିଏ ନିଜର ଶକ୍ତିଶାଳୀ ରଚନା ମାଧ୍ୟମରେ ଓଡ଼ିଶାବାସୀଙ୍କୁ ଜାତୀୟ ମହାସ୍ରୋତରେ ମିଶାଇ ଦେଇଥିଲେ । ସେତେବେଳେ ଓଡ଼ିଆ ପାଠ୍ୟପୁସ୍ତକର ସ୍ୱଳ୍ପତା ଦୃଷ୍ଟିରୁ ସ୍କୁଲ ପାଠ୍ୟକ୍ରମରେ ଅଣଓଡ଼ିଆ ପୁସ୍ତକଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହା ଫକୀର ମୋହନଙ୍କ ପରି ସ୍ୱାଭିମାନୀ ଓଡ଼ିଆଙ୍କୁ ବ୍ୟଥିତ କରିଥିଲା । ତେଣୁ ଓଡ଼ିଆ ପୁସ୍ତକ ଓ ପତ୍ରିକାଗୁଡ଼ିକର ଦ୍ରୁତ ପ୍ରକାଶନ ପାଇଁ ସେ ବାଲେଶ୍ୱରଠାରେ ଏକ ମୁଦ୍ରଣଶାଳା ପ୍ରତିଷ୍ଠା କରିଥିଲେ । ସେ ନିଜେ ଇତିହାସ, ବ୍ୟାକରଣ ଓ ଜୀବନୀ ଉପରେ ପୁସ୍ତକ ରଚନା କରିବା ସଙ୍ଗେ ସଙ୍ଗେ ଅନେକ ଉପାଦେୟ ଲେଖାର ଓଡ଼ିଆ ଅନୁବାଦ ମଧ୍ୟ କରିଥିଲେ । ତାଙ୍କର ସାହିତ୍ୟିକ କୃତିଗୁଡ଼ିକ ବୈପ୍ଳବିକ ଓ ପ୍ରଗତିଶୀଳ ଥିଲା । ସେଥିରେ ସେ ସମାଜର ବ୍ୟଭିଚାରକୁ ପ୍ରତିଫଳିତ କରିଥିଲେ, ଶାସକମାନଙ୍କ ଅର୍ଥନୈତିକ ଶୋଷଣକୁ ଲୋକଲୋଚନକୁ ଆଣିଥିଲେ ଏବଂ ରାଜନୈତିକ ବିଶୃଙ୍ଖଳାକୁ ସୁନ୍ଦରଭାବେ ଚିତ୍ରଣ କରିଥିଲେ । ନିଜର ବଳିଷ୍ଠ ରଚନାଗୁଡ଼ିକ ମାଧ୍ୟମରେ ସେ ବିଚକ୍ଷଣ ଭାବେ ତତ୍କାଳୀନ ସାମାଜିକ ଓ ଅର୍ଥନୈତିକ ଦୋଷତ୍ରୁଟି ପ୍ରତି ଓଡ଼ିଶାବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ଯେଉଁ କାବ୍ୟିକ ସୃଷ୍ଟିଗୁଡ଼ିକରେ ଓଡ଼ିଆ ଜାତୀୟତାର ସ୍ଫୁଲିଙ୍ଗ ବିଚ୍ଛୁରିତ ହୋଇଥିଲା, ସେଗୁଡ଼ିକ ହେଲା 'ଉତ୍କଳଭ୍ରମଣ', 'ଉତ୍କଳ କୃଷକ' ଓ 'ଉତ୍କଳ ଭୂମି' ।

ଜାତୀୟତା ଜାଗରଣ କ୍ଷେତ୍ରରେ ଆଉ ଏକ ସ୍ୱନାମଧନ୍ୟ କବିଙ୍କର ଆବିର୍ଭାବ ଘଟିଥିଲା । ସେ ଥିଲେ ଗଙ୍ଗାଧର ମେହେର । ତାଙ୍କର ଚିନ୍ତାଶୀଳ ଲେଖନୀ ଦ୍ୱାରା ଗଙ୍ଗାଧର ଓଡ଼ିଶାବାସୀଙ୍କ ମନରେ ଦେଶମାତୃକା ପାଇଁ ଗଭୀର ଅନୁରାଗ ସୃଷ୍ଟି କରିପାରିଥିଲେ । ବିଶେଷତଃ ଯେତେବେଳେ ଊନବିଂଶ ଶତାବ୍ଦୀର ଶେଷଭାଗକୁ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଆନ୍ଦୋଳନ ତୀବ୍ରତର ହୋଇ ଉଠିଥିଲା, ସେତେବେଳେ ଜନସାଧାରଣଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା ତାଙ୍କର ହୃଦୟସ୍ପର୍ଶୀ କବିତା ।

ବିଂଶ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ସାହିତ୍ୟ କ୍ଷେତ୍ରରେ ଏପରି ପୁନର୍ଜାଗରଣର ପ୍ରତିଫଳନ ଅବ୍ୟାହତ ରହିଥିଲା, ପରବର୍ତ୍ତୀ ସମୟରେ ଯେଉଁ କବି ଓ ଲେଖକମାନେ ଜାତୀୟ ଜାଗରଣ ଆଣିବା କ୍ଷେତ୍ରରେ ଓଡ଼ିଶାର ସାହିତ୍ୟ ଉଦ୍ୟାନକୁ ପୁଷ୍ପିତ କରିଥିଲେ, ସେମାନେ ଥିଲେ ନନ୍ଦକିଶୋର ବଳ, ଗୋପାଳ ଚନ୍ଦ୍ର ପ୍ରହରାଜ, ମଧୁସୂଦନ ଦାସ, ଲକ୍ଷ୍ମୀକାନ୍ତ ମହାପାତ୍ର, ଦୀନବନ୍ଧୁ ମହାନ୍ତି, ପଦ୍ମଚରଣ ପଟ୍ଟନାୟକ, କୁନ୍ତଳା କୁମାରୀ ସାବତ, ଶ୍ରୀବତ୍ସ ପଣ୍ଡା, ବାଲୁକେଶ୍ୱର ମିଶ୍ର, ହରିହର ଦାଶ, ବିଶ୍ୱନାଥ କର, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଏବଂ କୃପାସିନ୍ଧୁ ମିଶ୍ର ଏମାନେ ଭଣାଅଧିକେ ତତ୍କାଳୀନ ଜାତୀୟ ସମସ୍ୟାଗୁଡ଼ିକ ନିଜର ବଳିଷ୍ଠ ଲେଖାଦ୍ୱାରା ପର୍ଯ୍ୟାଲୋଚନା କରି ନୂତନ ଦିଗଦର୍ଶନ ଦେଇଥିଲେ ।

ନୂତନ ପୁସ୍ତକ ଓ ପତ୍ରପତ୍ରିକାର ପ୍ରକାଶନ ତଥା ଶିକ୍ଷାର ବହୁଳ ପ୍ରସାର ଓଡ଼ିଆଙ୍କ ମନରେ ଜ୍ଞାନ ଆହରଣ ଓ ବିସ୍ତୃତି ପାଇଁ ପ୍ରବଳ ଆଗ୍ରହ ସୃଷ୍ଟି କରିଥିଲା । କେତେକ ସମମନୋଭାବାପନ୍ନ ଶିକ୍ଷିତ ବ୍ୟକ୍ତି ବିଭିନ୍ନ ସମସ୍ୟା ଉପରେ ନିଜର ମତ ବିନିମୟ ପାଇଁ ସଂଘ ବା ସଂଗଠନମାନ ଗଠନ କରିଥିଲେ । ୧୮୫୯ ମସିହାରେ ଗଠିତ 'ମ୍ୟୁଚୁଆଲ ଇମପ୍ରୁଭମେଣ୍ଟ ସୋସାଇଟି' ଥିଲା ଏ କ୍ଷେତ୍ରରେ ପ୍ରଥମ ସଂଗଠନ । ଏହାପରେ ପରେ ଯେଉଁ ସଂସ୍ଥା ବା ସଂଗଠନ କଟକରେ ଗଢ଼ି ଉଠିଥିଲା, ସେଗୁଡ଼ିକ ହେଲା 'ଉତ୍କଳ ଭାଷା ଉଦ୍ଦୀପନୀ ସଭା', 'କଟକ କ୍ଲବ', 'କଟକ ସୋସାଇଟି', ଉତ୍କଳ ଉଲ୍ଲାସିନୀ ସଭା', କଟକ ୟଙ୍ଗମେନସ୍ ଏସୋସିଏସନ୍, କଟକ ଭାଷା ଉଦ୍ଦୀପନୀ ସଭା, ଓଡ଼ିଶା ଇସଲାମିକ ଏସୋସିଏସନ ସଭା, ଶିକ୍ଷା ବିଧାୟିକା ସଭା, ସୁହୃଦସମାଜ, କଟକ ଷ୍ଟୁଡ଼େଣ୍ଟସ ଏସୋସିଏସନ, ଉତ୍କଳ ସଭା, କଟକ ୟୁନିୟନ କ୍ଲବ ଓ କଟକ ରିଡ଼ିଂ କ୍ଲବ । ଏହିପରିଭାବେ ସଳ୍ପ ସମୟ ମଧ୍ୟରେ କଟକ ସହରରେ ଅନେକ ଗୁଡ଼ିଏ ସୋସାଇଟି ଓ କ୍ଲବ ଆଦି ସ୍ଥାପନ କରାଯାଇଥିଲା । ଫଳସ୍ୱରୂପ କଟକ ସହର ଓଡ଼ିଶାର ସାଂସ୍କୃତିକ କାର୍ଯ୍ୟକଳାପର ମୁଖ୍ୟକେନ୍ଦ୍ର ହୋଇପଡ଼ିଲା । ଅନ୍ୟ କେତେକ ସଂଗଠନ ମଧ୍ୟ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ଗଢ଼ି ଉଠିଥିଲା । ବାଲେଶ୍ୱର ସହରରେ ଗଢ଼ି ଉଠିଲା 'ଉତ୍କଳ ଭାଷା ଉନ୍ନତି ବିଧାୟିନୀ ସଭା' 'ବାଲେଶ୍ୱର ସଭା', 'ବାଲେଶ୍ୱର ନାସନାଲ ସୋସାଇଟି', ବି.କେ. ସୋସିଆଲ କ୍ଲବ ଓ 'ବାଲେଶ୍ୱର ଜିଲ୍ଲାସ୍କୁଲ ରିଡ଼ି କ୍ଲବ' । ସେହିପରି ପୁରୀରେ ଗଢ଼ିଉଠିଲା 'ପୁରୀ ଭଗବତ୍ ସଂସଦ ସଭା', 'ପୁରୀ ସୋସାଇଟି', 'ପୁରୀ ଷ୍ଟୁଡ଼େଣ୍ଟସ ଏସୋସିଏସନ, 'ଉନ୍ନତି ସାଧକ କମିଟି' ଓ 'ପୁରୀ ଲିଟେରାରୀ କ୍ଲବ' । ସେହିପରି ଦକ୍ଷିଣ ଓଡ଼ିଶାରେ ବିଶେଷତଃ ଗଞ୍ଜାମରେ ଗଞ୍ଜାମ ଉତ୍କଳ ହିତବାଦିନୀ ସଭା ଓ ଉତ୍କଳ

ହିତୈଷିଣୀ ଏବଂ ପାରଳାଖେମୁଣ୍ଡିରେ ବିଦ୍ୟାବର୍ଦ୍ଧିନୀ ସଭା ଆଦି ପ୍ରତିଷ୍ଠା କରାଯାଇଥିଲା । ଏତଦ୍‌ବ୍ୟତୀତ ଢେଙ୍କାନାଳରେ 'ହିତୈଷୀ ସଭା', ବାରିପଦାରେ ରିଡ଼ିଂ କ୍ଲବ ଓ ସମ୍ବଲପୁରରେ ସ୍ୱାର୍ଥଧର୍ମରକ୍ଷିଣୀ ସଭା' ଆଦି ଗଢ଼ିଉଠିଥିଲା । ଏ ସମସ୍ତ ସଂଗଠନ ମଧ୍ୟରୁ ଜାତୀୟ ଚେତନା ସୃଷ୍ଟି କରିବାରେ ଉତ୍କଳ ସଭାର ଅବଦାନ ସର୍ବାଧିକ । କଟକ ପ୍ରିଣ୍ଟିଂ କମ୍ପାନୀର କୋଠାଘରେ ଉତ୍କଳ ସଭାର ସଦସ୍ୟମାନେ ନିୟମିତ ଭାବରେ ମିଳିତ ହୋଇ ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରୁଥିଲେ । ୧୮୮୨ ମସିହାରେ ଏହି ସଂସ୍ଥା ରାଜନୈତିକ କ୍ଷେତ୍ରରେ ଅଧିକ ପ୍ରଭାବଶାଳୀ ହୋଇ ଉଠିଲା । କାରଣ ସେତେବେଳେ ଏହାର ସଭାପତି ଚୌଧୁରୀ କାଶୀନାଥ ଦାସ ଓ ସମ୍ପାଦକ ଗୌରୀଶଙ୍କର ରାୟଙ୍କ ନେତୃତ୍ୱରେ ଗଠନମୂଳକ କାର୍ଯ୍ୟକ୍ରମଗୁଡ଼ିକ ହାତକୁ ନିଆ ଯାଇଥିଲା । ଏହାର ସଦସ୍ୟମାନେ ଓଡ଼ିଶାର ବିଭିନ୍ନ ଜାତି, ବିଭିନ୍ନ ଶ୍ରେଣୀରୁ ଆସିଥିବା ଯୋଗୁଁ ଉତ୍କଳ ସଭା' ଏକ ଜାତୀୟ ଫୋରମ ଭଳି କାର୍ଯ୍ୟ କରିଥିଲା । ଯାହା ପରବର୍ତ୍ତୀ ସମୟରେ ଉତ୍କଳ ୟୁନିୟନ କନଫରେନସ' ଦ୍ୱାରା ତ୍ୱରାନ୍ୱିତ ହୋଇଥିଲା । ଏହା ନିଜର ପ୍ରତିନିଧିମାନଙ୍କୁ ନିୟମିତଭାବେ ଭାରତୀୟ ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନକୁ ପ୍ରେରଣ କରୁଥିଲେ । ଏହିପରିଭାବେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ସାମାଜିକ ସଂଘ, ସଂଗଠନ ତଥା କ୍ଲବମାନଙ୍କର ଦ୍ରୁତ ବିକାଶ ଘଟିଥିଲା । ଏଗୁଡ଼ିକର ସଦସ୍ୟମାନେ ରାଜନୈତିକ, ସାମାଜିକ, ଧର୍ମୀୟ, ଐତିହାସିକ, ସାହିତ୍ୟିକ ତଥା ବୈଜ୍ଞାନିକ ବିଷୟମାନ ତଥା ତତ୍କାଳୀନ ସମସ୍ୟା ଗୁଡ଼ିକ ଉପରେ ଆଲୋଚନା କରିବାର ସୁଯୋଗ ପାଇଲେ । ମୁକ୍ତ ଆଲୋଚନା ଓ ଯୁକ୍ତିତର୍କ ବହୁବିଧ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିଥିଲା । ବିଶେଷତଃ ଆୟୋଜିତ ସଭାମାନଙ୍କରେ ଜ୍ଞାନୀ ତଥା ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ବକ୍ତୃତା, ଆଲୋଚନା ଓ ପ୍ରସ୍ତାବ ଆଦି ଶ୍ରୋତାମାନଙ୍କର ମାନସିକ ଦିଗବଳୟକୁ ଜାତୀୟ ପ୍ରେରଣା ଦ୍ୱାରା ଅଧିକ ବିସ୍ତାରିତ କରିଥିଲା । ଏହି ସବୁ ସଂସ୍ଥା ଓ ସଂଗଠନମାନଙ୍କର ମୁଖ୍ୟ କର୍ମକର୍ତ୍ତା ଓ ପୃଷ୍ଠପୋଷକ ଥିଲେ ସ୍ଥାନୀୟ ରାଜା, ଜମିଦାର ଏବଂ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ । ପରୋକ୍ଷରେ ଏମାନେ ଜନସାଧାରଣଙ୍କ ହୃଦୟରେ ଜାତୀୟତା ଭାବର ବୀଜ ବପନ କରିଥିଲେ ।

ଜାତୀୟତାର ବିକାଶ କ୍ଷେତ୍ରରେ ତତ୍କାଳୀନ ବୌଦ୍ଧିକ ସମ୍ପନ୍ନ ଚିନ୍ତାଶୀଳ ଗୋଷ୍ଠୀଙ୍କ ଅବଦାନ ପ୍ରଶଂସନୀୟ । ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କ ବ୍ୟତୀତ ଓଡ଼ିଶାର ରାଜା ଓ ଜମିଦାରମାନେ ଏହି ଶ୍ରେଣୀଭୁକ୍ତ ଥିଲେ । କିନ୍ତୁ ବ୍ରିଟିଶ ସରକାରଙ୍କ ନୂତନ ଭୂରାଜସ୍ୱ ନୀତି ଯୋଗୁଁ ବହୁ ଜମିଦାର ଓ ସ୍ଥାନୀୟ ସାମନ୍ତମାନେ ସର୍ବସ୍ୱାନ୍ତ ହୋଇ ପଡ଼ିଥିଲେ, ଯାହାଦ୍ୱାରା ସେମାନେ ସାମାଜିକ ନେତୃତ୍ୱ ନେବାରେ ଅକ୍ଷମ ହୋଇ ପଡ଼ିଲେ ଏବଂ ନିଜର ପୁରାତନ ସାମାଜିକ ସମ୍ମାନ ଓ ସ୍ଥିତି ହରାଇ ବସିଲେ । ଶିକ୍ଷାର ବ୍ୟାପକ ପ୍ରସାର. ସହିତ ନୂତନ ବୌଦ୍ଧିକ ଜାଗରଣ ହେତୁ ଗ୍ରାମାଞ୍ଚଳରେ ସୌଭାଗ୍ୟବଶତଃ ସେତେବେଳେ ଇଂରେଜ ଶିକ୍ଷାପ୍ରାପ୍ତ କେତେକ ଓଡ଼ିଆ ଓଡ଼ିଶାର ପରିବର୍ତ୍ତନ ଓ ପ୍ରଗତିର ଚିନ୍ତାଧାରା ଜନସାଧାରଣଙ୍କ ମନରେ ଜାତ କରାଇଲେ । ଏହି ଶିକ୍ଷିତ ଗୋଷ୍ଠୀ କ୍ରମଶଃ ଓଡ଼ିଶାରେ ଜାତୀୟ ଆନ୍ଦୋଳନର ପଥପ୍ରଦର୍ଶକ ହେଲେ । ସେମାନଙ୍କ ମଧ୍ୟରୁ ଅଗ୍ରଣୀ ଥିଲେ ମଧୁସୂଦନ ଦାସ, ଗୋପାଳବଲ୍ଲଭ ଦାସ, ଗୋବିନ୍ଦ ରଥ, ଚତୁର୍ଭୁଜ ଦାସ, ଫକୀରମୋହନ ସେନାପତି, ନବୀନ ଚନ୍ଦ୍ର ଷଡ଼ଙ୍ଗୀ, ଅଭିରାମ ଭଞ୍ଜ, ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଗୋପବନ୍ଧୁ ଦାସ, ବିଶ୍ୱନାଥ କର ଓ ଶ୍ୟାମ ସୁନ୍ଦର ରାଜଗୁରୁ । ଏତଦ୍‌ବ୍ୟତୀତ କେତେଜଣ ବଙ୍ଗାଳୀ ଯେଉଁମାନେ ଓଡ଼ିଶାରେ ବହୁଦିନଧରି ସ୍ଥାୟୀଭାବେ ବସବାସ କରୁଥିଲେ, ସେମାନେ ଓଡ଼ିଶାର ସମସ୍ୟା ସହିତ ନିଜକୁ ପୂର୍ଣ୍ଣଭାବେ ମିଶାଇ ଦେଇଥିଲେ । ସେଇ କେତେଜଣ ଓଡ଼ିଆ ଭାଷା ଓ ଓଡ଼ିଆ ଜାତିର ପ୍ରଗତି ପାଇଁ ଆନ୍ତରିକ ଉଦ୍ୟମ କରିଥିଲେ । ସେମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ବର୍ଷୀୟାନ ସାମ୍ବାଦିକ ଗୌରୀଶଙ୍କର ରାୟ, ସ୍ୱନାମଧନ୍ୟ ସମାଜ ହିତୈଷୀ ବୈକୁଣ୍ଠନାଥ ଦେ, ପ୍ରଖ୍ୟାତ ଲେଖକ ରାଧାନାଥ ରାୟ ଓ ରାମଶଙ୍କର ରାୟ । ବାସ୍ତବିକ ଓଡ଼ିଶାରେ ଏହିମାନେ ବୌଦ୍ଧିକ ଜାଗରଣ ସୃଷ୍ଟିପାଇଁ ପଥ ଉନ୍ମୋଚନ କରିଥିଲେ । ଓଡ଼ିଶାର ଆଉ ଯେଉଁ ସ୍ଥାୟୀ ବସବାସ କରୁଥିବା ବଙ୍ଗାଳୀ ଏ ଦିଗରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ସେମାନେ ଥିଲେ ପ୍ୟାରୀମୋହନ ଆଚାର୍ଯ୍ୟ, ସୀତାନାଥ ରାୟ, ଦ୍ୱାରିକାନାଥ ଚକ୍ରବର୍ତ୍ତୀ, ନିମାଇଁ ବଲ୍ଲଭ ବିଦ୍ୟାସାଗର ଓ କୃଷ୍ଣପ୍ରସାଦ ଚୌଧୁରୀ । ଓଡ଼ିଶାର ଏଇ ସମସ୍ତ ବୌଦ୍ଧିକ ସମ୍ପନ୍ନ ବ୍ୟକ୍ତିମାନଙ୍କ ସଂଖ୍ୟା ସ୍ୱଳ୍ପ ଥିଲେ ମଧ୍ୟ ତତ୍କାଳୀନ ସମାଜ ଉପରେ ସେମାନଙ୍କର ଗଭୀର ପ୍ରଭାବ ପରିଲକ୍ଷିତ ହୋଇଥିଲା । ସମାଜବାଦ, ସାମ୍ୟବାଦ, ସ୍ୱାଧୀନଚିନ୍ତା ଓ ମାନବିକ ଅଧିକାରଗୁଡ଼ିକ ଉପରେ ଗୁରୁତ୍ୱ ଦେଇ ପାରସ୍ପରିକ ସହଯୋଗ ଓ ବୁଝାମଣା ଦ୍ୱାରା କାର୍ଯ୍ୟ କରିବାକୁ ସେମାନେ ଓଡ଼ିଶାବାସୀଙ୍କୁ ମାନସିକ ତାଲିମ ଦେଇଥିଲେ । ତାଦ୍ୱାରା ଓଡ଼ିଆମାନଙ୍କ ପାଇଁ ସେମାନେ ଏକ ନୂତନ ବାର୍ତ୍ତା, ନୂତନ ଆଶା ସୃଷ୍ଟି କରିଥିଲେ । ଓଡ଼ିଶାର ଏକ ସ୍ୱତନ୍ତ୍ର ସ୍ଥିତି ରହିଛି ଓ ଓଡ଼ିଆମାନେ ଅନ୍ୟମାନଙ୍କଠାରୁ ଯେ ସ୍ୱତନ୍ତ୍ର, ଏହା ଭାବିବାକୁ ଓଡ଼ିଶାବାସୀଙ୍କୁ ସେମାନେ ବାଧ୍ୟ କରିପାରିଥିଲେ । ବାସ୍ତବିକ, ଏହି ବୁଦ୍ଧିଜୀବୀମାନଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁ ଓଡ଼ିଆ ଜାତିର ପୁନରୁତ୍ଥାନ, ଓଡ଼ିଆ ଜାତିର ଅଭିନ୍ନତାର ଅନ୍ୱେଷଣ ପ୍ରକୃତ ରୂପ ନେଇଥିଲା ।

ଇଂରେଜମାନେ ଓଡ଼ିଶା ଅଧିକାର ସମୟରେ ସରକାରୀ ଚାକିରିରେ ଓଡ଼ିଆମାନେ ପ୍ରାୟ ନଥିଲେ କହିଲେ ଚଳେ । ମରହଟ୍ଟା ସରକାରଙ୍କ ଅଧୀନରେ କାର୍ଯ୍ୟରତ ଥିବା ଓଡ଼ିଆ ଶିରସ୍ତାଦାର ଓ ଅମୀନମାନଙ୍କ ବଦଳରେ ବଙ୍ଗାଳୀ କର୍ମଚାରୀମାନଙ୍କୁ ବ୍ରିଟିଶ ସରକାରଙ୍କ ଦ୍ୱାରା ନିଯୁକ୍ତି ଦିଆଗଲା । ୧୮୩୫ ମସିହାରେ ହୋଇଥିବା ଭୁବ ବୋବସ୍ତ ସମୟରେ କେତେକ ଓଡ଼ିଆ ଉଚ୍ଚପଦବୀରେ ଅବସ୍ଥାପିତ ହେବାର ସୁଯୋଗ ପାଇଲେ । କିନ୍ତୁ ଏମାନଙ୍କ ସଂଖ୍ୟା ଖୁବ୍ କମ ଥିଲା । ସେତେବେଳେ ଇଂରେଜୀ ଶିକ୍ଷା ପ୍ରତି ଓଡ଼ିଆମାନଙ୍କର ଥିଲା ବିତୃଷ୍ଣାଭାବ । ପୁନଶ୍ଚ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଦେଖାଗଲା ଯେ ଓଡ଼ିଆମାନେ ସହରୀ ସଭ୍ୟତା ପ୍ରତି ଅନାସକ୍ତ ରହୁଛନ୍ତି । ଯେତେବେଳେ ଓଡ଼ିଆମାନେ ସହରମାନଙ୍କରେ ଚାକିରି କଲେ, ସେତେବେଳେ ସେମାନେ ନିଜ ପରିବାରବର୍ଗଙ୍କୁ ସେଠାକୁ ନେବାକୁ ଅମଙ୍ଗ ହେଲେ । ଓଡ଼ିଆ ବ୍ରାହ୍ମଣମାନେ ମଧ୍ୟ ନିଜ ଜାତି ଚାଲିଯିବା ଏବଂ ସାମାଜିକ ବାସନ୍ଦକୁ ଭୟ କରି ଇଂରେଜ ସରକାରଙ୍କ ଅଧୀନରେ ଚାକିରି କରିବାକୁ ପଶ୍ଚାତପଦ ହେଲେ । କିନ୍ତୁ ଏ ସବୁ ସତ୍ତ୍ୱେ, ବିଭିନ୍ନ ମହଲରୁ ଦାବି ହେବାରୁ ବ୍ରିଟିଶ ସରକାର ସ୍ଥାନୀୟ ଓଡ଼ିଆମାନଙ୍କୁ ଅଧିକ ସଂଖ୍ୟାରେ ସରକାରୀ ଚାକିରିରେ ନିଯୁକ୍ତି ଦେବାପାଇଁ ପଦକ୍ଷେପ ନେଲେ । ଜି.ଏଫ. କକବର୍ଣ୍ଣ, ଏ.ଜେ.ଏମ୍. ମିଲସ୍ ଓ ଏଫ. ଖୋଲଡ୍‌ସବରି ଆଦି କମିଶନମାନଙ୍କର ଏକ୍ଷେତ୍ରରେ ଉଦ୍ୟମ

ପ୍ରଶଂସନୀୟ । ସେତେବେଳେ ଓଡ଼ିଆମାନଙ୍କୁ ଅଧିକ ଚାକିରି ଦେବାପାଇଁ ମିଶନାରୀମାନେ ଏବଂ ସ୍ଥାନୀୟ ପତ୍ରପତ୍ରିକାଗୁଡ଼ିକ ସରକାରଙ୍କ ପାଖେ ହୃତ୍ତବାଦି କରିଥିଲେ । ୧୮୬୮ ମସିହା ମଇ ୧୬ ତାରିଖ ସଂସ୍କରଣରେ 'ଉତ୍କଳ ଦୀପିକା' ଏ ପ୍ରସଙ୍ଗରେ ଲେଖିଥିଲା, '' ଏଠାକାର ଜିଲ୍ଲା ଓ ପ୍ରାଦେଶିକ ଶାସନକର୍ତ୍ତାମାନେ ସ୍ଥାନୀୟ ଲୋକମାନଙ୍କୁ ଉଚ୍ଚପଦବୀରେ ଯେପର୍ଯ୍ୟନ୍ତ ନିଯୁକ୍ତ ନ କରିଛନ୍ତି, ସେ ପର୍ଯ୍ୟନ୍ତ ଓଡ଼ିଶାବାସୀଙ୍କ ସାମାଜିକ ସ୍ଥିତିରେ ଉନ୍ନତି ଆଶାକରିବା ନିଷ୍ପ୍ରୟୋଜନ'' । ପୂର୍ବରୁ ୧୮୬୭ ମସିହାରେ ଭାରତ ସରକାର ବଙ୍ଗଳା ପ୍ରେସିଡେନ୍ସିର ସରକାରଙ୍କୁ ନିର୍ଦ୍ଦେଶ ଦେଇ କହିଥିଲେ ଯେ, ସରକାରୀ ସମ୍ମାନଜନକ ଉଚ୍ଚପଦପଦବୀମାନଙ୍କରେ ସ୍ଥାନୀୟ ଲୋକମାନଙ୍କୁ ଭବିଷ୍ୟତରେ ଅଗ୍ରାଧିକାର ଦିଆଯିବ । ଏହା ଓଡ଼ିଆମାନଙ୍କୁ ଉଚ୍ଚଚାକିରୀରେ ଅବସ୍ଥାପିତ କରିବା ପାଇଁ ବ୍ରିଟିଶ କର୍ମଚାରୀମାନଙ୍କୁ ପ୍ରୋତ୍ସାହିତ କରିଥିଲା । ଇତିମଧ୍ୟରେ ଅଧିକସଂଖ୍ୟକ ସ୍କୁଲ ଓ ଗୋଟିଏ କଲେଜ (ରେଭେନ୍ସା କଲେଜ) ସ୍ଥାପନ ହେତୁ, ଓଡ଼ିଶାବାସୀ ଅଧିକ ସଂଖ୍ୟାରେ ଉଚ୍ଚଶିକ୍ଷା ଲାଭ କରିବାକୁ ସୁଯୋଗ ପାଇଲେ । ତେଣୁ ଏହି ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କୁ ଉଚ୍ଚସରକାରୀ ଚାକିରିଦେବାକୁ ସୁବିଧା ହେଲା । ଏହି ସରକାରୀ ଚାକିରି କରୁଥିବା ବ୍ୟକ୍ତିମାନେ ଓଡ଼ିଶାର ତଥା ଦେଶର ବିଭିନ୍ନ ସମସ୍ୟା ପ୍ରତି ଧ୍ୟାନ ଦେଇ, ଏହାର ନିରାକରଣ ପାଇଁ ଚିନ୍ତା କରିଥିଲେ । ଜାତୀୟ ସମସ୍ୟାଗୁଡ଼ିକ ସହିତ ଜଡ଼ିତ ରହିବା ଦ୍ୱାରା ସେମାନଙ୍କ ମଧ୍ୟରେ ଜାତୀୟ ଚେତନା ଅଧିକତର ହୋଇଥିଲା । କେବଳ ସେତିକି ନୁହେଁ, ସେମାନେ ଅନ୍ୟମାନଙ୍କୁ ମଧ୍ୟ ଏ କ୍ଷେତ୍ରରେ ପ୍ରଭାବିତ କରି ପାରିଥିଲେ ।

ଶିକ୍ଷା ଓ ସାଂସ୍କୃତିକ କାର୍ଯ୍ୟକଳାପ ମାଧ୍ୟମରେ ନୂତନ ଚିନ୍ତାଧାରା ଗ୍ରହଣ ପୂର୍ବକ ଓଡ଼ିଶାବାସୀଙ୍କ ମାନସିକ ଦିଗବଳୟରେ ଯେଉଁଭଳି ଅଭୂତପୂର୍ବ ପରିବର୍ତ୍ତନ ଦେଖାଦେଲା, ସେପରି ସ୍ଥଳେ ସମାଜ ଆଉ ଅଧିକ ସ୍ଥିତିଶୀଳ ହୋଇ ରହି ପାରିଲା ନାହିଁ । ଓଡ଼ିଶାରେ ସାମାଜିକ ଜାଗରଣ ସୃଷ୍ଟି ହୋଇ ସାମାଜିକ ସଂସ୍କାର ଆଣିବାରେ ସାହାଯ୍ୟ କଲା । ସତୀଦାହ ପ୍ରଥା ଉଚ୍ଛେଦ ଥିଲା ଏଦିଗରେ ଏକ ବଳିଷ୍ଠ ପଦକ୍ଷେପ । ଏହାପରେ ନାରୀମାନେ ଅଧିକ ସ୍ୱାଧୀନତା ପାଇବାର ସୁଯୋଗ ପାଇଲେ । ଭବିଷ୍ୟତରେ ବିଧବା ବିବାହ ପାଇଁ ଏହା କ୍ଷେତ୍ର ପ୍ରସ୍ତୁତ କରିଥିଲା । ପୁନଶ୍ଚ ବାଲ୍ୟ ବିବାହକୁ ପରୋକ୍ଷ ଭାବେ ନିରୁତ୍ସାହିତ କରାଯାଇଥିଲା । ଗୃହରେ ନିଭୃତ ସ୍ଥାନରେ କାଳାତିପାତ କରୁଥିବା ନାରୀମାନେ ବାହାରକୁ ଆସି ସ୍କୁଲ ଓ କଲେଜମାନଙ୍କରେ ଶିକ୍ଷାଲାଭ କରିଥିଲେ । ସେମାନଙ୍କ ଦୃଷ୍ଟିଭଙ୍ଗୀକୁ ବଦଳାଇ ଦେବା ସଙ୍ଗେ ସଙ୍ଗେ ଏହା ସେମାନଙ୍କୁ ନିଜର ସାମାଜିକ ସ୍ଥିତି ପ୍ରତି ଅବଗତ କରାଇ ଥିଲା । ଫଳ ସ୍ୱରୂପ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ନାରୀମାନେ ନିଜକୁ ତତ୍କାଳୀନ ସାମାଜିକ ଓ ରାଜନୈତିକ ଆନ୍ଦୋଳନ ସହ ସାମିଲ କରିପାରିଥିଲେ । ପରବର୍ତ୍ତୀ ସମୟରେ ଦେଶରେ ଜାତୀୟ ଆନ୍ଦୋଳନ ତୀବ୍ରତର ହେଲାବେଳେ ଏହି ନାରୀମାନେ ପ୍ରାଦେଶିକ ସ୍ତରରେ ଚାଲିଥିବା କଂଗ୍ରେସ ଆନ୍ଦୋଳନରେ ଭାଗ ନେଇ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ ଜାତିପ୍ରଥା ବିରୁଦ୍ଧରେ ଦେଶସାରା ଆନ୍ଦୋଳନ ଚାଲିଥିଲା ବେଳେ ଓଡ଼ିଶାରେ ମଧ୍ୟ ଜାତିପ୍ରଥା ବିରୁଦ୍ଧରେ ସାମାଜିକ ଚେତନା ସୃଷ୍ଟି ହୋଇଥିଲା । ମୋଟ ଉପରେ ଓଡ଼ିଶାରେ ସାମାଜିକ ପରିବର୍ତ୍ତନ ଓଡ଼ିଆମାନଙ୍କୁ ଅଧିକ ପ୍ରଗତିଶୀଳ କରାଇ ପାରିଥିଲା, ଯାହା ଜାତୀୟତାର ବିକାଶ କ୍ଷେତ୍ରରେ ସହାୟକ ହୋଇଥିଲା ।

ଗମନାଗମନ ପଥର ବିକାଶ ଓଡ଼ିଶାରେ ଜାତୀୟ ଚେତନା ସୃଷ୍ଟି କରିବାରେ ପରୋକ୍ଷଭାବେ ସାହାଯ୍ୟ କରିଥିଲା । ଇଂରେଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ଓଡ଼ିଶାରେ ଯାତାୟତ ପାଇଁ ସଡ଼କ ନାମକୁ ମାତ୍ର ଥିଲା କହିଲେ ଚଳେ । ୧୮୨୫ ମସିହାରେ ଜଗନ୍ନାଥ ସଡ଼କର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏହା ଓଡ଼ିଶାର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । କାରଣ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କୁ ସଂଯୋଗ କରୁଥିବା ଅସଂଖ୍ୟ କ୍ଷୁଦ୍ର ସଡ଼କଗୁଡ଼ିକ ଆସି ଏହି ବୃହତ ଜଗନ୍ନାଥ ସଡ଼କ ସହ ମିଶିଥିଲା । ଫଳରେ ଗମନାଗମନର ସୁବିଧା ହେତୁ ସାମାଜିକ ଓ ରାଜନୈତିକ ଯୋଗାଯୋଗ ଅଧିକଭାବେ ହୋଇପାରିଲା । ସ୍ଥଳପଥ ଛଡ଼ା, ଜଳପଥରେ ମଧ୍ୟ ବାଷ୍ପଚାଳିତ ନୌକା ପ୍ରଚଳନ ହେତୁ ଗମନାଗମନ ବ୍ୟବସ୍ଥାରେ ପ୍ରଗତି ଦେଖା ଦେଇଥିଲା । ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଓଡ଼ିଶାରେ ରେଳପଥର ପ୍ରଚଳନ ଗମନାଗମନ କ୍ଷେତ୍ରରେ ଏକ ନୂଆ ଯୁଗ ଆରମ୍ଭ କରିଥିଲା । ଓଡ଼ିଶାବାସୀ କ୍ରମଶଃ ଅନ୍ୟ ପ୍ରଦେଶର ଅଧିବାସୀ ସଙ୍ଗେ ଅଧିକ ମିଶିବାର ସୁଯୋଗ ପାଇଲେ । ସେହିପରି ଓଡ଼ିଶାର ଆଦିବାସୀମାନେ ଯାତାୟାତ ପଥର ସୁବିଧା ହେତୁ ରାଜ୍ୟର ଅନ୍ୟ ଉନ୍ନତ ସଭ୍ୟ ଅଞ୍ଚଳର ବାସିନ୍ଦାମାନଙ୍କ ସହ ମିଳାମିଶା କରି ପାରିଲେ । ଗୋଟିଏ ସ୍ଥାନର ଲୋକ ଅନ୍ୟସ୍ଥାନକୁ ସୁବିଧାରେ ଯାଇ ପାରିବାରୁ, ଜାତୀୟ ଏକତାଭାବ ସେମାନଙ୍କ ମନରେ ସୃଷ୍ଟି ହୋଇଥିଲା । ଏହି ଏକତାଭାବରୁ ଜନ୍ମ ନେଇଥିଲା ଜାତୀୟତା । ପୁନଶ୍ଚ, ଯାତାୟାତର ସୁବିଧା ହେତୁ ଜାତୀୟ ଆନ୍ଦୋଳନ ମଧ୍ୟ ଗୋଟିଏ ଅଞ୍ଚଳରୁ ଅନ୍ୟଅଞ୍ଚଳକୁ ସୁବିଧାରେ ବ୍ୟାପୀ ଯାଇଥିଲା ।

ପରବର୍ତ୍ତୀ ସମୟରେ ଓଡ଼ିଶାରେ ଦେଖାଦେଲା ଭାଷା ଆନ୍ଦୋଳନ । ଏହି ଆନ୍ଦୋଳନ ଓଡ଼ିଆମାନଙ୍କୁ ମାତୃଭାଷା ଓ ମାତୃଭୂମି ପ୍ରତି ଅନୁରାଗ ସୃଷ୍ଟି କରିବାରେ ସହାୟକ ହେଲା । ଓଡ଼ିଶାବାସୀଙ୍କ ହୃଦୟରେ ଏହା ଜାତୀୟ ଚେତନା ଆଣିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ ସେମାନେ ଦେଶ ବ୍ୟାପୀ ଚାଲିଥିବା ସ୍ୱାଧୀନତା ସଂଗ୍ରାମରେ କିପରି ବଳିଷ୍ଠ ଭୂମିକା ଗ୍ରହଣ କରିପାରିବେ, ସେ କ୍ଷେତ୍ରରେ ଦିଗଦର୍ଶନ ଦେଇଥିଲା । ଏହିପରିଭାବେ ଓଡ଼ିଶାବାସୀ ଜାତୀୟତାର ମହାନ ମନ୍ତ୍ରରେ ଦୀକ୍ଷିତ ହୋଇ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ମହାସ୍ରୋତରେ ନିଜକୁ ମିଶାଇ ଦେଇଥିଲେ ।

ପ୍ରାଧ୍ୟାପକ, ଇତିହାସ ବିଭାଗ
ସରକାରୀ ମହିଳା ମହାବିଦ୍ୟାଳୟ, ପୁରୀ

—0—

# ଭାରତଛାଡ଼ ଆନ୍ଦୋଳନର ଅନୁଭୂତି

ଶ୍ରୀ ଗୌରଚନ୍ଦ୍ର ମହାପାତ୍ର



ସେଦିନ ହଠାତ୍ ଦେଖିଲି ପୋଲିସ୍ ଆମ ଘର ଚାରିପାଖେ ଘେରି ଯାଇଛନ୍ତି । ଭଦ୍ରକ ଠାରୁ ଆମ ଗ୍ରାମ ତାଳପଦା ଦଶ ମାଇଲ୍ ଦୂର । ପୋଲିସ୍ କେତେବେଳେ ଆସି କାହିଁକି ଘେରାଉ କରିଛନ୍ତି ? ସେଦିନ ଦୁର୍ଗାପୂଜା ପାର୍ବଣ ଉତ୍ସବ । ଆମ ନିଜ ଘରେ ଷୋଡ଼ଶୋପଚାରରେ ଦେବୀ ପୂଜା ହୁଅନ୍ତି । ଘଟ ଉତ୍ତୋଳନ ହୋଇ ସାରିଛି । ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଆମେ ସମସ୍ତେ ବ୍ୟସ୍ତ । ହଠାତ୍ ପୋଲିସ୍ କାହିଁକି ଆସିଲେ ? ଅଳ୍ପଦିନ ପୂର୍ବରୁ ମୋର ବଡ଼ଭାଇ ନିତ୍ୟାନନ୍ଦ ମହାପାତ୍ର ଭଦ୍ରକରୁ ବନ୍ଦୀ ହୋଇ ଯାଇଛନ୍ତି । ତାଙ୍କର ଅପରାଧ - ସେ କାହିଁକି ଲୁଣିଆ ଗୁଳିକାଣ୍ଡରେ ଆହତ ଲୋକମାନଙ୍କୁ ସହାନୁଭୂତି ଦେଖାଉଛନ୍ତି । ବ୍ରିଟିଶ୍ ସରକାର ରକ୍ତ ମୁଖା ହୋଇଥାନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । War Emergency ପାଇଁ ବା ଯୁଦ୍ଧକାଳୀନ ଜରୁରୀ ବ୍ୟବସ୍ଥା ପାଇଁ ସରକାର ବହୁତ କଡ଼ା ଆଇନ୍ କରିଥାନ୍ତି । ବ୍ରିଟିଶ ସରକାର ସେତେବେଳେ ଗାଁ ଗହଳିରୁ ଜୋର ଜବରଦସ୍ତ ଯୁଦ୍ଧଚାନ୍ଦା ଆଦାୟ କରୁଥାନ୍ତି । ଚାରିଆଡ଼େ ଆତଙ୍କ- ଭାବ ଖେଳିଯାଇଥାଏ । ଆମ ଘର ଘେରାଉ କରିବାର ଅଭିପ୍ରାୟ କ'ଣ ? ଭଦ୍ରକ ଥାନାର ବଡ଼ବାବୁ ପୋଲିସ୍ ଅଫିସର ଗଗନ ମହାନ୍ତି ଘର ଭିତରକୁ ପଶି ଆସିଲେ । ମୋର ବାବା କାନ୍ତକବି ଲକ୍ଷ୍ମୀକାନ୍ତଙ୍କୁ ସଭକ୍ତି ନମସ୍କାର ଜଣାଇଲେ । ବୋଉ ତଟସ୍ଥ ହୋଇ ଗୋଟିଏ କୋଣରେ ଠିଆ ହୋଇଥାଏ । ଚଉକି ଉଠାଇ ବସିପଡ଼ି ଗଗନ ବାବୁ କହିଲେ, "ଆଜ୍ଞା, ମୁଁ ଆପଣଙ୍କର ଘର ଖାନ୍‌ତଲାସି କରିବି ।" ତା' ପରେ କାଗଜପତ୍ର ଘାଣ୍ଟି ଦେଖିଲେ । ପେଟେରା ଆଡ଼କୁ ଆଙ୍ଗୁଳି ଦେଖାଇବାରୁ ବୋଉ ଟ୍ରଙ୍କ ଖୋଲିଦେଲା । ସେଥିରେ ଲୁଗାପଟା ଛଡ଼ା ଆଉ କିଛି ନଥିଲା । ତତ୍ପରେ ମୋର ଟେବୁଲ ଉପରେ ଥିବା କାଗଜପତ୍ରକୁ ଖେଳାଇ ଦେଖିଲେ । ପଚାରିଲେ - "ଟେବୁଲ ଭିତରେ କିଛି କାଗଜ ଅଛି କି ?" ମୁଁ ମନା କଲି । କିନ୍ତୁ ସତରେ ଟେବୁଲ ତଳେ ବ୍ରିଟିଶ ବିରୋଧୀ ପ୍ରଚାରପତ୍ର ଥିଲା । ପୋଲିସ୍ କିଛି ନପାଇ ପୁଣି ବାବାଙ୍କ ପାଖକୁ ଆସିଲେ । ବସିଯାଇ-ପୁଣି କହିଲେ, "ଉପରୁ ଅର୍ଡ଼ର ଆସିଛି, ମୁଁ ଗୌରବାବୁଙ୍କୁ ଆରେଷ୍ଟ କରିନେବି" ମୁଁ ଠିଆହୋଇଥାଏ । ଦେଖିଲି ବାବାଙ୍କ ଆଖି ଟିକିଏ ଉଜେଇ ଆସିଲା । ବୋଉ ନିର୍ବାକ୍ ହୋଇ ଠିଆ ହୋଇଥାଏ । ସତେ ଯେମିତି ତା' ଦେହରେ ପ୍ରାଣ ନାହିଁ । ଆମ ଘର ଚାରିପାଖେ ପୋଲିସ୍ ବ୍ୟତୀତ ଦେଖଣାହାରୀ ଲୋକ ଦୂରେଇ ଦୂରେଇ ଦେଖୁଥାନ୍ତି । ବାବାଙ୍କର ଖୁଡ଼ି ଜେମାଦେଇ ମୋତେ ତାଙ୍କ ଝରକା ପାଖକୁ ଡାକିଲେ । କହିଲେ, "ତୁ ଏମିତି କାମ କାହିଁକି କଲୁରେ !" ମୁଁ କହିଲି - "ମା' ଭୟ କରନାହିଁ, କିଛି ହେବ ନାହିଁ ।" ସେତେବେଳକୁ ପୋଲିସ୍ ମୋ ହାତରେ ବେଡ଼ି ଓ ଅଣ୍ଟାରେ ଦଉଡ଼ି ବାନ୍ଧିସାରିଥାନ୍ତି । ଭୟଭୀତ ହୋଇ ବେଶୀ ଲୋକ ମୋ ପାଖକୁ ଆସୁନଥାନ୍ତି । ମାତ୍ର ବାବାଙ୍କ ଇଙ୍ଗିତରେ କେତେ ଜଣ ହରିଜନ ମୋ ପାଖକୁ ଆସି "ଭାରତ ମାତା କି ଜୟ" ଓ "ମହାତ୍ମାଗାନ୍ଧୀ କି ଜୟ" ଧ୍ୱନି ଦେବାକୁ ଲାଗିଲେ । ସେମାନେ ମୋ ସାଥିରେ, ପୋଲିସ୍ ଜଗୁଆଳ ଥିବା ସତ୍ତ୍ୱେ ବୋଳସାହି ପର୍ଯ୍ୟନ୍ତ ଚାଲି ଚାଲି ଆସିଲେ । ବୋଳସାହି ଆମ ଘରଠାରୁ ତିନି ମାଇଲ୍ ଦୂର । ବର୍ଷାକାଦୁଅ ରାସ୍ତାରେ ହାତରେ କଡ଼ି ଓ ଅଣ୍ଟାରେ ଦଉଡ଼ି ଦେଇ ମୋତେ ଚଲେଇ ଚଲେଇ ପୋଲିସ୍ ନେଉଥାନ୍ତି । ବାଟରେ କେହି କେହି ସନ୍ଦେହ ଚକ୍ଷୁରେ ମୋତେ ଅନାଉଥାନ୍ତି । ମାତ୍ର "ମହାତ୍ମା ଗାନ୍ଧୀ କି ଜୟ" ଶୁଣିଲେ ସନ୍ଦେହ ମୋଚନ ହେଉଥିଲା । ସେହିପରି ଅବସ୍ଥାରେ ମୋତେ ଭଦ୍ରକର ଏସ.ଡ଼ି.ଓ. ପୂର୍ଣ୍ଣଚନ୍ଦ୍ର ମହାନ୍ତିଙ୍କ ଇଜଲାସକୁ ନେଇଗଲେ । ସେ କ'ଣ ଲେଖିଦେଲେ । ତା ପରେ ମୋତେ ଆଣି ପୋଲିସ୍‌ମାନେ ଭଦ୍ରକ ଜେଲ ଭିତରକୁ ପଠାଇଦେଲେ । ସେଠି ଅନେକ ସହବନ୍ଦୀଙ୍କ ସହିତ ଦେଖାହେଲା । ଜେଲ ଭରପୂର । ଜେଲରେ ଜାଗା ନ ହେବାରୁ କେତେକଙ୍କୁ ଆଉ ଗୋଟିଏ ଜେଲରେ ରଖାଗଲା । ସେତେବେଳେ ମହତାବ ଭବନ ମଧ୍ୟ ଜେଲରେ ପରିଣତ ହୋଇଥିଲା । କେତେକ ରାଜବନ୍ଦୀ ସେଠାରେ ମଧ୍ୟ ରହୁଥିଲେ । ଭଦ୍ରକ ଜେଲରେ ଲୁଣିଆ ଆନ୍ଦୋଳନର ସର୍ଦ୍ଦାର ମୁରଲୀ ପଣ୍ଡାଙ୍କ ସହିତ ସାକ୍ଷାତ୍ ହେଲା । ସେ କହିଲେ, "ଗୌରବାବୁ, ଆପଣ ଠିକ୍ କହୁଥିଲେ । ଆପଣଙ୍କ କଥା ମାନିଥିଲେ ହୁଏତ ପୋଲିସ୍ ଏହି ହତ୍ୟାକାଣ୍ଡ କରିବାର ସୁଯୋଗ ପାଇ ନଥାନ୍ତା ।" କଥା ହେଉଛି ଲୁଣିଆରେ, ପୋଲିସ୍ ଗୁଳିରେ ଲୋକମାନେ ମରିବାର ଅବ୍ୟବହିତ ପୂର୍ବରୁ ମୁଁ ଏବଂ ମୋର ଦାଦା କଂଗ୍ରେସପ୍ରେମୀ ହେମେନ୍ଦ୍ର ମହାପାତ୍ର ଲୁଣିଆ ଯାଇଥିଲୁ । ସେଠାରେ ସର୍ଦ୍ଦାର ମୁରଲୀ ପଣ୍ଡାଙ୍କୁ ସାକ୍ଷାତ୍ କରି ଅନୁରୋଧ କରିଥିଲୁ ଯେ ଆମର ଆନ୍ଦୋଳନକୁ ଏଠାରେ ସୀମିତ ନ ରଖି ଭଦ୍ରକକୁ ନେଇ ଚାଲନ୍ତୁ । ସେଠାରେ କଚେରୀରେ ପିକେଟିଂ କରିବା, କୋର୍ଟ ଭିତରେ ପଶି ସରକାରୀ କାଗଜ ଦଖଲ କରିବା,

କୋର୍ଟ ବର୍ଜନ ପାଇଁ ଓକିଲମାନଙ୍କୁ କହିବା ଶେଷରେ କୋର୍ଟ ଭିତରେ ପଶି ସରକାରୀ କାଗଜ ଦଖଲ କରିବା । ମାତ୍ର ତାହା ହୋଇପାରି ନଥିଲା । ଫଳରେ ଗ୍ରାମବାସୀମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟିର ସୁଯୋଗ ନେଇ ପୋଲିସ୍ ଗୁଳି ଚଳାଇଲା । ଏହି ଘଟଣାରେ କେତେକ ନିହତ ଓ ଅନେକ ଆହତ ହୋଇଥିଲେ ।

ଭଦ୍ରକ ଜେଲରୁ ମୋତେ ପୁଣି କଟକ ଜେଲକୁ ଆଣିଲେ । ସେଇଭଳି ହାତରେ ଲୁହାର ବେଡ଼ି ଓ ଅଣ୍ଟାରେ ମଜବୁତ୍ ଦଉଡ଼ି ବନ୍ଧାହୋଇଥାଏ । ଦଉଡ଼ିକୁ ଧରିଥାନ୍ତି କନେଷ୍ଟବଳ । ଭିଡ୍ରା ଓ ରେଲରେ ସେହିଏକା ଅବସ୍ଥା । ରେଲଗାଡ଼ିରେ ସହଯାତ୍ରୀମାନେ ବିସ୍ଫାରିତ ନେତ୍ରରେ ଚାହୁଁଥାନ୍ତି । ଏଇ ମାତ୍ର ପିଲା ଏତେ ବଦ୍‌ମାସ । ନିଶ୍ଚୟ ଚୋରି, ଡକାୟତି ଭଳି ମାରାତ୍ମକ ଅପରାଧ କରିଛି । ନୋହିଲେ ଏତେ କଡ଼ା ପହରାରେ ଏହାକୁ ନେଉଥାନ୍ତେ । ଏହିଭଳି ଚୁପୁରୁ ଚାପୁରୁ ଭାବ, ଯାତ୍ରୀମାନେ ପରସ୍ପରକୁ ଚାହାଁଚୁହିଁ, ଠାରାଠୁରି ହେଉଥାନ୍ତି । କେହି ଭାବୁ ନଥାନ୍ତି ଯେ ମୁଁ ଜଣେ ରାଜନୈତିକ ବନ୍ଦୀ । ଭାରତ ଛାଡ଼ ଆନ୍ଦୋଳନରେ ଭାଗ ନେଇଥିବା ବିପ୍ଳବୀମାନଙ୍କୁ ଏପରି ଭାବରେ ସାଧାରଣତଃ ନିଆଯାଏ ନାହିଁ । ମୋତେ ଏତେ କଠୋର ପହରା ମଧ୍ୟରେ କାହିଁକି ନେଉଛନ୍ତି ? ମୁଁ ତାର ରହସ୍ୟ ପରେ ଜାଣିଲି । ମୋ ବିରୋଧରେ ହତ୍ୟା, ଘରପୋଡ଼ି, ରେଲ ଧାରଣା ଉପାଡ଼ିବା ଓ ତାର କାଟିନେବାପରି ଗୁରୁତର ଅଭିଯୋଗମାନ ଥିଲା । କଟକ ଷ୍ଟେସନରୁ ମୋତେ ଓହ୍ଲାଇ ଦିଆଯାଇ ସିଧାସଳଖ କଟକ କଚେରୀକୁ ନିଆଗଲା । ସେ ପର୍ଯ୍ୟନ୍ତ ମୋତେ ଖାଇବାକୁ କିମ୍ବା ପିଇବାକୁ ଦେଇ ନଥାନ୍ତି । କଟକ କଚେରୀରେ ହାକିମ ସେହିଭଳି ପୋଲିସଠାରୁ କ'ଣ ଶୁଣିଲେ ଏବଂ କାଗଜ ଖଣ୍ଡେ ଲେଖି ପୋଲିସ ହାତକୁ ବଢ଼ାଇଦେଲେ । ପୋଲିସ୍ ମୋତେ ସେଇ ଅବସ୍ଥାରେ ସେହିଭଳି ବାନ୍ଧି କଟକ ଜେଲ ଫାଟକରେ ଆଣି ଅଟକ ରଖିଲେ । ହାକିମ ଓ ପୋଲିସ ଭିତରେ ଲେଖାପଢ଼ା ବିଷୟରେ ମୋତେ କିଛି ଶୁଣାଉ ନଥାନ୍ତି । ପୋଲିସ୍ ମୋତେ ନେଇ କଟକ ଜେଲରଙ୍କ ଜିମାରେ ରଖିଲେ । ଏତେବେଳେ ମୋର ଅଣ୍ଟା ଦଉଡ଼ି ଓ ହାତକଡ଼ି ଫିଟିଲା । ମୁଁ ଜେଲ ଭିତରକୁ ଯିବା ମାତ୍ରେ ଗଗନ ପବନ ଫଟାଇ ଚିତ୍କାର ଶୁଭିଲା - ''ଇନ୍ କିଲାବ୍ - ଜିନ୍ଦାବାଦ୍' ''କୌମୀନାରା - ବନ୍ଦେମାତରମ୍'', ''ମହାତ୍ମାଗାନ୍ଧୀ କୀ ଜୟ'' ଏହିପରି ସ୍ୱାଗତ ସମ୍ଭାଷଣରେ ମୋତେ କଟକ ଜେଲରେ ବନ୍ଦୀମାନେ ପାଛୋଟି ନେଲେ । ମୁଁ ପଚାରିଲି, ଇନ୍‌କିଲାବ ଅର୍ଥ କ'ଣ ? ଜଣେ କହିଲେ 'ଇନ୍'ମାନେ ଭିତରକୁ ଓ 'କିଲାବ୍' ମାନେ 'କିଲ୍ଲା' ଅର୍ଥାତ୍ ବ୍ରିଟିଶ୍ ସରକାର ଶାସନ ଭିତରକୁ ଆମମାନଙ୍କ ଭଳି ଆପଣବି ଗୋଟିଏ କିଲ୍ଲା ହୋଇ ଆସିଗଲେ । ସେତେବେଳେ ଗୋଟିଏ ହସର ଜୁଆର ଖେଳିଗଲା । କଟକ ଜେଲରେ ବହୁତ କୌତୁକ ପ୍ରଦ ସ୍ମୃତି ରହିଛି । ତନ୍ମଧ୍ୟରୁ କେତୋଟି ଉପସ୍ଥାପନ କରୁଛି ।

ଦିନେ ଜେଲ କର୍ତ୍ତୃପକ୍ଷ ମୋତେ ଅଫିସକୁ ଡକାଇ ପଠାଇଲେ । ସେତେବେଳକୁ ମାସାଧିକ କାଳ କଟକ ଜେଲରେ ମୁଁ ତୃତୀୟ ଶ୍ରେଣୀ ବନ୍ଦୀ ଭାବେ ଅତିବାହିତ କରି ସାରିଲିଣି । ଜେଲର ସାହେବଙ୍କର କି ହୁକୁମ ହେବ । ଆସିଗଲି ଜେଲଖାନାର ଅଫିସକୁ । ମୋତେ ଚିହ୍ନିଲା ଭଳି ଜଣେ ଭଦ୍ରଲୋକ ମୋ ନାମ ଧରି ଡାକିଲେ - 'ଆସନ୍ତୁ ଗୌରବାବୁ, ବସନ୍ତୁ !' ଗୋଟିଏ କାଠଚେୟାର ଆଡ଼କୁ ହାତଠାରି ବସିବାକୁ ଅନୁରୋଧ କଲେ । ଏପରି ବ୍ୟବହାର ମୁଁ ଆଶା କରିନଥିଲି । ସରକାରୀ କର୍ମଚାରୀଙ୍କର ଏହି ଆଚରଣ ମୋତେ ବିସ୍ମୟମିଶା ଆଶଙ୍କା ଆଣିଦେଇ ଥିଲା । ମୁଁ ବସିଲାରୁ ଭଦ୍ରଲୋକ ମୋତେ ହସି ହସି କହିଲେ - ମୁଁ ଆପଣଙ୍କର ସେକେଣ୍ଡ କ୍ଲାସ୍ କରି ଦେଇଛି । ଆପଣ ଆଉ ଥାର୍ଡ଼କ୍ଲାସ ପ୍ରିଜନର ନାହାନ୍ତି । ଅର୍ଥାତ୍ ସେହି ସାଦା ପୋଷାକ ରେ ଥିବା ଭଦ୍ରଲୋକଙ୍କ ଅନୁଗ୍ରହରୁ ମୁଁ ଆଉ ତୃତୀୟ ଶ୍ରେଣୀ ବନ୍ଦୀ ନାହିଁ, ଏହାହିଁ ତାଙ୍କ କହିବାର ଉଦ୍ଦେଶ୍ୟ ଥିଲା । ତା ପରେ ମୋର ସ୍ୱାସ୍ଥ୍ୟ କିପରି ଅଛି ଇତ୍ୟାଦି କେତେକ ମାମୁଲି କଥା ପରେ ମୋତେ ପଚାରିଲେ - ଗୌର ବାବୁ ! ଆପଣ ତ ଏହି ଦ୍ୱିବେଦୀ ଷଡ଼ଯନ୍ତ୍ରରେ ନଥିଲେ ? ମୁଁ କହିଲି - 'ନାଁ' । ଆପଣ ମଧ୍ୟ କଂଗ୍ରେସ ମେମ୍ବର ନଥିଲେ । ମୁଁ କହିଲି- 'ନା' । 'ଖୁବ୍ ଭଲ କଥା । ଆପଣ ଏହା ଲେଖି ଦେଇ ଯାଆନ୍ତୁ ।'' ମୁଁ ଭାବିଲି ମୁଁ ଯାହା କହିଲି ଲେଖିଦେବି । କ୍ଷତି କଣ ! ମାତ୍ର ଅଧିକ କିଛି କହିଲେ ଦେଖାଯିବ । ମୋତେ ଭୟତ ଥାଏ । ଅଫିସରେ କର୍ମଚାରୀ, କଣ୍ଟ୍ରୁଆରୀ ଆଉ କେହି ନାହାନ୍ତି । ସହବନ୍ଦୀ ଜଣେ ହେଲେ ନାହାନ୍ତି । ମୁଁ ଲେଖିଲି ସେ ଡ଼ାକୁ ଆନ୍ତି । 'ମୁଁ କଂଗ୍ରେସର ସଭ୍ୟ ନଥିଲି । ମୁଁ ଏହି ଆନ୍ଦୋଳନରେ ଭଙ୍ଗା ରୁଜି, ଘରପୋଡ଼ି, ତାରକାଟିରେ ସହଯୋଗ କରିନାହିଁ । ଏତିକି ଲେଖିଦେଲାପରେ ଭଦ୍ରଲୋକ ମୋତେ ଖୁବ୍ ଟାଣ ସ୍ୱରରେ ଯାହା କହିଲେ, ତହିଁରେ ମୁଁ କଲମ ନ ଚଳାଇ ରହିଗଲି । ଭାବୁଥାଏ, ଏଭଦ୍ରଲୋକଙ୍କୁ ଜେଲ କର୍ତ୍ତୃପକ୍ଷ ଖୁବ୍ ସମ୍ମାନ ଦେଖାଉଛନ୍ତି । ନିଶ୍ଚୟ ଏ ଭଦ୍ରଲୋକ ପଦସ୍ଥ ଅଫିସର । ସାଦା ପୋଷାକରେ ଧୋତି ପଞ୍ଜାବୀ ପିନ୍ଧି ଆସିଛନ୍ତି । ପରେ ଜାଣିଲି ସେହି ଭଦ୍ରଲୋକ ସି.ଆଇ. ଡ଼ି. ବିଭାଗର ଅର୍ଥାତ୍ ଗୁପ୍ତଚର ବିଭାଗର ଇନିସ୍‌ପେକ୍ଟର-ଦ୍ୱିବେଦୀ ସାହେବ । ଯାହାହେଉ ଭଦ୍ରଲୋକ ମୋତେ ଗମ୍ଭୀର ହୋଇ କହିଲେ, ''ଲେଖନ୍ତୁ, ମହାତ୍ମାଗାନ୍ଧୀ ଯାହା କରୁଛନ୍ତି ତାହା ଦେଶ ପକ୍ଷରେ ଭଲ ନୁହେଁ ।......'' ମୁଁ କହିଲି - ''ମୁଁ ଏହା ଲେଖିପାରିବି ନାହିଁ ।'' ସେ ପୁଣି ଧମକାଇବା ଢଙ୍ଗରେ ମୁଣ୍ଡ ହଲାଇ ଧମକାଇବା ସହ ଜେଲ ଅଫିସରୁ ଚାଲିଯିବା ପାଇଁ କହିଲେ । ସେ ଯେତେବେଳେ ମୋତେ ଆଖିଦେଖାଇ ଲେଖିବା ପାଇଁ ବାଧ୍ୟକଲେ, ମୁଁ ମଧ୍ୟ ନିର୍ଭୟରେ ତାଙ୍କୁ ଆଖିଦେଖାଇ ଲେଖିବାପାଇଁ ମନାକଲି । ଏଥିରେ ସେ ଖୁବ୍ ରୁଷ୍ଟ ହୋଇଗଲାପରି ଜଣାପଡୁଥାଏ । ସନ୍ଧ୍ୟା ହୋଇଯାଉଥାଏ । ଜେଲରେ ଖିଆପିଆ ପରେ ଆଉ କେହି କାହାରିକୁ ଦେଖିବାର ସୁଯୋଗ ନଥାଏ । କେବଳ ନିଜ ୱାର୍ଡ଼ ମଧ୍ୟରେ ବନ୍ଦୀମାନଙ୍କ ସହ ବାର୍ତ୍ତାଳାପ ହେଉଥାଏ । ତା ପରଦିନ ସକାଳୁ ପ୍ରାର୍ଥନା ପରେ ମୋତେ 'ସମାଜର' ତତ୍‌କାଳୀନ ସମ୍ପାଦକ ଲିଙ୍ଗରାଜ ମିଶ୍ର ଡକାଇ ପଠାଇଲେ । ମୁଁ ଗଲାରୁ ସେ ମୋତେ କହିଲେ - ''କିହୋ ମହାପାତ୍ରେ, ତୁମେ କାଲି ସେ ପୋଲିସି ଇନିସ୍‌ପେକ୍ଟରଙ୍କୁ କ'ଣ କହିଲ କି ?'' ଜେଲର ମୋତେ କହିଲେ ଯେ ଗୌର ମହାପାତ୍ର ପୋଲିସିଙ୍କୁ ଯେପରି ବ୍ୟବହାର ଦେଖାଇଲେ, ଆମେ ସମସ୍ତେ ସେଥିରେ ଦୁଃଖିତ । ମୁଁ ତାଙ୍କୁ ସମସ୍ତ କଥା ବର୍ଣ୍ଣନା କରି ସି.ଆଇ.ଡ଼ି. ଅଫିସର ମୋତେ କିଭଳି ଆଖି ତରାଟି ଧମକାଇଲେ, ତାହା ଅଭିନୟ କରି ଦେଖାଇ ଦେଲି ଏବଂ ମୁଁ କିପରି ତାଙ୍କୁ ଅନୁରୂପ ଢଙ୍ଗରେ ଆଖି ଦେଖାଇଲି; ତାହା ମଧ୍ୟ ଆବୃତ୍ତି କଲାଭଳି ଦେଖାଇଦେଲି । ଏହା ଶୁଣି ଓ ଦେଖି ଲିଙ୍ଗରାଜବାବୁ ନିଜେ ଓ ଅନ୍ୟ ସହବନ୍ଦୀମାନେ ଠୋ ଠୋ କରି ହସି ଉଠିଲେ । ପରେ ପରେ ଅନେକ

ସହବନ୍ଦୀ ମୋତେ ସେହି ଅଭିନୟ ପୁନରାବୃତ୍ତି କରିବାକୁ ଅନୁରୋଧ କରନ୍ତି । ସମସ୍ତେ ତାହା ଉପଭୋଗ କରୁଥାନ୍ତି ।

କଟକ ଜେଲରେ ଆଉ ଗୋଟିଏ ଅବିସ୍ମରଣୀୟ ଘଟଣା ହେଉଛି ୧୯୪୮ ମସିହା ଜାନୁଆରୀ ୨୬ ତାରିଖର କଥା । ସହ ବନ୍ଦୀମାନେ ଗୋଟିଏ ତ୍ରିରଙ୍ଗା ଜାତୀୟ ପତାକା କେଉଁଠାରୁ ଯୋଗାଡ଼ କରିଥିଲେ । ସେମାନେ ତାହା ଲୁଚାଇ ରଖିଥାନ୍ତି । ସେତେବେଳେ ଜାନୁଆରୀ ୨୬ କୁ ସ୍ୱାଧୀନତା ଦିବସ ବୋଲି ଆମେ ମାନୁଥିଲୁ । କାରଣ କଂଗ୍ରେସର ଗୋଟିଏ ଖୋଲା ଅଧିବେଶନରେ ଏହିଭଳି ଏକ ଜାନୁଆରୀ ୨୬ ତାରିଖରେ ଭାରତ ପୂର୍ଣ୍ଣ ସ୍ୱାଧୀନତା ଚାହେଁ ଏବଂ ତାହା ଭାରତୀୟ- ମାନଙ୍କର ଜନ୍ମଗତ ଅଧିକାର ବୋଲି ଘୋଷଣା କରାଯାଇଥିଲା । ତେଣୁ ଭାରତ ସ୍ୱାଧୀନ ହେବା ପୂର୍ବରୁ ଜାନୁଆରୀ ୨୬ କୁ ଗଣତନ୍ତ୍ର ଦିବସ ନକହି ସ୍ୱାଧୀନତା ଦିବସ ବୋଲି କହି ଆମେମାନେ ସମ୍ମାନ ଦେଉଥିଲୁ ।

୨୬ ତାରିଖ ସକାଳ ଆଠଟାବେଳେ ଆମେ ଜେଲ ଭିତରେ ଗୋଟିଏ ଖୋଲା ଜାଗାରେ ଏକତ୍ର ହୋଇ ଲିଂଗରାଜ ମିଶ୍ରଙ୍କୁ ପତାକା ଉତ୍ତୋଳନ କରିବା ପାଇଁ ଅନୁରୋଧ କଲୁ । ବନ୍ଦୀମାନଙ୍କ ମଧ୍ୟରେ ଲିଂଗରାଜବାବୁ ସେତେବେଳେ ନେତୃତ୍ୱ ନେଉଥିଲେ । ସେ ପତାକା ଉଡ଼ାଇ ପତାକା ପାଖରେ ଠିଆ ହୋଇଥାନ୍ତି, ଆମେ ''ଝଣ୍ଡା ଉଁଚା ରହେ ହାମାରା' ଗୀତ ବୋଲିବାକୁ ଆରମ୍ଭ କଲୁ । ସଂଗେ ସଂଗେ ବିପଦ ସଂକେତ ବାଜି ଉଠିଲା । ବିଗୁଲୁ ଗର୍ଜିଉଠିଲା । ଲାଠି ଧାରୀ ପୋଲିସ୍ ଆମ ପାଖକୁ ଧାଇଁ ଆସିଲେ । ଆମ ଉପରେ ପୁଷ୍ପବୃଷ୍ଟି ବଦଳରେ ପ୍ରହାର ବୃଷ୍ଟି ହେଲା । ଠେଙ୍ଗା ପ୍ରହାରରେ ତଥା ବିଧା, ଚାପୁଡ଼ା ଆଘାତରେ ଆମକୁ ଛିନଛତ୍ର କରିଦେଲେ । ଆମକୁ ଯିଏ ଯେଉଁ ଓ୍ୱାର୍ଡ଼ରେ ଥିଲା, ସେଠାକୁ ନେଇଗଲେ ଏବଂ ପ୍ରତ୍ୟେକ ଓ୍ୱାର୍ଡ଼ର ବାହାର ପାଖରୁ ତାଲା ପକାଇ ଦେଲେ । ବନ୍ଦୀମାନେ ଆଉ ଏକାଠି ହେବାର ସୁଯୋଗ ଦିଆଗଲା ନାହିଁ । ସାଧାରଣତଃ ଦିନବେଳେ ପ୍ରତି ଓ୍ୱାର୍ଡ଼ର ବନ୍ଦୀମାନେ ଅବାଧରେ ମିଳାମିଶା କରନ୍ତି ଓ କଥାବାର୍ତ୍ତା ହୁଅନ୍ତି । ମାତ୍ର ଏହି ଘଟଣା ପରେ ଦଣ୍ଡସ୍ୱରୂପ ଆମକୁ ଆଉ ଅବାଧରେ ମିଳାମିଶା କରିବାର ସୁଯୋଗ ମିଳିଲା ନାହିଁ । ଫଳରେ ଅନଶନ ଆରମ୍ଭ ହେଲା । ଗାଡ଼ି ଗାଡ଼ି ଖାଦ୍ୟ ଫେରାଇଦିଆଗଲା । ଶୁଣିଲୁ ସେହି ଖାଦ୍ୟ ଗୁଡ଼ିକ ମାଟିତଳେ ଖାତ ଖୋଳି ପୋତି ଦେଲେ । ମୁଁ ମଧ୍ୟ ଅନଶନ କରିଥିଲି । କୌଣସି ଖାଦ୍ୟ ଗ୍ରହଣ ନକରି ଲୁଣପାଣି ପିଇ ସାତଦିନ ରହିଲି । ମାତ୍ର ସାତିଦିନକୁ ମୋତେ ଘନ ଘନ ବାନ୍ତି ହେଲା । ଜେଲ୍ କର୍ତ୍ତୃପକ୍ଷ ଡାକ୍ତର ଡ଼କାଇ ପଠାଇଲେ । ଅବସ୍ଥା ସାଂଘାତିକ ହେବାରୁ ମୁଁ ଅନଶନରୁ ବିରତ ହେଲି । ତିନିଚାରି ଦିନ ପରେ ଅନେକ ବନ୍ଦୀ ଅନଶନ ପରିହାର କଲେ, କିନ୍ତୁ ମାଷ୍ଟର ସାନ୍ନାୟାଁ ନାମକ ଜଣେ ବନ୍ଦୀ କୌଣସି ଆହାର ଗ୍ରହଣ କଲେ ନାହିଁ । ତାଙ୍କର ଅନଶନର ସାତଦିନ ପରେ ଜେଲ କର୍ତ୍ତୃପକ୍ଷ ତାଙ୍କ ପାଖକୁ ଆସି ଏହି ସମସ୍ୟାର ସମାଧାନର ସୂତ୍ର ବାହାର କରିବା ପାଇଁ ମାଷ୍ଟରସାନ୍ନାୟାଙ୍କୁ ଅନୁରୋଧ କଲେ । ଆମେ ସମସ୍ତେ ମାଷ୍ଟର ସାନ୍ନାୟାଁଙ୍କ ପାଖେ ପାଖେ ଘେରି ବସିଲୁ । କେଉଁ ସର୍ତ୍ତରେ ମାଷ୍ଟର ସାନ୍ନାୟା ଅନଶନ ଭାଙ୍ଗିବେ ତାହା ବିଚାର ଆଲୋଚନା ହେଲା । ମୁଖ୍ୟ ଦାବିଗୁଡ଼ିକ ଜେଲ କର୍ତ୍ତୃପକ୍ଷ ମାନିନେଲେ । ପୂର୍ବବତ ବନ୍ଦୀମାନେ ଜେଲଭିତରେ ପୁଣି ମିଳାମିଶା କରିପାରିଲୁ । ମୋତେ ଦ୍ୱିତୀୟ ଶ୍ରେଣୀର ବନ୍ଦୀଭାବରେ ରଖିଲେ । ମୁଁ ଯେଉଁ ଓ୍ୱାର୍ଡ଼ରେ ରହିଥିଲି ସେହି ଓ୍ୱାର୍ଡ଼ରେ ସହବନ୍ଦୀ ଭାବରେ ମାଷ୍ଟର ସାନ୍ନାୟାଁ ରହୁଥିଲେ । ସେ ଗଞ୍ଜାମର ତେଲୁଗୁଭାଷୀ ଲୋକ । ଓଡ଼ିଆ ବୁଝି ନଥିଲେ କି ପଢ଼ିପାରୁନଥିଲେ । ମୁଁ ତାଙ୍କୁ ଓଡ଼ିଆ ପଢ଼ାଉଥିଲି ଏବଂ ଇଂରାଜୀରେ ବୁଝାଉଥିଲି । ମୋର ମନେଅଛି, ମୋର ବାବା କାନ୍ତକବି ଲକ୍ଷ୍ମୀକାନ୍ତଙ୍କର କେତେକ ଲେଖା ପଢ଼ି ତାଙ୍କୁ ବୁଝାଉଥିଲା ବେଳେ ସେ ଭାବପ୍ରବଣ ହୋଇ ଆଖି ଛଳ ଛଳ କରିପକାଉଥିଲେ । ମୁଁ ଅନୁଭବ କରିଥିଲି ବାସ୍ତବିକ୍ ସିଏ ଜଣେ ଦେବପ୍ରତିମ ବ୍ୟକ୍ତି । ସେହି ଓ୍ୱାର୍ଡ଼ରେ ମଧ୍ୟ ସେତେବେଳେ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସ୍ୱର୍ଗୀୟ ରାମକୃଷ୍ଣ ପତି ଓ ସ୍ୱର୍ଗୀୟ ଭୈରବ ମହାନ୍ତିଙ୍କ ଭଳି ବାଘୁଆ ନେତାମାନେ ଥିଲେ । ସ୍ୱର୍ଗୀୟ ନିଶାମଣି ଖୁଣ୍ଟିଆ ଓ ଶରତ ମହାରଣା ମଧ୍ୟ ଏହି ଜେଲରେ କିଛି ଦିନ ରହିଥିଲେ ।

କଟକ ଜେଲରେ କେତେ ମାସ ରହିଲା ପରେ ଦିନେ ମୋତେ ଜେଲ ପରିସର ମଧ୍ୟରେ ସ୍ୱତନ୍ତ୍ର ବିଚାରାଳୟକୁ ଡ଼କା ଗଲା । ଆଉ କେତେ ଜଣଙ୍କୁ ମଧ୍ୟ ଅଲଗା ଅଲଗା ଭାବରେ ଡ଼କାଯାଇଥିଲା । କେହି କାହାର ବିଚାର ଶୁଣି ପାରିଲେ କି ନାହିଁ ମୋତେ ଜଣା ନାହିଁ । ମାତ୍ର ଡକା ହେଲାରୁ ମୋତେ କୋର୍ଟରେ ହାଜର କରାଇବା ସକାଶେ ଜେଲ ଜଗୁଆଳିମାନେ ନେଇଗଲେ । ମୁଁ ଆସାମୀମାନଙ୍କର ସ୍ଥାନରେ ଠିଆ ହେଲି । ବିଚାରପତି ମାଜିଷ୍ଟ୍ରେଟ୍ ମନୀନ୍ଦ୍ର ଗୁହ ମୋତେ ପଚାରିଲେ, 'ତୁମେ ରେଲ୍ ଲାଇନ୍ ଉଠାଇଛ ? ମୁଁ - କହିଲି 'ନା' । ''ଥାନା ପୋଡ଼ି, ତାର କାଟିବା କାର୍ଯ୍ୟ ମଧ୍ୟ ତୁମେ କରିଛ ? ନରହତ୍ୟା ମାମଲାରେ ସମ୍ପୃକ୍ତ ଅଛ ?'' ମୁଁ ସବୁ କଥା ଅସ୍ୱୀକାର କଲି । ହାକିମ ପୋଲିସି ଆଡ଼କୁ ଚାହିଁଲେ । ପୋଲିସ ମୋ ବିରୁଦ୍ଧରେ କୌଣସି ସାକ୍ଷୀ ଦେଇ ପାରିଲେ ନାହିଁ । ହାକିମ କହିଲେ - 'ନିର୍ଦ୍ଦୋଷରେ ଖଲାସ' । ସେତିକିବେଳେ, ସଙ୍ଗେ ସଙ୍ଗେ ପୋଲିସ୍ କହିଲେ - '' ଆପଣଙ୍କୁ ଭାରତ ରକ୍ଷା ଆଇନ୍ (Defence Act of India ବଳରେ ଅଟକ ବନ୍ଦୀ ବା Security prisioner କରାଗଲା ।

ବ୍ରିଟିଶ୍ ସରକାରଙ୍କର ଏହି ବିଚାର ପ୍ରହସନ ଏବଂ ଆଇନ୍‌କାନୁନ୍ କଥା ମୋତେ ବଡ଼ ଆମୋଦ ଦେଉଥାଏ । କିଛି ଦିନ ପରେ ମୋତେ ଗଞ୍ଜାମ ବ୍ରହ୍ମପୁରସ୍ଥିତ Central Jail (କେନ୍ଦ୍ରବନ୍ଦୀଶାଳା)କୁ ପଠାଇ ଦିଆଗଲା । ଯିବାଦିନ ରାତ୍ରିରେ ମୋର ପିଉସୀ ପୁଅ ଭାଇ ପୂର୍ବତନ ସବଜଜ ସ୍ୱର୍ଗୀୟ ବ୍ରଜ କିଶୋର ଦାସ ମୋତେ ଦେଖା କରିବାକୁ କଟକ ରେଳ ଷ୍ଟେସନକୁ ଆସିଥିଲେ । ସେ କହିଲେ, ସେ କର୍ତ୍ତୃପକ୍ଷଙ୍କୁ ମୋର ଜେଲରେ ସୁବିଧା କରାଇ ଦେବା ସକାଶେ ଜଣାଇଥିଲେ । ସେ ମଧ୍ୟ ମୋର ସ୍ୱାସ୍ଥ୍ୟ କଥା ଓ ଅନ୍ୟାନ୍ୟ ବିଷୟ ପଚାରି ବୁଝିଲେ । ମୁଁ ପୋଲିସ୍ ଘେରରେ କଟକ ଜେଲରୁ ବ୍ରହ୍ମପୁର ଜେଲକୁ ଆସିଲି । ଏଥର ମୋତେ ହାତ କଡ଼ି ଓ ଅଣ୍ଟା ଦଉଡ଼ି ଦିଆ ଯାଇ ନଥିଲା । କେବଳ ପାଖେ ପାଖେ ପୋଲିସ୍ ଜଗି ଥାଆନ୍ତି । ମୁଁ ଭଦ୍ର ଲୋକଙ୍କ ଭଳି ଜାମା ଜୋତା ହୋଇ ତାଙ୍କ ସାଥିରେ ଯାଇ ବ୍ରହ୍ମପୁର ଜେଲରେ ରହିଲି । ବ୍ରହ୍ମପୁର କେନ୍ଦ୍ର ଜେଲରେ ପ୍ରାୟ ଦୁଇ ବର୍ଷକାଳ ରହିଲି । ସେ ପୁଣି ଅନ୍ୟ ଏକ ଅଧ୍ୟାୟ ।

କାନ୍ତ କୁଟୀର,
ନୂଆ ବଜାର
ଭଦ୍ରକ - ୭୫୬ ୧୦୦

## ଅମର ଶହୀଦ

# ବିପ୍ଳବୀ ଜୟୀ ରାଜଗୁରୁ

୧୮୧୭ ମସିହାରେ ଓଡ଼ିଶାରେ ପ୍ରଥମ ପାଇକ ବିଦ୍ରୋହ ଅନୁଷ୍ଠିତ ହୋଇଥିଲା । ମାତ୍ର ଏହାର ୧୨ ବର୍ଷ ପୂର୍ବେ ଇଂରେଜମାନଙ୍କୁ ପ୍ରଚଣ୍ଡ ପ୍ରତିରୋଧ କରି ଓଡ଼ିଶାର ଯେଉଁ ବିପ୍ଳବୀ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ସ୍ୱର ଉତ୍ତୋଳନ ଓ ବିପ୍ଳବ କରିଥିଲେ, ସେମାନଙ୍କ ମଧ୍ୟରେ ଶହୀଦ ଜୟୀରାଜଗୁରୁଙ୍କ ନାମ ଉଲ୍ଲେଖଯୋଗ୍ୟ । ଜୟୀରାଜଗୁରୁଙ୍କ ପୂରାନାମ ହେଉଛି ଜୟକୃଷ୍ଣ ରାଜଗୁରୁ ମହାପାତ୍ର । ସେ ଚାନ୍ଦ ରାଜଗୁରୁଙ୍କ ଔରସରୁ ମାତା ହରାମଣିଙ୍କ ଗର୍ଭରୁ ୧୭୩୯ ଖ୍ରୀଷ୍ଟାବ୍ଦ କାର୍ତ୍ତିକ ମାସ ଶୁକ୍ଳପକ୍ଷ ନବମୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ ।



ଜୟକୃଷ୍ଣ ଶୈଶବ ଜୀବନ ଅତିବାହିତ ହେବା ପରେ ପୁରୀର ସଂସ୍କୃତ ପଣ୍ଡିତମାନଙ୍କଠାରୁ ସଂସ୍କୃତ ବିଦ୍ୟା ଅର୍ଜନ କରି ଯୋଗ୍ୟତାର ସହିତ ଦିବ୍ୟସିଂହ ଦେବଙ୍କ ରାଜ ସଭାରେ ରାଜଗୁରୁ ତଥା ମନ୍ତ୍ରୀ ଭାବରେ ପ୍ରତିଷ୍ଠିତ ହେଲେ । ଜୟକୃଷ୍ଣଙ୍କ ଯୋଗ୍ୟତାରେ ମୁଗ୍ଧ ହୋଇ ତାଙ୍କୁ ଆଠଗଡ଼ର ରାଜା ଧନଞ୍ଜୟ ହରିଚନ୍ଦନ ଜଗଦେବ ତାଙ୍କ ରାଜ ସଭାକୁ ନେଇଯିବା ପାଇଁ ବହୁତ ଉଦ୍ୟମ କରିଥିଲେ । ମାତ୍ର ଦିବ୍ୟ ସିଂହ ଦେବଙ୍କ ରାଜସଭା ଛାଡ଼ି ସେ ରାଜ୍ୟର ସର୍ବବିଧ ମଙ୍ଗଳ ତଥା ନିଜର ପ୍ରତିଭା ବିକାଶ କରାଇବାରେ ବ୍ରତୀ ହେଲେ । ଓଡ଼ିଶାରେ ଉତ୍କଳ ରାଜବଂଶର ପ୍ରତିଷ୍ଠା ବଢ଼ାଇବା ପାଇଁ ଉଦ୍ୟମ କରି ବରୁଣାଇଗଡ଼କୁ ସୁଦୃଢ଼ କରିବାକୁ ଲାଗିଲେ । ଖୋର୍ଦ୍ଧା ଅଞ୍ଚଳରେ ପାଇକ ଜାଗରଣ ପାଇଁ ପ୍ରବଳ ଉଦ୍ୟମ ଆରମ୍ଭ କଲେ । ସେ ସମସ୍ତ ପାଇକ ଗ୍ରାମକୁ ପଦବ୍ରଜରେ ଭ୍ରମଣ କରି ସେମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ କରି ପାଇକ ଆଖଡ଼ାମାନ ସଙ୍ଗଠନ କରି ନିଜେ ସମର ବିଦ୍ୟା ଶିଖାଉ ଥିଲେ । ତାଙ୍କରି ଉଦ୍ୟମରେ ଓଡ଼ିଶାରେ ଚାରିଆଡ଼େ ପାଇକ ଜାଗରଣ ଦେଖା ଦେଇଥିଲା । ରୋଡ଼ଙ୍ଗର ବକ୍ସି ବିଷମର ଭୂୟାଁ, ବାଲିସୁନ୍ଦର ପ୍ରମୁଖ ବ୍ୟକ୍ତିମାନେ ଜୟୀରାଜଗୁରୁଙ୍କୁ ସାହାଯ୍ୟ କରି ଜାଗରଣର ନେତୃତ୍ୱ ନେଇଥିଲେ । ଏ ଆନ୍ଦୋଳନ ଗୁପ୍ତ ଭାବରେ ସମଗ୍ର ଓଡ଼ିଶାରେ ଦେଖାଯାଇଥିଲା । କରଦ ରାଜ୍ୟମାନେ ସ୍ଥାନେ ସ୍ଥାନେ ବିଦ୍ରୋହ ଆରମ୍ଭ କଲେ । ଉକ୍ତ ବିଦ୍ରୋହମାନଙ୍କ ମଧ୍ୟରୁ ଢେଙ୍କାନାଳ ଓ ସମ୍ବଲପୁର ବିଦ୍ରୋହ ଅନ୍ୟତମ ।

ବୀରକିଶୋର ଦେବଙ୍କ ମୃତ୍ୟୁପରେ ଦ୍ୱିତୀୟ ମୁକୁନ୍ଦଦେବ ସିଂହାସନ ଆରୋହଣ କଲେ । ତାଙ୍କ ସମୟକୁ ଖୋର୍ଦ୍ଧା ଥାଏ ଭାରତର ଶେଷ ସ୍ୱାଧୀନ ଦୁର୍ଗ । ଇଂରେଜମାନେ ଓଡ଼ିଶାକୁ ଅଧିକାର କରିବା ପାଇଁ ସୁଯୋଗ ଖୋଜୁଥାନ୍ତି । ବ୍ରିଟିଶ୍ ଶାସକ କର୍ଣ୍ଣେଲ ହାରକୋର୍ଟ କୂଟନୀତି ପ୍ରୟୋଗ କରି ଖୋର୍ଦ୍ଧା ରାଜାଙ୍କ ପାଖକୁ ଖବର ଦେଲେ ଯେ ଯଦି ଖୋର୍ଦ୍ଧା ରାଜା ମରହଟ୍ଟାମାନଙ୍କୁ ସାହାଯ୍ୟ ନକରି ଇଂରେଜମାନଙ୍କୁ ସାହାଯ୍ୟ କରନ୍ତି, ତେବେ ଇଂରେଜମାନେ ମରହଟ୍ଟାମାନଙ୍କୁ ଆକ୍ରମଣ କରି ପରାସ୍ତ କରିବେ ଏବଂ ପୁରସ୍କାର ସ୍ୱରୂପ ଖୋର୍ଦ୍ଧା ରାଜାଙ୍କୁ ୧ ଲକ୍ଷ ମୁଦ୍ରା ସହିତ ତାଙ୍କର ହରାଇ ଥିବା ୪ ଗୋଟି ମରହଟ୍ଟା କବଳିତ ପ୍ରଗଣା (ରାହାଙ୍ଗ, ସରାଇ, ଚବିଶକୁଦ ଓ ଲୁମ୍ବାଇ) ଫେରସ୍ତ ମିଳିବ । ଦୀର୍ଘ ଦିନ ଧରି ଆଶାୟୀ ଥିବା ମୁକୁନ୍ଦ ଦେବଙ୍କ ଏ ଥିଲା ସୁବର୍ଣ୍ଣ ସୁଯୋଗ । ପ୍ରଧାନମନ୍ତ୍ରୀ ଜୟୀରାଜଗୁରୁଙ୍କ ବାରଣ ସତ୍ତ୍ୱେ ମୁକୁନ୍ଦଦେବ ଉକ୍ତ ପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ । ଫଳତଃ ଇଂରେଜମାନେ ପ୍ରଥମ କିସ୍ତି ସ୍ୱରୂପ ୧୦,୦୦୦ ଟଙ୍କା ପଠାଇଲେ । ଜୟୀରାଜଗୁରୁ ରାଜାଙ୍କୁ ଚେତାଇ ଦେଲେ ଯେ ଇଂରେଜମାନେ ବିଶ୍ୱାସଘାତକତା କରିବେ । ମାତ୍ର ପ୍ରଗଣା ଫେରି ପାଇବା ମୁକୁନ୍ଦଦେବଙ୍କ ଆଶା ଓ ଆକାଂକ୍ଷା ନିକଟରେ ଜୟୀରାଜଗୁରୁଙ୍କ ପରାମର୍ଶ ହାର ମାନିଥିଲା । ବାସ୍ତବରେ ତାହା ହିଁ ଘଟିଥିଲା । କର୍ଣ୍ଣେଲ ହାରକୋର୍ଟ ମୁକୁନ୍ଦଦେବଙ୍କ ପାଖକୁ ଖବର ପଠାଇଲେ ଯେ ପ୍ରଗଣା ଫେରାଯିବ ନାହିଁ । ଏପରି କୂଟନୀତି ପ୍ରୟୋଗ କରି ଇଂରେଜ ଶାସକମାନେ ଖୋର୍ଦ୍ଧା ରାଜାଙ୍କ ସହ ଭବିଷ୍ୟତରେ ଏକ ଯୁଦ୍ଧର ବୀଜ ରୋପଣ କଲେ । ଇଂରେଜମାନଙ୍କ ଏତାଦୃଶ କାର୍ଯ୍ୟକଳାପରେ ରାଜା ମୁକୁନ୍ଦଦେବ ମର୍ମାହତ ହୋଇ ଜୟୀରାଜଗୁରୁଙ୍କ ପରାମର୍ଶ ଲୋଡ଼ିଲେ । ରାଜଭକ୍ତ ଜୟୀରାଜଗୁରୁ

ଅତୀତର ଚିନ୍ତା ନକରି ରାଜାଙ୍କ ସହ ମିଶି ବର୍ତ୍ତମାନ ଓ ଭବିଷ୍ୟତ ପାଇଁ କାର୍ଯ୍ୟପନ୍ଥା ସ୍ଥିର କରି ବସିଲେ ଏବଂ ଟାଣେଟି ପ୍ରବଣ ନିମନ୍ତେ ଆବଶ୍ୟକ ପଡ଼ିଲେ ଯୁଦ୍ଧ କରିବାକୁ ହେବ ବୋଲି ସେମାନେ ସ୍ଥିର କଲେ ।

ଜୟୀରାଜଗୁରୁଙ୍କ ପରାମର୍ଶକ୍ରମେ ମୁକୁନ୍ଦଦେବ ପ୍ରଶାସକଙ୍କର ଆଦେଶଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଅବମାନନା କରି ଚାଲିଲେ । ମରହଟ୍ଟାମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ଇଂରେଜମାନଙ୍କ ସହ ମୁକାବିଲା ପାଇଁ ପ୍ରସ୍ତୁତ ହୋଇ ଖୋର୍ଦ୍ଧା ପାଇକମାନେ ୧୮୦୪ ମସିହା ଅକ୍ଟୋବର ମାସରେ ପିପିଲି ଠାରେ ଇଂରେଜ ଶାସନାଧୀନ କେତେକ ଅଞ୍ଚଳ ଉପରେ ପ୍ରଥମେ ଆକ୍ରମଣକରି ବହୁ କ୍ଷତି ଘଟାଇଲେ । କ୍ରମଶଃ ଏହା ଅତି ଭୟଙ୍କର ରୂପ ଧାରଣ କଲା । କର୍ଣ୍ଣେଲ ହାରକୋର୍ଟ ଏକାକୀ ବୀର ପାଇକମାନଙ୍କୁ ପ୍ରତିରୋଧ କରି ନପାରିବାରୁ ମାନ୍ଦ୍ରାଜ ସେନାବାହିନୀର ''ମେଜର ଫ୍ଲେଚର''ଙ୍କୁ ଡ଼କାଇ ଖୋର୍ଦ୍ଧା ଗଡ଼କୁ ଅଧିକାର କରିବା ପାଇଁ ଯୋଜନା କଲେ । ଉଭୟ ପକ୍ଷରେ ସେନାବାହିନୀଙ୍କ ମଧ୍ୟରେ ପ୍ରାୟ ୩ ସପ୍ତାହ ଧରି ଘମାଘୋଟ ଯୁଦ୍ଧ ଲାଗି ରହିଥିଲା । ଖୋର୍ଦ୍ଧା ଦୁର୍ଗର ପାଇକମାନେ ଖୁବ୍ ବୀରତ୍ୱର ସହିତ ସେମାନଙ୍କର ମୁକାବିଲା କଲେ । କିନ୍ତୁ ଇଂରେଜମାନଙ୍କ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ସାମନାରେ ବେଶୀ ଦିନ ଟିକି ପାରି ନଥିଲେ । ଡିସେମ୍ବର ୪ ତାରିଖ-ଦିନ ଇଂରେଜମାନେ-ଭାରତର ଶେଷ ସ୍ୱାଧୀନ ଦୁର୍ଗକୁ ଅକ୍ତିଆର କରି ନେଲେ । ସେତେବେଳକୁ ଜୟୀରାଜଗୁରୁ ଏବଂ ରାଜା ମୁକୁନ୍ଦଦେବ ଦୁର୍ଗ ଛାଡ଼ି ପଳାୟନ କରିଥାନ୍ତି । ଡିସେମ୍ବର ୫ ତାରିଖ ଦିନ ଇଂରେଜମାନେ ଦୁର୍ଗ ଅଧିକାର କରି ମୁକୁନ୍ଦଦେବ ଖୋର୍ଦ୍ଧାର ରାଜା ନୁହନ୍ତି ବୋଲି ଘୋଷଣା କଲେ ଏବଂ ଜୟୀରାଜଗୁରୁଙ୍କୁ ଧରିବା ପାଇଁ ପଦକ୍ଷେପ ନେଲେ । ପରିଶେଷରେ ବହୁତ କଠିନ ପରିଶ୍ରମ ପରେ ଜୟୀରାଜଗୁରୁଙ୍କୁ ଇଂରେଜମାନେ ଧରିବାରେ ସକ୍ଷମ ହେଲେ । ତାଙ୍କୁ ଯେତେବେଳେ କର୍ଣ୍ଣେଲ ହାରକୋର୍ଟଙ୍କ ସମ୍ମୁଖକୁ ନିଆଗଲା ସେତେବେଳେ କର୍ଣ୍ଣେଲ ତାଙ୍କୁ ପଚାରିଲେ ''ଏପର୍ଯ୍ୟନ୍ତ ଯାହାସବୁ ଘଟିଗଲା ସେଥିପାଇଁ ଦାୟୀ କିଏ ?'' ରାଜଗୁରୁ ଜୟୀରାଜଗୁରୁ ସେ ପ୍ରଶ୍ନର ଉତ୍ତରରେ କହିଥିଲେ ଯେ ''ଯାହା ସବୁ ଘଟି ଯାଇଛି ସେଥିପାଇଁ ସେ ନିଜେ ହିଁ ଦାୟୀ ।'' ରାଜା ମୁକୁନ୍ଦଦେବଙ୍କୁ ଇଂରେଜମାନେ ବନ୍ଦୀ କରି ବାରବାଟୀ ଦୁର୍ଗରେ ରଖିଲେ ଓ ପରେ ରାଜା ମୁକୁନ୍ଦଦେବଙ୍କୁ ମୁକ୍ତ କରି କେବଳ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ଭାବେ ପୁରୀଠାରେ ଅବସ୍ଥାପିତ କରାଇଲେ । ଜୟୀରାଜଗୁରୁଙ୍କୁ ଦୋଷୀ ସାବ୍ୟସ୍ତ କରାଇ ୧୮୦୫ ମସିହାରେ ପ୍ରଥମ ଭାଗରେ ମେଦିନୀପୁରର ବାଗିତୋଟାଠାରେ ଗୋଟିଏ ବରଗଛର ୨ ଟି ଡ଼ାଳକୁ ପାଖକୁ ଲଗାଇ ଆଣି ସେଥିରେ ତାଙ୍କୁ ବାନ୍ଧି ଅତି ନିର୍ମମ ଭାବରେ ପ୍ରାଣଦଣ୍ଡ ଦେଇଥିଲେ । ଶହୀଦ ବିପ୍ଳବୀ ଜୟୀରାଜଗୁରୁଙ୍କର ରାଜଭକ୍ତି ଓ ଦେଶ ପ୍ରୀତିର ପଟାନ୍ତର ନାହିଁ ।

ଅରି ଫେରି ନାହିଁ ଯୁଦ୍ଧ ସରିନାହିଁ  
ଆସ ମୋ ଶିବିରେ ଆସ ଭାଇ  
ହିମାଚଳ ଶିରେ ଶବଦ ଶୁଭଇ ଡ଼ର ନାହିଁ  
ଆଉ ଡ଼େରି ନାହିଁ ।

ଭକତ କେ ଅଛ ଦେବୀ ପୂଜା କର  
ରକତ ମନ୍ଦାର ଢ଼ାଳି ଦେଇ  
ତରୁଣ କେ ଅଛି ମରଣକୁ ଦଳି  
ଦେବତା ପରାଏ ଉଠ ଚେଇଁ ।

*ଜାତୀୟ କବି ବୀର କିଶୋର*

# ଶହୀଦ ବାଜି ରାଉତ

୧୯୪୭ ମସିହା ପୂର୍ବରୁ ସ୍ୱାଧୀନତା ପାଇଁ ଓଡ଼ିଶାରେ ବହୁ ଆନ୍ଦୋଳନ, ସଂଘର୍ଷ ଓ ରକ୍ତପାତର ସୂତ୍ରପାତ ଘଟିଛି । ଅତ୍ୟାଚାରୀ ବ୍ରିଟିଶ ଶାସକଙ୍କୁ ବିରୋଧ କରି ବହୁ ଦେଶପ୍ରେମୀ ଶହୀଦ ହୋଇ ମାଟିରେ ମିଶି ଯାଇଛନ୍ତି । କିନ୍ତୁ ସବୁଠାରୁ ମର୍ମନ୍ତୁଦ ଘଟଣା ଘଟିଥିଲା ୧୯୩୮ ମସିହାରେ ଓଡ଼ିଶାର ଢେଙ୍କାନାଳ ଗଡ଼ଜାତ ରାଜ୍ୟରେ । ଘଟଣାଟି ହେଲା, ଢେଙ୍କାନାଳ ଗଡ଼ଜାତ ଅଞ୍ଚଳରେ ଗୋଟିଏ ବାରବର୍ଷର ବାଳକ ଦେଶ ପାଇଁ ଲଢ଼େଇ କରି ଇଂରେଜ ସିପାହୀମାନଙ୍କ ଗୁଳିମାଡ଼ରେ ଶହୀଦ ହେବା । ଏହି ଅମର ଶହୀଦ ବାଳକଟିର ନାମ ହେଉଛି ବାଜି ରାଉତ ।

ସେଦିନଥିଲା ୧୯୩୮ ମସିହା ଅକ୍ଟୋବର ମାସ ୧୧ ତାରିଖ ପାହାନ୍ତା ପ୍ରହର । ଢେଙ୍କାନାଳ ଗଡ଼ଜାତ ରାଜ୍ୟର ବ୍ରାହ୍ମଣୀ ନଦୀକୂଳ ନୀଳକଣ୍ଠପୁର ନଦୀଘାଟ । ହଠାତ ନଦୀ ଘାଟରେ ଆସି ପହଞ୍ଚିଲେ ୨୫/୩୦ ଜଣ ବନ୍ଧୁକଧାରୀ ସିପାହୀ । ସେମାନେ କି ଅତ୍ୟାଚାରୀ ଢେଙ୍କାନାଳ ରାଜାଙ୍କୁ ସାହାଯ୍ୟ କରିବା ପାଇଁ ଆସିଥିଲେ । ସେମାନେ ସମସ୍ତେ ଭୀତତ୍ରସ୍ତ ଓ ସେମାନଙ୍କ ପଛରେ ଗୋଡ଼ାଉଛନ୍ତି ହଜାର ହଜାର ଉତ୍ତେଜିତ ଜନତା । କାରଣ ସେମାନେ ତା ପୂର୍ବଦିନ ରାତିରେ ଘାଟଠାରୁ କିଛି ଦୂରରେ ଅବସ୍ଥିତ ଭୁବନ ଗ୍ରାମଠାରେ ଗୁଳି ଚଳାଇ ବହୁ ଲୋକଙ୍କୁ କ୍ଷତ-ବିକ୍ଷତ ଏବଂ କେତେ ଜଣଙ୍କୁ ନିହତ କରିଥିଲେ । ଉତ୍ତ୍ୟକ୍ତ ଜନତାଙ୍କୁ ସାମନା କରି ନପାରି ପଛଘୁଞ୍ଚା ଦେଇ ପଳାୟନ କରୁଥିଲେ । ଘାଟ ପାରି ହୋଇଗଲେ ସେମାନେ ବଞ୍ଚିଯିବେ କଟେଡ ପଛରେ ଗୋଡ଼େଇଛନ୍ତି ହଜାର ହଜାର ଉତ୍ତ୍ୟକ୍ତ ଜନତା । ଘାଟକୁ ଆସିବା ଡଙ୍ଗା ପାଇଁ ଆଦେଶ ଦେଲେ ସିପାହୀମାନେ, କିନ୍ତୁ ଇଂରେଜ ସିପାହୀ ଆସି ଦେଖି ଏମାନେ ଡଙ୍ଗାଗୁଡ଼ିକ ନଦୀର ମଧ୍ୟଭାଗକୁ ନେଇ ଯାଉଛନ୍ତି । ଇଂରେଜ ସିପାହୀ ଯେତେ ଗର୍ଜନ ତର୍ଜନ କଲେ ମଧ୍ୟ ବାନର ସେନା ନେତା ବାଜି ରାଉତ ସେଥିପ୍ରତି କର୍ଣ୍ଣପାତ ନକରି ସିଂହଭଳି ଗର୍ଜନ ଛାଡ଼ି ତା'ର ପ୍ରତ୍ୟୁତ୍ତରରେ କହୁଥାଏ, ପ୍ରଜାମଣ୍ଡଳର ଆଦେଶ ଡଙ୍ଗା ନେବିନାହିଁ । ଏହିଭଳି ଯେତେଥର ଡଙ୍ଗା ଆଣିବା ପାଇଁ ସିପାହୀ ଦଳ ଗର୍ଜନ କରୁଥାନ୍ତି, ବାଜି ରାଉତ ମଧ୍ୟ ସେତେ ଥର ଡଙ୍ଗା ନେବି ନାହିଁ ବୋଲି କହି ପାଲଟା ଜବାବ ଦେବାରେ ପଛଘୁଞ୍ଚା ଦେଉନଥାଏ । ଇଂରେଜ ସିପାହୀମାନେ ଶେଷରେ ତାକୁ ଧମକ ଦେଲେ ଡଙ୍ଗା ଆଣ ନଚେତ ଗୁଳି ଚଳେଇ ଦେବୁ । ତଥାପି ମଧ୍ୟ ବାଜି ରାଉତ ଭୟରେ ଦବିଗଲା ନାହିଁ । ତା'ର ଏକା ଜିଦ୍ ପ୍ରଜାମଣ୍ଡଳର ଆଦେଶ ଡଙ୍ଗା ନେବି ନାହିଁ । ତୁମେ ସବୁ ଅତ୍ୟାଚାରୀ ରାଜାର ଗୋଡ଼ାଣିଆ । ତୁମେ ସବୁ ମଣିଷ ନୁହଁ, ତୁମେ ପଶୁ । ତୁମେ ରାକ୍ଷସ ।

ନରହନ୍ତା ସିପାହୀମାନଙ୍କ ପଛରେ ଥିବା ଉତ୍ତ୍ୟକ୍ତ ଜନତା ସେତେବେଳକୁ ନଦୀ ଘାଟରେ ପହଞ୍ଚି ଗଲେଣି । ନଦୀଘାଟରେ ଚାଲିଲା ଧସ୍ତାଧସ୍ତି । ହଠାତ୍ ଶୁଭିଲା ବନ୍ଧୁକର ଆବାଜ୍ । ଗୋଟିଏ କୋମଳ ବାଳକର କରୁଣ ଚିତ୍କାର ଏବଂ ତା' ସଙ୍ଗେ ସଙ୍ଗେ ଆହୁରି ଅନେକ ଚିତ୍କାର । ସେଦିନ କେବଳ ବାଜି ରାଉତ ଗୁଳି ମାଡ଼ରେ ଟଳି ପଡ଼ି ନଥିଲା, ଆହୁରି ଅନେକ ଯଥା-ନୀଳକଣ୍ଠପୁର ଗାଁର ହୁରୁଷି ପ୍ରଧାନ, ଲକ୍ଷ୍ମଣ ମଲିକ ଓ ନଟ ମଲିକ । ଏହା ବ୍ୟତୀତ ଆହୁରି ଅନେକ ଆହତ ହେଲେ । ସେମାନଙ୍କ ମଧ୍ୟରୁ କେତେଜଣ ଡାକ୍ତରଖାନାରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଏହିଭଳି ଭାବେ ନରହନ୍ତା ସିପାହୀଦଳ ଗୁଳି ଚଳାଇ ପାଣି ଭିତରେ ପଶି ଡଙ୍ଗା ନେଇ ଅପର ପାର୍ଶ୍ୱକୁ ପଳାଇ ଯାଇଥିଲେ ।

ସେଦିନର ଏହି ହୃଦୟ ବିଦାରକ ଦୃଶ୍ୟ ଏକ ଭିନ୍ନ ଘଟଣା ନୁହେଁ । ଏହାଥିଲା ଗୋଟିଏ ବିରାଟ ଘଟଣା ପ୍ରବାହର କିଛି ବିଚ୍ଛିନ୍ନ ଅଂଶ ମାତ୍ର । ତଥାପି ଗୋଟିଏ ବାରବର୍ଷର ବାଳକ, ଯାହାରକି ସେ ସମୟ ଥିଲା ହସିବା ଖେଳିବାର ଦିନ, ସେ କାହିଁକି ଯେ ସଂଗ୍ରାମୀ ପାଲଟି ଗଲା ? ତାକୁ ଅବଲୋକନ କଲେ ଜଣାପଡ଼େ ତତ୍କାଳୀନ ଗଡ଼ଜାତ ରାଜ୍ୟଗୁଡ଼ିକର ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାର । ଠିକ ସେହିଭଳି ବାଜି ରାଉତ ତା' ଜନ୍ମରୁ ଦେଖି ଆସିଛି ଢେଙ୍କାନାଳ ରାଜାର ଶୋଷଣ ଓ ଅତ୍ୟାଚାର । ଅତିଷ୍ଠ ପ୍ରଜାମାନେ ଯେତେବେଳେ ରାଜାଙ୍କୁ ବିରୋଧ କରି ଏକଜୁଟ ହୋଇଥିଲେ, ରାଜା ପ୍ରଜାଶକ୍ତିକୁ ସାମନା କରି ନପାରି ଇଂରେଜମାନଙ୍କ ସାହାଯ୍ୟ ଭିକ୍ଷା ମାଗିଥିଲେ । ଇଂରେଜ ସରକାର ସିପାହୀ ପଠାଇଥିଲେ ରାଜାଙ୍କୁ ସାହାଯ୍ୟ କରିବା ପାଇଁ । ତାଙ୍କ ସହ ସାମିଲ ଥାନ୍ତି ରାଜାଙ୍କ ସିପାହୀମାନେ । ସେମାନେ ପ୍ରଜାମାନଙ୍କୁ ସାବାଡ଼ କରିବାରେ ଲାଗିଲେ । ତଥାପି ପ୍ରଜାମାନେ ଭାଙ୍ଗିପଡ଼ି ନଥିଲେ । ସମସ୍ତଙ୍କ ମନ ଭିତରେ ଉଠୁଥାଏ ସଂଗ୍ରାମର ସ୍ରୋତ । ଏହି ସଂଗ୍ରାମର ସ୍ରୋତରେ ଉଦ୍‌ବୁଦ୍ଧ ହୋଇ କେତେ ଯେ ଆତ୍ମ ବଳିଦାନ, ଜେଲ, ଜୋରିମାନା ଇତ୍ୟାଦି ଘଟଣା ଘଟି ଯାଇଛି, ତା'ର ପଟାନ୍ତର ନାହିଁ ।

ସେହି ସଂଗ୍ରାମ ସ୍ରୋତର ବୁକୁରେ ସର୍ବକନିଷ୍ଠ ଦେଶଭକ୍ତ ମହାନ୍ ସ୍ୱାଧୀନତା ସଂଗ୍ରାମୀ ବାଜି ରାଉତ ମଧ୍ୟ ଝାସ୍ ଦେଇଥିଲା । ତା' ନିଜ ପାଇଁ ନୁହେଁ, ଦେଶ ପାଇଁ, ଜାତି ପାଇଁ । ସେମାନଙ୍କର ଅସୀମ ସାହସ, ତ୍ୟାଗ, ବୀରତ୍ୱ ଓ ଆତ୍ମୋତ୍ସର୍ଗ ପାଇଁ ଏ ଦେଶ ଆଜି ସ୍ୱାଧୀନ ହୋଇଛି, ସେମାନେ ଆମର ଚିର ନମସ୍ୟ ଓ ଚିର ସ୍ମରଣୀୟ । ବାଜି ରାଉତ ମରି ଯାଇଥିଲେ ମଧ୍ୟ ଏ ଦେଶ, ଏ ଜାତି ପାଇଁ ଆଜି ସେ ଅମର ହୋଇ ରହିଛି ଏବଂ ଚିରଦିନ ପାଇଁ ଅମର ହୋଇରହିଥିବ । ତା'ର କୋମଳ ହୃଦୟରେ ଜାତ ହୋଇଥିବା ବୀରତ୍ୱ, ତ୍ୟାଗ, ସାହସ ଓ ଦେଶପ୍ରେମ ଯୁଗଯୁଗ ଧରି ଓଡ଼ିଆ ଜାତି ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ।

# ରଘୁ-ଦିବାକର

ଶ୍ରୀ ତାରାକାନ୍ତ ମହାନ୍ତି

ଇଂରେଜମାନଙ୍କ କୁଶାସନ ତଥା ରାଜାରାଜୁଡ଼ାଙ୍କର ଶୋଷଣ ସର୍ବସ୍ୱ କାର୍ଯ୍ୟ ଓ ଅତ୍ୟାଚାର ବିରୁଦ୍ଧରେ ଓଡ଼ିଶାର ବହୁ ଆନ୍ଦୋଳନ ଓ ବିଦ୍ରୋହ ସଂଗଠିତ ହୋଇଛି । ତନ୍ମଧ୍ୟରୁ ରଣପୁରର ପ୍ରଜାମଣ୍ଡଳ ଆନ୍ଦୋଳନ ଏକ ଐତିହାସିକ ଘଟଣା । ସେହି ଘଟଣା ଗଡ଼ଜାତ ମିଶ୍ରଣ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଥିଲା । ସେହି ଆନ୍ଦୋଳନରେ ମୟୂରଝାଳିଆର ଅର୍ଜୁନ ରାଉତ, ପଲିଟିକାଲ ଏଜେଣ୍ଟ ବେଜେଲଗେଟଙ୍କ ଗୁଳିରେ ନିହତ ହୋଇ ଥିଲେ । ନିଜେ ଜନତାଙ୍କ ଆକ୍ରମଣରେ ନିହତ ହେଲେ । ସେଥିପାଇଁ ଯେଉଁମାନଙ୍କ ନାମରେ ମକଦ୍ଦମା ଦାଏର କରାଗଲା, ସେମାନଙ୍କ ମଧ୍ୟରୁ ୧୧ ଜଣଙ୍କୁ ଯାବତଜୀବନ ଦ୍ୱୀପାନ୍ତର ଦଣ୍ଡାଦେଶ, ଚିନ୍ତା ନାଏକଙ୍କୁ ୨ ବର୍ଷ ସଶ୍ରମ କାରାଦଣ୍ଡ ଓ ରଘୁ-ଦିବାକରଙ୍କୁ ଫାଶୀଦଣ୍ଡ ହୋଇଥିଲା । ୧୯୪୧ ମସିହା ଏପ୍ରିଲ ୪ ତାରିଖ ଦିନ ପ୍ରାତଃ ସମୟରେ ରଘୁ-ଦିବାକର ବିହାରର ଭାଗଲପୁର ଜେଲରେ ଫାଶୀ ପାଇଲେ । ଦେଶପାଇଁ ଜୀବନ ଦାନ କରି ସେମାନେ ଅମରତ୍ୱ ଲାଭକଲେ ।





ରଘୁ-ଦିବାକର ଥିଲେ ଗୋଟିଏ ବୃନ୍ତର ଦୁଇଟି ଫୁଲ, ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । କାୟା ସାଥିରେ ଛାୟା ପରି ଏକ ମନ, ଏକ ପ୍ରାଣରେ ସେ ଦୁହେଁ କାର୍ଯ୍ୟ କରୁଥିଲେ । ରଘୁନାଥଙ୍କ ପିତା ନଟବର ମହାନ୍ତି ହେଉଛନ୍ତି ରଘୁ ଓ ଦିବାକରଙ୍କର ବାଲ୍ୟ ଗୁରୁ । ନଟବର ମହାନ୍ତିଙ୍କର ଦେଶ ପ୍ରେମ ଓ ନିର୍ଭୀକତା କୋମଳମତି ବାଳକଦ୍ୱୟଙ୍କୁ ଶୈଶବାବସ୍ଥାରୁ ବିପ୍ଳବୀର ମହାମନ୍ତ୍ରରେ ଦୀକ୍ଷିତ କରିଥିଲା ।

୧୯୧୦ ମସିହା ଜୁଲାଇ ୧୮ ତାରିଖରେ ରଘୁନାଥ ମହାନ୍ତି ରଣପୁର ଥାନା ବାଦଲୁଇଁ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ନଟବର ମହାନ୍ତି ଓ ମାତାଙ୍କ ନାମ ଲାବଣ୍ୟଦେବୀ । ଛାତ୍ର ଅବସ୍ଥାରେ ମଧ୍ୟ ସମାଜର ଅନ୍ୟାୟ, ଅତ୍ୟାଚାର ଶୋଷଣ ସଂପର୍କରେ ସେ ଲେଖାଲେଖି କରୁଥିଲେ । ରଘୁନାଥ ଥିଲେ ଜଣେ ବିପ୍ଳବୀ କବି । ତାଙ୍କର ୭ ଖଣ୍ଡ ପୁସ୍ତକ ଅରୁଣୋଦୟ ପ୍ରେସରୁ ପ୍ରକାଶିତ ହୋଇଥିଲା । ଦିବାକର ପରିଡ଼ା ୧୯୧୧ ମସିହା ନଭେମ୍ବର ୩୦ ତାରିଖ ଦିନ ରଣପୁର ଥାନା ଗଡ଼ [illegible]ଡିକିଲୋ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ବିଶ୍ୱୋୟୀ ସାମନ୍ତ ହରିହର ପରିଡ଼ା ଓ ମାତାଙ୍କ ନାମ ତାରାଦେବୀ । ତାଙ୍କ ପିତା ଥିଲେ ରଣପୁର ରାଜାଙ୍କର କର୍ମଚାରୀ । ଶହୀଦ ଦିବାକର ରଣପୁର ରାଜାଙ୍କ ନରେନ୍ଦ୍ର ପ୍ରେସରେ ସହକାରୀ ମ୍ୟାନେଜର ଭାବରେ କାର୍ଯ୍ୟ କରୁଥିଲେ । ସେ ମଧ୍ୟ ଜଣେ ବିପ୍ଳବୀ କବି ଥିଲେ । ଏହି ଉଦୀୟମାନ ତରୁଣମାନେ ବିଦ୍ରୋହୀଭାବାପନ୍ନ ହୋଇଥିବା ପଛରେ ରହିଥିଲା ତତ୍‌କାଳୀନ ରଣପୁର ଗଡ଼ଜାତର ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ-ପରିସ୍ଥିତି । ବେଠି, ବେଗାରୀ, ଭେଟି, ସଲାମି, ରସଦ, ମାଗଣ ଆଦି ପ୍ରଚଳିତ ପ୍ରଥା ଯୋଗୁଁ ପ୍ରଜାମାନଙ୍କର ଅର୍ଥନୈତିକ ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିଲା । ରାଜାର ସବୁ କାର୍ଯ୍ୟ ବିନା ପାରିଶ୍ରମିକ ଅର୍ଥାତ୍ ବେଠି ହିସାବରେ କରାଯାଉଥିଲା । ଚାନ୍ଦପୁରଠାରେ ନିର୍ମିତ ରାଜପ୍ରାସାଦ ତା'ର ଏକ ଜ୍ୱଳନ୍ତ ନିଦର୍ଶନ । ଏହାଛଡ଼ା ବିଭିନ୍ନ ପର୍ବପର୍ବାଣୀରେ ପ୍ରଜାମାନେ ଭେଟି ଦେବାର ନିୟମ ପ୍ରଚଳିତ ଥିଲା । ରଣପୁରର ପ୍ରଜାମାନେ ସେତେବେଳେ ରାଜାଙ୍କୁ ୨୮ ପ୍ରକାରର କର ଦେଉଥିଲେ । ସବୁଠାରୁ ଲୋମହର୍ଷଣକାରୀ କାର୍ଯ୍ୟ ଥିଲା ନରବଳି ପ୍ରଥା । ରଣପୁରର ଅଧିଷ୍ଠାତ୍ରୀ ଦେବୀ ମଣିନାଗଙ୍କୁ ଏକମାସ ଧରି ମଣିଷ ରକ୍ତ ଦେଇ ପୂଜା କରାଯାଉଥିଲା । ଏଥିପାଇଁ କେତୋଟି ପରିବାରକୁ ରକ୍ତପଟା ଜାଗିର ଦିଆଯାଇଥିଲା । ତତ୍‌କାଳୀନ ରାଜା ଥିଲେ କୃଷ୍ଣଚନ୍ଦ୍ର ବୀରବର ବଜ୍ରଧର ନରେନ୍ଦ୍ର ମହାପାତ୍ର । ସେ ଥିଲେ ଜଣେ

ପକ୍ଷାଘାତ ରୋଗୀ । ତେଣୁ ତାଙ୍କୁ ଅମଲାଙ୍କ ଉପରେ ନିର୍ଭର କରିବାକୁ ପଡୁଥିଲା । ରାଜାଙ୍କୁ ଶାସନ କାର୍ଯ୍ୟରେ ସହାୟତା କରିବା ପାଇଁ ଜଗନ୍ନାଥ ମହାନ୍ତିଙ୍କୁ ଦେବାନ୍ ବା ପ୍ରଧାନମନ୍ତ୍ରୀ ଭାବରେ ନିଯୁକ୍ତ କରାଯାଇଥିଲା । ରାଜ୍ୟ ଶାସନ ଭାର ପାଇଁ ନାମକୁ ମାତ୍ର ରାଜା ଥିଲେ ମଧ୍ୟ ମୁଖ୍ୟତଃ ଦେବାନ୍ ଜଗନ୍ନାଥ ମହାନ୍ତିଙ୍କ ପରାମର୍ଶକ୍ରମେ ରାଜ୍ୟ ଶାସନ ଚାଲିଥିଲା । ଦେବାନ୍ ଜଗନ୍ନାଥ ମହାନ୍ତି ଥିଲେ ପ୍ରବଳ ଅତ୍ୟାଚାରୀ । ପ୍ରଜାମାନେ ରାଜାଙ୍କଠାରୁ ଉପଯୁକ୍ତ ନ୍ୟାୟ ପାଉନଥିଲେ । ମୋଟ ଉପରେ କହିବାକୁ ଗଲେ ସେତେବେଳର ଶାସନ ଥିଲା ଅନ୍ଧାରୀଶାସନ ।

ସ୍ୱାଧୀନତାର ସ୍ୱାଦ ଚାଖିବା ପାଇଁ ରଣପୁରବାସୀ ମନରେ ଆଶା ବାନ୍ଧିଲେ । କାରଣ ସ୍ୱାଧୀନତା ପ୍ରତ୍ୟେକ ମନୁଷ୍ୟର ଜନ୍ମଗତ ଅଧିକାର । ତେଣୁ ଅତ୍ୟାଚାରୀ ଶାସନରୁ ମୁକ୍ତ ହୋଇ ସ୍ୱାଧୀନତା ଆଶାରେ ରଣପୁର ରାଜ୍ୟରେ ପ୍ରଜାଆନ୍ଦୋଳନର ଅଙ୍କୁରୋଦଗମ୍ ହେଲା । ମାତ୍ର ବିନା ନେତୃତ୍ୱରେ ଆନ୍ଦୋଳନର କିଛି ମୂଲ୍ୟ ନଥାଏ । ରଣପୁର ରାଜ୍ୟବାସୀ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଏହି ଆନ୍ଦୋଳନର ପୁରୋଧା ଭାବରେ ଗ୍ରହଣ କରିଥିଲେ । ରାଜାଙ୍କର କୁଶାସନ ବିରୁଦ୍ଧରେ ପ୍ରଜାମଣ୍ଡଳ ଗଠନ କରାଯାଇ ରାଜଦରବାରରେ ଦାବି ଉପସ୍ଥାପନ କରାଗଲା । ଏହି ପ୍ରଜାମଣ୍ଡଳର ସଭାପତିଭାବେ ବନମାଳୀ ରାମ, କୃପାସିନ୍ଧୁ ମିଶ୍ର ଉପସଭାପତି ଏବଂ ସଂପାଦକ ଏବଂ ସଂଗଠନ ସଂପାଦକ ଭାବେ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ରହିଲେ । ଏହାଛଡ଼ା ଡ଼ଃ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ମଧ୍ୟ ସେମାନଙ୍କୁ ସବୁ ଦିଗରୁ ଉତ୍ସାହ ଦେଉଥିଲେ । ପ୍ରଜାମଣ୍ଡଳ କର୍ମୀମାନେ ଯେତେବେଳେ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ, ରାଜା ପ୍ରଜାମଣ୍ଡଳର କର୍ମୀମାନଙ୍କୁ ଗିରଫ କରିନେଇ ଜେଲରେ ରଖିଲେ । ୧୯୩୯ ମସିହା ଜାନୁଆରୀ ମାସ ୫ ତାରିଖ ଦିନ ପ୍ରଜାମଣ୍ଡଳର ଲୋକମାନେ ରାଜପ୍ରାସାଦ ଆଗରେ ଗିରଫ କର୍ମୀମାନଙ୍କର ମୁକ୍ତି ପାଇଁ ରାଜବିରୋଧୀ ସ୍ଲୋଗାନମାନ ଦେଉଥାନ୍ତି । ଏହି ପରିସ୍ଥିତିରେ ରଣପୁରର ଦେବାନ୍ ଜଗନ୍ନାଥ ମହାନ୍ତି ରାଜାଙ୍କୁ ମନ୍ତ୍ରଣା ଦେଲେ ଯେ, ପଲିଟିକାଲ ଏଜେଣ୍ଟ ମେଜର ବେଜେଲଗେଟ ବର୍ତ୍ତମାନ ନୟାଗଡ଼ରେ ଉପସ୍ଥିତ ଅଛନ୍ତି । ତାଙ୍କୁ ଏଠାକୁ ଡ଼କାଇ ଆଣିଲେ ଲୋକମାନେ ଦବିଯିବେ । ଯେତେବେଳେ ଲୋକମାନେ ଜାଣିଲେ ଅତ୍ୟାଚାରୀ ପଲିଟିକାଲ ଏଜେଣ୍ଟ ରଣପୁର ଆସିବେ ଜେଲରେ ଥିବା ଲୋକମାନଙ୍କର ଅବସ୍ଥା କ'ଣ ହେବ ସେଥିନେଇ ବିବ୍ରତ ଏବଂ ଉତ୍ତ୍ୟକ୍ତ ହୋଇପଡ଼ିଲେ । ଏପଟେ ରଣପୁର ରାଜାଙ୍କଠାରୁ ବାର୍ତ୍ତାପାଇ ମେଜର ବେଜେଲଗେଟ ଅଳ୍ପ କେତେକ ପୋଲିସଙ୍କ ସହାୟତାରେ ରଣପୁର ଅଭିମୁଖେ ଆସିଲେ । ବାଟରେ ଲୋଧାଚୁଆ ନିକଟରେ ଗଛ ଡ଼ାଳ ଇତ୍ୟାଦି ଦ୍ୱାରା ରାସ୍ତା ଅବରୋଧ କରାଇ ଥିବାର ଦେଖି ସେଠାରେ ଅନୁଗାମୀ ପୋଲିସଙ୍କ ଦ୍ୱାରା ରାସ୍ତା ଅବରୋଧ ଦାୟିତ୍ୱରେ ଥିବା ବୃନ୍ଦାବନ ଲୋକ ଏବଂ ତାଙ୍କ ସହକର୍ମୀମାନଙ୍କ ପ୍ରତି ନିର୍ମମ ଅତ୍ୟାଚାର କରି ରାସ୍ତା ସଫା କଲେ । ଚାହିଁ ଚାହିଁ ଏ ଖବର ରଣପୁରଠାରେ ପହଞ୍ଚିଗଲା ଯେ ସାହେବର ମାଡ଼ରେ ଦୁଇଜଣ ଲୋକ ଗୁରୁତର ଆହତ ହୋଇଛନ୍ତି । ଫଳରେ ରଣପୁର ଜନସାଧାରଣ ଆହୁରି ଉତ୍ତ୍ୟକ୍ତ ହୋଇପଡ଼ିଲେ । କିଛି ସମୟ ପରେ ବେଜେଲଗେଟ ସେଠାରେ ପହଞ୍ଚିବା କ୍ଷଣି ଉତ୍ତ୍ୟକ୍ତ ଜନତା ତାଙ୍କୁ ଘେରିଗଲେ । ଆକ୍ରମଣ ଆଶଙ୍କାରେ ବେଜେଲଗେଟ ଆତ୍ମରକ୍ଷା ପାଇଁ ନିଜ ରିଭଲଭରରୁ ଗୁଳିଚାଳନା କଲେ । ଏଥିରେ ମୟୂରଝାଲିଆ ଗ୍ରାମର ଅର୍ଜୁନ ରାଉତଙ୍କ ମୃତ୍ୟୁ ଘଟିଲା । ଜନସାଧାରଣ ଏ ଘଟଣାରେ ଆହୁରି ଉତ୍ତ୍ୟକ୍ତ ହୋଇ ବେଜେଲଗେଟଙ୍କୁ ଠେଙ୍ଗାରେ ପିଟିପିଟି ମାରିଦେଲେ ।

ଏ ଘଟଣା ପରେ ଡ଼ଃ. ମହତାବ ରଣପୁରରେ ଆସି ପହଞ୍ଚି ରଣପୁରବାସୀଙ୍କୁ ଆଗତ ପରିସ୍ଥିତି ସମ୍ବନ୍ଧରେ ସତର୍କ କରିଦେଇ ରଣପୁର ଛାଡ଼ି ଚାଲିଯିବା ପାଇଁ ପରାମର୍ଶ ଦେଲେ । ଫଳରେ ରଣପୁରବାସୀ ନିଜର ଘରଦ୍ୱାର ଇତ୍ୟାଦି ଛାଡ଼ି ନିକଟସ୍ଥ ଖୋର୍ଦ୍ଧା ଖାସମାହାଲ ଅଞ୍ଚଳରେ ଆତ୍ମଗୋପନ କଲେ । ଏପରି ହୋଇ ନଥିଲେ ବ୍ରିଟିଶର ଦାନବ ଲୀଳାରେ ରଣପୁରର କେତେ ଯେ ଧନଜୀବନ ନଷ୍ଟ ହୋଇଥାନ୍ତା, ତା'ର କଳନା ନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ଆରମ୍ଭ ହୋଇଥିଲା ବେଜେଲଗେଟ ହତ୍ୟା ମକଦ୍ଦମାର ବିଚାର ପର୍ବ । ଏହି ମକଦ୍ଦମା ପାଇଁ ଦୁଇଥର ଜଜକୋର୍ଟ ବସିଥିଲା । ପ୍ରଥମ କୋର୍ଟରେ ଗଡ଼ଜାତ ସେସନ୍ସ ଜଜ୍ ଜି.ଜି. ସିଅରର ବିଚାରପତି ଥିଲେ । ହଟ ନାୟକ, ଭାଗବତ ବେହେରା, କୃଷ୍ଣଚନ୍ଦ୍ର ରାଉତ, ଅନନ୍ତ କଳସ, ବାଙ୍କ ସ୍ୱାଇଁ, ଭଗବାନ୍ ସାହୁ, ମାଳ ନାଏକ ଓ ନରସିଂହ ସାହୁ ଏହିପରି ଆଠ ଜଣଙ୍କୁ ଯାବତଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ କରିଥିଲେ ।

ପରବର୍ତ୍ତୀ ଜଜ୍ କୋର୍ଟରେ ଢେଙ୍କାନାଳ ସେସନ୍ସ ଜଜ୍ ମିଃ. ସେନଗୁପ୍ତ ପ୍ରଜାମଣ୍ଡଳର ମଦନମୋହନ ଦାଶ, ମୁରଲୀଧର ପଣ୍ଡା ଓ ଦୟାନିଧି ପରିଡ଼ା ଏହିପରି ତିନିଜଣଙ୍କୁ ଯାବତଜୀବନ ଦ୍ୱୀପାନ୍ତର ଦଣ୍ଡାଦେଶ ଦେଇଥିଲେ। ଏପରିକି ରଘୁ, ଦିବାକରଙ୍କ ତରଫରୁ ଏକ ଅପିଲ ବଡ଼ଲାଟଙ୍କ ନିକଟରେ ଦାଏର କରାଯାଇଥିଲା । ମାତ୍ର ବଡ଼ଲାଟ ପୂର୍ବ ଦଣ୍ଡାଦେଶକୁ କାଏମ ରଖିଥିଲେ । ୧୯୪୧ ମସିହା ଏପ୍ରିଲ ୪ ତାରିଖରେ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ବିହାରର ଭାଗଲପୁର ଜେଲରେ ପ୍ରାତଃ କାଳରେ ଫାଶୀ ଦିଆଯାଇଥିଲା ।

ଅସୀମ ତ୍ୟାଗ ଓ ଦେଶପ୍ରେମ ପାଇଁ ଶହୀଦ ରଘୁ-ଦିବାକର ଚିରସ୍ମରଣୀୟ ହୋଇ ରହିବେ । ତାଙ୍କର ଏହି ବଳିଦାନର ପ୍ରତିବଦଳରେ ଦେଶରୁ ଅତ୍ୟାଚାରୀ ଇଂରେଜ ଶାସନ ତଥା ରାଜାରାଜୁଡ଼ା ଶାସନର ଅବସାନ ଘଟିଲା । ତାଙ୍କର ଏହି ଆତ୍ମୋତ୍ସର୍ଗ ଯୁଗେ ଯୁଗେ ଦେଶବାସୀଙ୍କ ପ୍ରାଣକୁ ବିପ୍ଳବର ନୂତନ ଉନ୍ମାଦନାରେ ଅନୁପ୍ରାଣିତ କରୁଥିବ ।

---

ଉପନିର୍ଦ୍ଦେଶକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ଲକ୍ଷ୍ମଣ ନାଏକ

ଓଡ଼ିଶାର ବଣ ପାହାଡ଼ ଘେରା ଆଦିବାସୀ ପଲ୍ଲୀ ତେନ୍ତୁଳିଗୁମ୍ମାରୁ ଭାରତର ସ୍ୱାଧୀନତା ପାଇଁ ହୁଙ୍କାର ଦେଇଥିଲେ ଲକ୍ଷ୍ମଣ ନାଏକ । ସ୍ୱାଧୀନତା ସଂଗ୍ରାମର ସ୍ରୋତରେ ସାମିଲ ହୋଇ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଆନ୍ଦୋଳନ, ସତ୍ୟାଗ୍ରହ ଓ ଅସହଯୋଗ କରି ଜନ୍ମ ମାଟିକୁ ମୁକ୍ତ କରିବା ପାଇଁ ସେ ନେଇଥିଲେ ଆଗ୍ନେୟ ଶପଥ ।

୧୮୯୯ ମସିହା ନଭେମ୍ବର ୨୨ ତାରିଖରେ କୋରାପୁଟ ଜିଲ୍ଲା ତେନ୍ତୁଳିଗୁମ୍ମା ଗ୍ରାମର ଏକ ଭୂମିଆ ଆଦିବାସୀ ପରିବାରରେ ଜନ୍ମଗ୍ରହଣ କରିଥିଲେ ଶହୀଦ ଲକ୍ଷ୍ମଣ ନାଏକ । ପିତାଙ୍କ ନାମ ପଦଲମ ନାଏକ । ପିଲାଟି ଦିନରୁ ଲକ୍ଷ୍ମଣ ନାଏକ ଥିଲେ ସାହସୀ ଓ ଜିଦ୍‌ଖୋର । ସେହି ଇଲାକାର ସମସ୍ତ ବଣ, ପାହାଡ଼, ଝରଣା ଓ ବିଭିନ୍ନ ଚେରମୂଳି ସହିତ ଲକ୍ଷ୍ମଣ ଖୁବ୍ ପରିଚିତ ଥିଲେ । ସେ ଗାଉଁଲୀ ବୈଦଗିରି, ଝାଡ଼ଫୁଙ୍କ, ଗୁଣିଗାରେଡ଼ି... 



ଲୋକଙ୍କ ସେବା କରିବା ଯୋଗୁଁ ବିଶେଷ ଲୋକପ୍ରିୟ ହୋଇ ପାରିଥିଲେ । ସମୟ ସମୟରେ ସେ ବାପାଙ୍କ ସହ ଜୟପୁର, ମାଡ଼ିଲି ଓ ରାମଗିରିକୁ ନାନା କାର୍ଯ୍ୟରେ ଯାଇ ଓଡ଼ିଆ ଭାଷା ଶିଖିଥିଲେ । ୧୯ ବର୍ଷ ବୟସରେ ଲକ୍ଷ୍ମଣ ସାନଗୁମ୍ମାର ଘାସି ଭୂମିଆଙ୍କ ଝିଅ ମଙ୍ଗୁଳିକୁ ବିବାହ କରିଥିଲେ । ପିତାଙ୍କ ଅବସର ଗ୍ରହଣ ପରେ ଲକ୍ଷ୍ମଣ ମୁସ୍ତାବା ପଦରେ ଅବସ୍ଥାପିତ ହୋଇଥିଲେ ।

କୋରାପୁଟ ଜିଲ୍ଲାର ସରଳ, ନିରୀହ, ନିଷ୍କପଟ ଆଦିବାସୀମାନେ ଇଂରେଜ ଗୋଲାମମାନଙ୍କ ଅନ୍ୟାୟ ଓ ଅତ୍ୟାଚାରରେ ଜର୍ଜରିତ ହେଉଥିଲେ । ଜଙ୍ଗଲ ରକ୍ଷୀ ଆର.ଆଇ.ମାନେ ଆଦିବାସୀମାନଙ୍କର ପ୍ରଭୁ ବା ଅଧିକାରୀ ବୋଲାଇ ସେମାନଙ୍କୁ ନେଇ ବେଠି, ବେଗାରୀ ପ୍ରଥା ପ୍ରଚଳନ କରିଥିଲେ । ସେତେବେଳେ ମହାଜନମାନେ ଆଦିବାସୀମାନଙ୍କୁ ଠକିବାରେ ନିପୁଣ ଥିଲେ । ଏହି ସବୁ କାର୍ଯ୍ୟ ଶହୀଦ ଲକ୍ଷ୍ମଣ ନାଏକଙ୍କୁ ବିଶେଷ ବିବ୍ରତ କରିଥିଲା । ସେ ଆଦିବାସୀମାନଙ୍କୁ ସଙ୍ଗଠିତ କରି ଅନ୍ୟାୟ ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ନିଜ ଦେଶୀୟ ଭାଷାରେ ହୃଦୟସ୍ପର୍ଶୀ ଭାଷଣ ଦେଇ ଦେଶପ୍ରେମ ଓ ସ୍ୱାଧୀନତା ବହ୍ନିକୁ ପ୍ରଜ୍ୱଳିତ କରିଥିଲେ । ଅଳ୍ପ ସମୟ ମଧ୍ୟରେ ଆନ୍ଦୋଳନ ବୈପାରୀଗୁଡ଼ାଠାରୁ ମାଲକାନଗିରି ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଆଦିବାସୀମାନେ ମନୁଆ, ସରଳ, ସମଦୁଃଖୀ ଓ ସର୍ବଦା ଗୋଷ୍ଠୀ ବିଶ୍ୱାସୀ । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀ ଯେତେବେଳେ ଅସହଯୋଗ ଡ଼ାକରା ଦେଲେ ସେତେବେଳେ ଲକ୍ଷ୍ମଣ ନାଏକଙ୍କ ଆହ୍ୱାନରେ କୋୟା ଓ ଦଣ୍ଡାମାନେ ବଣ ଜଙ୍ଗଲରେ ଲୁଚି ଛପି ସଶସ୍ତ୍ର ଆକ୍ରମଣ କରିବା ଫଳରେ ବହୁ ଇଂରେଜଙ୍କର ମୃତ୍ୟୁ ଘଟିଲା । ସେ-ସରକାରଙ୍କୁ ବିରୋଧ କରିଥିବାରୁ ତାଙ୍କୁ ରାଜଦ୍ରୋହୀ ବା ଫେରାରଦାର ଘୋଷଣା କରାଯାଇ ତାଙ୍କ ଠାରୁ ମୁସ୍ତାବାର ଦାୟିତ୍ୱ କାଢ଼ି ନେଇ କେବଳ ୨୫ ଏକର ଜମି ଦେଇ ଅନ୍ୟ ସମସ୍ତ ଜମି ସରକାର ନେଇ ଯିବାରୁ ତାଙ୍କର ପାରିବାରିକ ଭରଣପୋଷଣରେ ଅସୁବିଧା ସୃଷ୍ଟି କରିଥିଲା । ସେଥିରେ ସେ ଧୈର୍ଯ୍ୟଚ୍ୟୁତ ହୋଇନଥିଲେ ।

କଂଗ୍ରେସ ନେତା ସ୍ୱର୍ଗତ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପ୍ରେରଣାରେ ଲକ୍ଷ୍ମଣ ନାଏକ କଂଗ୍ରେସ ଅନୁଷ୍ଠାନର ସଭ୍ୟ ହୋଇ ପରିଧାନ କଲେ ଖଦଡ଼ ବସ୍ତ୍ର, ଗାଇଲେ ରାମଧୁନ୍ ଓ ପ୍ରଚାର କଲେ ନିଜ ଦେଶୀୟ ଭାଷାରେ 'କାଟି ପିନ୍ଧ ଓ କୁଟି ଖାଅ' । ସରକାରଙ୍କ କାର୍ଯ୍ୟରେ ଅସହଯୋଗ କରିବାକୁ ଆଦିବାସୀମାନଙ୍କୁ ପ୍ରବର୍ତ୍ତାଇଲେ । ତାଙ୍କରି ଅକ୍ଳାନ୍ତ ପରିଶ୍ରମରେ ଘଞ୍ଚ ଜଙ୍ଗଲରେ ଆରମ୍ଭ ହେଲା ନୈଶ୍ୟ ବିଦ୍ୟାଳୟ, ଗ୍ରାମ ପଞ୍ଚାୟତ

କାର୍ଯ୍ୟକ୍ରମ ଓ ଔଷଧ ବଣ୍ଟନ । ସେ ଗାଁକୁ ଗାଁ ଯାଇ ଘରେ ଘରେ ପହଞ୍ଚି ନିଜ ଲୋକ ପରି ସେମାନଙ୍କ ସହିତ ଦୁଃଖ ସୁଖ ହେଉଥିଲେ ଏବଂ ସ୍ୱାଧୀନତାର ଆଭିମୁଖ୍ୟ ପ୍ରଚାର କରୁଥିଲେ । ଫଳରେ ସମଗ୍ର କୋରାପୁଟ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ମହାସ୍ରୋତ ଛୁଟି ଚାଲିଲା ।

୧୯୩୯ ରେ ଲକ୍ଷ୍ମଣ ନାଏକ ମାତିଲିଠାରେ ସତ୍ୟାଗ୍ରହ କରି ଜେଲ ଗଲେ । ପୁଣି ଅଗଷ୍ଟ ୨୧ ତାରିଖରେ ତାଙ୍କ ନେତୃତ୍ୱରେ ଶହ ଶହ ଆଦିବାସୀ ମାତିଲି ଥାନା ପଟେ ଶୋଭାଯାତ୍ରା କରି ବନ୍ଦେ ମାତରଂ ଓ ବ୍ରିଟିଶ ସରକାର ଭାରତ ଛାଡ଼ି ଚାଲିଯାଅ ସ୍ଲୋଗାନ ଦେଇ ସତ୍ୟାଗ୍ରହ କଲେ ।

ଏହାକୁ ପଣ୍ଡ କରିବା ପାଇଁ ଏମ୍. ଜଗାନାଇଡୁଙ୍କୁ ବୋରା ଲାଠି ଓ ଗୁଳି ଚାଳନା କଲେ । ତଥାପି ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଟିମିଗୁଡ଼ାର ଲିଙ୍ଗ ଭୂମିଆ ଓ ସରଗିଗୁଡ଼ାର ନକୁଳ ମାଡ଼କାମୀ ଭୟ ନକରି ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼େଇବାକୁ ଥାନା ଉପରକୁ ଚଢୁ ଚଢୁ ପୋଲିସର ଗୁଳିମାଡ଼ରେ ସେଠାରେ ସେମାନେ ଶହୀଦ ହେଲେ । ସତ୍ୟାଗ୍ରହୀମାନଙ୍କ ଉତ୍ତେଜନା ବଢ଼ିବାରୁ ଥାନାବାବୁଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣଙ୍କୁ ଥାନା ସାମନାକୁ ଟାଣି ନେଇ ଖୁବ୍ ମାଡ଼ ଦିଆଗଲା । ଅନ୍ୟ ଦୁଇଜଣଙ୍କୁ ପୋଲିସ ମାଡ଼ିବସି ତାଙ୍କର ନିଶ ଓପାଡ଼ିବାର ଲାଗିଲେ । ତଥାପି ଲକ୍ଷ୍ମଣ ବନ୍ଦେ ମାତରଂ ସ୍ୱର ଉତ୍ତୋଳନ କରିବାରୁ ଅନ୍ୟ ଜଣେ ପୋଲିସ ବନ୍ଧୁକର ବାୟୋନଟରେ ତାଙ୍କରି ମୁହଁକୁ ଆଘାତ କରିବାରୁ ସେ ଅଚେତ ହୋଇଗଲେ । ଉତ୍ୟକ୍ତ ସଂଗ୍ରାମୀମାନଙ୍କୁ ମାନସିକ ବଳ ଦେବାକୁ ଲକ୍ଷ୍ମଣ ନିଜ ଅଞ୍ଚଳକୁ ଫେରିଲେ । ସେ କିଛି ଦିନ ପାଇଁ ଫରାର ଥିଲେ । ୧୯୪୨ ମସିହା ସେପ୍ଟେମ୍ବର ମାସ ୨ ତାରିଖ ସକାଳ ୬ ଟା ବେଳେ ଲକ୍ଷ୍ମଣ ଗ୍ରାମବାସୀଙ୍କ ଗହଣରେ ନିଜ ବାସଗୃହର ଅଗଣାରେ ବସି ବାପୁଜୀଙ୍କ ପ୍ରିୟ ଭଜନ ଗାନ କରୁଥିବା ବେଳେ କାହାଠାରୁ ଖବର ପାଇ ପୋଲିସ ହଠାତ୍ ପହଞ୍ଚି ଲକ୍ଷ୍ମଣଙ୍କୁ ଓ ଅନ୍ୟ ୫୪ ଜଣଙ୍କୁ ହାତକଡ଼ି ପକାଇ କୋର୍ଟକୁ ଚାଲାଣ କରିଥିଲେ । କୋରାପୁଟ ଜେଲରେ ସହକର୍ମୀମାନଙ୍କ ସହ ଜେଲ ଭୋଗିଲେ । ତତ୍କାଳୀନ ଡେପୁଟୀ କଲେକ୍ଟର ସୋମନାଥ ମିଶ୍ରଙ୍କ କୋର୍ଟରେ ଲକ୍ଷ୍ମଣ ନାଏକ ଓ ତାଙ୍କର ୫୪ ଜଣ ସହକର୍ମୀଙ୍କ ନାମରେ ଦେଶଦ୍ରୋହ ଓ ନରହତ୍ୟା ମାମଲା ବିଚାର କରାଗଲା । ସରକାରଙ୍କ ତରଫରୁ ୩୩ ଜଣ ସାକ୍ଷୀ ଦେଇଥିଲେ । ମାତ୍ର ଲକ୍ଷ୍ମଣ ତରଫରୁ କେହି ସାକ୍ଷୀ ନଥିଲେ କି କୋର୍ଟରେ ତାଙ୍କ ପକ୍ଷଭୁକ୍ତ ହୋଇ ଲଢ଼ିବାକୁ ସେ କୌଣସି ଓକିଲ ନିଯୁକ୍ତ କରିନଥିଲେ । ଡେପୁଟୀ କଲେକ୍ଟର ସାକ୍ଷ୍ୟ ପ୍ରମାଣ ଦେଖି ଉପର କୋର୍ଟକୁ କେସଟି ପଠାଇ ଦେଲେ । ସେହି ବର୍ଷ ଅକ୍ଟୋବର ମାସରେ କୋରାପୁଟରେ ଅତିରିକ୍ତ ସେସନସ୍ ଜଜ ଶ୍ରୀ ଭି. ରାମନାଥଙ୍କ କୋର୍ଟରେ ୧୮ ନମ୍ବର କେସର ବିଚାର ହୋଇଥିଲା । ମୂର୍ଖ ଆଦିବାସୀ ସେଣିଆ ଓ ସିଙ୍ଗିଗୁଡ଼ାର କେଶବ ପାତ୍ରଙ୍କ ମିଥ୍ୟା ସାକ୍ଷ୍ୟ ଯୋଗୁଁ ୧୯୪୨ ମସିହା ନଭେମ୍ବର ୧୩ ତାରିଖରେ ବିଚାରପତି ରାୟ ଶୁଣାଇଲେ ଯେ ଭାରତୀୟ ଦଣ୍ଡବିଧି ଆଇନ ୩୦୨ ଧାରା ଅନୁଯାୟୀ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦିଆଯିବ ।

୧୯୪୨ ନଭେମ୍ବର ୧୬ ତାରିଖ ଦିନ ଲକ୍ଷ୍ମଣ ନାଏକଙ୍କୁ କୋରାପୁଟ ଜେଲରୁ ବ୍ରହ୍ମପୁର ଜେଲକୁ ଅଣାଗଲା । ସେ ଥିଲେ ଆସାମୀ ନଂ ୬୬୧ । ସେତେବେଳେ ଓଡ଼ିଶାର ବରେଣ୍ୟ ନେତା ସ୍ୱର୍ଗତ ସଦାଶିବ ତ୍ରିପାଠୀ, ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ଜାତୀୟକବି ବୀରକିଶୋର ଦାସ ପ୍ରମୁଖ ଜେଲରେ ଥାନ୍ତି । ସମସ୍ତଙ୍କର ଦୁଃଖ ଯେ କୌଣସି ଦୋଷ ନଥାଇ ଲକ୍ଷ୍ମଣ ନାଏକଙ୍କୁ ମୃତ୍ୟୁଦଣ୍ଡ ଭୋଗିବାକୁ ପଡୁଛି । କେବଳ ପୋଲିସର ଅଭିସନ୍ଧି, ସରକାରୀ ଓକିଲଙ୍କ ଦେଶଦ୍ରୋହୀ କାର୍ଯ୍ୟ ତଥା ଗୋର ସରକାରଙ୍କର ଗୋଲାମଗିରି ଯୋଗୁଁ ।

ଇଂରେଜମାନେ ଅଭିସନ୍ଧି ରଖି ଫରେଷ୍ଟ ଗାର୍ଡ଼ ଜି. ରାମାୟାଙ୍କ ମୃତ୍ୟୁ ଲକ୍ଷ୍ମଣ ନାଏକଙ୍କ ଯୋଗୁଁ ହୋଇଛି ବୋଲି ଆଗରୁ ପ୍ରଚାର କରି ଆସୁଥିଲେ, ଯଦିଓ ଲକ୍ଷ୍ମଣ ଏଥିରେ ସମ୍ପୃକ୍ତ ନଥିଲେ । ଲକ୍ଷ୍ମଣଙ୍କୁ ମୃତ୍ୟୁ ଦଣ୍ଡରୁ ରକ୍ଷା କରିବା ପାଇଁ ବ୍ରହ୍ମପୁରର ବିଶିଷ୍ଟ ଆଇନଜ୍ଞ ସ୍ୱର୍ଗତ ରାଧାଚରଣ ଦାସ ବିହାର ହାଇକୋର୍ଟରେ ଅପିଲ କରିଥିଲେ, କିନ୍ତୁ ତାହା ଖାରଜ ହୋଇଗଲା । ଜେଲରେ ଥିବା ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଉପରୁ ଆଦେଶ ଆସିଲା ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦେବାକୁ । ଏ ଖବର ଶୁଣି ଜେଲରେ ଥିବା ସମସ୍ତ ନେତାଙ୍କ ମୁଖମଣ୍ଡଳ ମଳିନ ପଡ଼ିଗଲା, କିନ୍ତୁ ହସି ହସି ଲକ୍ଷ୍ମଣ କହୁଥାନ୍ତି - ''ଦେଶ ପାଇଁ ମୃତ୍ୟୁ ବରଣ କରିବା ଭାଗ୍ୟବାନ ଲୋକଙ୍କ ପକ୍ଷରେ ହିଁ ସମ୍ଭବ ।''

୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖ ରାତ୍ରି । ବ୍ରହ୍ମପୁର ଜେଲଟି ଖୁବ୍ ଶୁନଶାନ ଓ ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଉପବାସ ବ୍ରତ ପାଳନ କରିଥିଲେ ଜେଲ ଭିତରେ । ସତେ ଯେମିତି ସମସ୍ତେ ମୂକ ପାଲଟି ଯାଇଥିଲେ, କେବଳ ଲକ୍ଷ୍ମଣଙ୍କ କାରାଗୃହରୁ ଶୁଣାଯାଉଥିଲା ବାପୁଜୀଙ୍କ ପ୍ରିୟ ଭଜନ ରାମଧୁନ୍ । ସଦାଶିବ ତ୍ରିପାଠୀ ଏକା ଲକ୍ଷ୍ମଣଙ୍କ କାରାଗୃହ ନିକଟକୁ ଯାଇ ଦେଖିଲେ ତାଙ୍କର ଶରୀର ଉଦାସ ପ୍ରାଣବନ୍ତ ମୁଖମଣ୍ଡଳ ଏବଂ ତାଙ୍କ ଆଖିରୁ ଝରିଲା ଅବାରିତ ଅଶ୍ରୁ । ତା'ପରେ ଧୀର ସ୍ୱରରେ ପଚାରିଲେ - ''ଲକ୍ଷ୍ମଣ ଘରକୁ କ'ଣ ଖବର ଦେବେ କି ?'' ସେତେବେଳେ ସଂଗ୍ରାମୀ ନାଏକଙ୍କ ଗୋଟିଏ ଉତ୍ତର - ''ମୋର ଆଉ କିଛି କରିବାର ନାହିଁ । ଆମେ ଯେଉଁ ସ୍ୱାଧୀନତା ପାଇଁ ଲଢ଼େଇ କରୁଛୁ ସେ ସ୍ୱରାଜ୍ୟକୁ ଦେଖି ନପାରିବାରୁ ଦୁଃଖିତ ।''

ମାର୍ଚ୍ଚ ୨୯ ତାରିଖ ଭୋର ୫ ଟାରେ ବ୍ରହ୍ମପୁର ଜେଲର ଫାଶୀ ଖୁଣ୍ଟ ଆଡ଼କୁ ଯାଉ ଯାଉ ଲକ୍ଷ୍ମଣ ତାଙ୍କ ଶେଷ ଉକ୍ତି କହିଥିଲେ - ''ଯେବେ ଆକାଶରେ ସୂର୍ଯ୍ୟ ଚନ୍ଦ୍ର ଅଛନ୍ତି, ଦେଖିବ ରହିଥା ସ୍ୱରାଜ୍ୟ ନିଶ୍ଚୟ ଆସିବ ।'' ଫାଶୀଖୁଣ୍ଟରେ ଝୁଲିବାର ନିମିଷକ ମଧ୍ୟରେ ଚଳମାନ ଶରୀରଟି ସ୍ଥିର ହୋଇଗଲା । ଯାହାର ମୃତ୍ୟୁରେ ଲକ୍ଷ ଲକ୍ଷ ନୟନରୁ ଅଶ୍ରୁ ପ୍ଲାବିତ ହୋଇ ଉଠିଲା - ''ତା'ର ଜନ୍ମ ଧନ୍ୟ, ସେଇଥିରେ ତା'ର ମୁକ୍ତି ଓ ଜୀବନର ସାର୍ଥକତା ।

# ବିର୍ସାମୁଣ୍ଡା

ଶହୀଦ ବିର୍ସାମୁଣ୍ଡା ୨୫ ବର୍ଷର ଜୀବନ କାଳ ମଧ୍ୟରେ ବ୍ରିଟିଶ ଶାସନର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଓ ଶେଷରେ ଶହୀଦ୍ ହୋଇ ଏ ଜାତିର ଯୁବକମାନଙ୍କ ପାଇଁ ଆଦର୍ଶ ଓ ପ୍ରେରଣାର ଉତ୍ସ ହୋଇ ରହିଯାଇଛନ୍ତି ।

ଓଡ଼ିଶାରେ ପାଇକ ବିଦ୍ରୋହର ପ୍ରାୟ ଆଠ ଦଶନ୍ଧି ପରେ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ବିରାଟ ଆନ୍ଦୋଳନ ମୁଣ୍ଡ ଟେକି ଥିଲା, ତାହାର ନେତୃତ୍ୱ ନେଇଥିଲେ ଏକ ଆଦିବାସୀ ଯୁବକ ବିର୍ସାମୁଣ୍ଡା । ବିର୍ସାଙ୍କ ଜନ୍ମ ୧୮୭୫ ମସିହା ନଭେମ୍ବର ୧୫ ତାରିଖ ଦିନ ସୁନ୍ଦରଗଡ଼ ଜିଲ୍ଲାର ଆଦିବାସୀ ଗ୍ରାମ ଉଲିହାତୁରେ ଏକ ମୁଣ୍ଡା ପରିବାରରେ । ତାଙ୍କ ପିତାଙ୍କ ନାମ ସଗନା ମୁଣ୍ଡା ଏବଂ ମାତାଙ୍କ ନାମ କରମୀ ମୁଣ୍ଡା । ପିଲାଦିନରୁ ବିର୍ସା ଥିଲେ ସାହସୀ ଓ ସ୍ୱାଭିମାନୀ । ପିଲାବେଳେ ସେ ଶୁଣିଥିଲେ ଗୋରା ଶାସକମାନେ ଲୋକମାନଙ୍କୁ ସେବକ ପଟ୍ଟା ଲେଖାଇ ଗୋତି ଓ ବେଠି ଖଟାଉଥିଲେ । ଧମକ ଚମକ ଦେଖାଇ ନିଜ ଇଚ୍ଛା ଅନୁଯାୟୀ ଜିନିଷ ଲୁଟ୍ କରି ନେଇ ଯାଉଥିଲେ ଏବଂ ସରଳ ବିଶ୍ୱାସୀ ମୁଣ୍ଡାମାନଙ୍କୁ ଜବରଦସ୍ତି ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଉଥିଲେ । ବେଳେବେଳେ ସାଧାରଣ ଜନତାଙ୍କ ଉପରେ ବିଭିନ୍ନ ପ୍ରକାର ଅମାନୁଷିକ ଅତ୍ୟାଚାର ମଧ୍ୟ କରୁଥିଲେ । ବିର୍ସା ଚାଇଁବସା ମିଶନ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ଗୋରା ପ୍ରଧାନ ଶିକ୍ଷକ ତାଙ୍କର ସତ୍ୟବାଦୀତା ଗୁଣ ଏବଂ ହିନ୍ଦୁଧର୍ମକୁ ଭଲ ପାଉଥିବା ଯୋଗୁଁ ତାଙ୍କୁ ଚାବୁକରେ ପ୍ରହାର କରି ସ୍କୁଲରୁ ବାହାର କରି ଦେଇଥିଲେ । ଅତୀତର ଶୁଣାକଥା ଏବଂ ବର୍ତ୍ତମାନର ଅଙ୍ଗେ ନିଭାଇବା କଥା ବିର୍ସାଙ୍କ ହୃଦୟକୁ ଆନ୍ଦୋଳିତ କରିଥିଲା । ତେଣୁ ସେ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ପାଇଁ ମନସ୍ଥ କଲେ ଓ ନିକଟସ୍ଥ ଆଦିବାସୀ ଅଞ୍ଚଳକୁ ଯାଇ ଆଦିବାସୀମାନଙ୍କୁ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ । ସେବକ ପଟ୍ଟା ନ ଲେଖାଇବାକୁ, ଖଜଣା ନ ଦେବାକୁ ଏବଂ ଭାଉଫାଇ ମୁନକୁ ଦରିଯାଇ ଖ୍ରୀଷ୍ଟଧର୍ମ ଗ୍ରହଣ ନ କରିବାକୁ ଆଦିବାସୀଙ୍କୁ ପରାମର୍ଶ ଦେଲେ । ତାଙ୍କର ଅଗ୍ନିବର୍ଷୀ ଭାଷଣରେ ମୁଗ୍ଧ ହୋଇ ଶହ ଶହ ଆଦିବାସୀ ଧନୁତୀର ଧରି ଗୋରାଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆଗଭର ହୋଇଥିଲେ । ବିର୍ସାଙ୍କ ସଶସ୍ତ୍ର ବିପ୍ଳବର ଆହ୍ୱାନ ବ୍ରିଟିଶ ସାମ୍ରାଜ୍ୟକୁ ଦୋହଲାଇ ଦେଲା ।



ଏଥିରେ ଗୋରା ସରକାର ଉଦ୍‌ବେଗ ହୋଇଗଲେ ଏବଂ ୧୮୯୫ ମସିହା ଅଗଷ୍ଟ ୧୬ ତାରିଖ ଦିନ ଗୋରା ପୋଲିସ୍ ଏସ୍. ପି. ମେୟରସ୍ ସଶସ୍ତ୍ର ପୁଲିସ ବାହିନୀ ଧରି ବିର୍ସାମୁଣ୍ଡା ଓ ତାଙ୍କର ୧୫ ଜଣ ସହକର୍ମୀଙ୍କୁ ଗିରଫ କଲେ । ବିଚାର ପରେ ସେମାନଙ୍କୁ ଦେଶଦ୍ରୋହ ଅପରାଧରେ ଦୁଇବର୍ଷ କାରାଦଣ୍ଡରେ ଦଣ୍ଡିତ କରାଯାଇ ରାଞ୍ଚି ଜେଲକୁ ପଠାଇ ଦିଆଗଲା । ଜେଲ ଜୀବନ ବିର୍ସାଙ୍କ ସ୍ୱାଧୀନଚେତା ମନୋଭାବକୁ ଦ୍ୱିଗୁଣିତ କଲା । ମହାରାଣୀ ଭିକ୍ଟୋରିଆଙ୍କ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ୧୮୯୭ ମସିହାରେ ସବୁ ବନ୍ଦୀଙ୍କୁ ମୁକ୍ତ କରାଗଲା । ବିର୍ସା ଏବଂ ତାଙ୍କର ସହକର୍ମୀ ମଧ୍ୟ ଜେଲରୁ ମୁକ୍ତି ପାଇଲେ । ଜେଲରୁ ଫେରି ବିର୍ସା ଦେଖନ୍ତି ଯେ ବଣ. ଜଙ୍ଗଲରେ ଆଦିବାସୀମାନେ ଅନାହାରରେ ପଡ଼ି ପୋକ ମାଛି ପରି ମରୁଛନ୍ତି । ସେମାନେ ସହାନୁଭୂତି ପାଇବା ବଦଳରେ ଗୋରା ସରକାର ବେଢ଼ି ଉପରେ କୋରଡ଼ା ପରି ସେମାନଙ୍କ ଉପରେ ଜବରଦସ୍ତି ଟିକସ ଲଦି ଦେଲେ । ବିର୍ସାମୁଣ୍ଡା ଏବଂ ତାଙ୍କର ମୁଖ୍ୟ ସହକର୍ମୀ ଗୟା ମୁଣ୍ଡା ଗାଁ ଗଣ୍ଡା ବୁଲି ଲୋକମାନଙ୍କୁ ସାହାଯ୍ୟ କରି ଲୋକପ୍ରିୟତା ଅର୍ଜନ କଲେ । ଶହ ଶହ ଆଦିବାସୀ ଏମାନଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଗୋରା ଶାସକ

ବିରୁଦ୍ଧରେ ଲଢ଼ିବାକୁ ପ୍ରସ୍ତୁତ ହୋଇଗଲେ । ୧୮୯୯ ମସିହା ଡ଼ିସେମ୍ବର ୯ ତାରିଖ ଦିନ ଶହ ଶହ ଅନୁଗାମୀ ଧନୁତୀର ଓ ବର୍ଚ୍ଛା ଧରି ଗୋରାମାନଙ୍କ ଉପରେ ଆକ୍ରମଣ କଲେ ।

ରାଞ୍ଚିର ମୁଖ୍ୟ ବିଚାରାଳୟ ଉପରେ ଆକ୍ରମଣ ସମୟରେ ଜଣେ ଗୋରା ପୋଲିସ ଓ ୧୨ ଜଣ କର୍ମଚାରୀ ମୃତ୍ୟୁ ବରଣ କଲେ । ଏହି ଘଟଣା ବ୍ରିଟିଶ୍ ସାମ୍ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିର୍ସାମୁଣ୍ଡାଙ୍କୁ ଧରିବା ପାଇଁ ପୋଲିସ ପାଞ୍ଚ ଶହ ଟଙ୍କା ପୁରସ୍କାର ଘୋଷଣା କରିଥିଲେ । ଡ଼େପୁଟୀ କମିଶନର ଷ୍ଟ୍ରୀଟ୍ ଫିଲଡ଼୍ ସଶସ୍ତ୍ର ପୋଲିସ ଫୋର୍ସ ଧରି ଆପ୍ରାଣ ଚେଷ୍ଟା କରି ଗୟା ମୁଣ୍ଡାଙ୍କୁ ଗିରଫ କରିଥିଲେ କିନ୍ତୁ ପୋଲିସ୍‌ର ନିର୍ମମ ପ୍ରହାରରେ ଗୟା ମୁଣ୍ଡାଙ୍କ ମୃତ୍ୟୁ ହେଲା । ଗୟା ମୁଣ୍ଡାଙ୍କର ମୃତ୍ୟୁ ଖବର ପାଇ ବିଦ୍ରୋହୀମାନେ ଦମନଲୀଳାର ମୁଖ୍ୟ କେନ୍ଦ୍ର ଖୁଣ୍ଟି ଥାନା ଉପରେ ଆକ୍ରମଣ କଲେ । ଏଥିରେ ସରକାର ବ୍ୟତିବ୍ୟସ୍ତ ହୋଇ ବିର୍ସାମୁଣ୍ଡାଙ୍କ ମୁଖ୍ୟ ସଂଗ୍ରାମର ସ୍ଥଳ ଡ଼ୋମ୍ବାରୀ ପାହାଡ଼ ଆକ୍ରମଣ କରିବାକୁ ସ୍ଥିର କଲେ । ୧୯୦୦ ମସିହା ଜାନୁଆରୀ ୯ ତାରିଖ ଦିନ ବିର୍ସାମୁଣ୍ଡାଙ୍କୁ ଆତ୍ମ ସମର୍ପଣ କରିବାକୁ କୁହାଗଲା କିନ୍ତୁ ସେ ଏହାକୁ ପ୍ରତ୍ୟାଖ୍ୟାନ କଲେ । ଡ଼େପୁଟୀ କମିଶନର ଷ୍ଟ୍ରୀଟ ଫିଲ୍‌ଡ଼ଙ୍କ ନେତୃତ୍ୱରେ ଦୁଇଶହ ସୈନ୍ୟ ଡ଼ୋମ୍ବାରୀ ପାହାଡ଼ ଆକ୍ରମଣ କଲେ । ଏଥିରେ ବିର୍ସାଙ୍କର ଜଣେ ପ୍ରଧାନ ସହକର୍ମୀ ନରସିଂହ ମୁଣ୍ଡାଙ୍କ ସମେତ ଦୁଇଶହ ଆଦିବାସୀ ନିହତ ହେଲେ । ବିର୍ସା ଅଳ୍ପକେ ରକ୍ଷା ପାଇଁ ଚକ୍ରଧରପୁରର ଜଙ୍ଗଲକୁ ପଳାଇଲେ । ସରକାର ବିର୍ସାଙ୍କର କୌଣସି ସନ୍ଧାନ ନ ପାଇ ବିଭିନ୍ନ ଗ୍ରାମ ଚଢ଼ାଉ କରି ମୁଣ୍ଡାମାନଙ୍କୁ ନିର୍ଯ୍ୟାତନା ଦେଲେ । ଏଥିରେ ବ୍ୟଥିତ ହୋଇ ବିର୍ସାଙ୍କ ସହକର୍ମୀ ଡ଼ୋନକା ମୁଣ୍ଡା ଓ ମାଝିଆ ମୁଣ୍ଡା ସରକାରଙ୍କ ନିକଟରେ ଆତ୍ମସମର୍ପଣ କଲେ । ଅନେକ ସହକର୍ମୀଙ୍କୁ ହରାଇ ମଧ୍ୟ ବିର୍ସାଙ୍କ ମନରେ ସ୍ୱାଧୀନତା ପ୍ରାପ୍ତିର ଆଶା ମୌଳି ନଥିଲା । ତାଙ୍କର ଧୈର୍ଯ୍ୟ ଅସୀମ ଥିଲା । ସଂଗ୍ରାମକୁ ନୂତନ ମୋଡ଼ ଦେବାକୁ ବିର୍ସା ସିଂହଭୂମି ଜିଲ୍ଲାକୁ ଚାଲିଗଲେ । ସେଠାରେ ସେନ୍ତେରା ଗ୍ରାମ ନିକଟବର୍ତ୍ତୀ ଜଙ୍ଗଲରେ ଗୋପନରେ ରହୁଥିବା ସମୟରେ ଇଂରେଜ ସରକାରଙ୍କ ଦ୍ୱାରା ଘୋଷିତ ୫୦୦ ଟଙ୍କାର ଲୋଭ ସମ୍ବରଣ କରି ନ ପାରି ଦୁଇଜଣ ବିଶ୍ୱାସଘାତକ ଶଶୀଭୂଷଣ ରାଇ ଓ ମାଝିଆ ମାରିଆ ୧୯୦୦ ମସିହା ମାର୍ଚ୍ଚ ୩ ତାରିଖରେ ପୋଲିସ୍ ହାତରେ ବିର୍ସାଙ୍କୁ ଧରାଇ ଦେଇଥିଲେ । ଗିରଫ ହୋଇ ବିର୍ସା ରାଞ୍ଚି ଜେଲରେ ରହିଲେ । ଗଣ୍ଡଗୋଳର ଆଶଙ୍କା କରି ରାତାରାତି ବିର୍ସାଙ୍କ ହାତ ଓ ଗୋଡ଼ରେ ବେଡ଼ି ଲଗାଇ କଡ଼ା ନିରାପତ୍ତା ମଧ୍ୟରେ ହଜାରିବାଗ ପଠାଗଲା । ସେଠାରେ ତାଙ୍କର ଦେହ ଖରାପ ହେତୁ ପୁଣି ରାଞ୍ଚି ପଠାଇ ଦିଆଗଲା । ମିଥ୍ୟା ଅଭିଯୋଗ କରି ବିର୍ସା ମୁଣ୍ଡାଙ୍କ ବିଚାର ଚାଲିଲା । ଶହ ଶହ ମୁଣ୍ଡା ସାକ୍ଷୀ ଦେବାପାଇଁ କୋର୍ଟ ବାହାରେ ଥିଲେ ମଧ୍ୟ ସେମାନଙ୍କୁ ସୁଯୋଗ ଦିଆଗଲା ନାହିଁ । ଶେଷରେ ଜେଲରେ ବିର୍ସାଙ୍କୁ ଖାଦ୍ୟରେ ବିଷ ଦିଆଗଲା । ୧୯୦୦ ମସିହା ଜୁନ୍ ୯ ତାରିଖ ଦିନ ରାଞ୍ଚି ଜେଲରେ ମାତ୍ର ୨୫ ବର୍ଷ ବୟସରେ ବିର୍ସା ମୁଣ୍ଡା ପ୍ରାଣତ୍ୟାଗ କଲେ । ବିର୍ସାଙ୍କ ମୃତ୍ୟୁ ପରେ ତାଙ୍କର ବହୁ ସହକର୍ମୀଙ୍କୁ ଦ୍ୱୀପାନ୍ତର ଓ ଫାଶିଦଣ୍ଡରେ ଦଣ୍ଡିତ କରାଗଲା । ଏହି ମହାନ୍ ଶହୀଦ୍‌ଙ୍କର ତ୍ୟାଗ ଓ ଆଦର୍ଶ ପରବର୍ତ୍ତୀ କାଳରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ଅନୁପ୍ରେରିତ କରିଥିଲା ।

—0—

ଗର୍ଜ୍ଜିଉଠୁଛି ତୂର୍ଯ୍ୟନାଦ, ଉଡୁଛି ବିଜୟକେତ୍ର
ଆର୍ଯ୍ୟ ବାହିନୀ ଆସୁଛି ବର୍ଜ୍ଜି ସମର କ୍ଷେତ୍ର ।

ବଜାଅ ବଜାଅ ବିଜୟଶଙ୍ଖ, ଗାଅ ଭାରତର ଜୟ,
ଚନ୍ଦ୍ର ସୂର୍ଯ୍ୟ କମ୍ପିତ ହେଉ, ଗର୍ଜ୍ଜୁ ଅବନୀମୟ ।

କ୍ଷିପ୍ତ ଅରାତି ଶସ୍ତ୍ର ପ୍ରହାର ସହିଛି ମୁକ୍ତ ବକ୍ଷେ,
ରହିଛି ଅଟଳ ଆପଣା ଧର୍ମେ ଅଚଳ ରହିଛି ଲକ୍ଷ୍ୟେ ।

ବହିଛି ଝଞ୍ଜା ମସ୍ତକେ ତା'ର, ହୋଇଛି ଅଗ୍ନିବୃଷ୍ଟି,
ସତ୍ୟପଥରୁ ନିମେଷକ ପାଇଁ ଫେରାଇ ନାହିଁ ସେ ଦୃଷ୍ଟି ।

ଜନ୍ମ ଭୂମି ମୁକତି ଯଜ୍ଞେ ଅର୍ପି ହୃଦୟରକ୍ତ,
ଗୌରବଟୀକା ଘେନିଛି ଭଲେ ସ୍ୱଦେଶ କରିଣ ମୁକ୍ତ ।

**କାନ୍ତକବି ଲକ୍ଷ୍ମୀକାନ୍ତ**

# କନିକା ଗୌରବ ବାସୁ-ବିସୁନି

ଇଂ ଅଭୟ ସୁତାର

"ହତୋ ବା ପ୍ରାପସ୍ୟସେ ସ୍ୱର୍ଗଂଜିତ୍ୱା ବା ଭୋକ୍ଷ୍ୟସେ ମହୀଂ
ତସ୍ମାଦୁତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟ ।"

ଅର୍ଥାତ୍ - ମଲେ ସ୍ୱର୍ଗ ଲାଭ କରିବ, ଜୟ କଲେ ରାଜ୍ୟ ଭୋଗ କରିବ । ହେ ଅର୍ଜୁନ, ଯୁଦ୍ଧପାଇଁ ଦୃଢ଼ ସଂକଳ୍ପ ହୁଅ । ଏହାଥିଲା ଭଗବାନ୍ ଶ୍ରୀକୃଷ୍ଣଙ୍କର ଯୁଦ୍ଧବିମୁଖ ଅର୍ଜୁନଙ୍କ ପ୍ରତି ଉପଦେଶାତ୍ମକ ଆଦେଶ । ରଣାଙ୍ଗନରେ ଠିଆହୋଇ ପଛକୁ ଚାହିଁ ଲାଭ ନାହିଁ ।

ଠିକ୍ ଏହି ବାଣୀ ହିଁ ପ୍ରଯୁଜ୍ୟ ହୋଇଥିଲା କନିକା ପ୍ରଜା ଆନ୍ଦୋଳନର ପ୍ରତିଟି ଶିରା ପ୍ରଶିରାରେ । ଊନବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ ଦୁଃଖିନୀ କନିକାର ଦୁଃଖ ମୋଚନ ପାଇଁ ଜନ୍ମ ହୋଇଥିଲେ "ବାସୁସେଠୀ" ଓ "ବିସୁନି ମହୁଆଳ" । କନିକାରାଜାଙ୍କ ନିର୍ମମ ଅତ୍ୟାଚାରର ବିଭତ୍ସକାଣ୍ଡ, ସମଗ୍ର କନିକାମାଟିରେ ଏକ ବିସ୍ମୟସୂଚକ ରୋମାଞ୍ଚକାରୀ ଘଟଣା । ନିଜ ମା ଭଉଣୀଙ୍କ ବେଇଜତୀ ଦୃଶ୍ୟାବଳୀ ଓ ଚଉପଟୀ କର ରୂପୀ ଅକ୍ଟୋପାସ୍ ଭୟରେ ପ୍ରକମ୍ପିତ ହେଉଥିଲା କନିକାର ଭୂମିପୁତ୍ରମାନେ ।

ବାସୁସେଠୀ ଓ ବିସୁନି ମହୁଆଳ କନିକା ଆନ୍ଦୋଳନର ମୁଖ୍ୟ ପୁରୋଧାରୂପେ ଦଣ୍ଡାୟମାନ ହୋଇଥିଲେ । ହଜାର ହଜାର ନରନାରୀଙ୍କ ଆକୁଳ ନିବେଦନ ଭୂମିପୁତ୍ରଙ୍କୁ ଦୃଢ଼ରୁ ଦୃଢ଼ତର କରିଥିଲା । ନିଜ ମାଟି ମା'ର ଇଜତ ଓ ଦେଶମାତୃକାର ଜୟଗାନ କରିବା ପାଇଁ ସେମାନେ ଆଗେଇ ଆସିଲେ ନରରାକ୍ଷସରୂପୀ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି । ଯେଉଁ କନିକାର ଶସ୍ୟଶ୍ୟାମଳା କ୍ଷେତ, ନିଘଞ୍ଚ ବନାନୀ ଏବଂ ଚିର ପ୍ରବାହିତ ନଦୀ ସମୂହ ଅଧିବାସୀଙ୍କ ଜୀବନ ଜୀବିକାର ମାନଦଣ୍ଡରୂପେ ପ୍ରାଗୈତିହାସିକ ଯୁଗରୁ ପରିଚିତ, ସେ ଅଞ୍ଚଳର ଅତ୍ୟାଚାରର ମୂର୍ତ୍ତିମନ୍ତ ପ୍ରତୀକ ରାଜା ପ୍ରଜାଙ୍କ ସର୍ବସ୍ୱ ଲୁଟିବାକୁ କେବେ ପଶ୍ଚାତପଦ ହେଉ ନଥିଲେ । ସାମୁଦ୍ରିକ ଜଳୋଚ୍ଛ୍ୱାସ, ବନ୍ୟା, ବାତ୍ୟା ଇତ୍ୟାଦି ଦୈବ ଦୁର୍ବିପାକର ଲାଳ ଜିହ୍ୱାରେ କନିକାବାସୀ ପ୍ରପୀଡ଼ିତ ହେଉଥିଲେ ହେଁ ଶହ ଶହ ବର୍ଷର ଅତ୍ୟାଚାରୀ ରାଜା କଣ୍ଟକ ଦେବାକୁ ଭୁଲୁ ନଥିଲେ ।

ବ୍ରିଟିଶ ସରକାରଙ୍କ ଚାଟୁକାର ରାଜା ଦିନକୁ ଦିନ ପ୍ରଜାବିହୀନ କରିବା ବେଳେ କନିକାର ଦୁଇବୀର ପୁତ୍ର ବାସୁବିସୁନି ଚାଲେଞ୍ଜ ପାଇଁ ଆଗେଇ ଆସିଲେ । ଭାରତର ମୁକ୍ତି ସଂଗ୍ରାମ ପାଇଁ କୋଣଅନୁକୋଣରେ ବିଦ୍ରୋହର ବହ୍ନି ଜାଗି ଉଠିବାବେଳେ କନିକାର ପ୍ରତି ବର୍ଗ ଇଞ୍ଚରେ ରାଜବିରୋଧୀ ଲେଲିହାନ ଶିଖା ଜଳିଉଠିଲା । ଯୌବନର ଉଦ୍ଦାମତାକୁ ଏଡ଼େଇ ଆଗେଇ ଆସିଲେ ବାସୁବିସୁନି !

ସେଦିନଥିଲା ୧୯୨୨ ମସିହା ଅପ୍ରେଲ ୨୩ ତାରିଖ । ଦୀର୍ଘଦିନର ପୁଞ୍ଜିଭୂତ ବେଦନା ସାକାର ହେଲା ପ୍ରଭାତର ପହିଲି କିରଣରେ । ବେବର୍ତ୍ତା ସରୋବର ଚତୁଃପାର୍ଶ୍ୱ ଲୋକାରଣ୍ୟରେ ପରିଣତ ହେଲା । ବ୍ରିଟିଶରାଜର ମୁକାବିଲା ପାଇଁ ଜନମତ ଜାଗିଉଠିଲା । ପୋଲିସର ଲୁଟତରାଜ ଓ ବଳାତ୍କାରକୁ ବିରୋଧକରି ହୁ ହୁ କରି ମାତି ଉଠିଲେ ଜନସମୁଦ୍ରର ତରଙ୍ଗମାଳା । ସ୍ତ୍ରୀ ହାତରୁ ଶଙ୍ଖା ଖୋଲି ଦେଇ ଓ ମଥାର ସିନ୍ଦୂରକୁ ଲିଭେଇଦେଇ ଛୁଟି ଆସିଲେ ବାସୁବିସୁନି, ମା'ର ଇଜତ ରକ୍ଷା କରିବା ପାଇଁ ।

ମା ବନ୍ଦ୍ରକାଳୀର ସିନ୍ଦୂର ବୋଳି ବଜ୍ର ଶପଥନେଇ ବାସୁ ବିସୁନି ଲଢ଼େଇକୁ ବାହାରି ଆସିଲେ ସିନା - ତାଙ୍କୁ କି ଜଣା ଯେ ବ୍ରିଟିଶ୍ ଫଉଜର ଲହୁଚୋଷା ବନ୍ଧୁକମୂନରେ ତାଙ୍କ ବାଡ଼ି କୁରାଢ଼ୀ ନଗଣ୍ୟ ମାତ୍ର ବୋଲି ? ତଥାପି ସେ ଛୁଟି ଚାଲିଲେ ରାଜବାହିନୀର ସମ୍ମୁଖ ଭାଗକୁ । କଣ୍ଠାକୁଥରେ ଧୂଆ ସିନ୍ଦୂରମରା ଠେଙ୍ଗାସବୁ ରେ ରେ କାର ଧ୍ୱନିରେ ଧାଇଁଥିଲେ ଆଗକୁ ଆଗକୁ । ବୀର ପଟିଆରା ବାହାଦୂରୀରେ ସେମାନେ ଲଗାମଛଡ଼ା ଏକାଠି ନିଦ୍ ମରିବେ ନତୁବା ମାରିବେ । ବାସୁବିସୁନିଙ୍କ ମୁହଁରେ ଆନନ୍ଦ ମାଷ୍ଟ୍ରେଙ୍କ ଲେଖା ' ଦୂରିବ ଯଦି ଭାଇମାନେ - କନିକା କୁଡ଼ିକ ଥଷା ନେ, 'ପଶ୍ଚାଦ୍‌ଭାଗରେ ଅନୁଧାବନ କରୁଥିବା ଲକ୍ଷୁଆ ପ୍ରଜାଙ୍କ ପ୍ରତି ଏହା ଥିଲା ନିର୍ଦ୍ଦେଶ ।

ଜନସମୁଦ୍ରର ଗର୍ଜନରେ ବେବର୍ତ୍ତା ସରୋବର ତରଙ୍ଗାୟିତ ହେଉଥିଲା । ଅସଂଖ୍ୟ ମଣିଷମୁଣ୍ଡ ଓ ଠେଙ୍ଗା ଚତୁର୍ଦ୍ଦିଗକୁ ମାଡ଼ିଯାଉଥିଲେ । ପ୍ରତିଦିନ ଦହଗଂଜ ହୋଇ ମରିବା ଅପେକ୍ଷା ଥରେ ମରିବାକୁ ଆଗେଇ ଆସିଥିଲେ ପ୍ରତିଟି ମଣିଷ । ଜୟ ବନ୍ଦ୍ରକାଳୀ ଶବ୍ଦରେ ବିକଟ ପ୍ରତିଧ୍ୱନି ତୋଳୁଥିଲା ବେବର୍ତ୍ତା ପୋଖରୀସ୍ଥ ତାଳ ତମାଳ ମାଳ ବୃକ୍ଷରାଜି ।

ହଠାତ୍ ଶୁଭିଲା "ଫାୟାର" "ଫାୟାର" - ଚାଲିଲା ଆଖିବୁଜା ଗୁଳି ବର୍ଷଣ - ଉପରକୁ ତଳକୁ, ମଝିକୁ । ବାସୁବିସୁନି ଢଳି ପଡ଼ିଲେ ସବୁଦିନ ପାଇଁ ବେବର୍ତ୍ତାକୁ ସାକ୍ଷୀ ଦେଇ । ଇଂରେଜ ବିରୋଧୀ ଆନ୍ଦୋଳନରେ ଅମର ଶହୀଦ୍‌ରୂପେ ପରିଗଣିତ ହେଲେ ବାସୁବିସୁନି ।

ସାଲନ୍ଦୀନଗର, ଭଦ୍ରକ - ୭୫୬ ୧୦୦

## ବିଦ୍ରୋହର ବହ୍ନି-ଶିଖା

# ବକ୍ସି ଜଗବନ୍ଧୁ

ଓଡ଼ିଶାର ଶେଷ ସ୍ୱାଧୀନତା ବଜାୟ ରଖିବାକୁ ଯେଉଁ କେତେକ ଓଡ଼ିଆ ଗୋରା ଫିରିଙ୍ଗି ସହ ଲଢ଼େଇ କରିଥିଲେ, ସେମାନଙ୍କ ମଧ୍ୟରୁ ଖୋର୍ଦ୍ଧାର ଦଳବେହେରା, ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ଅନ୍ୟତମ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ତାଙ୍କର ତ୍ୟାଗ, ବୀରତ୍ୱ, ସାହସ ଓ ନିର୍ଯାତିତ ଜୀବନ ଏବଂ ଆତ୍ମୋତ୍ସର୍ଗ ଓଡ଼ିଶା ଇତିହାସରେ ଏକ ଗୌରବୋଜ୍ଜ୍ୱଳ ରକ୍ତରଞ୍ଜିତ ଅଧ୍ୟାୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ପ୍ରବଳ ପରାକ୍ରମ ଓ ଉଜ୍ଜ୍ୱଳ ବୀରତ୍ୱର କାହାଣୀ ଇତିହାସର ପୃଷ୍ଠାକୁ ଗରିମାମଣ୍ଡିତ କରିଛି ।



ବକ୍ସି ଜଗବନ୍ଧୁଙ୍କର ୧୮୦୪ ପୂର୍ବବର୍ତ୍ତୀ ଜୀବନୀ ଏ ପର୍ଯ୍ୟନ୍ତ ଅଜଣା ରହିଛି । କେତେକ ଐତିହାସିକ ମତ ଦିଅନ୍ତି, ତାଙ୍କ ଜୀବନ କାଳ ୧୭୮୦ ମସିହାରୁ ୧୮୨୯ ମସିହା ମଧ୍ୟରେ ସୀମାବଦ୍ଧ ଥିଲା । ଇଂରେଜମାନେ ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କୁ ସିଂହାସନଚ୍ୟୁତ କରି ତାଙ୍କର ରାଜ୍ୟକୁ "ଖାସ" କଲେ ଅର୍ଥାତ୍ ପ୍ରତ୍ୟକ୍ଷ ଇଂରେଜ ଶାସନାଧୀନ ଅଞ୍ଚଳ ସହିତ ତାକୁ ମିଶାଇ ଦିଆଗଲା । ପାଇକଙ୍କ ନିଷ୍କର ଜମି ଉପରେ ଉଚ୍ଚହାରରେ କର ଧାର୍ଯ୍ୟ ହେଲା । ଖୋର୍ଦ୍ଧା ଖାସ୍ ହେବା ପରେ ସେହି ଜମିଦାରୀର ରାଜସ୍ୱ ଅନେକ ବୃଦ୍ଧି କରାଯାଇ ଜଣେ ବିଦେଶୀ ଜମିଦାରଙ୍କୁ ପଟ୍ଟା ଦିଆଗଲା । ଅନେକ ସର୍ବସ୍ୱାନ୍ତ ହୋଇ ନିଜର ଘରଦ୍ୱାର ଛାଡ଼ି ନିକଟବର୍ତ୍ତୀ ଗଡ଼ଜାତ ରାଜ୍ୟମାନଙ୍କରେ ଆଶ୍ରୟ ନେଲେ । ଯେଉଁମାନେ ରହିଲେ ସେମାନଙ୍କ ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଲା । ପାଇକମାନେ ବୀର ଜାତି । ସେମାନେ ଅନ୍ୟାୟ ଅତ୍ୟାଚାରକୁ ନୀରବରେ ସହ୍ୟ କରିବାରେ ଅଭ୍ୟସ୍ତ ନୁହନ୍ତି । ଯେଉଁମାନଙ୍କ ଯୋଗୁଁ ସେମାନଙ୍କ ଅବସ୍ଥା ଏପରି ଦୟନୀୟ ହୋଇ ପଡ଼ିଛି, ସେମାନଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ପାଇକମାନେ ଦୃଢ଼ ସଂକଳ୍ପ ହେଲେ ଓ ସୁଯୋଗର ଅପେକ୍ଷାରେ ରହିଲେ । ୧୮୧୭ ସାଲ ମାର୍ଚ୍ଚ ମାସରେ ସେ ସୁଯୋଗ ଆସିଲା । ଜୁହୁଳୁଥିବା ବିଦ୍ରୋହାଗ୍ନି ଜଳି ଉଠିଲା । ପାଇକମାନେ ସେମାନଙ୍କର ଅଧ୍ୟକ୍ଷ ଓ ପ୍ରିୟ ନେତା ବକ୍ସି ଜଗବନ୍ଧୁଙ୍କର ନେତୃତ୍ୱରେ ଇଂରେଜମାନଙ୍କର ଅନ୍ୟାୟ ନୀତି ଓ ନିର୍ଯ୍ୟାତନା ବିରୁଦ୍ଧରେ ବିଦ୍ରୋହ କଲେ ।

ବକ୍ସି ଜଗବନ୍ଧୁ ଖୋର୍ଦ୍ଧା ରାଜାଙ୍କ ସେନାବାହିନୀର ସେନାପତି ଥିଲେ । ରାଜ୍ୟରେ ତାଙ୍କର ସ୍ଥାନ ରାଜାଙ୍କ ପରେ ଥିଲା । ତାଙ୍କର ସେରଗଡ଼ ଓ ବଡ଼ମ୍ବା ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିଲା । ସୁତରାଂ ସେ ଉଚ୍ଚ ବଂଶଜ ବୋଲି ଅନୁମାନ କରାଯାଏ । ଶ୍ରୀ ସୁଧାକର ପଟ୍ଟନାୟକ ଜଗବନ୍ଧୁଙ୍କ ବଂଶାବଳୀ ସମ୍ବନ୍ଧରେ ଗୋଟିଏ ପୋଥିରେ କିଛି ସୂଚନା ପାଇଥିଲେ । ସେହି ପୋଥି ଅନୁସାରେ ଜଗବନ୍ଧୁ ବିଦ୍ୟାଧର ଭୋଇ ବଂଶର ପ୍ରଥମ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ମନ୍ତ୍ରୀ ଜନେଇ ବିଦ୍ୟାଧରଙ୍କ ଅଷ୍ଟମ ବଂଶଧର । ଜଗବନ୍ଧୁଙ୍କର ପଦବୀ ବିଦ୍ୟାଧର ହୋଇଥିବାରୁ ତାଙ୍କର କେତେକ ଦେଶୀୟ ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିବା ତଥ୍ୟ ସତ୍ୟ ବୋଲି ମନେ ହୁଏ ।

ଷ୍ଟାର୍ଲିଂ ସାହେବ ତାଙ୍କର ଓଡ଼ିଶା ଇତିହାସରେ ଗୋଟିଏ କିମ୍ବଦନ୍ତୀ ଉପରେ ଭିତ୍ତି କରି ଲେଖିଛନ୍ତି ଯେ, ଜଗବନ୍ଧୁଙ୍କ ଶାରୀରିକ ଗଠନ ସୁନ୍ଦର ଓ ବଳିଷ୍ଠ ଥିଲା ଓ ସେ ଶକ୍ତିମାନ ପୁରୁଷ ଥିଲେ । ୧୮୧୭ ମସିହାରୁ ବକ୍ସି ଜଗବନ୍ଧୁ ବୀର ପାଇକମାନଙ୍କୁ ସଙ୍ଗଠିତ କରି ଗଣ ବିପ୍ଳବ ଓ ଜାତୀୟ ଜାଗରଣର ସୂତ୍ରପାତ କରିଥିଲେ । ତେଣୁ ସେ ହେଉଛନ୍ତି ସ୍ୱାଧୀନତା ସଂଗ୍ରାମର ପ୍ରଥମ କର୍ଣ୍ଣଧାର । ଜୁହୁଳୁଥିବା ନିଆଁ ଜଳିବା ପାଇଁ ଏକ ସ୍ଫୁଲିଙ୍ଗ ଦରକାର କରେ । ୧୮୧୭ ମସିହା ମାର୍ଚ୍ଚ

ମାସରେ ଘୁମୁସର କନ୍ଧଙ୍କର ବାଣପୁର ଆକ୍ରମଣ ସେହି ସ୍ଫୁଲିଙ୍ଗ ଯୋଗାଇଲା । ୧୮୧୭ ମସିହାରେ ଇଂରେଜମାନେ ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଗୋଟିଏ ହତ୍ୟା ମାମଲା ସମ୍ପର୍କରେ ଗିରଫ କଲେ । ସେହି ଘଟଣାର ପ୍ରତିବାଦରେ ଘୁମୁସରର ୩୦୦/୪୦୦ କନ୍ଧ ବାଣପୁରରେ ପଶି ସରକାରୀ ଖଜଣାଖାନା ଲୁଟ କଲେ ଓ ସରକାରୀ ଦପ୍ତର ସବୁ ଆକ୍ରମଣ କଲେ । ଜୁହୁଳୁଥିବା ନିଆଁ ପ୍ରବଳ ଭାବରେ ଜଳି ଉଠିଲା । ଖୋର୍ଦ୍ଧାର ପାଇକମାନେ ଏହି ସୁଯୋଗ ନେଇ ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହ କଲେ । ଜଗବନ୍ଧୁଙ୍କର ପରମ ଶତ୍ରୁ ଚରଣ ପଟ୍ଟନାୟକ ତାଙ୍କର କ୍ରୋଧାଗ୍ନିର ପ୍ରଥମ ଶିକାର ହେଲେ ।

ହଠାତ୍ ପାଇକ ବିଦ୍ରୋହ ହେବାରୁ ଇଂରେଜ କର୍ତ୍ତୃପକ୍ଷ ବିବ୍ରତ ହୋଇ ପଡ଼ିଲେ । ପାଇକମାନେ ବାଣପୁର ଓ ଖୋର୍ଦ୍ଧାରେ ଥିବା ସବୁ ସରକାରୀ ଅଫିସ୍ ଭାଙ୍ଗି ଦେଲେ, ଖଜଣାଖାନା ଲୁଟ କଲେ । ପାଇକମାନଙ୍କ ସଙ୍ଗରେ ଇଂରେଜ ସୈନ୍ୟଙ୍କର ଗଙ୍ଗପଡ଼ା, ବାନକାଟି, ପିପିଲି ଇତ୍ୟାଦି ସ୍ଥାନମାନଙ୍କରେ ସଂଘର୍ଷ ହୋଇଥିଲା । ତଦ୍ୱାରା ପାଇକମାନଙ୍କର ଗତିରୋଧ ହୋଇ ପାରିଲା ନାହିଁ । ପାଇକମାନେ ପୁରୀ ଆଡ଼କୁ ଅଗ୍ରସର ହେଲେ । ପୁରୀରେ ପାଇକମାନେ ଇଂରେଜ ସୈନ୍ୟଙ୍କ ପ୍ରତିରୋଧ କରି ପାରିଲେ ନାହିଁ । ଇଂରେଜମାନେ ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀ କରି କଟକ ଆଣିଲେ ।

୧୮୧୭ ଏପ୍ରିଲ ମାସ ୧୨ ତାରିଖରେ ସାମରିକ ଆଇନ ପ୍ରବର୍ତ୍ତନ କରାଗଲା । କ୍ରମେ ସେ ଆଇନ ପୁରୀ ଓ ପିପିଲିରେ ପ୍ରବର୍ତ୍ତନ କରାଗଲା । ମେଜର ସାର,ଜି. ମାଟିନ୍‌ଡ୍ରେଲଙ୍କୁ ସାମରିକ କମିଶନ ରୂପେ ନିଯୁକ୍ତି କରାଗଲା । ୧୮୧୭ ମସିହା ଅକ୍ଟୋବର ମାସ ଶେଷ ବେଳକୁ ଇଂରେଜମାନେ ବିଦ୍ରୋହକୁ ସମ୍ପୂର୍ଣ୍ଣ ଭାବରେ ଦମନ କରି ଦେଇଥିଲେ । କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ସ୍ୱସ୍ତିରେ ନିଃଶ୍ୱାସ ପକାଇ ପାରିଲେ ନାହିଁ । କାରଣ ଜଗବନ୍ଧୁ ବିଦ୍ୟାଧର, କୃଷ୍ଣଚନ୍ଦ୍ର ଭ୍ରମରବର ଓ ସେମାନଙ୍କ ଅନୁଚରମାନେ ଜଙ୍ଗଲରେ ଆତ୍ମଗୋପନ କରି ରହିଲେ । ପୁଣି କେତେବେଳେ ବିଦ୍ରୋହର ନିଆଁ ଜଳି ଉଠିବ, ଏହି ଭୟରେ କର୍ତ୍ତୃପକ୍ଷ ସବୁବେଳେ ସତର୍କ ହୋଇ ରହିଲେ । ୧୮୧୮ ରୁ ୧୮୨୫ ପର୍ଯ୍ୟନ୍ତ ଇଂରେଜ ସୈନ୍ୟ ଓ ଆତ୍ମ-ଗୋପନକାରୀ ପାଇକମାନଙ୍କ ମଧ୍ୟରେ ଲୁଚକାଳି ଖେଳ ଚାଲିଲା । ଶତ ଚେଷ୍ଟା ସତ୍ତ୍ୱେ ଏପରିକି ଜଗବନ୍ଧୁଙ୍କ ପରିବାରକୁ ବନ୍ଦୀ କରି ରଖିବା ସତ୍ତ୍ୱେ ଇଂରେଜମାନେ ବିଦ୍ରୋହୀ ନେତା ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଭ୍ରମରବର ଓ ତାଙ୍କର ଅନୁଚରବର୍ଗଙ୍କୁ ଧରି ପାରିଲେ ନାହିଁ । ଶେଷରେ ବଡ଼ଲାଟ ନିମ୍ନଲିଖିତ ସର୍ତ୍ତରେ ୧୮୨୨ ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କୁ କ୍ଷମା ଦେବା ବିଷୟ ଘୋଷଣା କଲେ :

(୧) ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ସେମାନଙ୍କର ବଂଶାନୁକ୍ରମିକ ପଦବୀ 'ବକ୍ସି' ଓ 'ଦେୱାନ' ବ୍ୟବହାର କରିବେ ନାହିଁ ।

(୨) ସେମାନେ କଟକରେ ରହିବେ ଓ ବିନା ଅନୁମତିରେ କଟକ ଛାଡ଼ିବେ ନାହିଁ ।

(୩) ସେମାନଙ୍କୁ ଯଥାକ୍ରମେ ୧୦୦ ଟଙ୍କା ଓ ୫୦ ଟଙ୍କା ମାସିକ ଭତ୍ତା ଦିଆଯିବ ।

ଏହି ଘୋଷଣା ସତ୍ତ୍ୱେ ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଓ ତାଙ୍କର ଅନୁଚରମାନେ ଆତ୍ମସମର୍ପଣ କଲେ ନାହିଁ, କିନ୍ତୁ ବିଦ୍ରୋହୀମାନଙ୍କ ଅବସ୍ଥା କ୍ରମେ ଶୋଚନୀୟ ହୋଇ ଉଠିଲା । ଇଂରେଜ କର୍ତ୍ତୃପକ୍ଷଙ୍କ ସତର୍କତା ଯୋଗୁଁ ସେମାନେ କୌଣସି ସୂତ୍ରରୁ ସାହାଯ୍ୟ ପାଇପାରିଲେ ନାହିଁ । ନୟାଗଡ଼ ଓ ଅନ୍ୟାନ୍ୟ ରାଜାମାନଙ୍କୁ ସତର୍କ କରାଇ ଦିଆଗଲା ଯେ ସେମାନେ ଯଦି ବିଦ୍ରୋହୀମାନଙ୍କୁ କୌଣସି ପ୍ରକାରର ସାହାଯ୍ୟ କରନ୍ତି ତେବେ ସେମାନଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ କରାଯିବ । ସୁତରାଂ ରାଜାମାନେ ମଧ୍ୟ ଭୟରେ ବିଦ୍ରୋହୀମାନଙ୍କୁ ସାହାଯ୍ୟ କଲେ ନାହିଁ । ଏପରି ପରିସ୍ଥିତିରେ ବିଦ୍ରୋହୀମାନଙ୍କର ଆତ୍ମସମର୍ପଣ ବ୍ୟତୀତ ଅନ୍ୟ କିଛି ଉପାୟ ରହିଲା ନାହିଁ । ଶେଷରେ ନୟାଗଡ଼ ରାଜା ଓ ତାଙ୍କର ଦେୱାନ ବରଜୁ ପାଇକରାୟ ଜଗବନ୍ଧୁଙ୍କୁ ସରକାରଙ୍କ ସର୍ତ୍ତ ଗ୍ରହଣ କରି ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇଲେ । ଜଗବନ୍ଧୁ ଅନନ୍ୟୋପାୟ ହୋଇ ସେହି ସର୍ତ୍ତକୁ ଗ୍ରହଣ କରି ମଇ ମାସ ୨୭ ତାରିଖ ୧୮୨୫ ମସିହାରେ ଆତ୍ମସମର୍ପଣ କଲେ । ତାଙ୍କ ସହ ତାଙ୍କର ୮ ଜଣ ବିଶ୍ୱସ୍ତ ପାର୍ଶ୍ୱଚର ମଧ୍ୟ ଆତ୍ମସମର୍ପଣ କଲେ ।

ବକ୍ସି ଜଗବନ୍ଧୁ ବିଦ୍ୟାଧର ଆତ୍ମସମର୍ପଣ କରିବା ପରେ ଇଂରେଜ ସରକାର କଟକସ୍ଥିତ ବକ୍ସି ବଜାରଠାରେ ତାଙ୍କୁ ଗୃହ ବନ୍ଦୀ କରି ରଖିଲେ । ସେହିଠାରେ ୧୮୨୯ ମସିହା ଜାନୁୟାରୀ ୨୪ ତାରିଖରେ ବକ୍ସିଙ୍କର ଜୀବନଦୀପ ନିର୍ବାପିତ ହେଲା ଏବଂ ଏକ ମହାନ୍ ଜୀବନର ଅବସାନ ଘଟିଲା ।

—o—

# ବୀର ସୁରେନ୍ଦ୍ର ସାଏ

ଶ୍ରୀମତୀ ଜ୍ୟୋତିର୍ମୟୀ ସାମନ୍ତରାୟ

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କୋହ୍ଲ, ମୁଣ୍ଡା ଓ ଗଣ୍ଡ ଆଦିବାସୀମାନେ ମୟୂରଭଞ୍ଜ, ସୁନ୍ଦରଗଡ଼ ଓ ସମ୍ବଲପୁର ଅଞ୍ଚଳରେ ସଂଗଠିତ ଆନ୍ଦୋଳନରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଯୋଗଦାନ କରିଥିଲେ । ମୟୂରଭଞ୍ଜ ଓ ବାମନଘାଟୀ ଜଙ୍ଗଲରେ କୋହ୍ଲମାନେ ୧୮୨୧ ମସିହାରୁ ୧୮୬୭ ମସିହା ପର୍ଯ୍ୟନ୍ତ ଲିପ୍ତ ଥିବା ବେଳେ ୧୮୫୭ ମସିହାରେ ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ସମ୍ବଲପୁର ବିଦ୍ରୋହରେ ଗଣ୍ଡ, କୋହ୍ଲ, ମୁଣ୍ଡା ଓ କନ୍ଧ ଆଦିବାସୀମାନଙ୍କର ଭୂମିକା ଉଲ୍ଲେଖନୀୟ ।

ବୀର ସୁରେନ୍ଦ୍ର ସାଏ ଓଡ଼ିଶାର ମହାନ ବିପ୍ଳବୀମାନଙ୍କ ମଧ୍ୟରେ ଅଗ୍ରଣୀ । ତାଙ୍କର ନେତୃତ୍ୱ ଫଳରେ ଓଡ଼ିଶାରେ ସିପାହୀ ବିଦ୍ରୋହର ଝଲକ ଦେଖା ଯାଇଥିଲା । ସମ୍ବଲପୁରର ଚତୁର୍ଥ ଚୌହାନ ରାଜା (୧୬୩୦-୫୦)ଙ୍କର ଛଅଭାଇ ଓ ଗୋଟିଏ ଭଉଣୀ ଥିଲେ । ବୀର ସୁରେନ୍ଦ୍ର ସାଏ ଜାନୁଆରୀ ମାସ ୨୩ ତାରିଖ ଦିନ ସମ୍ବଲପୁର ଅନ୍ତର୍ଗତ ''ଖିଣ୍ଡା'' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।



ବୀର ସୁରେନ୍ଦ୍ର ସାଏ ବାଲ୍ୟକାଳରୁ ମେଧାବୀ ଓ କଷ୍ଟ ସହିଷ୍ଣୁ ଥିଲେ । ଯୁଦ୍ଧ ବିଦ୍ୟା, ଖଣ୍ଡା ଚାଳନା, ଅଶ୍ୱାରୋହଣ ଆଦିରେ ଅଗ୍ରଗଣ୍ୟ ବୀର ସୁରେନ୍ଦ୍ର ସାଏ ୧୮୨୭ ରୁ ୧୮୪୦ ମସିହା ପର୍ଯ୍ୟନ୍ତ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରଥମ ସଂଗ୍ରାମ ଚଳାଇଥିଲେ । ପୁଣି ୧୮୫୭ ମସିହା ବିଦ୍ରୋହରେ ସଂଗ୍ରାମ କରି ତାନିଆ ଟୋପେ, ଲକ୍ଷ୍ମୀବାଈ ଓ ନାନା ସାହେବଙ୍କ ସହିତ ସମକକ୍ଷ ବୀର ହୋଇ ପାରିଥିଲେ ଏବଂ ଏହି ବିଦ୍ରୋହକୁ ସେ ଏକାକୀ ୧୮୬୪ ମସିହା ପର୍ଯ୍ୟନ୍ତ ଜଳାଇ ରଖି ପାରିଥିଲେ ।

୧୮୨୭ ମସିହାରେ ସମ୍ବଲପୁରର ରାଜା ମହାରାଜା ସାଏଙ୍କର ଅପୁତ୍ରିକ ଅବସ୍ଥାରେ ମୃତ୍ୟୁ ଘଟିଲା । ରାଣୀ ମୋହନ କୁମାରୀଙ୍କୁ ଇଂରେଜମାନେ ସମ୍ବଲପୁରର ରାଜଗାଦିରେ ଅବସ୍ଥାପିତ କରିବା ଫଳରେ ରାଜବଂଶର କେତେକ ଲୋକ ଓ ସାମନ୍ତ ଜମିଦାରମାନେ ଅସନ୍ତୁଷ୍ଟ ହେଲେ । ସୁରେନ୍ଦ୍ର ସାଏ ରାଣୀଙ୍କୁ ଗାଦିର ଉତ୍ତରାଧିକାରୀ ଭାବେ ସ୍ୱୀକାର ନ କରି ନିଜେ ରାଜଗାଦି ଦାବୀ କରିଥିଲେ । କାରଣ ସେ ସମ୍ବଲପୁରର ଚତୁର୍ଥ ରାଜା ମଧୁକର ସାଏଙ୍କର ଦାୟାଦ ଥିଲେ । ତେଣୁ ଅସନ୍ତୁଷ୍ଟ ଗଣ୍ଡ ଓ ବିଞ୍ଝଲ ବିଶୋଇମାନଙ୍କର ନେତୃତ୍ୱ ନେଇ ସୁରେନ୍ଦ୍ର ସାଏ ବିଦ୍ରୋହର ନିଆଁ ଜଳାଇଥିଲେ ।

ଏହି ବିଦ୍ରୋହ ଦମନ କରିବା ପାଇଁ ଲେଫଟ ନାଣ୍ଟ ହାଡିନସ ଓ ହଜାରିବାଗର ଉଇଲିକିନସନ ଆସିଥିଲେ । ବିଦ୍ରୋହ ଟିକିଏ ଶାନ୍ତ ପଡ଼ିଲା । ଉଇଲିକିନସନଙ୍କର ମତାମତ ଅନୁଯାୟୀ, ସମ୍ବଲପୁରରେ ଅଶାନ୍ତି ଦୂର କରିବା ପାଇଁ ବ୍ରିଟିଶ ସରକାର ରାଣୀଙ୍କୁ ଗାଦୀରୁ ହଟାଇ ନାରାୟଣ ସିଂହଙ୍କୁ ରାଜଗାଦିରେ ବସାଇଲେ । କିନ୍ତୁ ନାରାୟଣ ସିଂହ ରାଜସିଂହାସନ ପାଇବା ନିମନ୍ତେ ସଂପୂର୍ଣ୍ଣ ଅନୁପଯୁକ୍ତ ଥିଲେ । ତେଣୁ ବିଦ୍ରୋହୀମାନେ ଉତ୍ତେଜିତ ହୋଇ ଉଠିଥିଲେ । ଲଖନପୁର (ଲକ୍ଷ୍ମଣପୁର)ର ଗଣ୍ଡ ଜମିଦାର ରାଜା ନାରାୟଣ ସିଂହଙ୍କ ଉପରେ ଚଢ଼ାଉ କଲେ ଏବଂ ଏହି ଯୁଦ୍ଧରେ ଇଂରେଜମାନେ ରାଜାଙ୍କୁ ସାହାଯ୍ୟ କରିଥିଲେ ମଧ୍ୟ ଯୁଦ୍ଧ ଦମନ କରି ପାରି ନଥିଲେ ଏବଂ କ୍ରମେ ଏହା ଉତ୍କଟ ରୂପ ଧାରଣ କରିଥିଲା । ବହୁ ସୈନ୍ୟ ଧରି ଇଂରେଜମାନେ ଦେବ୍ରିଗଡ଼ ଆକ୍ରମଣ କଲେ । ଉଭୟ ସେନା ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିଲା ଏବଂ ଯୁଦ୍ଧରେ ବଳଭଦ୍ର ଦାଉ ପ୍ରାଣ ହରାଇଥିଲେ ।

ଦେବ୍ରିଗଡ଼ର ବଳଭଦ୍ର ଦାଉ ସୁରେନ୍ଦ୍ର ସାଏଙ୍କର ପ୍ରଧାନ ସହାୟକ ଥିଲେ । ଖ୍ରୀ ୧୮୪୦ ରେ ଲଖନପୁରର ଗଣ୍ଡବିଦ୍ରୋହୀ

ଯୋଦ୍ଧାମାନେ ବୀର ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ରାମପୁର ଆକ୍ରମଣ କରି ରାଜାଙ୍କୁ ପରାସ୍ତ କରିବା ଦ୍ୱାରା ଏହି ଘଟଣା ସାରା ସମ୍ବଲପୁରରେ ଚହଳ ପକାଇ ଦେଇଥିଲା ।

୧୮୫୭ ମସିହା ଅକ୍ଟୋବର ମାସରୁ ୧୮୫୮ ମସିହା ଡିସେମ୍ବର ମାସ ପର୍ଯ୍ୟନ୍ତ ସାଏ ପରିବାରର ବାସସ୍ଥାନ 'ଖିଣ୍ଡା' ଓ ରାଜପୁରରେ ବ୍ରିଟିଶ ସରକାର ଭିନ୍ନ ଭିନ୍ନ ସମୟରେ କ୍ୟାପଟେନ ନୋଙ୍କର କ୍ୟାପଟେନ ହ୍ୟାଡ୍ରୋ, କ୍ୟାପଟେନ, ଉଡ୍‌ବ୍ରିଜ, ଲେଫଟନାଣ୍ଟ ରାଇନ୍‌ସ, କ୍ୟାପଟେନ ସୁଇନି, ମେଜର ବେଟ୍‌ସ ଓ କ୍ୟାପଟେନ ଉଡ୍‌ସଙ୍କ ନିର୍ଦ୍ଦେଶରେ ଚଢ଼ାଉ କରିଥିଲେ । ଓଡ଼ିଶାର ରାଜନୈତିକ ମାନଚିତ୍ରରୁ ସୁରେନ୍ଦ୍ର ସାଏଙ୍କୁ ସଂପୂର୍ଣ୍ଣ ଭାବେ ଲିଭେଇ ଦେବାପାଇଁ ଇଂରେଜ ସରକାର ଚାହୁଁଥିଲେ ।

୧୮୬୧ ମସିହା ଅପ୍ରେଲ ମାସରେ ମେଜର ଇମ୍ପେ ସମ୍ବଲପୁରର ଡେପୁଟି କମିଶନର ଭାବେ ନିଯୁକ୍ତି ପାଇଲେ । ପରିସ୍ଥିତିକୁ ଲକ୍ଷ୍ୟ କରି ଇମ୍ପେ ଅନୁଭବ କଲେ ଯେ ସାମରିକ ପଦକ୍ଷେପ ଗ୍ରହଣ ନକରି କୋହଳ ନୀତି ଅବଲମ୍ବନ କଲେ ବିଦ୍ରୋହୀମାନେ ଆତ୍ମସମର୍ପଣ କରି ପାରିବେ । ତାଙ୍କର ମତାମତକୁ ଉଚ୍ଚ କର୍ତ୍ତୃପକ୍ଷ ସମର୍ଥନ କଲେ । ଇମ୍ପେଙ୍କ ନୀତି ବେଶ୍ ସଫଳ ହୋଇଥିଲା । ସୁରେନ୍ଦ୍ର ସାଏଙ୍କ ପୁତ୍ର ମିତ୍ରଭାନୁ ସର୍ବ ପ୍ରଥମେ ଇମ୍ପେଙ୍କ ନିକଟରେ ଅସ୍ତ୍ରଶସ୍ତ୍ର ସମର୍ପଣ କରିଥିଲେ । ପରେ ପରେ ଧ୍ରୁବ ସାଏ ଓ ଉଦନ୍ତ ସାଏ ଆତ୍ମସମର୍ପଣ କରିଥିଲେ । ଘେଂସର ହାଥୀ ସିଂହ ଆତ୍ମସମର୍ପଣ କରିବା ପରେ ପରେ ସୁରେନ୍ଦ୍ର ସାଏ ବ୍ରିଟିଶମାନଙ୍କ ସହିତ ରାଜିନାମା କରିଥିଲେ । ରାଜଗାଦୀ ଦାବୀ କରି ସେ ଇମ୍ପେଙ୍କ ପାଖକୁ ଏକ ପତ୍ର ଲେଖିଥିଲେ । ତା'ର ପ୍ରତ୍ୟୁତ୍ତରରେ ଇମ୍ପେ ତାଙ୍କୁ ପେନସନ୍ ପ୍ରଦାନ କରିଥିଲେ । ଇମ୍ପେଙ୍କ ଠାରୁ ୫୦୦ ଟଙ୍କା ନେଇ ତାଙ୍କର ଗରିବ ସୈନ୍ୟମାନଙ୍କୁ ଏହିସବୁ ପ୍ରଦାନ କରିଥିଲେ । ୧୮୬୨ ମସିହା ମେ ମାସ ୧୬ ତାରିଖ ଦିନ ସମ୍ବଲପୁର ନିକଟରେ ଥିବା ଏକ ଜଙ୍ଗଲରେ ବ୍ରିଟିଶ ସରକାରଙ୍କ ପକ୍ଷରୁ ଦୁଇଜଣ ବ୍ୟକ୍ତି ସୁରେନ୍ଦ୍ରଙ୍କ ସହିତ ସାକ୍ଷାତ୍ କରିଥିଲେ । ପରେ ପରେ ସବୁ ବିଦ୍ରୋହୀ ଆତ୍ମସମର୍ପଣ କରିଥିଲେ ।

୧୮୬୩ ମସିହା ଅପ୍ରେଲ ମାସ ୩୦ ତାରିଖରେ ସମ୍ବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶ ସହିତ ମିଶାଇ ଦିଆଯିବାରୁ ସମ୍ବଲପୁର ଓ ତା'ର ଆଖପାଖ ଗଡ଼ଜାତ ରାଜା, ଜମିଦାରମାନେ ବିଚଳିତ ହୋଇ ପଡ଼ିଲେ । ସରକାରଙ୍କର ଏହି ବ୍ୟବସ୍ଥାର ପ୍ରତିବାଦ ମଧ୍ୟ ହେଲା । ସମ୍ବଲପୁର ଜିଲ୍ଲାରେ ଅଶାନ୍ତି ଲାଗି ରହିଥିବାରୁ ସ୍ଥାୟୀ ଶାନ୍ତି ରକ୍ଷା ଉଦ୍ଦେଶ୍ୟରେ ସମ୍ବଲପୁରର ରାଜଗାଦି ସୁରେନ୍ଦ୍ର ସାଏଙ୍କୁ ଦିଆଯାଉ ବୋଲି ବହୁ ଜମିଦାର, ଗୌନ୍ତିଆ ଓ ସାଧାରଣ ଲୋକେ ସରକାରଙ୍କୁ ଏହି ବିଷୟରେ ଆବେଦନ କରିଥିଲେ । ଏହି ନିବେଦନର ଅନୁସନ୍ଧାନ ସାର ଟେମ୍ପଲ କରିଥିଲେ । ଏହି ଦାବି ପଛରେ ସୁରେନ୍ଦ୍ର ସାଏଙ୍କ ହାତ ଅଛି ବୋଲି ଇଂରେଜ ସରକାର ସନ୍ଦେହ କରିଥିଲେ ।

୧୮୬୪ ମସିହା ଜାନୁୟାରୀ ମାସ ୧୯ ତାରିଖରେ କ୍ୟାପଟେନ କମ୍ବରଲେଜ ସମ୍ବଲପୁରକୁ ଡେପୁଟୀ କମିଶନର ହୋଇ ଆସିଲେ । ଦୁଇଜଣ ପୋଲିସ ଅଫିସରଙ୍କ ସହିତ ଗୁପ୍ତ ଯୋଜନା କରି ସେ ୧୮୬୪ ମସିହା ଜାନୁୟାରୀ ମାସ ୨୩ ତାରିଖ ରାତ୍ରିରେ ସୁରେନ୍ଦ୍ର ସାଏଙ୍କ ସହିତ ତାଙ୍କର ଭାଇ, ପୁତ୍ର, ବନ୍ଧୁ ତଥା ଅନୁଗାମୀମାନଙ୍କୁ ଗିରଫ କରି ରାୟପୁର ପଠାଇଥିଲେ । ପରେ ପରେ ସୁରେନ୍ଦ୍ର ସାଏଙ୍କ ସହିତ ଅନ୍ୟ ୬ଜଣ ବିଦ୍ରୋହୀଙ୍କୁ ୧୮୬୬ ମସିହା ଅପ୍ରେଲ ମାସ ପର୍ଯ୍ୟନ୍ତ ନାଗପୁର ଜେଲରେ ଅଟକ ରଖାଗଲା । କିଛି ଦିନପରେ ସେମାନଙ୍କୁ ଅସୀରଗଡ଼ ଦୁର୍ଗକୁ ସ୍ଥାନାନ୍ତରିତ କରାଗଲା ।

ସୁରେନ୍ଦ୍ରସାଏ ଅସୀରଗଡ଼ ଦୁର୍ଗରେ ଅସୁସ୍ଥ ହୋଇ ପଡ଼ିଲେ । ୧୮୧୮ ମସିହାରେ ୩ ନମ୍ବର ରେଗୁଲେସନ ଅନୁସାରେ ସେ ଆଜୀବନ ବନ୍ଦୀ ହୋଇଥିଲେ । ୧୮୮୨ ମସିହାରେ ପ୍ରାୟ ୭୩ ବର୍ଷ ବୟସରେ ତାଙ୍କର ମୃତ୍ୟୁ ଘଟିଲା । ତାଙ୍କର ଦେଶପ୍ରେମ ଓ ନେତୃତ୍ୱ ଯୁବ ପୀଢ଼ିକୁ ପ୍ରେରଣା ଯୋଗାଇ ଆସୁଥିବ ।

ସହକାରୀ ସୂଚନା ଅଧିକାରୀ
ରାଜ୍ୟ ସୂଚନା କେନ୍ଦ୍ର
ଭୁବନେଶ୍ୱର

—0—

# ମହାନ୍ ବିପ୍ଳବୀ ବାଘା ଯତୀନ

ଓଡ଼ିଶାରେ 'ସ୍ୱଦେଶୀ' ଆନ୍ଦୋଳନ ସହିତ ଅନ୍ୟ ଗୋଟିଏ ବିପ୍ଳବାତ୍ମକ ଆନ୍ଦୋଳନ ସୂତ୍ରପାତ ହୋଇଥିଲା । ସେହି ଆନ୍ଦୋଳନ 'ବନ୍ଦେ ମାତରମ୍' ନାମରେ ପରିଚିତ । ବଙ୍ଗ ବିଭାଗରେ ଉତ୍କ୍ଷିପ୍ତ ହୋଇ ବଙ୍ଗର ବହୁ ଯୁବକ ସଶସ୍ତ୍ର ସଂଘର୍ଷ ଦ୍ୱାରା ଇଂରେଜମାନଙ୍କୁ ଭାରତରୁ ତଡ଼ିବାର ପରିକଳ୍ପନା କଲେ । ସେହି ଉଦ୍ଦେଶ୍ୟରେ ଗୁପ୍ତ ସମିତିମାନ ସ୍ଥାପିତ ହେଲା ଓ ଅସ୍ତ୍ରଶସ୍ତ୍ର ସଂଗ୍ରହ କରାଗଲା । ବନ୍ଦେ 'ମାତରମ୍' ଆନ୍ଦୋଳନର ସଂଘର୍ଷବାଦୀ ଯୁବକମାନେ ମୟୂରଭଞ୍ଜର କପ୍ତିପଦାଠାରେ ଗୁପ୍ତଭାବରେ ରହୁଥିଲେ । ପରିଶେଷରେ ସେମାନଙ୍କର ପୋଲିସ୍ ସହିତ ସଂଘର୍ଷ ହୋଇଥିଲା । ଏହାହିଁ ବାଲେଶ୍ୱରରେ ସଂଘର୍ଷବାଦୀଙ୍କର କ୍ରିୟାକଳାପର ଗୋଟିଏ ଘଟଣା ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ସନ୍ତ୍ରାସବାଦୀମାନେ ଏହି ଯୁଦ୍ଧର ସୁଯୋଗ ନେଇ ଇଂରେଜ ବିରୁଦ୍ଧରେ ସେମାନଙ୍କର ଯୁଦ୍ଧ ଅଧିକ ସକ୍ରିୟ ଭାବେ ଚଳାଇବାକୁ ସ୍ଥିର କଲେ । ସେହି ଉଦ୍ଦେଶ୍ୟରେ ସେମାନେ ବିଦେଶରୁ ତଥା ଅନ୍ୟ ସ୍ଥାନମାନଙ୍କରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାର ବନ୍ଦୋବସ୍ତ କଲେ । ଗୋଟିଏ ଜାହାଜ ଗୁପ୍ତ ଭାବରେ ସୁନ୍ଦରବନର କୌଣସି ଏକ ସ୍ଥାନରେ ବିଦେଶରୁ ଅଣାଯାଇଥିବା ଅସ୍ତ୍ରଶସ୍ତ୍ର ଖଲାସ କରିଥିବାର ସମ୍ବାଦ ବ୍ରିଟିଶ୍ ପୋଲିସର ଗୁପ୍ତ ସଂସ୍ଥା ଜାଣି ପାରିଥିଲେ । ସେମାନେ ସନ୍ଦେହ କରିଥିଲେ ଯେ ଜର୍ମାନୀରୁ ଗୋଟିଏ ଜାହାଜରେ ବିପ୍ଳବୀମାନଙ୍କ ପାଇଁ ଅସ୍ତ୍ର ଶସ୍ତ୍ର ଆସିଥିଲା । ସେହି ସମୟରେ କଲିକତାର ଏକ ବିଶିଷ୍ଟ ଅସ୍ତ୍ରଶସ୍ତ୍ର ବିକ୍ରେତା ରଡ୍ସ (Rodds) କମ୍ପାନୀର ମସେର ପିସ୍ତଲ (Mauser pistol) ଥିବା କେତେକ ପେଟି ହାବଡ଼ା ଷ୍ଟେସନରୁ ହରଣଚାଳ ହୋଇଗଲା । ସନ୍ତ୍ରାସବାଦୀମାନେ ସେହି ପେଟି ସବୁ ଚୋରାଇ ନେଇଥିଲେ ବୋଲି ପୋଲିସ୍ ସନ୍ଦେହ କରି ଏ ସଂପର୍କରେ ଚାରିଆଡ଼େ ଅନୁସନ୍ଧାନ ଚଳାଇଲେ । ଅନୁସନ୍ଧାନରୁ ସେମାନେ ଜାଣିପାରିଲେ ଯେ ବାଲେଶ୍ୱର ସହରରେ ୧୯୧୫ ମସିହାରେ ଖୋଲାଯାଇଥିବା ଏକ ସାଇକେଲ ଦୋକାନର କଲିକତା ପିସ୍ତଲ ଚୋରି ଘଟଣା ସହିତ କିଛି ସମ୍ପର୍କ ରହିଛି । ଏହି ବିଷୟରେ ବିଶେଷ ଅନୁସନ୍ଧାନ କରିବା ପାଇଁ କଲିକତାର ପୋଲିସ କମିସନର ଟେଗାର୍ଟ ସାହେବ ତାଙ୍କର ଦୁଇଜଣ ସହକାରୀଙ୍କ ସହିତ ସେପ୍ଟେମ୍ବର ୪ ତାରିଖ ୧୯୧୫ ସନ୍ଧ୍ୟାରେ ବାଲେଶ୍ୱରରେ ପହଞ୍ଚିଲେ । ସେମାନେ ସେ ସମୟର ବାଲେଶ୍ୱରର ମାଜିଷ୍ଟ୍ରେଟ କିଲ୍‌ବି ସାହେବ ସହିତ ସାକ୍ଷାତ୍ କରି ବାଲେଶ୍ୱର ଏମ୍ପୋରିୟମ ନାମକ ସାଇକଲ ଦୋକାନକୁ ଘେରାଉ କରି ଅନୁସନ୍ଧାନ କରିବାର ବନ୍ଦୋବସ୍ତ କଲେ । ପରଦିନ ଭୋର ଚାରିଟାରେ ପୋଲିସ ଦୋକାନକୁ ଘେରାଉ କରିଦେଲେ । କଲିକତାରୁ ଆସିଥିବା ପୋଲିସ୍ ଅଫିସରମାନେ ଓ କିଲବି ସାହେବ ପୋଲିସ୍ ସହାୟତାରେ ଦୋକାନକୁ ତନଖନ କରି ଅନୁସନ୍ଧାନ କଲେ, କିନ୍ତୁ କିଛି ଦୋଷାବହ ଜିନିଷ ବା କାଗଜପତ୍ର ପାଇଲେ ନାହିଁ । ମେଜିଆରେ ପଡ଼ିଥିବା ଖଣ୍ଡେ ଛିଣ୍ଡା କାଗଜକୁ ଉଠାଇ ନେଇ ପୋଲିସ ଦେଖିଲେ ସେଥିରେ 'କପ୍ତିପଦା' ଲେଖା ରହିଛି । କପ୍ତିପଦା ସହିତ ସାଇକଲ ଦୋକାନୀର କୌଣସି ଯୋଗସୂତ୍ର ରହିଛି ଭାବି ପୋଲିସ ଅଫିସରମାନେ କପ୍ତିପଦାରେ ଅନୁସନ୍ଧାନ କରିବା ପାଇଁ ସ୍ଥିର କଲେ ।

ସେହି ସିଦ୍ଧାନ୍ତ ଅନୁସାରେ କଲିକତାର ପୋଲିସ ଅଫିସରମାନେ ମାଜିଷ୍ଟ୍ରେଟ କିଲ୍‌ବିଙ୍କ ସହିତ କିଛି ପୋଲିସ ନେଇ କପ୍ତିପଦା ଯାତ୍ରା କଲେ ।

କପ୍ତିପଦାରେ ପୁଲିସ ଦଳ ପହଞ୍ଚିବାର ଜାଣି ସେମାନଙ୍କୁ ଦେଖିବା ପାଇଁ ଅନେକ ଲୋକ ରୁଣ୍ଡ ହେଲେ । ପୋଲିସ୍ ସେମାନଙ୍କୁ ପଚାରା ଉଚରା କରି ଜାଣି ପାରିଲେ ଯେ କପ୍ତିପଦାଠାରୁ କିଛି ଦୂରରେ ଥିବା ମହୁଲଡିହା ନାମକ ଗୋଟିଏ ଗ୍ରାମରେ କେତେକ ଯୁବକ ଗୋଟିଏ ଘରଭଡ଼ା ନେଇ ରହିଛନ୍ତି ଓ ଗୋଟିଏ ଚାଉଳ-ଡାଲି ଦୋକାନ ଖୋଲିଛନ୍ତି । ସେମାନଙ୍କର ଜଣେ ଗୁରୁ ଅଛନ୍ତି । ମଝିରେ ମଝିରେ ସେମାନେ ଜଙ୍ଗଲକୁ ଶିକାର କରିବାକୁ ଯାଆନ୍ତି ଓ ସେ ସମୟରେ ଗ୍ରାମବାସୀମାନଙ୍କୁ ବଣକୁ ନଯିବା ପାଇଁ କହନ୍ତି ।

ଏହି ଖବର ପାଇ ପୋଲିସ୍ ଦଳ ମହୁଲଡିହା ଗ୍ରାମକୁ ଯାଇ ଯୁବକମାନେ ଯେଉଁ ଘରେ ରହୁଥିଲେ, ସେହି ଘର ଖୋଲା ପଡ଼ିଥିବାର ଦେଖିଲେ । ଯୁବକମାନେ ପୋଲିସ୍ ଆସିବାର ସମ୍ବାଦ ପାଇ ସେ ସ୍ଥାନ ଛାଡ଼ି ଚାଲିଯାଇଥିଲେ । ପୋଲିସ୍ ଘରକୁ ତନ୍ନ ତନ୍ନ କରି ଖାନତଲାସ କରିବା ପରେ ମଧ୍ୟ କୌଣସି ମୂଲ୍ୟବାନ ତଥ୍ୟ ପାଇଲେ ନାହିଁ । ତେବେ ସେମାନେ ଜାଣି ପାରିଲେ ଯେ ସେହି ଯୁବକମାନେ ବଙ୍ଗ ବିପ୍ଳବୀ ଦଳର । ଜଙ୍ଗଲରେ ପୋଲିସ୍ ଯୁବକମାନେ ପିସ୍ତଲ ବ୍ୟବହାର କରୁଥିବାର ପ୍ରମାଣ

ପାଇଲେ । ଏହା ପରେ ଟେଗେର୍ଟ ସାହେବ ଓ ତାଙ୍କର ସହଯୋଗୀ ବାଲେଶ୍ୱରକୁ ଫେରି ଆସିଲେ । ପୋଲିସ୍ ପଳାତକ ଯୁବକମାନଙ୍କ ବିଷୟରେ ବାଲେଶ୍ୱର ସହରରେ ପ୍ରଚାର କରିଦେଲେ ଓ କେହି ତାଙ୍କୁ ଦେଖିଲେ ପୋଲିସକୁ ଜଣାଇବା ପାଇଁ କହିଲେ । ବିପ୍ଳବୀ ଯୁବକମାନେ ମୟୂରଭଞ୍ଜ ପଳାଇ ଆସି ସେପ୍ଟେମ୍ବର ୭ ତାରିଖରେ (୧୯୧୫) ବାଲେଶ୍ୱର ସହର ନିକଟରେ ପହଞ୍ଚିଲେ । ସେଠାରେ ଲୋକେ ସେମାନଙ୍କୁ ସନ୍ଦେହ କରିବାରୁ ସେମାନେ ଅଦ୍ଧଭବଜାର ନିକଟସ୍ଥ ଧାନ କ୍ଷେତରେ ଲୁଚି ରହିଲେ ଓ ସୁବିଧାରେ ଖସି ପଳାଇବା ପାଇଁ ଚେଷ୍ଟା କରୁଥିଲେ । ଫୁଲାରି ଘାଟଠାରେ ଗୋଟିଏ ସରକାରୀ ଡଙ୍ଗା ଥିଲା । କିନ୍ତୁ ସରକାରୀ ଘାଟଠାରେ ବୁଢ଼ାବଳଙ୍ଗ ନଦୀ ପାର ହେବାକୁ ସେମାନେ ସାହସ କଲେ ନାହିଁ । ସେମାନେ ନଦୀରେ ଜଣେ କାଳିଆ ଡଙ୍ଗାରେ ଚଢ଼ି ମାଛ ଧରୁଥିବାର ଦେଖି ତାକୁ ନଦୀ ପାର କରାଇ ଦେବା ପାଇଁ ଅନୁରୋଧ କଲେ । ସେ ମନା କରିବାରୁ ତାକୁ ପିସ୍ତଲ ଦେଖାଇଲେ । କାଳିଆ ଭୟରେ ତାର ଡଙ୍ଗା ଆଣି ବିପ୍ଳବୀ ଦଳକୁ ନଈ ପାର କରାଇ ଦେଲା । ନଦୀପାର ହେବା ପରେ ସେମାନେ ନଦୀ ବନ୍ଧରେ ଆଗକୁ ଅଗ୍ରସର ହେଲେ । ସେମାନଙ୍କ ହାତର ପିସ୍ତଲ ଗ୍ରାମବାସୀଙ୍କ ମନରେ କୌତୁହଳ ସୃଷ୍ଟି କଲା । ସେମାନେ ଭାବିଲେ ଯେ ସେହିଦଳ କୌଣସି ଗୁପ୍ତଚର ଦଳ ଓ କୌଣସି ଗୁପ୍ତ ଉଦ୍ଦେଶ୍ୟରେ ଗ୍ରାମରେ ବୁଲୁଛନ୍ତି । ତେଣୁ ଗ୍ରାମବାସୀମାନେ ସେମାନଙ୍କ ପଛେ ପଛେ ଗଲେ । ବିପ୍ଳବୀମାନେ ସେମାନଙ୍କୁ ଫେରି ଯିବାକୁ ଯେତେ କହିଲେ ମଧ୍ୟ ସେମାନେ ମାନିଲେ ନାହିଁ । ତେଣୁ ସେମାନଙ୍କୁ ଭୟ ଦେଖାଇବା ପାଇଁ ବିପ୍ଳବୀ ଦଳରୁ ଜଣେ ଗୋଟିଏ ପିସ୍ତଲରୁ ଥରେ ଗୁଳି ଚଳାଇଲେ । ଦୁର୍ଭାଗ୍ୟ ବଶତଃ ସେହି ଗୁଳି ରାଜୁ ମହାନ୍ତି ନାମକ ଜଣେ ଗ୍ରାମବାସୀଙ୍କ ଦେହରେ ବାଜିବାରୁ ସେ ସେହି ସ୍ଥାନରେ ମରିଗଲେ । ଏ ସମ୍ବାଦ ଶୀଘ୍ର ଚାରିଆଡ଼େ ଖେଳିଗଲା । ବହୁତ ଲୋକ ଜମା ହୋଇଗଲେ । ବାଲେଶ୍ୱରରୁ ପୋଲିସ୍ ଦଳ ମଧ୍ୟ ଆସିଲେ । ଏପରି ଅବସ୍ଥାରେ ବିପ୍ଳବୀମାନେ ଖସି ପଳାଇ ଯିବାର କୌଣସି ସମ୍ଭାବନା ନଦେଖି ବିଲ ଭିତରେ ଥିବା ଗୋଟିଏ ବଡ଼ ଉଇ ହୁଙ୍କା ପଛରେ ଲୁଚି ରହିଲେ । କିନ୍ତୁ ପୋଲିସ୍ ଦଳ ସେମାନଙ୍କୁ ତିନିଦଗରେ ଘେରିଗଲେ । ଜିଲ୍ଲା ମାଜିଷ୍ଟ୍ରେଟ ଓ ପୋଲିସ ସାହେବ ସେଠାରେ ପୋଲିସ୍‌କୁ ନିର୍ଦ୍ଦେଶ ଦେଉଥିଲେ । ବିପ୍ଳବୀଦଳ ଓ ପୋଲିସ ଦଳ ମଧ୍ୟରେ ଗୁଳିବିନିମୟ ହେଲା । ପୋଲିସ ଗୁଳିରେ ବିପ୍ଳବୀ ଦଳର ନେତା ଯତୀନ ମୁଖାର୍ଜି ଭୀଷଣ ଭାବରେ ଆହତ ହେଲେ ଓ ଚିତ୍ତପ୍ରିୟ ନିହତ ହେଲେ । ଜ୍ୟୋତିଷ ଆହତ ହୋଇଥିଲେ । ଦଳର ନୀରେନ୍ ଓ ମନୋରଞ୍ଜନ ପୋଲିସ ନିକଟରେ ଆତ୍ମ ସମର୍ପଣ କଲେ । ପୋଲିସ ଆହତ ଯତୀନ ଓ ଜ୍ୟୋତିଷଙ୍କୁ ଡାକ୍ତରଖାନାକୁ ନେଇଗଲେ । ପରଦିନ ଡାକ୍ତରଖାନାରେ ଯତୀନଙ୍କର ମୃତ୍ୟୁ ହେଲା । ବାକି ତିନିଜଣ ବିପ୍ଳବୀଙ୍କ ବିଚାର ପାଇଁ ସରକାର ଜିଲ୍ଲା ଜଜ୍ ସେକ୍‌ପରସନ ସାହେବ, କଟକର ଓକିଲ ରାୟ ବାହାଦୂର ଏନ୍.ସି.ମିତ୍ର ଓ ଡେପୁଟି ରାୟ ସାହେବ ଦୟାନିଧି ଦାସଙ୍କୁ ନେଇ ଗୋଟିଏ ବିଚାରକ-ମଣ୍ଡଳୀ ଗଠନ କଲେ । ବିଚାରରେ ଜ୍ୟୋତିଷଙ୍କୁ ଯାବତଜୀବନ ଦ୍ୱୀପାନ୍ତର ଓ ମନୋରଞ୍ଜନ ଓ ନୀରେନଙ୍କୁ ଫାଶୀଦଣ୍ଡ ଦିଆଗଲା । ବାଲେଶ୍ୱରର ଓକିଲ ଉପେନ୍ଦ୍ର ନାଥ ଘୋଷ ନୀରେନ ଓ ମନୋରଞ୍ଜନ ପାଇଁ ଓ କଲିକତାର ଓକିଲ ରଜନୀକାନ୍ତ ଗାଙ୍ଗୁଲି ଜ୍ୟୋତିଷ ପାଇଁ ମକଦ୍ଦମା ଲଢ଼ିଥିଲେ । ଏହି ଘଟଣାଟି ବାଲେଶ୍ୱରର ଚଷାଖଣ୍ଡ ନାମକ ଗ୍ରାମ ନିକଟରେ ଘଟିଥିଲା । ସେଠାରେ ସ୍ୱାଧୀନତା ପରେ ଏହି ଅମର ଶହୀଦଙ୍କ ସ୍ମୃତିରେ ଗୋଟିଏ ସ୍ମୃତିଫଳକ କରାଯାଇଛି । ପ୍ରତିବର୍ଷ ସେପ୍ଟେମ୍ବର ୯ ତାରିଖ ଦିନ ସେହି ଶହୀଦମାନଙ୍କୁ ସେଠାରେ ପୁଷ୍ପାଞ୍ଜଳି ଅର୍ପଣ କରାଯାଏ ।

୧୮୭୯ ଖ୍ରୀଷ୍ଟାବ୍ଦରେ ପୂର୍ବ ବଙ୍ଗର ଯଶୋର ଜିଲ୍ଲାର ଗୋଟିଏ ଗ୍ରାମରେ ଯତୀନ୍ଦ୍ର ନାଥ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାବା ବିଶେଷ ଅବସ୍ଥାପନ୍ନ ନଥିଲେ । ଯତୀନ ତାଙ୍କର ବାବାଙ୍କୁ ୫ ବର୍ଷ ବୟସରେ ହରାଇଥିଲେ । ସେ ସ୍କୁଲ ଶିକ୍ଷା ଶେଷ କରି ୧୮୯୫ ମସିହାରେ କଲିକତାର ସେଣ୍ଟ୍ରାଲ କଲେଜରେ ନାମ ଲେଖାଇଲେ । କଲେଜରେ ପଢ଼ିବା ସମୟରେ ସର୍ଟହେଣ୍ଡ ଓ ଟାଇପ୍ କରିବା ମଧ୍ୟ ଶିକ୍ଷା କରୁଥିଲେ । ସେ ୧୮ ବର୍ଷ ବୟସରେ କଲେଜ ପଢ଼ା ବନ୍ଦ କରି ଜଣେ ଇଂରେଜ ବାରିଷ୍ଟର ଅଧୀନରେ ଚାକିରୀ କଲେ । ତା' ପରେ ବଙ୍ଗ ସେକ୍ରେଟରିଏଟରେ ଲାଟ୍ ସାହେବଙ୍କ ଅଫିସରେ ଚାକିରୀ କଲେ । ସେ ଏହି ସମୟରେ ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ଅରବିନ୍ଦଙ୍କ ସଂପର୍କରେ ଆସିଥିଲେ ।

ଯତୀନଙ୍କୁ ଅନେକ ବାଘା ଯତୀନ ବୋଲି ନାମ ଦେଇଥିଲେ । କାରଣ ୧୯୦୪ ମସିହାରେ ସେ ଥରେ ଜଣେ ବନ୍ଧୁଙ୍କ ସହିତ ଜଙ୍ଗଲ ମଧ୍ୟ ଦେଇ ଯାଉଥିବା ବେଳେ ହଠାତ୍ ଗୋଟିଏ ବାଘ ଯତୀନଙ୍କ ବନ୍ଧୁଙ୍କୁ ଆକ୍ରମଣ କଲା । ଏହା ଦେଖି ଯତୀନ ବନ୍ଧୁଙ୍କ ପ୍ରାଣରକ୍ଷା ପାଇଁ ବାଘକୁ ଆକ୍ରମଣ କଲେ । ତାଙ୍କ ହାତରେ ଗୋଟିଏ ଭୁଜାଲୀ ଥିଲା । ତାରି ସାହାଯ୍ୟରେ ବାଘ ସହିତ କିଛିକ୍ଷଣ ସଂଘର୍ଷ କରି ବାଘକୁ ମାରି ଦେଲେ ମଧ୍ୟ ନିଜେ ଗୁରୁତର ଭାବରେ ଆହତ ହେଲେ । ଏହି ଘଟଣା ପରେ ତାଙ୍କର ବନ୍ଧୁମାନେ ତାଙ୍କୁ 'ବାଘା ଯତୀନ' ବୋଲି ଡାକିଲେ । ପରେ ତାଙ୍କର ସାହସିକତା ପାଇଁ ସେହି ନାମରେ ସେ ଲୋକଙ୍କ ମଧ୍ୟରେ ପରିଚିତ ହେଲେ । ସେ ଏହି ସାହସିକ କାର୍ଯ୍ୟ ପାଇଁ ସରକାରଙ୍କ ଦ୍ୱାରା ମଧ୍ୟ ପୁରସ୍କୃତ ହୋଇଥିଲେ ।

ଏହି ସମୟରେ ତାଙ୍କର ବଡ଼ପୁଅର ମୃତ୍ୟୁ ହେବାରୁ ତାଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା । ମନର ଶାନ୍ତିପାଇଁ ସେ ତୀର୍ଥ ଭ୍ରମଣରେ ଗଲେ ଓ ବାରାଣସୀରେ ଶ୍ରୀ ଭୋଳାନନ୍ଦ ଗୁରୁ ମହାରାଜଙ୍କ ନିକଟରୁ ଦୀକ୍ଷା ନେଲେ ।

ସେ ଲାଟ ସାହେବଙ୍କ ଅଫିସରେ ହୁଇଲର ସାହେବଙ୍କର ଷ୍ଟେନୋ ଥିଲେ । ଲାଟ ସାହେବଙ୍କ ଅଫିସ ଖରାଦିନେ ସିଲଗୁଡ଼ିରେ ହେଉଥିଲା । ଥରେ ସେ ରେଳଗାଡ଼ିରେ ସିଲିଗୁଡ଼ି ଯିବା ବେଳେ ଦେଖିଲେ ଯେ କେତେକ ଗୋରା ସାହେବ ପ୍ରଥମ ଶ୍ରେଣୀ ଡବାରେ ବସିଥିବା ଭାରତୀୟମାନଙ୍କୁ ସେହି ଡବାରୁ ଜବରଦସ୍ତ ବାହାର କରି ଦେଇ

ସେମାନଙ୍କର ବିଛଣାପତ୍ର ବାହାରକୁ ପକାଇ ଦେଲେ । ଏହି ଘଟଣା ନେଇ ଯତୀନଙ୍କର ସାହେବମାନଙ୍କ ସଙ୍ଗରେ ତୀବ୍ର ବାକ୍ୟ ବିନିମୟ ହୋଇଥିଲା । ସାହେବମାନେ ଜଣେ ଭାରତୀୟ ଦ୍ୱାରା ଅପମାନିତ ହୋଇଛନ୍ତି ବୋଲି ମନେକରି ଏ ସମ୍ବନ୍ଧରେ ଯତୀନଙ୍କ ଉପରିସ୍ଥ କର୍ମଚାରୀଙ୍କ ନିକଟରେ ଆପତ୍ତି କଲେ । ଏହି ଘଟଣା ପରେ ପୋଲିସ୍ ତାଙ୍କୁ ବଙ୍ଗ ସନ୍ତ୍ରାସବାଦୀ ଦଳର ଲୋକ ମନେ କରି ସବୁବେଳେ ତାଙ୍କ ପିଛା କଲେ । ପୋଲିସର ଏହି ବ୍ୟବହାରରେ ଉତ୍ୟକ୍ତ ହୋଇ ସେ ଚାକିରି ଛାଡ଼ି ଦେଲେ ଏବଂ ସନ୍ତ୍ରାସବାଦୀ ଦଳରେ ଯୋଗ ଦେଲେ ।

୧୯୧୦ ମସିହାରେ ଗୋଟିଏ ବୋମାଫୁଟା ଘଟଣାରେ ପୋଲିସ୍ ତାଙ୍କୁ ଗିରଫ କରି ତାଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଥିଲେ । କିନ୍ତୁ ତାଙ୍କ ବିରୁଦ୍ଧରେ କୌଣସି ପ୍ରମାଣ ନ ପାଇ ଛାଡ଼ି ଦେଲେ ।

୧୯୧୪ ମସିହରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ବିପ୍ଳବୀମାନେ ଜର୍ମାନୀରୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ପାଇବେ ବୋଲି ଆଶାକରି ସେ ଦିଗରେ ଚେଷ୍ଟାକଲେ । ଜର୍ମାନୀରୁ ଗୋଟିଏ ଜାହାଜରେ କିଛି ଅସ୍ତ୍ରଶସ୍ତ୍ର ବିପ୍ଳବୀମାନେ ପାଇଛନ୍ତି ବୋଲି ସନ୍ଦେହ କଲେ । ଯତୀନଙ୍କ ସହଯୋଗୀ ମନୋରଞ୍ଜନ ଓ ନରେନ୍ଦ୍ରଙ୍କୁ ମଦାରିପୁର ଷଡ଼ଯନ୍ତ୍ର ମାମଲାରେ ଲିପ୍ତଥିବାର ସନ୍ଦେହ କରି ଗିରଫ କରିଥିଲେ, କିନ୍ତୁ ପରେ ପ୍ରମାଣ ଅଭାବରୁ ସେମାନଙ୍କୁ ଖଲାସ କରିଦେଲେ । ଜଣେ ପୋଲିସ୍ ଇନ୍‌ସପେକ୍ଟରଙ୍କୁ ଗୁଳିକରି ମାରି ଦେଇଥିବା ଘଟଣାରେ ଚିତ୍ତପ୍ରିୟଙ୍କୁ ସନ୍ଦେହ କରି ପୋଲିସ ତାଙ୍କ ଗତିବିଧି ଉପରେ ସବୁବେଳେ ଲକ୍ଷ୍ୟ ରଖିଥିଲେ । ଏହି ସବୁ କାରଣରୁ ସେମାନେ ଉତ୍ୟକ୍ତ ହୋଇ ଯତୀନଙ୍କ ଆଶ୍ରୟରେ ରହିଲେ ଓ ତାଙ୍କ ସହିତ କପ୍ତିପଦାକୁ ଅସିଥିଲେ । ବାଲେଶ୍ୱରର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏହି ସନ୍ତ୍ରାସବାଦୀ କାର୍ଯ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

---

## ପୁଣ୍ୟଭୂମି ଆମ ଉତ୍କଳ ମାତୃକା

*ଶ୍ରୀମତୀ ଅମୂଲ୍ୟ ବାଳା ପଟ୍ଟନାୟକ*

ସ୍ମୃତି ସାଗରର
ସୁବର୍ଣ୍ଣ ଅଧ୍ୟାୟକୁ ରୋମନ୍ଥନ
କଲେ ଝଲସି ଉଠେ,
ମଣି, ମୁକ୍ତା ଶୋଭିତ ଅମର ଓ କାନଜୟୀ
କେତୋଟି ଜାଜ୍ୱଲ୍ୟମାନ ଦୀପଶିଖା ।
ଉତ୍କଳମାତାର ଚିରବନ୍ଦନୀୟ, ଚିରନମସ୍ୟ
ସନ୍ତାନଗଣ, ଆତ୍ମସର୍ବସ୍ୱକୁ ଜଳାଞ୍ଜଳି ଦେଇ
ବଳିଦାନର ସାଜ୍ଜ ପିନ୍ଧି ବକ୍ଷରେ,
ସଚ୍ଚୀ ଦେଶଭକ୍ତର ଆୟୁଧ ହସ୍ତରେ
ଧରି, ଲମ୍ଫ ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ ।

ବିଦେଶୀ ଶକ୍ତିର
ଶୋଷଣ ପେଷଣ, ଦଂଷଣର
ଯନ୍ତ୍ରଣାରେ ମାତୃଭୂମି କରୁଥିଲା ଆର୍ତ୍ତଚିତ୍କାର ।
ବର୍ବର ଇଂରେଜର କଷାଘାତରେ,
ଦେଶର ପ୍ରଗତି, ଜାତିର ଉନ୍ନତି ଥିଲା ମୃତପ୍ରାୟ ,

ଭିନ୍ନ ଭିନ୍ନ ପ୍ରାନ୍ତରୁ
ଉତ୍କଳମାତାର ବୀରସନ୍ତାନଙ୍କ
ଧମନୀରେ ହେଲା, ଉଷ୍ଣରକ୍ତର ପ୍ରବାହ ।
ପ୍ରତିଶୋଧର ଅଗ୍ନି ସ୍ଫୁରଣ ହେଲା ଚକ୍ଷୁରେ ।
ଲକ୍ଷ୍ମଣ ନାଏକ, ସୁରେନ୍ଦ୍ର ସାଏ, ବକ୍ସିଜଗବନ୍ଧୁଙ୍କ ପରି
କେତେ ଯେ, ବୀରସନ୍ତାନ ଶହୀଦ ହେଲେ
ସ୍ୱାର୍ଥାନ୍ଧ ଇଂରେଜର କୁ-ଚକ୍ରାନ୍ତରେ ... ।।
ବାରବରଷର ବାଳିଗାଉଁର ଜୀବନକୁ ବାଜିଲଗାଇ
ଇତିହାସରେ କଲା ସ୍ୱର୍ଣ୍ଣାମଣ୍ଡନ ।
ଶହ ଶହ ବୀରପାଇକ
ରକ୍ତରେ ହୋଇଲା ରଂଜିତ
ଉତ୍କଳ ମାତାର ସବୁଜ ପଣତ ।
କାଳିମାଟିର ଖୋର୍ଦ୍ଧାଗଡ଼, ରକ୍ତତୀର୍ଥ ଇରମ,
ରାଇବଣିଆ ରହିଅଛି ଆଜି ହୋଇ, ଏହାର ମୂକସାକ୍ଷୀ ।

ବୀରପ୍ରସବିନୀ ତୁ ଗୋ ଉତ୍କଳ ଜନନୀ !
ଦିନେ ନେତାଜୀ ସୁଭାଷଙ୍କ ପଦଧ୍ୱନିରେ
ଦୋହଲିଥିଲା ବ୍ରିଟିଶ ଦରବାର ।।
ତୋରି ପହିଲି ସର୍ଣ୍ଣ, ତୋରି ପାଣି ପବନର
ପ୍ରଥମ ଆଶ୍ଳେଷରେ ଗଢ଼ି ଉଠିଥିଲା ।
ସେହି ବୀରପୁଙ୍ଗବର ନିର୍ଭିକ ଜୀବନର ଧାରା ।
ପୁଣ୍ୟଭୂମି, ଜନ୍ମଭୂମି ଆମ ଉତ୍କଳ ମାତୃକା
ପରାଧୀନତାର ଶୃଙ୍ଖଳରୁ ମୁକ୍ତ ହୋଇ
ପଚାଶଟି ବର୍ଷ ଦେଇକୁ ବିତାଇ ।
ତୋ ବୀରସନ୍ତାନଗଣ ଆଜି କାଳର
କରାଳ ସ୍ରୋତରେ, ଯାଇଛନ୍ତି ହଜି,
ହେଲେସୁଦ୍ଧା ଚି ହୋଇ ରହିଛନ୍ତି ସୃଷ୍ଟିର ବିଳୟ ପର୍ଯ୍ୟନ୍ତ !!
ଆଜି ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ଅବସରରେ,
ପୂର୍ବଗୌରବର ନବଜାଗରଣ ଝଂକୃତ ହେଉ ପ୍ରତିଟି ପ୍ରାଣରେ ।

---

ମନମହଲ
ହିଲପାଟଣା, ବ୍ରହ୍ମପୁର
ଗଞ୍ଜାମ

# ଅଗଷ୍ଟ ବିପ୍ଳବର ଶହୀଦ

## କାଇପଦା ଗୁଳିକାଣ୍ଡ (କଟକ ଜିଲ୍ଲା)

| କ୍ର.ନଂ. | ନାମ | ସ୍ଥାନ |
|---|---|---|
| ୧. | ସାନନ୍ଦ ସ୍ୱାଇଁ | କୃଷ୍ଣନଗର |
| ୨. | ସାଞ୍ଚି ମଲ୍ଲିକ | ଶ୍ରୀରାମ ପୁର |
| ୩. | ଗଦାଧର ଭୂୟାଁ | ହାଟ ସାହୀ |
| ୪. | ହାଡ଼ିବନ୍ଧୁ ପଣ୍ଡା | କୃଷ୍ଣନଗର (ବାଓନେଟ ଆଘାତରେ) |

## ମାଥିଲି ଗୁଳିକାଣ୍ଡ (କୋରାପୁଟ ଜିଲ୍ଲା)

| | | |
|---|---|---|
| ୧. | ସମରା ଡିଶ୍ରି ନାୟକ | ମାଂକଡ଼ଗୁଡ଼ା |
| ୨. | ନରସିଂହ ବିଡାଙ୍କ | ନୂଆପଡ଼ା |
| ୩. | ଅର୍ଜୁନ କଟିଆ | ଖୁଟୁକାଗୁଡ଼ା |
| ୪. | ଲିଙ୍ଗୋ କଟିଆ | ଡିମାସ ପୁର |
| ୫. | ସିନୁ ଗାଡେ | ସରଜିଗୁଡ଼ା |
| ୬. | ଲକ୍ଷ୍ମଣ ନାୟକ | ଟେଣ୍ଟୁଳି ଗୁଡ଼ା (ଫାଶୀ) |

## ପାପଡ଼ାହାଣ୍ଡି ଗୁଳିକାଣ୍ଡ (କୋରାପୁଟ ଜିଲ୍ଲା)

| | | |
|---|---|---|
| ୧. | ଭଗବାନ ପୁଜାରୀ | ମଣ୍ଡା ଗୁଡ଼ା |
| ୨. | ବିକ୍ରମ ଭାତ୍ରା | ଦଳାଇଗୁଡ଼ା |
| ୩. | ଯଦୁପତି ଅମାନତ୍ୟ | କାଣ୍ଡା |
| ୪. | ପରମାନନ୍ଦ ଶବର | କାଣ୍ଡା |
| ୫. | ଆନନ୍ଦ ଗଉଡ଼ | ଦୁଖିଗୁଡ଼ା |
| ୬. | ବଳି ସଉରା | ଧାଣ୍ଡା |
| ୭. | ରତନ ଭାଣ୍ଡାରୀ | ହୁରୁଣ୍ଡି |
| ୮. | କୃତୁ ଅମାନତ୍ୟ | ହୁରୁଣ୍ଡି |
| ୯. | ମାଲ୍ଲି ଭାତ୍ରା | ଉମୁରି |
| ୧୦. | ଜଗନ୍ନାଥ ଅମାନତ୍ୟ | ପାତ୍ରାପୁଟ |
| ୧୧. | ସହଦେବ ପୁଜାରୀ | ପାଡ଼ାଙ୍ଗ ଗୁଡ଼ା |
| ୧୨. | ସୁକ୍ରୁ ମୁଦୁଲି | ମୁଲାବାଇ |
| ୧୩. | ସଦା ସିଦାରଣା | ମାଣ୍ଡାଗାଁ |
| ୧୪. | ରତନ ପୁଜାରୀ | ବପରି ପଦର |
| ୧୫. | ରାମଚନ୍ଦ୍ର ଅମାନତ୍ୟ | ପୁପୁଗାଁ |
| ୧୬. | ସାସୀ ଜାନି | ନୂଆଗାଁ |
| ୧୭. | ଦୀନବନ୍ଧୁ ଜାନି | ନୂଆ ଗାଁ |
| ୧୮. | ସୁଦୁ ଭାତ୍ରା | କଦଂହାଣ୍ଡି |
| ୧୯. | ଶ୍ୟାମସୁନ୍ଦର ଖଦଡ଼ | ସାତୁଗୁଡ଼ା |

## ନିମାପଡ଼ା ଗୁଳିକାଣ୍ଡ (ପୁରୀ ଜିଲ୍ଲା)

| | | |
|---|---|---|
| ୧. | ଉଦ୍ଧବ ମଲ୍ଲିକ | ଡିହବାଡ଼ି |

## ଲୁଣିଆ ଗୁଳିକାଣ୍ଡ (ବାଲେଶ୍ୱର ଜିଲ୍ଲା)

| | | |
|---|---|---|
| ୧. | ଦଶରଥି ମାହାଳିକ | ରାକୁଆଡ଼ି |
| ୨. | ଶ୍ୟାମ ମାହାଳିକ | ରାକୁଆଡ଼ି |
| ୩. | କୃଷ୍ଣ ମାହାଳିକ | ରାକୁଆଡ଼ି |
| ୪. | ନବକିଶୋର ନାୟକ | କାସିମ ପୁର |
| ୫. | ଗୌରହରି ଜେନା | ଲୁଣିଆ |
| ୬. | ଚିନ୍ତାମଣି ଦାସ | ପଥର ଡିହ |
| ୭. | ଗୋପୀନାଥ ଜେନା | କଟସାହୀ |
| ୮. | ଶଙ୍କର ମାହାଳିକ | ଖପର ପଦା |
| ୯. | ଅକ୍ଷି ସାହୁ | ଲୁଣିଆ |

## ଖଇରଡ଼ିହି ଗୁଳିକାଣ୍ଡ (ବାଲେଶ୍ୱର ଜିଲ୍ଲା)

| | | |
|---|---|---|
| ୧. | ଉସ୍ତୁ ବେହେରା | ବଣ୍ଡ |
| ୨. | ମକର ଲେଙ୍କା | ବଡ଼ପୋଖରୀ |
| ୩. | ଜେନ୍ଦୁ ସାହୁ | ବଡ଼ଗାଙ୍କ |

## ଇରମ ଗୁଳିକାଣ୍ଡ (ବାଲେଶ୍ୱର ଜିଲ୍ଲା)

| | | |
|---|---|---|
| ୧. | ଗୋପାଳ ଚରଣ ଦାସ | ପଦୁଆ |
| ୨. | ଧ୍ରୁବଚରଣ ଦେ | ପଦୁଆ |
| ୩. | ବିଶ୍ୱନାଥ ଦାସ | ପଦୁଆ |
| ୪. | ବିଭୂତି ଦାସ | ପଦୁଆ |
| ୫. | ବାସୁଦେବ ସାହୁ | ପଦୁଆ |
| ୬. | ବଲ୍ଲଭ ବେହେରା | ପଦୁଆ |
| ୭. | ଦୁଖୀ ବେହେରା | ପଦୁଆ |
| ୮. | ହରି ବେହେରା | ପଦୁଆ |
| ୯. | ମାଘା ମାହାଳିକ | ପଦୁଆ |
| ୧୦. | ମଣି ବେହେରା | ପଦୁଆ |
| ୧୧. | କୃଷ୍ଣ ସ୍ୱାଇଁ | ପଦୁଆ |
| ୧୨. | ଖାଳି ମାଝି | ପଦୁଆ |
| ୧୩. | ଲୁଆ ମାଝି | ପଦୁଆ |
| ୧୪. | ମଦନ ପଲାଇ | ପଦୁଆ |
| ୧୫. | ରାଧୁ ମାହାଳିକ | ପଦୁଆ |
| ୧୬. | କୃପାସିନ୍ଧୁ ବେହେରା | ପଦୁଆ |
| ୧୭. | ରାମ ମାଝି | ପଦୁଆ |
| ୧୮. | ଗୋବିନ୍ଦ ରାଉତ | ଅରଡୁଙ୍ଗ |
| ୧୯. | ଉପ ମଲ୍ଲିକ | ନୂଆଗାଁ |
| ୨୦. | ବୃନ୍ଦାବନ ପଣ୍ଡା | ନୂଆଗାଁ |
| ୨୧. | ପରୀ ବେଓ୍ୱା | ଇରମ |
| ୨୨. | ମଣି ପ୍ରଧାନ | ସୁଆଁ |
| ୨୩. | ପରୀ ଦାସ | ସୁଆଁ |
| ୨୪. | ରତ୍ନାକର ପାଣି | ସୁଦର୍ଶନପୁର |
| ୨୫. | ନିଧି ମଲ୍ଲିକ | ଅଧୁଆଁ |
| ୨୬. | ଶଙ୍କର ମଲ୍ଲିକ | ଅଧୁଆଁ |
| ୨୭. | ଶାବନ ରାଉତ | ନନ୍ଦପୁର |
| ୨୮. | ଦିବାକର ପାଣିଗ୍ରାହୀ | ସୁଡ଼ |
| ୨୯. | ଜଟି ସାହୁ | ଈଶ୍ୱର ପୁର |

## ଗଡ଼ଜାତ ରାଜ୍ୟ (ଢେଙ୍କାନାଳ)

| | | |
|---|---|---|
| ୧. | ବୀର ସାହୁ | ଡୋରାବାନାଲି |
| ୨. | ବେଣୁ ସାହୁ | କୁସୁମୁଣ୍ଡା |

## ତାଳଚେର

| | | |
|---|---|---|
| ୧. | ବାସୁଦେବ ସାହୁ | ଦାନରା (ବିମାନ ଆକ୍ରମଣ) |
| ୨. | କୃତାର୍ଥ ପ୍ରଧାନ | ଦାନରା (ବିମାନ ଆକ୍ରମଣ) |
| ୩. | ଭଗବାନ ସାହୁ | ହାଣ୍ଡିଧୁଆ (ବିମାନ ଆକ୍ରମଣ) |
| ୪. | ଉଜଳ ନାୟକ | ବ୍ରାହ୍ମଣ ବାହାଲ (ବିମାନ ଆକ୍ରମଣ) |
| ୫. | ମହେଶ୍ୱର ପ୍ରଧାନ | କଉଦା |
| ୬. | ପଦିଆ ବେହେରା | ଆଠମଲ୍ଲିକ ରାଜ୍ୟ |
| ୭. | ରବୀନ୍ଦ୍ର ଚନ୍ଦ୍ର ପ୍ରଧାନ | ଲାଙ୍ଗିକୋଡ଼ା (ଜେଲଖାନାରେ ନିର୍ଯାତନା ପ |
| ୮. | ବାଳି ସେଠୀ | ଲିପୁର (ଜେଲଖାନାରେ ନିର୍ଯାତନା ପ |

## ନୟାଗଡ଼

| | | |
|---|---|---|
| ୧. | କଷି ଡାକୁଆ | କୁସୁପିଦା |
| ୨. | କସ୍ତୁରୀ ପରିଡ଼ା | ଥୁଆବାରି (ଜେଲଖାନାରେ ନିର୍ଯାତନା ପ |
| ୩. | ଦୁଷି ପରିଡ଼ା | ଥୁଆବାରି |
| ୪. | ଜୟା ବେହେରା | ଥୁଆବାରି |

## ନୀଳଗିରି

| | | |
|---|---|---|
| ୧. | ରଘୁନାୟକ | ଗୋଡ଼ିଗୁଡ଼ା |
| ୨. | ଗଗା ମଲ୍ଲିକ | ଡାଳୁଣି କୁଦ |

ଜାତୀୟ-ଜାଗରଣର କର୍ଣ୍ଣଧାର

# ସହସ୍ର ଭୁଜାର ଆବାହନ

ଶ୍ରୀ ସୁରସିଂହ ପଟ୍ଟନାୟକ



ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା,
ସେହି ତୋର ମାତା ସେହି ତୋର ଭ୍ରାତା
କର ସେହି ପଦପୂଜା ।

(ମଧୁସୂଦନ)

ଓଡ଼ିଶାରେ ଇଂରେଜ ଅଧିକାର ପରେ ଲାଗି ରହିଥିବା କ୍ରମାଗତ ବିଦ୍ରୋହର ଅସ୍ଥିରତା ମଧ୍ୟରେ ଉଦବେଳିତ ଜନ ଜାଗରଣ ସୃଷ୍ଟି ହୋଇଥିଲା, ପାଇକ ବିଦ୍ରୋହ (୧୮୧୭) ଆଉ ସିପାହୀ ବିଦ୍ରୋହ (୧୮୫୭) ଦ୍ୱାରା । ଅର୍ଥନୀତିର ଦ୍ରୁତ ଅବକ୍ଷୟ ପରେ, ନଅଙ୍କ ଦୁର୍ଭିକ୍ଷର (୧୮୬୬) କରାଳ ଆଘାତରେ ଓଡ଼ିଆ ଜାତି ହୋଇଯାଇଥିଲା କଙ୍କାଳସାର । ୧୯୨୧ ସାଲରେ ମହାତ୍ମାଗାନ୍ଧୀ ଓଡ଼ିଶା ପରିଦର୍ଶନର ଏହି ନିକଟ ଅନୁଭୂତିକୁ ଯେପରି ମର୍ମନ୍ତୁଦ ଆଉ ଯନ୍ତ୍ରଣା କାତର ସ୍ୱରରେ ବର୍ଣ୍ଣନା କରିଛନ୍ତି, ତାହା ହେଉଛି ଏହିପରି -

"ଓଡ଼ିଶାରେ କଙ୍କାଳର ଦୃଶ୍ୟ ଦେଖିବି ବୋଲି ମୁଁ ପ୍ରସ୍ତୁତ ଥିଲି, କିନ୍ତୁ ଯାହା ଦେଖିଲି ତାହା ଆହୁରି ଭୀଷଣ । ସେହି ଅସ୍ଥିଚର୍ମସାର ସ୍ତ୍ରୀ, ପୁରୁଷ ଆଉ ପିଲାଙ୍କର କରୁଣ ଚେହେରା କେବେ ବି ଭୁଲିବାର ନୁହେଁ । ସେମାନେ ଚିତ୍କାର କରି କହୁଥିଲେ, 'ଆମେ ଖାଦ୍ୟ ଚାହୁଁ' । ଏହି ଭଳି ଲୋକଙ୍କର ପାଖରେ ସ୍ୱରାଜ୍ୟର ଅର୍ଥ କଣ ଥାଇପାରେ ?"

ଏହିମାନେ ହିଁ ଥିଲେ ଓଡ଼ିଶା ସହସ୍ରଭୁଜା । ଏହି କଙ୍କାଳସାର ଜନସାଧାରଣଙ୍କୁ ଉପରକୁ ଉଠାଇବା ପାଇଁ ଭୂମିକମ୍ପ ଭଳି ଆନ୍ଦୋଳନର ବିସ୍ଫୋରଣ ଦରକାର, ଯହିଁରେ ଅଜ୍ଞାନ ଅନ୍ଧକାରର ଧରଣୀ ଫାଟିବ ଆଉ ଜାଗରଣର ନୂତନ ପ୍ରଭାତ ଉଦୟ ଲାଭ କରିବ । ଓଡ଼ିଶା ଇତିହାସର ସେହି ନିରନ୍ଧ୍ର ଅନ୍ଧକାରରେ, ଭୂମିକମ୍ପ ଭଳି ଉଚ୍ଛ୍ୱସିତ ଜାଗରଣ ସୃଷ୍ଟି କରିଥିଲେ ମଧୁସୂଦନ, ଜାଳିଥିଲେ ସ୍ୱାଭିମାନର ଦୀପଶିଖା ଆଉ ବିସ୍ମୃତ ଜାତିକୁ ଦେଇଥିଲେ ଆତ୍ମ ପରିଚୟର ଚେତନା ।

ଓଡ଼ିଶାର ସ୍ୱାଧୀନତା ଲୋପ ପାଇଗଲା ୧୫୬୮ ସାଲରେ ଏବଂ ୧୫୯୨ ସାଲରେ ଉପକୂଳର ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ମୋଗଲବନ୍ଦୀ ନାମରେ ପରିଚିତ ହେଲା । ମୋଗଲ ଶାସନାଧୀନ ଏହି ପରିସରରେ ଥିଲା ପାଞ୍ଚଟି ସରକାର ବା ଜିଲ୍ଲା । ସେଗୁଡ଼ିକ ହେଲା (୧) ଜଳେଶ୍ୱର (ମେଦିନୀପୁର ଆଉ ବାଙ୍କୁଡ଼ା ସମେତ) (୨) ଭଦ୍ରଖ (୩) କଟକ (୪) ଶ୍ରୀକାକୋଲ (୫) ରାଜମହେନ୍ଦ୍ରୀ । ଏହାଛଡ଼ା ପଶ୍ଚିମରେ ଥିଲା ପରିବ୍ୟାପ୍ତ ଓଡ଼ିଆଭାଷୀ ଗଡ଼ଜାତ ଅଞ୍ଚଳ । ଏହା ପରଠାରୁ ଦୁର୍ଦ୍ଦିନର କଳାମେଘ ଛାଇ ରହିଲା ଓଡ଼ିଶାର ରାଜନୈତିକ ଆକାଶକୁ । ଏହାପରେ ଓଡ଼ିଶାର ଦକ୍ଷିଣାଞ୍ଚଳ ବ୍ରିଟିଶ ଶାସନର ଅଧୀନକୁ ଆସିଲା ୧୭୬୫ ସାଲରେ ଆଉ ଉତ୍ତର ଓଡ଼ିଶା ୧୮୦୩ ସାଲରେ । ଯାହା ଯଥାକ୍ରମେ ମାଡ୍ରାଜ ଓ ବଙ୍ଗଳା ପ୍ରଦେଶରେ ଅନ୍ତର୍ଭୁକ୍ତ ହେଲା । ଆଉ ପଶ୍ଚିମର ସମ୍ବଲପୁର ଜିଲ୍ଲା ସମେତ ସମସ୍ତ ଗଡ଼ଜାତ ଅଞ୍ଚଳ ମଧ୍ୟ ପ୍ରଦେଶର ପରିସରକୁ ଆସିଗଲା ।

ବଂଗ ପ୍ରଦେଶର ଓଡ଼ିଶା ଡିଭିଜନର ମଧ୍ୟରେ ଥିବା ମେଦିନୀପୁର ଓ ବାଙ୍କୁଡ଼ା ଅଞ୍ଚଳ ବର୍ଦ୍ଧମାନ ଡିଭିଜନକୁ ହସ୍ତାନ୍ତରିତ ହେଲା ୧୮୪୦ ସାଲରେ । ମାତ୍ର ତିରିଶି ବର୍ଷ ମଧ୍ୟରେ ଏହି ସୁବିଶାଳ ଓଡ଼ିଆଭାଷୀ ଅଞ୍ଚଳଟି ବଙ୍ଗଳାଭାଷୀ ଅଞ୍ଚଳରେ ପରିଣତ ହୋଇଗଲା ।

ଆଉ ଦକ୍ଷିଣରେ ଯେଉଁ ଓଡ଼ିଆଭାଷୀ ଅଞ୍ଚଳ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା, ତାହା କ୍ରମେ ସଙ୍କୁଚିତ ହୋଇ ଆସିଥିଲା ବିଶାଖାପାଟଣା ପର୍ଯ୍ୟନ୍ତ । ୧୭୬୫ରେ ଓଡ଼ିଶାର ଦକ୍ଷିଣାଞ୍ଚଳ ଇଂରେଜ ଅଧିକାର ସତ୍ତ୍ୱେ ଏହି ଅଞ୍ଚଳର ରାଜାମାନେ ଇଂରେଜ ସରକାରଙ୍କର ବଶ୍ୟତା ସ୍ୱୀକାର ନକରି କ୍ରମାଗତ ଭାବେ ବିଦ୍ରୋହ ଚାଲୁ ରଖିଥିଲେ । ଏହି ବିଦ୍ରୋହକୁ ପ୍ରତିହତ କରିବାକୁ ଇଂରେଜମାନେ, ତେଲୁଗୁଭାଷୀ ଲୋକଙ୍କୁ ସୈନ୍ୟ ବାହିନୀରେ ନିଯୁକ୍ତ କରି ଏହି ଅଞ୍ଚଳକୁ ପ୍ରେରିତ କରୁଥିଲେ । ଇଂରେଜ ଶାସନ କାଳରେ ୧୭୮୯ - ୧୭୯୨ ମଧ୍ୟରେ ଯେଉଁ ଭୟାବହ ପାଞ୍ଚ ମାଣିଆ ଜାତାର ବା ଦୁର୍ଭିକ୍ଷ ପଡ଼ିଲା ସେଥିରେ

ବହୁ ଜନ କ୍ଷୟ ହେବା ସଙ୍ଗେ ସଙ୍ଗେ ଅଧିକାଂଶ ଅଧିବାସୀ ପଶ୍ଚିମାଞ୍ଚଳର ଗଡ଼ଜାତକୁ ଚାଲିଗଲେ । ତେଣୁ ୧୮୦୦ ସାଲ ବେଳକୁ ଗଂଜାମ (ଚିକାକୋଲ ସମେତ) ର କଲେକ୍ଟର ମିଃ ବ୍ରାଉନ୍ ଲେଖିଛନ୍ତି, "ସମଗ୍ର ଅଞ୍ଚଳଟି ଜନଶୂନ୍ୟତାର ଶେଷ ପର୍ଯ୍ୟାୟରେ ପହଞ୍ଚି ଥିଲା ।" ଏହି ଜନଶୂନ୍ୟ ଅଞ୍ଚଳରେ ଆନ୍ଧ୍ର ଅଞ୍ଚଳରୁ ଆଗତ ସୈନ୍ୟ ବାହିନୀ, ରାଜକର୍ମଚାରୀ ଆଉ ଜନସାଧାରଣ ତେଲୁଗୁ ଅଫିସରମାନଙ୍କର ସହାୟତାରେ ବସତି ସ୍ଥାପନ କରି ଜମି ସବୁ ଅଧିକାର କଲେ । ଏହାଛଡ଼ା ଜନଗଣନାରେ ବହୁ ଓଡ଼ିଆ ଅଧିବାସୀଙ୍କୁ ତେଲୁଗୁ ଭାବରେ ଚିହ୍ନଟ କରାଗଲା । ଫଳରେ ଓଡ଼ିଆଭାଷୀ ଅଞ୍ଚଳର ସୀମା ମାତ୍ର ପଳାସା ପର୍ଯ୍ୟନ୍ତ ସଙ୍କୁଚିତ ହୋଇଗଲା ।

ଆଉ ପଶ୍ଚିମରେ ବସ୍ତର, ରାୟଗଡ଼, ସୁଲଙ୍ଗେର ଅଞ୍ଚଳରେ ହିନ୍ଦୀ ଭାଷାର ପ୍ରଭାବ ବୃଦ୍ଧି ପାଇଲା, ଆଉ କ୍ରମଶଃ ଓଡ଼ିଶାଭାଷୀ ଅଞ୍ଚଳ ସଂକୁଚିତ ହୋଇ ଅଳ୍ପ କେତୋଟି ଗଡ଼ଜାତକୁ ଛାଡ଼ି ଦେଲେ ନିଶ୍ଚିହ୍ନ ହେବା ଅବସ୍ଥାକୁ ଆସିଗଲା । ୧୮୫୦ ବେଳକୁ ଛୋଟନାଗପୁର ଡିଭିଜନରେ ଥିବା ସମ୍ବଲପୁର ଜିଲ୍ଲା ଓ ପଶ୍ଚିମାଞ୍ଚଳର ଗଡ଼ଜାତ ବଲାଙ୍ଗୀର, ସୋନପୁର, ରେଢ଼ାଖୋଲ, ବାମଣ୍ଡା ଏବଂ ୧୮୬୨ ସାଲରେ କଳାହାଣ୍ଡି ଓ ବସ୍ତର ଅଞ୍ଚଳ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହୋଇଗଲା ।

ଏହା ଥିଲା ଓଡ଼ିଆଭାଷୀ ଅଞ୍ଚଳର ପରିସ୍ଥିତି । ୧୮୮୧ ସାଲରେ, ମଧୁସୂଦନ ଓଡ଼ିଶାକୁ ଫେରି ଆସି, ଏହି ପରିସ୍ଥିତିର ମୁକାବିଲା କରିବା ପାଇଁ ୧୮୮୨ ରେ ଉତ୍କଳ ସଭା ଗଠନ କଲେ । ଏହାପରେ କ୍ରମାଗତ ଭାବରେ ଦାବୀ ଉପସ୍ଥାପନା କଲେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ମିଶ୍ରଣ କରି ଏକ ଶାସନର ପରିସର ମଧ୍ୟରେ ରଖିବା ପାଇଁ ।

ଓଡ଼ିଶା ଇତିହାସର ଧାରା ସୂଚାଇ ଦିଏ ଯେ କେତେ ଶତାବ୍ଦୀର ଘଟଣା ପ୍ରବାହ ପରେ ଉତ୍କଳ ସହିତ ଦକ୍ଷିଣ କୋଶଳର ମିଶ୍ରଣ ହେଲା ଏକାଦଶ ଶତାବ୍ଦୀରେ ଯଯାତି କେଶରୀଙ୍କ ଦ୍ୱାରା ଏବଂ ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗଙ୍କ ଦ୍ୱାରା କଳିଙ୍ଗର ମିଶ୍ରଣ ହେଲା ଏହି ସମନ୍ୱିତ ଉତ୍କଳ କୋଶଳ ଖଣ୍ଡରେ । ଏହାପରେ ଯେଉଁ ଅମିତ କ୍ଷମତାଶାଳୀ ଓଡ଼ିଶା ଭୂଖଣ୍ଡର ସୃଷ୍ଟି ହେଲା, ତାହା ପୁଣି ଇତିହାସର ଧାରା ପ୍ରବାହରେ ଅଲଗା ଅଲଗା ତିନିଖଣ୍ଡ ହୋଇ ବଂଗଳା, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ବିଚ୍ଛିନ୍ନ ହୋଇ ରହିଗଲା, ବ୍ରିଟିଶ ଶାସନର କାଳରେ । ଏହାର ପୁନଃ ମିଶ୍ରଣର ଐତିହାସିକ ଦାୟିତ୍ୱ ପୁନରାୟ ନ୍ୟସ୍ତ ହେଲା ଯୋଗଜନ୍ମା ଜାତୀୟ ଗୌରବ ମଧୁସୂଦନଙ୍କ ଉପରେ । ମଧୁସୂଦନଙ୍କର ଆବିର୍ଭାବ ଏ ଜାତିର ଉଦ୍ଧାର ଲାଗି ଯେପରି ବିଧିନିର୍ଦ୍ଦିଷ୍ଟ ଥିଲା ।

ଇତିହାସର ଗତିଧାରା ପୁଣି ତ୍ୱରାନ୍ୱିତ ହେଲା ୧୮୯୯ ସାଲରେ । ପ୍ରତ୍ନତତ୍ତ୍ୱ ଓ ସଂସ୍କୃତିର ରୁଚି ରଖିଥିବା ଅଭିଜାତ ପୁରୁଷ ଲର୍ଡ୍ କର୍ଜନ ଭାରତର ବଡ଼ଲାଟ ପଦରେ ଅଧିଷ୍ଠିତ ହେଲେ । ମଧୁସୂଦନଙ୍କର ଲର୍ଡ୍ କର୍ଜନଙ୍କର ସହିତ ବ୍ୟକ୍ତିଗତ ସାକ୍ଷାତ ଆଉ ଅତ୍ୟନ୍ତ ମର୍ମସ୍ପର୍ଶୀ, ଭାବୋଦ୍ଦୀପକ ଓ ଦରଦଭରା କଣ୍ଠରେ ଦାବୀ ଉପସ୍ଥାପନରେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଦାବୀ ଉଜ୍ଜ୍ୱଳ ହୋଇ ଉଠିଲା । ୧୯୦୦ ସାଲରେ ଲର୍ଡ୍ କର୍ଜନଙ୍କର ଓଡ଼ିଶା ଗସ୍ତକାଳରେ ଭୁବନେଶ୍ୱର ଓ କୋଣାର୍କ ମନ୍ଦିରର ଅପୂର୍ବ କଳା ଆଶ୍ଚର୍ଯ୍ୟ ସମନ୍ୱିତ କାରିଗରି ପରିଦର୍ଶନରେ ଅଭିଭୂତ ହୋଇ ପଡ଼ିଥିବା ଲର୍ଡ୍ କର୍ଜନଙ୍କର ଓଡ଼ିଆ ଜାତି ପ୍ରତି ସୃଷ୍ଟି ହୋଇଥିଲା ଗଭୀର ସମ୍ମାନବୋଧ । ସେ କୃତସଙ୍କଳ୍ପ ହେଲେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି ଆଉ ଏହି ମର୍ମରେ ନିର୍ଦ୍ଦେଶନାମା ପ୍ରକାଶ ପାଇଲା ୧୯୦୩ ସାଲ ଡିସେମ୍ବର ତିନି ତାରିଖରେ 'ରିସଲେ ସର୍କୁଲାର' ର ମାଧ୍ୟମରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣକୁ ସ୍ୱୀକୃତି ପ୍ରଦାନ କରି । ଏହାର ପୃଷ୍ଠଭୂମିରେ ଥିଲା ମଧୁସୂଦନଙ୍କର ବଳିଷ୍ଠ ଦାବୀ ଉପସ୍ଥାପନା ଓ ଲର୍ଡ୍ କର୍ଜନଙ୍କର ସହିତ ଘନିଷ୍ଠ ସଂପର୍କ ସ୍ଥାପନ ।

ଏହି ରିସଲେ ସର୍କୁଲାର ଘୋଷଣାନାମାକୁ ଆଧାର କରି ୧୯୦୫ ସାଲରେ ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲା ଏବଂ କଳାହାଣ୍ଡି, ବଲାଙ୍ଗୀର, ସୋନପୁର, ବାମଣ୍ଡା ଓ ରେଢ଼ାଖୋଲ ଗଡ଼ଜାତ ଆଦି ପଶ୍ଚିମାଞ୍ଚଳର ଗଡ଼ଜାତ ସମୂହ ବଂଗ ପ୍ରଦେଶର ଓଡ଼ିଶା ଡିଭିଜନରେ ସାମିଲ ହେଲା । ଏହା ଦେଶ ମିଶ୍ରଣ ଆନ୍ଦୋଳନର ପହିଲି ସଫଳତାର ଏକ ଉଜ୍ଜ୍ୱଳ ସ୍ମାରକୀ ।

ଏଠାରେ ସୂଚାଇ ଦିଆ ଯାଉଛି ଯେ ୧୮୯୫ ସାଲରେ ମଧ୍ୟପ୍ରଦେଶରେ ଅନ୍ତର୍ଭୁକ୍ତ ଥିବା ସମ୍ବଲପୁର ଜିଲ୍ଲାର କୋର୍ଟ କଚେରୀରୁ ଓଡ଼ିଆ ଭାଷାର ପ୍ରଚଳନ ଉପରେ ନିଷେଧାଦେଶ ଦିଆଯାଇଥିଲା, ଯାହା ଫଳରେ ଏହା ବିରୁଦ୍ଧରେ ଏକ ଜନ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏଥିରେ ନେତୃତ୍ୱ ନେଇଥିଲେ ଶ୍ରୀପତି ମିଶ୍ର, ଚନ୍ଦ୍ରଶେଖର ବେହେରା ଓ ପ୍ରକୃତି କବି ଗଙ୍ଗାଧର ମେହେର । ଏମାନଙ୍କ ସହିତ ମଧୁସୂଦନଙ୍କର ସହଯୋଗ ଓ ବଡ଼ଲାଟଙ୍କ ପାଖରେ ଦାବୀ ଉପସ୍ଥାପନା ଫଳରେ ୧୯୦୩ ସାଲର ପ୍ରାରମ୍ଭରୁ ସମ୍ବଲପୁରର କୋର୍ଟ କଚେରୀରେ ଓଡ଼ିଆ ଭାଷାର ପୁନଃପ୍ରଚଳନ କରାଗଲା ।

ଏ ସମସ୍ତ ଅଭୂତପୂର୍ବ ସଫଳତା ସତ୍ତ୍ୱେ ମାନ୍ଦ୍ରାଜ ସରକାରଙ୍କର ଦୃଢ଼ ପ୍ରତିବାଦ ଯୋଗୁଁ ଦକ୍ଷିଣର ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସମ୍ଭବପର ହୋଇପାରିନଥିଲା । ତେଣୁ ଏହି ଅନ୍ତର୍ଦ୍ଦାହ ଆଉ ଓଡ଼ିଆ ଜାତିର ମର୍ମ ବେଦନାକୁ ମଧୁସୂଦନ ଅତ୍ୟନ୍ତ ବିହ୍ୱଳିତ କଣ୍ଠରେ ଉପସ୍ଥାପିତ କରିଛନ୍ତି ୧୯୦୬ ସାଲରେ ବାଲେଶ୍ୱରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ସଭା ମଞ୍ଚରେ ।

"ଉତ୍କଳ ଜନନୀର ତିନି ପୁତ୍ର ମଧ୍ୟରୁ ତାହାର ପୀଡ଼ା ସମୟରେ ଦୁଇପୁତ୍ର ମୃତ୍ୟୁ ଶଯ୍ୟା ପାଖରେ ଉପସ୍ଥିତ । ଅନ୍ୟ ଏକ ପୁତ୍ର (ଗଂଜାମ ବାସୀ) ଅନେକ ଦୂରରେ ଥିବାରୁ ଜନନୀ ତାହାକୁ ପାଖରେ ନ ଦେଖି ବିଶେଷ କଷ୍ଟ ବୋଧ କରୁଅଛି । ସେହି ଦୂରବର୍ତ୍ତୀ ପୁତ୍ର ମାତୃସେବା କରି ନପାରି ବିଶେଷ ଭାବେ ଦୁଃଖିତ ।"

ଏହାପରେ ସମସ୍ତ ଆନ୍ଦୋଳନ ଓ ପ୍ରତିବାଦ ସତ୍ତ୍ୱେ ଦୀର୍ଘ ବାଇଶି ବର୍ଷ ବିତି ଯାଇଛି କେବଳ ପ୍ରତୀକ୍ଷାରେ । ମାତ୍ର ୧୯୨୮ ସାଲରେ ମଧୁସୂଦନଙ୍କର ନିର୍ଦ୍ଦେଶରେ ପାଟଣାଠାରେ ସାଇମନ କମିଶନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପରେ ପ୍ରଦେଶ ଗଠନର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥିଲା । ଏହାପରେ ଅଟ୍ଲି ସବକମିଟି (୧୯୩୦) ଓଡୋନେଲ କମିଟି (୧୯୩୧) ଓଡ଼ିଶା ପ୍ରଶାସନିକ କମିଟି (୧୯୩୩) କରିଆରେ ଓଡ଼ିଶା ପ୍ରଦେଶର ରୂପରେଖ ନିର୍ଦ୍ଧାରିତ ହୋଇ ଗଂଜାମର ମିଶ୍ରଣକୁ ସ୍ୱୀକୃତି ଦିଆଯାଇଥିଲେ ମଧ୍ୟ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀର ମିଶ୍ରଣ

ସଂପର୍କରେ କୌଣସି ନିର୍ଦ୍ଦେଶନାମା ପ୍ରକାଶ ପାଇ ନଥିଲା । ମଧୁସୂଦନଙ୍କର ପରାମର୍ଶରେ ୧୯୩୧ ଓ ୧୯୩୩ ସାଲରେ ପାରଳା ମହାରାଜାଙ୍କର ଦୁଇଥର ଲଣ୍ଡନ ଯାତ୍ରା ଓ ଗୋଲଟେବୁଲ ବୈଠକରେ ଦୃଢ଼ ଦାବୀ ଉପସ୍ଥାପନା ଫଳରେ ଜୟପୁର ଓ ପାରଳାଖେମୁଣ୍ଡି ସମେତ ଗଂଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶରୁ ଏବଂ ମଧ୍ୟପ୍ରଦେଶରୁ ଖରିଆର ଜମିଦାରୀ ଓଡ଼ିଶା ଡିଭିଜନର ମୂଳ ଭୂଖଣ୍ଡ ସଂଗେ ମିଶି ନୂତନ ଓଡ଼ିଶା ପ୍ରଦେଶ ଗଠନ (୧୯୩୬) ସମ୍ଭବ ହେଲା । ମଧୁସୁଦନଙ୍କର ଜୀବନ ବ୍ୟାପୀ ବିରାମହୀନ ସଂଗ୍ରାମର ସ୍ୱପ୍ନ ସାର୍ଥକତା ଲାଭ କରିଥିଲା । ଏହି ଦେଶ ମିଶ୍ରଣ ଆନ୍ଦୋଳନରେ ଯେଉଁମାନେ ଅକୁଣ୍ଠ ଯୋଗଦାନ କରିଥିଲେ, ସେମାନଙ୍କରେ ମଧ୍ୟାରେ ବ୍ରଜସୁନ୍ଦର ଦାସ, ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଭୁବନାନନ୍ଦ ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ, ଶଶୀଭୂଷଣ ରଥ, ବିଶ୍ୱନାଥର ପଟ୍ଟନାୟକ, ଖଲିକୋଟ ରାଜା ସାହେବ ପ୍ରମୁଖ ।

ମଧୁସୂଦନ ଓଡ଼ିଆ ଜାତିର ଅଗ୍ରଦୂତ । ସେ ଥିଲେ ଭାରତୀୟ ଜାଗରଣର ଅନ୍ୟତମ କର୍ଣ୍ଣଧାର । ୧୮୯୬ ଠାରୁ ୧୯୨୩ ସାଲ ପର୍ଯ୍ୟନ୍ତ ସେ ଥିଲେ ବଂଗ, ବିହାର, ଓଡ଼ିଶା ଏବଂ ଇମ୍ପିରିୟାଲ ବ୍ୟବସ୍ଥାପକ ସଭାର ଜଣେ ମର୍ଯ୍ୟାଦାବନ୍ତ ସଭ୍ୟ, ଯାହାଙ୍କର ପ୍ରଖର ବୁଦ୍ଧିମତା, ଜ୍ୱାଳାମୟୀ ଭାଷଣ, ଶାଣିତ ଜଟୁକ୍ତି ସୃଷ୍ଟି କରୁଥିବା ବିତର୍କର ଝଡ଼ । ସେ ତାଙ୍କର ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଘେନି ସମଗ୍ର ଦେଶର ଶ୍ରଦ୍ଧାଭାଜନ ହେବାର ସୌଭାଗ୍ୟ ଲାଭ କରିଛନ୍ତି । ମଧୁସୂଦନ ଚିନ୍ତା ଚେତନାରେ ଥିଲେ ଜଣେ ଦୂରଦ୍ରଷ୍ଟା, ଯାହାଙ୍କର ତୀକ୍ଷ୍ଣ ବୁଦ୍ଧିମତାରୁ ପ୍ରସ୍ତୁତ ପରିକଳ୍ପନାମାନ ଏପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଛି । ବହୁ କ୍ଷେତ୍ରରେ ସେ ଥିଲେ କ୍ରାନ୍ତିକାରୀ ଦିଗଦର୍ଶକ, ଯାହାଙ୍କର କାର୍ଯ୍ୟଧାରାକୁ ଅନ୍ୟମାନେ ଆଗ୍ରହର ସହ ଅନୁସରଣ କରୁଥିଲେ । ସେଥିରୁ କେତେକ ମହନୀୟ ଅବଦାନ -

(୧) ନବୀନ ଓଡ଼ିଶାର ପ୍ରାଣ ପ୍ରତିଷ୍ଠାତା ରୂପେ ଇତିହାସର ପୃଷ୍ଠାରେ ଚିରକାଳ ଲାଗି ଭାସ୍ୱର ହୋଇ ରହିଥିବା ମଧୁସୂଦନ ଥିଲେ ଏ ଦେଶରେ ଭାଷା ସୂତ୍ରରେ ପ୍ରଦେଶ ଗଠନର ଆଦ୍ୟ ପ୍ରବର୍ତ୍ତକ, ଯେଉଁ ଭିତ୍ତିଭୂମିକୁ ଆଧାର କରି ସ୍ୱାଧୀନ ଭାରତରେ ସୃଷ୍ଟି ହୋଇଥିଲା ଭାଷା ଭିତ୍ତିକ ପ୍ରଦେଶ ଗଠନର ସମୁଜ୍ଜ୍ୱଳ ପରମ୍ପରା ।

(୨) ମଧୁସୂଦନଙ୍କ ପ୍ରଚେଷ୍ଟା ଫଳରେ ଭାରତୀୟ ନାରୀମାନେ ପାଇଥିଲେ ଆଇନଜୀବୀ ବୃତ୍ତି ଗ୍ରହଣର ଯୁଗାନ୍ତକାରୀ ଅଧିକାର (୧୯୨୩) ବ୍ରିଟିଶ ମହିଳାମାନଙ୍କଠାରୁ ମାତ୍ର ଚାରିବର୍ଷର ବ୍ୟବଧାନରେ । ତେଣୁ ଭାରତୀୟ ନାରୀମୁକ୍ତି ଆନ୍ଦୋଳନରେ ମଧୁସୂଦନ ଏକ ଉଜ୍ଜ୍ୱଳ ତାରକା ପରି ଦେଦୀପ୍ୟମାନ ।

(୩) ମଧୁସୂଦନ ଥିଲେ ସାରା ଦେଶରେ ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର ପ୍ରଥମ ଉଦଗାତା ଓ ପଥପ୍ରଦର୍ଶକ । ସେ ତାଙ୍କର ଉତ୍ସର୍ଗୀକୃତ ପ୍ରୟାସ ବଳରେ ତାରକସି ଶିଳ୍ପର ପୁନଃ ପ୍ରତିଷ୍ଠା (୧୮୯୩) ଲଣ୍ଡନଠାରେ ସ୍ୱଦେଶୀ ଶିଳ୍ପ ପ୍ରଦର୍ଶନୀର ଆୟୋଜନ (୧୮୯୭) ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ଉତ୍କଳ ଟ୍ୟାନେରୀର ସ୍ଥାପନା ଓ ଜନତାଙ୍କର ମଧ୍ୟରେ ସ୍ୱଦେଶୀ ବସ୍ତୁର ସଙ୍କଳ୍ପବଦ୍ଧ ବ୍ୟବହାର ତଥା ସମ୍ବେଦନଶୀଳ ମାନସିକ ପ୍ରସ୍ତୁତି ଲାଗି ଦୁର୍ବାର ଆହ୍ୱାନ (୧୯୦୪) ଆଦି କାର୍ଯ୍ୟ ପ୍ରତିବଦ୍ଧତାର ସହ ସଂପାଦନ କରି ନିଜକୁ ତିଳେ ତିଳେ ନିଃଶେଷ କରି ଦେଇଥିଲେ ।

(୪) ମହାତ୍ମାଗାନ୍ଧୀଙ୍କର ଦେଶରେ ସାମଗ୍ରୀକ ଉନ୍ନୟନ ଲାଗି ପରିକଳ୍ପିତ ଅର୍ଥନୈତିକ ଓ ସାମାଜିକ ଜାଗରଣର ମୁଖ୍ୟ କାର୍ଯ୍ୟକ୍ରମଗୁଡ଼ିକ, ତାଙ୍କର ଭାରତୀୟ ରାଜନୈତିକ ଆକାଶରେ ଆବିର୍ଭାବର ବହୁ ପୂର୍ବରୁ ମଧୁସୂଦନ ସେହି କ୍ରାନ୍ତିକାରୀ କାର୍ଯ୍ୟକ୍ରମକୁ ରୂପାୟିତ କରିଥିଲେ ଓଡ଼ିଶାର ମାଟିରେ ।

ସ୍ୱଦେଶୀ ଓ ଗ୍ରାମ୍ୟ ଶିଳ୍ପ ଆନ୍ଦୋଳନ (୧୮୯୬), ଲବଣ କରହ୍ରାସ ଓ ଉତ୍ପାଦନର ସଂରକ୍ଷଣ (୧୮୯୬), ଅସ୍ପୃଶ୍ୟତା ନିବାରଣ, ହିନ୍ଦୁ ଓ ମୁସଲମାନ ଏକତା (୧୮୮୮), ତନ୍ତଶିଳ୍ପର ଉନ୍ନୟନ (୧୯୦୫), ଚରଖା ପ୍ରଚଳନ ଓ ପ୍ରସାର (୧୯୦୮) କୃଷକର ଅଧିକାର ଓ ପ୍ରଜାସ୍ୱତ୍ୱର ସଂରକ୍ଷଣ (୧୯୧୨) ।

୫. ଓଡ଼ିଆ ଜାତିର ଅନ୍ତରାତ୍ମାର ସ୍ନାୟୁକେନ୍ଦ୍ର ଓ ଭାରତୀୟ ଆଧ୍ୟାତ୍ମିକତାର ଅନ୍ୟତମ ମୂଳପୀଠ ଶ୍ରୀ ଜଗନ୍ନାଥ ମନ୍ଦିରର ପରିଚାଳନାରେ ଇଂରେଜମାନଙ୍କର ହୀନ ଚକ୍ରାନ୍ତମୂଳକ ଅଧିକାରକୁ ଆଇନଗତ ସଂଗ୍ରାମରେ ପ୍ରତିହତ କରି, ମଧୁସୂଦନ ସ୍ମରଣାତୀତ କାଳରୁ ପ୍ରଚଳିତ ଥିବା ଗଜପତି ବଂଶର ସୁମହାନ୍ ସାଂସ୍କୃତିକ ଧାରାକୁ ସଂରକ୍ଷିତ କରି ରଖି ପାରିଥିଲେ । ଏଥିଲାଗି ସମଗ୍ର ଓଡ଼ିଆ ଜାତି ତାଙ୍କ ନିକଟରେ କୃତଜ୍ଞ ।

(୬) ମଧୁସୂଦନଙ୍କର ପ୍ରଚେଷ୍ଟାରେ ଅପୂର୍ବ କଳାକୃତି ଘେନି ଭାଙ୍ଗି ଅଜାଡ଼ି ହୋଇ ପଡୁଥିବା ତଥା ବିଶ୍ୱର ସୁମହାନ ଐତିହ୍ୟରେ ଚିହ୍ନିତ ଥିବା କୋଣାର୍କ ଏବଂ ଭୁବନେଶ୍ୱରର ଜୀର୍ଣ୍ଣ କଳା ଭାସ୍କର୍ଯ୍ୟ ସମ୍ବଳିତ ମନ୍ଦିର ରାଶିର ସଂରକ୍ଷଣ ସମ୍ଭବ ହୋଇଥିଲା (୧୯୦୦-୧୯୦୫) । ଏହା ଯୋଗୁ ଚାରୁ ଭାସ୍କର୍ଯ୍ୟର କଳା କ୍ଷେତ୍ରରେ ଓଡ଼ିଶା ବିଶ୍ୱର ଦରବାରରେ ସମ୍ମାନିତ ହୋଇ ଆସିଛି ।

(୭) ବିହାର-ଓଡ଼ିଶା ପ୍ରଦେଶର ପ୍ରଥମ ପର୍ଯ୍ୟାୟରେ ମନ୍ତ୍ରୀପଦ ଗ୍ରହଣ (୧୯୨୧) ସହିତ ବିଶ୍ୱାସ ହରାଇଥିବା ନିର୍ବାଚିତ ପ୍ରତିନିଧିମାନଙ୍କର ପ୍ରତ୍ୟାହାର ବ୍ୟବସ୍ଥା ସମ୍ବଳିତ ପ୍ରଗତିଶୀଳ ସ୍ୱାୟତ୍ତ ଶାସନ ଆଇନ (୧୯୨୩) ପ୍ରଣୟନ କରି ସାରା ଦେଶର ଶ୍ରଦ୍ଧା ଭାଜନ ହୋଇପାରିଥିଲେ । ମନ୍ତ୍ରୀପଦ ଅବୈତନିକ ହେବା ଦାବୀରେ ତାଙ୍କର ଇସ୍ତଫା ପ୍ରଦାନ ଯୋଗୁଁ ଭାରତୀୟ ଗଣତାନ୍ତ୍ରିକ ଧାରାରେ ଏକ ଗୌରବୋଜ୍ଜ୍ୱଳ ପରମ୍ପରାର ସୃଷ୍ଟି ହୋଇ ପାରିଲା ।

(୮) ପାର୍ଲାମେଣ୍ଟାରୀ ଗଣତନ୍ତ୍ର ଧାରାର ଏକନିଷ୍ଠ ପ୍ରତିଶ୍ରୁତିବଦ୍ଧ ସଂରକ୍ଷକ ଭାବେ ଇମ୍ପିରିଆଲ ବ୍ୟବସ୍ଥାପକ କାଉନସିଲ (୧୯୧୩-୧୬) ବଂଗଳା ଏବଂ ବିହାର, ଓଡ଼ିଶା ବ୍ୟବସ୍ଥାପକ ସଭା (୧୮୯୬-୧୯୨୩) ର ସଭ୍ୟ ଭାବରେ ଭାରତର ମୂଳ ସମସ୍ୟା ସଂପର୍କିତ ଯୁକ୍ତି ସମ୍ବଳିତ ତାତ୍ତ୍ୱିକ ବିତର୍କ ସହିତ ଓଡ଼ିଶାର ପରିସ୍ଥିତିରେ କ୍ରମାଗତ ଅବକ୍ଷୟ ବିରୁଦ୍ଧରେ ଦୃଢ଼ ଦାବୀ ଉପସ୍ଥାପନରେ ପ୍ରଖର ବାଗ୍ମିତା ମଧ୍ୟରେ ଶାସକୀୟ ବ୍ୟବସ୍ଥା ପ୍ରତି ଶାଣିତ ଜଟୁକ୍ତି ଓ ସ୍ପନ୍ଦନଶୀଳ ସମାଲୋଚନା କରିଆରେ,

ସେ ତାଙ୍କର ପ୍ରଭାବଶାଳୀ ପ୍ରଚଣ୍ଡ ବ୍ୟକ୍ତିତ୍ୱକୁ ସାରାଭାରତରେ ପ୍ରତିଷ୍ଠିତ କରାଇ ପାରିଥିଲେ । ବଙ୍ଗଳାର ବ୍ୟବସ୍ଥାପକ ସଭାରେ ସର୍ବଶ୍ରେଷ୍ଠ ତାର୍କିକ ରୂପେ, ସେ ବଙ୍ଗଳାର ଗଭର୍ଣ୍ଣରଙ୍କ ଦ୍ୱାରା ରୋମର ପ୍ରଖ୍ୟାତ ସମାଲୋଚକ ଓ ସିନେଟର 'କେଟୋ' ନାମରେ ଅଭିହିତ ହୋଇ ସମ୍ବର୍ଦ୍ଧିତ ହୋଇଥିଲେ ।

(୯) ନିଖିଳ ଭାରତ ଖ୍ରୀଷ୍ଟିଆନ ସମ୍ମିଳନୀର ଅଧ୍ୟକ୍ଷ ପଦ (୧୯୧୭-୧୮) କ୍ରମାଗତ ଭାବେ ଦୁଇଟି ବାର୍ଷିକ ଅଧିବେଶନରେ ଅଳଙ୍କୃତ କରି ସର୍ବ ଭାରତୀୟ ମାନ୍ୟତାର ଅଧିକାରୀ ହୋଇଥିଲେ ।

(୧୦) 'ମଧୁସୂଦନଙ୍କ ଜୀବନର ଶେଷ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଶାରେ ଯେତେ ଅନୁଷ୍ଠାନ ଗଢ଼ି ଉଠିଥିଲା, ସମସ୍ତ ହିଁ ଥିଲା ତାଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଚେଷ୍ଟାର ଫଳ, ଯାହା ଓଡ଼ିଶାର ସମୃଦ୍ଧି ଓ ବିକାଶ ଲାଗି ଅଭିପ୍ରେତ ଥିଲା ।' (ବିଶ୍ୱନାଥ ଦାସ)

ତାହାର ଲିଖିତ ବିବରଣୀ :-ଉତ୍କଳ ସଭା (୧୮୮୨), ଉତ୍କଳ ସମ୍ମିଳନୀ (୧୯୦୩) ଉତ୍କଳ ସାହିତ୍ୟ ସମାଜ (୧୯୦୩), ଉତ୍କଳ ଛାତ୍ର ସମ୍ମିଳନୀ (୧୯୦୩), ତରୁଣ ଏସୋସିଏସନ (୧୯୦୪), ଓଡ଼ିଶା ସ୍ପୋର୍ଟସ ଏସୋସିଏସନ (୧୯୦୪) । ଏହାଛଡ଼ା କଳା ଓ ସଂସ୍କୃତି କ୍ଷେତ୍ରରେ କଟକରେ ପ୍ରଥମ ରଙ୍ଗମଂଚର ସ୍ଥାପନ (୧୮୮୫) ଏବଂ ଶାସ୍ତ୍ରୀୟ ଓ ଓଡ଼ିଶୀ ସଂଗୀତ ସମାରୋହ (୧୮୮୫) ର ଆୟୋଜନ ମଧୁସୂଦନ କରିଥିଲେ ।

(୧୧) ଦୁର୍ଗତଙ୍କ ସେବା (୧୯୦୭-୧୯) : ମଧୁସୂଦନ ବ୍ୟାପକ ଭାବେ ବନ୍ୟାଦୁର୍ଗତ ଓ ମରୁଡ଼ି ପ୍ରପୀଡ଼ିତ ଲୋକଙ୍କର ସେବା କରିବା ସହିତ, ବିଦେଶୀ ତଥା ସ୍ଥାନୀୟ ସାମ୍ବାଦିକମାନଙ୍କ ଦ୍ୱାରା କ୍ଷୟକ୍ଷତିର ବିବରଣୀ ପ୍ରକାଶ କରାଇ ସରକାରଙ୍କୁ ଆଶୁ ପଦକ୍ଷେପ ନେବା ପାଇଁ ବାଧ୍ୟ କରୁଥିଲେ । ଏ କ୍ଷେତ୍ରରେ ବ୍ରିଟିଶ ସାମ୍ବାଦିକ ନାଭିନସନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

(୧୨) କୃଷି ପ୍ରଧାନ ରାଜ୍ୟରେ କୃଷି ବିଦ୍ୟାର ସମୁଚିତ ସ୍ଥାନ ହିଁ ସର୍ବୋଚ୍ଚ ପ୍ରାଥମିକତାର ଅଧିକାରୀ । ତେଣୁ ମଧୁସୂଦନଙ୍କର ବଂଗ ବ୍ୟବସ୍ଥାପକ ସଭାରେ ଦାବୀ ଉପସ୍ଥାପନାରେ ପ୍ରାଥମିକ ବିଦ୍ୟାଳୟରେ କୃଷି ଭିତ୍ତିକ ପାଠ୍ୟକ୍ରମର ସଂଯୋଜନା ହୋଇ ପାରିଥିଲା । କୃଷକର ଅଧିକାର ଓ ସ୍ୱତ୍ୱର ସୁରକ୍ଷା ଲାଗି ସେ ଗଢ଼ିଥିଲେ ପ୍ରଜା ପରିଷଦ (୧୯୦୯) । ବଙ୍ଗ ବ୍ୟବସ୍ଥାପକ ସଭାରେ ନ୍ୟସ୍ତସ୍ୱାର୍ଥ ଜମିଦାରୀ ଗୋଷ୍ଠୀର ପ୍ରରୋଚନାରେ ଉପସ୍ଥାପିତ ହୋଇଥିବା ଉଗ୍ର ଶୋଷଣ ଭିତ୍ତିକ ପ୍ରଜାସ୍ୱତ୍ୱ ବିଲର ତୀବ୍ର ପ୍ରତିବାଦ ସହିତ ସରକାରଙ୍କୁ ସମ୍ଭାବ୍ୟ ପରିଣତ ଲାଗି ଚେତାବନୀ ଦେବା ଫଳରେ ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜ ଏହି ବିଲକୁ ଅଗ୍ରାହ୍ୟ କରିଦେଇଥିଲେ । ଯାହା ଭାରତୀୟ ସାମ୍ବିଧାନିକ ଇତିହାସରେ ବ୍ୟତିକ୍ରମର ଏକ ବଳିଷ୍ଠ ନଜିର ରୂପେ ପ୍ରତିଷ୍ଠା ଲାଭ କରିଛି ।

(୧୩) ଉତ୍କଳ ସମ୍ମିଳନୀର ଅଧିବେଶନଠାରୁ ସମସ୍ତ ସାଂସ୍କୃତିକ ତଥା ଅର୍ଦ୍ଧ ବେସରକାରୀ ଅନୁଷ୍ଠାନରେ ମଧୁସୂଦନ ଅଗ୍ରାଧିକାର ଭିତ୍ତିରେ ଓଡ଼ିଆ ଭାଷାର ବ୍ୟବହାର ଲାଗି ଯେଉଁ ପ୍ରାଧାନ୍ୟ ଦେଇଥିଲେ, ସେ ସମୟରେ ଇଂରାଜି ପ୍ରଭାବିତ ଯୁଗରେ, ତାହାକୁ ଅନ୍ୟ ରାଜ୍ୟର ଚିନ୍ତାଶୀଳ ବ୍ୟକ୍ତିମାନେ ଗଭୀର ବିସ୍ମୟତାର ସହ ଅନୁଧ୍ୟାନ କରି, ମଧୁସୂଦନଙ୍କର ଏହି କାର୍ଯ୍ୟକୁ ଦିଗଦର୍ଶକର ମାନ୍ୟତା ପ୍ରଦାନ କରିଥିଲେ ।

(୧୪) ମଧୁସୂଦନ ଥିଲେ ଏ ଜାତିର ପ୍ରଥମ ଓଡ଼ିଆ ଏମ.ଏ., ପ୍ରଥମ ଏଡ୍‌ଭୋକେଟ, ୟୁରୋପ ପରିଦର୍ଶନରେ ପ୍ରଥମ ଓଡ଼ିଆ, ବଡ଼ଲାଟ ଆଉ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ପ୍ରଥମ ଓଡ଼ିଆ ସଭ୍ୟ, ପ୍ରଥମ ଓଡ଼ିଆମନ୍ତ୍ରୀ ଏବଂ ମନ୍ତ୍ରୀତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ । ସେ ମଧ୍ୟ ଥିଲେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଓଡ଼ିଆ ସଭ୍ୟ (୧୮୮୬ ରୁ ୧୯୦୩) ସବୁଥିରେ ପ୍ରଥମ ଓଡ଼ିଆ । ମଧୁସୂଦନ ତାଙ୍କର ପ୍ରଚଣ୍ଡ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଘେନି ଭାରତର ରାଜନୈତିକ ଆକାଶକୁ ଉଦ୍ଭାସିତ କରିଥିଲେ ଏକ ଜ୍ୟୋତିଷ୍ମାନ ତାରକା ପରି ।

ମଧୁସୂଦନଙ୍କର ଆବିର୍ଭାବ ହୋଇଥିଲା ଓଡ଼ିଶା ଇତିହାସର ଏକ ତିମିରାଚ୍ଛନ୍ନ ଅଧ୍ୟାୟରେ, ଯେଉଁ ସମୟରେ ତୀବ୍ର ଶୋଷଣର ଦ୍ୱାରା ଓ ପରିସ୍ଥିତିର ଦ୍ରୁତ ଅବକ୍ଷୟ ମଧ୍ୟରେ ଓଡ଼ିଶାର ସମସ୍ତ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ଦୃଢ଼ ଭୁଷୁଡ଼ି ପଡୁଥିଲା । ଏହା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳିତ କରିବାକୁ ଯେପରି କ୍ଷମତା ହରାଇ ବସିଥିଲା ଏ ଜାତି । ଏହି ସମୟରେ ଦୃଶ୍ୟପଟରେ ଉଭା ହେଲେ ମଧୁସୂଦନ । ଆତ୍ମପ୍ରତ୍ୟୟହୀନ ସହସ୍ରଭୂଜାଙ୍କର ବାହୁରେ ସେ ଭରି ଦେଇଥିଲେ ଅଫୁରନ୍ତ ଶକ୍ତି ଆଉ ଉଚ୍ଚ ସ୍ୱରରେ ପ୍ରତିବାଦ କରିବାର ଅଦ୍ଭୁତ କ୍ଷମତା । ତେଣୁ ଉତ୍କଳ ସମ୍ମିଳନୀ, ଛାତ୍ର ସମ୍ମିଳନୀ ଆଦି ଯେଉଁ ଜାଗରଣର ମଞ୍ଚ ମଧୁସୂଦନ ସୃଷ୍ଟି କରିଥିଲେ, ତହିଁରୁ ସେନାନୀମାନେ ଲମ୍ଫ ଦେଇଥିଲେ ସ୍ୱାଧୀନତା ଆଉ ଦେଶମିଶ୍ରଣ ଆନ୍ଦୋଳନରେ ସଂଗ୍ରାମର କ୍ଷେତ୍ରକୁ । ତେଣୁ ଓଡ଼ିଶା ମଧୁସୂଦନଙ୍କ ନେତୃତ୍ୱରେ ପାଇଥିଲା ଏକ ସ୍ୱତନ୍ତ୍ର ସ୍ୱୀକୃତି । ପଣ୍ଡିତ ନେହେରୁ ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ କହିଛନ୍ତି, ମଧୁସୂଦନ କେବଳ ଓଡ଼ିଶାରେ ନୁହେଁ, ଭାରତର ଜଣେ ବିଶାଳ ବ୍ୟକ୍ତିତ୍ୱ ।

ଫକୀରମୋହନ ତାଙ୍କର ଅନ୍ତରର ଆବେଗରେ ମଧୁସୂଦନଙ୍କୁ ସମ୍ବୋଧିତ କରି କହିଛନ୍ତି -

ତୁମ୍ଭର ଚରିତ୍ର ଓ ଇତିହାସ
ପାଉନାହିଁ ଭାଷା କରେ ପ୍ରକାଶ
ଯେତେଦିନ ଥିବ ଉତ୍କଳୀ ଜାତି
ଯାବତ ଚନ୍ଦ୍ରାର୍କେ ରହିବ ଖ୍ୟାତି ।

ମଧୁସୂଦନ ଥିଲେ ଓଡ଼ିଆଜାତିର ଅଭ୍ୟୁତଥାନ ପ୍ରତୀକ । ତାଙ୍କର ଅଧିନାୟକତ୍ୱରେ ଓଡ଼ିଆମାନେ ଫେରି ପାଇଥିଲେ ଆତ୍ମସମ୍ମାନ ଆଉ ମର୍ଯ୍ୟାଦା ସହ ବସବାସ କରିବା ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ । ମଧୁସୂଦନ ସେ ଯୁଗରେ ସହସ୍ର ଭୂଜାର ଉତ୍ଥାନ ଲାଗି ଯେଉଁ ଆବାହନ ମନ୍ତ୍ରର ଉଚ୍ଚାରଣ କରିଥିଲେ, ଆଜି ତାହାର ପୁନରାବୃତ୍ତିରେ ହିଁ ଓଡ଼ିଶା ପାଇ ପାରିବ ଭାରତୀୟ ଗଣତନ୍ତ୍ରରେ ଏକ ସମ୍ମାନନୀୟ ସ୍ଥାନ ।

ବଟୀଘର ଛକ
ଗୋପାଳପୁର, ଗଂଜାମ

# ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

ଶ୍ରୀ ବଳରାମ ମହାନ୍ତି



ଓଡ଼ିଶାର ପ୍ରଥମ ତଥା ସର୍ବମାନ୍ୟ କଂଗ୍ରେସ ନେତା ଓ ପ୍ରଥମ ପର୍ଯ୍ୟାୟ ସ୍ୱାଧୀନତା ସଂଗ୍ରାମର ସେନାପତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ ପୁରୀ ସହର ଠାରୁ ୮ କିଲୋମିଟର ଦୂରବର୍ତ୍ତୀ ଭାର୍ଗବୀ ନଦୀ କୂଳରେ ଅବସ୍ଥିତ ସୁଆଣ୍ଡ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଗୋପବନ୍ଧୁ ପିଲାଦିନୁ ଧର୍ମ ପରାୟଣ ଓ ମେଧାବୀ ଥିଲେ । ଭକ୍ତକବି ଜଗନ୍ନାଥ ଦାସଙ୍କ କୃତ ଓଡ଼ିଆ ଭାଗବତ ଥିଲା ତାଙ୍କର ଛାତ୍ର ଜୀବନର ସାଥି । ସେ ପିଲାଦିନୁ ତାଳପତ୍ରରେ କବିତା ଲେଖି ପକାଉଥିଲେ ।

ଗୋପବନ୍ଧୁ ପୁରୀଜିଲ୍ଲାସ୍କୁଲରେ ଆସି ମାଟ୍ରିକୁଲେସନ ଅଧ୍ୟୟନ କରିଥିଲେ । ସେତିକିବେଳେ ପୁରୀର ଜଣେ ମୁକ୍ତିଆର ରାମଚନ୍ଦ୍ର ଦାସଙ୍କ ସଂସ୍ପର୍ଶରେ ସେ ଆସିଲେ । ରାମଚନ୍ଦ୍ର ଦାସ ଜଣେ ଦେଶପ୍ରେମୀ, ସରଳ ଓ ସାଧୁ ପ୍ରକୃତିର ବ୍ୟକ୍ତି ଥିଲେ । ଗୋପବନ୍ଧୁ ତାଙ୍କଠାରୁ ଦେଶପ୍ରେମ, ସରଳତା ଓ ଦରିଦ୍ରର ସେବା ଶିକ୍ଷା କରିଥିଲେ । ତାଙ୍କଠାରୁ ଗୋପବନ୍ଧୁ ଯେଉଁ ଶିକ୍ଷା କରିଥିଲେ, ତାହା ତାଙ୍କ ଭବିଷ୍ୟତ ଜୀବନର ପାଥେୟ ହୋଇଥିଲା । ଗୋପବନ୍ଧୁ କଟକ ରେଭେନ୍ସା କଲେଜରେ ବି.ଏ. ପାଶ କରି ୧୯୦୬ ମସିହାରେ କଲିକତାରେ ଓକିଲାତି ପଢ଼ିଥିଲେ । ସେତିକିବେଳେ ବଙ୍ଗ ପ୍ରଦେଶକୁ ବ୍ରିଟିଶ ସରକାର ଦୁଇ ଭାଗ କରି ଦେଇଥିବା ଯୋଗୁଁ ବଙ୍ଗଭଙ୍ଗ ଆନ୍ଦୋଳନ ଚାଲିଥାଏ । ସ୍ୱଦେଶୀ ପଦାର୍ଥ ବ୍ୟବହାର ଓ ସ୍ୱଦେଶୀ ଶିକ୍ଷା ଥିଲା ଏହି ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଯୁବକ ଗୋପବନ୍ଧୁ ଏହି ଆନ୍ଦୋଳନରେ ପ୍ରଭାବିତ ହୋଇଥିଲେ ।

ଛାତ୍ରାବସ୍ଥାରେ ଗୋପବନ୍ଧୁ ତାଙ୍କ ଗ୍ରାମର ନଦୀ ଭାର୍ଗବୀ କୂଳରେ ବସି ପଣ୍ଡିତ ନୀଳକଣ୍ଠ ଦାସ, ପ୍ରଚାରକ ଅନନ୍ତ ମିଶ୍ରଙ୍କ ସହିତ ଦିନେ ଶପଥ ନେଇଥିଲେ ଯେ ସେମାନେ ଜୀବନରେ ସରକାରୀ ଚାକିରି କରିବେ ନାହିଁ ଏବଂ ବର୍ତ୍ତମାନ ଦେଶର ଅବସ୍ଥା ଯାହା ଦେଖୁଛନ୍ତି । ତାହା ଅପେକ୍ଷା ଭଲ ଅବସ୍ଥା ଦେଖି ଯିବେ । ଗୋପବନ୍ଧୁ ଏହି ଶପଥ ପ୍ରତି ସବୁବେଳେ ସଚେତନ ଥିଲେ । ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ତାଙ୍କୁ ଏହି ଦିଗରେ ଅଧିକ ପ୍ରେରଣା ଦେଇଥିଲା । କଲିକତାରୁ ଫେରି ସେ ପୂର୍ବତନ ଗଡ଼ଜାତ ନୀଳଗିରିରେ କିଛି ଦିନ ଓକିଲାତି କରିଥିଲେ । ସେହିଠାରେ ପ୍ରତିଷ୍ଠିତ ହାଇସ୍କୁଲରେ ସେ ପ୍ରଧାନ ଶିକ୍ଷକ ଭାବରେ କିଛି ଦିନ କାର୍ଯ୍ୟ କରିଥିଲେ । ୧୯୦୮ ମସିହାରେ ବୈତରଣୀ ଓ ଖରସୁଆଁ ନଦୀର ବନ୍ୟା ଯୋଗୁ ଯାଜପୁର ଓ କେନ୍ଦ୍ରାପଡ଼ା ଅଞ୍ଚଳର ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବା ନିମନ୍ତେ ସେ ଅବିଶ୍ରାନ୍ତ ଉଦ୍ୟମ କରିଥିଲେ । ଏଥିପାଇଁ ସେ ଏକ ଯୁବ ସ୍ୱେଚ୍ଛାସେବକ ବାହିନୀ ଗଠନ କରିଥିଲେ ।

ଏହାପରେ ମୟୂରଭଞ୍ଜ ମହାରାଜାଙ୍କ ନିମନ୍ତ୍ରଣକ୍ରମେ ଗୋପବନ୍ଧୁ ୧୯୦୮ ମସିହାରୁ ୧୯୧୨ ପର୍ଯ୍ୟନ୍ତ ମୟୂରଭଞ୍ଜ ଷ୍ଟେଟ ଓକିଲ ଭାବରେ କାର୍ଯ୍ୟ କରି ମହାରାଜା ରାମଚନ୍ଦ୍ର ଭଞ୍ଜଦେଓଙ୍କ ମୃତ୍ୟୁପରେ ସେଠାରୁ ସେ ପୁରୀ ଚାଲି ଆସିଥିଲେ ।

୧୯୧୨ ମସିହାରେ ଗୋପବନ୍ଧୁ ସତ୍ୟବାଦୀରେ ରହି ସେଠାରେ ଏକ ବନ ବିଦ୍ୟାଳୟ ସ୍ଥାପନ କଲେ । ଏଠାରେ ସାକ୍ଷୀଗୋପାଳ ଛୁରିଅନା ବୃକ୍ଷ ପରିବେଷ୍ଟିତ ସ୍ଥାନରେ ଖୋଲା ଯାଗାରେ ପଢ଼ାହେଲା । ତାଙ୍କ ଅନୁରୋଧକ୍ରମେ ପଣ୍ଡିତ ନୀଳକଣ୍ଠଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ଉଚ୍ଚ ଶିକ୍ଷିତ ବିଦ୍ୱାନମାନେ ଶିକ୍ଷକ ରୂପେ ଯୋଗଦେଲେ । ସାକ୍ଷୀଗୋପାଳ ବନ ବିଦ୍ୟାଳୟ ବସ୍ତୁତଃ ଏକ ମନୁଷ୍ୟ ତିଆରି ଶିକ୍ଷାନୁଷ୍ଠାନରେ ପରିଣତ ହେଲା । ଏଠାରେ ଇଂରେଜୀ ବିଦ୍ୟାଳୟର ଶିକ୍ଷା ଛଡ଼ା ଚରିତ୍ର ଗଠନ ତଥା ଭାରତୀୟ ସଂସ୍କୃତି ସମ୍ବନ୍ଧରେ ଶିକ୍ଷା ଦିଆଯାଉଥିଲା । ଏହା ସେତେବେଳେ ସମଗ୍ର ଦେଶର ପ୍ରଖ୍ୟାତ୍ ଶିକ୍ଷାବିତ୍ ଓ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା ।

ସେତେବେଳକୁ ପଣ୍ଡିତ ଗୋପବନ୍ଧୁ ଓକିଲାତି ଛାଡ଼ି ଦେଇ ବନ ବିଦ୍ୟାଳୟର ବିକାଶ କାର୍ଯ୍ୟରେ ମନୋନିବେଶ କରିଥିଲେ । ଏହା ସହିତ ସେ ଉତ୍କଳଗୌରବ ମଧୁସୂଦନ ଦାସଙ୍କର ଜଣେ ବିଶ୍ୱସ୍ତ ସହଯୋଗୀ ଭାବରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ କାର୍ଯ୍ୟରେ ମଧ୍ୟ ଲାଗିଥିଲେ । ମଧୁସୂଦନଙ୍କ ପରାମର୍ଶକ୍ରମେ ଗୋପବନ୍ଧୁ ୧୯୧୭ ମସିହାରେ ବିହାର-ଓଡ଼ିଶା ପରିଷଦକୁ ଓଡ଼ିଶାରୁ ନିର୍ବାଚିତ ହୋଇଥିଲେ । ବିଧାନ ପରିଷଦରେ ସେ ମୁକ୍ତ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ତଥା ଲବଣ ଶିଳ୍ପର ପୁନରୁଦ୍ଧାର ପାଇଁ ଆଇନଗତ ବ୍ୟବସ୍ଥା କରିବା ପାଇଁ ଉଦ୍ୟମ କରିଥିଲେ । ୧୯୧୯ ମସିହାରେ ଗୋପବନ୍ଧୁ ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ଅଧ୍ୟକ୍ଷତା କରିଥିଲେ । ଓଡ଼ିଆଭାଷା ସଂରକ୍ଷଣ ପାଣ୍ଠିନାମରେ ଏକ ପାଣ୍ଠି ସ୍ଥାପନ ପାଇଁ ଗୋପବନ୍ଧୁ ଆଗତ କରିଥିବା ପ୍ରସ୍ତାବ ସମ୍ମିଳନୀରେ ଗୃହୀତ ହୋଇଥିଲା । ସେ ଏହି ପାଣ୍ଠିର ସମ୍ପାଦକ ରହିଥିଲେ । ସେ ସିଂହଭୂମି ଓ ଚକ୍ରଧରପୁରଠାରେ ଓଡ଼ିଆ ସ୍କୁଲ ସ୍ଥାପନ କରିଥିଲେ । ଚକ୍ରଧରପୁରର ବିଦ୍ୟାଳୟର ଦାୟିତ୍ୱ ଗ୍ରହଣ

କରିବା ପାଇଁ ସେ ପଣ୍ଡିତ ଗୋଦାବରୀଶଙ୍କୁ ପଠାଇଥିଲେ ଓ ବିହ୍ମିନାଞ୍ଚଳ ମିଶ୍ରଣ ପାଇଁ ପ୍ରଚାରକ ଅନନ୍ତ ମିଶ୍ରଙ୍କୁ ପଠାଇଥିଲେ ।

ଉତ୍କଳମଣି ଗୋପବନ୍ଧୁ ପ୍ରଥମେ ମହାଭାରତୀୟ ଭାବକୁ ଓଡ଼ିଶାକୁ ଆଣିଥିଲେ । ଜାତୀୟ ସ୍ୱାର୍ଥରେ ବ୍ୟାଘାତ ହେବାଭଳି କୌଣସି କାର୍ଯ୍ୟ ସେ କରିବାକୁ ଚାହୁଁ ନଥିଲେ । ୧୯୨୦ ମସିହାରେ ଗୋପବନ୍ଧୁ ନାଗପୁର କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ଏହା ପୂର୍ବରୁ ସେ କଂଗ୍ରେସ ଅଧିବେଶନମାନଙ୍କରେ ଯୋଗଦେଇ ଆସୁଥିଲେ ଓ କଂଗ୍ରେସର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିଗୁଡ଼ିକୁ ଓଡ଼ିଶାର ଚାରିଆଡ଼େ ପ୍ରଚାର କରୁଥିଲେ । ନାଗପୁର କଂଗ୍ରେସ ଅଧିବେଶନରେ ଗୋପବନ୍ଧୁଙ୍କ ଦାବୀ ଅନୁସାରେ ଭାଷାଭିତ୍ତିରେ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହେବା ଉଚିତ୍ ବୋଲି ସ୍ଥିର ହୋଇଥିଲା ଓ ସେହି ଅନୁସାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠିତ ହୋଇଥିଲା । ଉତ୍କଳ ସମ୍ମିଳନୀର ନାଗପୁର ଅଧିବେଶନରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ଚଳେଇବା ପାଇଁ ମହାତ୍ମାଗାନ୍ଧୀ ଗୋପବନ୍ଧୁଙ୍କୁ ଦାୟିତ୍ୱ ଦେଇଥିଲେ । ଗୋପବନ୍ଧୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପ୍ରଥମ ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ନାଗପୁର କଂଗ୍ରେସ ଅଧିବେଶନରୁ ଫେରିବା ବାଟରେ ଗୋପବନ୍ଧୁ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନରେ ଯୋଗ ଦେଇଥିଲେ ଏବଂ ଏହି ଅଧିବେଶନରେ କଂଗ୍ରେସର ଲକ୍ଷ୍ୟ ଓ ଆଦର୍ଶକୁ ଉତ୍କଳ ସମ୍ମିଳନୀ ଗ୍ରହଣ କରିନେବା ପାଇଁ ଏକ ପ୍ରସ୍ତାବ ଆଣିଥିଲେ ଏବଂ ତାହା ଗୃହୀତ ହୋଇଥିଲା ।

୧୯୧୯ ମସିହାରେ ପଣ୍ଡିତ ଗୋପବନ୍ଧୁ ନିଜ ସଂପାଦନାରେ ସାପ୍ତାହିକ 'ସମାଜ' ପ୍ରକାଶ କଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ସେ ଏହାର ସଂପାଦକ ଥିଲେ । 'ସମାଜ' ପତ୍ରିକା ଜରିଆରେ ସେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟ ଅସହଯୋଗ ଆନ୍ଦୋଳନକୁ ଓଡ଼ିଶାବାସୀଙ୍କ ନିକଟରେ ପହଞ୍ଚାଇ ଥିଲେ ଏବଂ ଏହା ସଙ୍ଗେ ସଙ୍ଗେ ସେ ଓଡ଼ିଶାବାସୀଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଗୋପବନ୍ଧୁ ସରଳ ଭାଷାରେ ଜଟିଳ ରାଜନୈତିକ ଓ ଅର୍ଥନୈତିକ ସମସ୍ୟାଗୁଡ଼ିକ ଲେଖୁଥିଲେ ତେଣୁ 'ସମାଜ' ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଥିଲା । 'ସମାଜ' ଛପା ହେଉଥିବା ''ସତ୍ୟବାଦୀ ପ୍ରେସ''କୁ ସେ କଟକ ଉଠାଇ ଆଣିଥିଲେ । ସତ୍ୟବାଦୀଠାରେ ଏହି ପ୍ରେସରୁ 'ସତ୍ୟବାଦୀ' ମାସିକ ପତ୍ରିକା ସେ ପ୍ରକାଶ କରିଥିଲେ ।

୧୯୨୧ ମସିହାରେ ପଣ୍ଡିତ ଗୋପବନ୍ଧୁଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମ ଚାଲିଥିଲା । ସେ ନିଜେ ଗାଁ ଗହଳରେ ବୁଲି ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କଲେ । ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ସଂଗ୍ରାମୀ ସଂଗ୍ରହ କରିବା ଓ ସେମାନଙ୍କୁ ତାଲିମ ଦେବା ପାଇଁ ଆଶ୍ରମ ଓ ଜାତୀୟ ବିଦ୍ୟାଳୟମାନ ଖୋଲା ହେଲା । ଗୋପବନ୍ଧୁ ତାଙ୍କ ପ୍ରିୟ ସାକ୍ଷୀଗୋପାଳ ବନବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟରେ ପରିଣତ କଲେ । ଏହି ବିଦ୍ୟାଳୟକୁ ସରକାରୀ ସାହାଯ୍ୟ ବନ୍ଦ କରି ଦିଆହେଲା । ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଓଡ଼ିଶାର କେତେକ ବିଶିଷ୍ଟ ବ୍ୟକ୍ତି ସ୍କୁଲ କଲେଜ ଛାଡ଼ିଥିଲେ, ସରକାରୀ ଚାକିରି ଓ ଓକିଲାତି ଛାଡ଼ିଥିଲେ । ବିଲାତି ଲୁଗା ବର୍ଜନ, ନିଶା ନିବାରଣ ତଥା ସୂତା କଟା ଓ ଲୁଗାବୁଣା କାର୍ଯ୍ୟକ୍ରମ ସଫଳତାର ସହିତ ଚାଲିଥିଲା । ବହୁ ଲୋକ ଅସହଯୋଗ ସଂଗ୍ରାମରେ ଯୋଗ ଦେଇ କାରାବରଣ କଲେ, ପୋଲିସ ଲାଠି ମାଡ଼ର ସମ୍ମୁଖୀନ ହେଲେ । ଏହି ସମୟରେ କନିକାର ଜମିଦାର ପ୍ରଜାଙ୍କ ଉପରେ ନାନା ଅତ୍ୟାଚାର କରିଥିଲେ । ଲୋକଙ୍କ ଉପରେ ଗୁଳି ଚାଲିଥିଲା ଓ ବହୁ ଲୋକ ମୃତାହତ ହୋଇଥିଲେ । ଏହି ଅତ୍ୟାଚାରର କାହାଣୀ ଗୋପବନ୍ଧୁ ସମାଜ ପତ୍ରିକାରେ ପ୍ରକାଶ କରିଥିଲେ । ଇଂରେଜ ସରକାର ଏଥିରେ ଆତଙ୍କିତ ହୋଇ ଗୋପବନ୍ଧୁଙ୍କୁ ଗିରଫ କଲେ । ଗୋପବନ୍ଧୁ ହଜାରୀବାଗ ଜେଲରେ ଦୁଇବର୍ଷ କାରାବରଣ କରି ୧୯୨୪ ମସିହାରେ ଖଲାସ ହେଲେ ।

୧୯୨୪ ମସିହାରେ ଜନନାୟକ ଗୋପବନ୍ଧୁ ଖଲାସ ହୋଇ ଆସିବା ଦିନ କଟକଠାରେ ତାଙ୍କୁ ଯେଉଁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା, ସେଦିନ ବଙ୍ଗଳାର ଗାନ୍ଧୀବାଦୀ ବୈଜ୍ଞାନିକ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସେହି ସମ୍ବର୍ଦ୍ଧନା ସଭାରେ ଅଧ୍ୟକ୍ଷତା କରିଥିଲେ । ସେହି ସଭାରେ ସେ ଜନନାୟକ ଗୋପବନ୍ଧୁଙ୍କୁ ''ଉତ୍କଳମଣି'' ଉପାଧିରେ ଭୂଷିତ କରିଥିଲେ । ୧୯୨୫ ମସିହାରେ ଉତ୍କଳମଣି ଗୋପବନ୍ଧୁ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଲାଲା ଲଜପତ ରାୟଙ୍କ ପରାମର୍ଶକ୍ରମେ ଲୋକସେବକ ମଣ୍ଡଳର ସଭ୍ୟ ହୋଇଥିଲେ ଓ ଶେଷରେ ଲୋକ ସେବକ ମଣ୍ଡଳର ଉପସଭାପତି ରୂପେ ନିର୍ବାଚିତ ହୋଇଥିଲେ । ୧୯୨୫ ମସିହାରେ ପୁଣି ପୁରୀ ଓ କଟକ ଜିଲ୍ଲାର ବିଭିନ୍ନ ସ୍ଥାନରେ ପ୍ରବଳ ବନ୍ୟାଯୋଗୁ ବନ୍ୟାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଗୋପବନ୍ଧୁ ଅବିଶ୍ରାନ୍ତ ଭାବରେ କାର୍ଯ୍ୟକଲେ । ୧୯୨୭ ମସିହାରେ ବୈତରଣୀରେ ପ୍ରଳୟଙ୍କରୀ ବନ୍ୟା ଫଳରେ ଲୋକେ ପୁଣି ଉତପୀଡ଼ିତ ହୋଇଥିଲେ ଏବଂ ଗୋପବନ୍ଧୁ ସେମାନଙ୍କ ନିକଟରେ ସାହାଯ୍ୟ ପହଞ୍ଚାଇଥିଲେ । ଏହି ସମୟରେ ଦୀନବନ୍ଧୁ ସି. ଏଫ. ଆଣ୍ଡ୍ରୁଜ ପ୍ରମୁଖ ବିଶିଷ୍ଟ ମନୀଷିମାନେ ତାଙ୍କୁ ଆସି ଏହି କାର୍ଯ୍ୟରେ ସାହାଯ୍ୟ କରିଥିଲେ ।

ଉତ୍କଳମଣି ଗୋପବନ୍ଧୁ ଜଣେ ଶକ୍ତିଶାଳୀ ବକ୍ତା ଥିଲେ । ସେ ତାଙ୍କ ଅନର୍ଗଳ ବକ୍ତୃତାରେ ଶ୍ରୋତାମାନଙ୍କୁ ମୁଗ୍ଧ କରି ଦେଉଥିଲେ । ସେ ଜଣେ ସଫଳ ସମ୍ବାଦପତ୍ର ସଂପାଦକ ଭାବରେ ଓଡ଼ିଆ ଗଦ୍ୟ ସାହିତ୍ୟକୁ ସମୃଦ୍ଧ କରିଥିଲେ । ବସ୍ତୁତଃ ସେ ଏକ ନୂତନ ଓଡ଼ିଆ ଗଦ୍ୟ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି । ଗୋପବନ୍ଧୁ ମଧ୍ୟ ଓଡ଼ିଆ ପଦ୍ୟ ସାହିତ୍ୟକୁ ନୂତନ ଦିଗଦର୍ଶନ ଦେଇଥିଲେ । ଓଡ଼ିଶାର ପୁରପଲ୍ଲୀରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରସାରରେ ତାଙ୍କର ଜାତୀୟ କବିତାର ଅବଦାନ ଅତୁଳନୀୟ । ଉତ୍କଳମଣି ଗୋପବନ୍ଧୁଙ୍କ ଗଦ୍ୟ ଓ ପଦ୍ୟଗୁଡ଼ିକ ଓଡ଼ିଆ ସାହିତ୍ୟର ପରମ ସଂପଦ ହୋଇ ରହିଥିବ । ଗୋପବନ୍ଧୁ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ସେ ମାତ୍ର ୨୮ ବର୍ଷ ବୟସରେ ତାଙ୍କର ସହଧର୍ମଣୀଙ୍କୁ ହରାଇଥିଲେ ମାତ୍ର ଆଉ ବିବାହ କରି ନଥିଲେ । ୪ ଟି ସନ୍ତାନର ସେ ପିତା ଥିଲେ ମାତ୍ର ଦୁଇଟି କନ୍ୟା ଜୀବିତ ରହିଥିଲେ । ୧୯୨୮ ମସିହା ଜୁନ ୧୭ ତାରିଖରେ ଉତ୍କଳମଣି ଗୋପବନ୍ଧୁ ଓଡ଼ିଶାବାସୀଙ୍କୁ ଛାଡ଼ି ଚାଲିଯାଇଥିଲେ । ସେଦିନ ଥିଲା ଓଡ଼ିଶାବାସୀଙ୍କ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ନେତ୍ରୋତ୍ସବ ।

ଉତ୍କଳମଣି ଗୋପବନ୍ଧୁ ତାଙ୍କ ଶେଷ ଉଇଲରେ ସତ୍ୟବାଦୀ ପ୍ରେସ ଓ ସମାଜ ସମ୍ବାଦପତ୍ରକୁ ଲୋକ ସେବକ ମଣ୍ଡଳୀକୁ ଦାନ କରି ଦେଇ ଲେଖିଥିଲେ ଯେ ଏହି ଅନୁଷ୍ଠାନରୁ ଯେଉଁ ଆୟ ହେବ, ତାକୁ ଲୋକ ସେବକ ମଣ୍ଡଳ ଓଡ଼ିଶାର ସାମାଜିକ, ରାଜନୈତିକ ଓ ଶିକ୍ଷା ବିକାଶ ନିମନ୍ତେ ଖର୍ଚ୍ଚ କରିବେ ।

୧୧ମ, ବାପୁଜୀ ନଗର
ଭୁବନେଶ୍ୱର

# ଜନନାୟକ ଡ଼ଃ ହରେକୃଷ୍ଣ ମହତାବ



ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ, ଐତିହାସିକ ଓ ଜନନାୟକ ଡ଼ଃ ହରେକୃଷ୍ଣ ମହତାବଙ୍କ ଜନ୍ମ ବାଲେଶ୍ୱର ଜିଲ୍ଲାର ଅଗରପଡ଼ା ଗ୍ରାମରେ ୧୮୯୯ ମସିହାରେ । ପିତାଙ୍କ ନାମ କୃଷ୍ଣଚନ୍ଦ୍ର ଦାସ । ତାଙ୍କ ପିତାମହ ଜଗନ୍ନାଥ ମହତାବ ତାଙ୍କୁ ପୋଷ୍ୟପୁତ୍ର କରି ନେଇ ଥିବାରୁ ସେ ମହତାବ ନାମରେ ପରିଚିତ ହେଲେ । ତାଙ୍କ ପିତା ସେତେବେଳର ଜଣେ ବଡ଼ ଜମିଦାର ଥିଲେ । ତାଙ୍କର ପ୍ରଚୁର ଜମିବାଡ଼ି ଥିଲା । ତେଣୁ ହରେକୃଷ୍ଣ ମହତାବ ପିଲାଦିନୁ ପ୍ରାଚୁର୍ଯ୍ୟ ଭିତରେ ଲାଳିତ ପାଳିତ ହୋଇଥିଲେ । ଉତ୍କୃଷ୍ଟ ଶିକ୍ଷାପାଇବା ଓ ଆଦର୍ଶ ଜୀବନ ଗଠନ ପାଇଁ ପିଲାଦିନୁ ତାଙ୍କ ପିତା ଉପଯୁକ୍ତ ବ୍ୟବସ୍ଥା କରିଥିଲେ । ସେ ଭଦ୍ରକ ହାଇସ୍କୁଲରେ ମାଟ୍ରିକୁଲେସନ ଅଧ୍ୟୟନ କଲାବେଳେ ତାଙ୍କ ଭିତରେ ଦେଶପ୍ରେମ ଜାଗ୍ରତ ହୋଇଥିଲା । ସେତିକିବେଳେ ଯତିନ ମୁଖାର୍ଜି (ବାଘାଯତିନ) ବ୍ରିଟିଶ ସୈନ୍ୟଙ୍କ ସହ ଯୁଦ୍ଧ କରିଥିବା ଖବର ତାଙ୍କ ମନରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସେତେବେଳେ ଉତ୍କଳ ସମ୍ମିଳନୀର ପ୍ରଚାରକ ଅନନ୍ତ ମିଶ୍ର ଭଦ୍ରକ ଯାଇ ସ୍କୁଲରେ ସଭା କରିଥିଲେ ଓ ସେ ତାଙ୍କୁ ନେଇ ତାଙ୍କ ଗାଁରେ ମଧ୍ୟ ସଭା କରାଇଥିଲେ । ୧୯୧୭ ମସିହାରେ ତାଙ୍କୁ ମାତ୍ର ୧୮ ବର୍ଷ ହୋଇଥିଲା ବେଳେ ଶ୍ରୀମତୀ ସୁଭଦ୍ରା ଦେବୀଙ୍କ ସହ ତାଙ୍କର ବିବାହ ହୋଇଥିଲା । ତାଙ୍କ ପିତାମାତା ଭାବିଥିଲେ ଯେ ବିଭା କରିଦେଲେ ଜମିଦାରୀ ସିରସ୍ତା କାମରେ ତାଙ୍କ ମନ ଲାଗିଯିବ ।

୧୯୧୮ ମସିହାରେ ସେ ରେଭେନ୍ସା କଲେଜରେ ନାମ ଲେଖାଇଲେ । କଲେଜରେ ପଢ଼ିଲାବେଳେ ନବକୃଷ୍ଣ ଚୌଧୁରୀ ତାଙ୍କର ସହପାଠି ଥିଲେ । ସେହି ସମୟରେ ସ୍ୱନାମଧନ୍ୟ ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସଂସ୍ପର୍ଶରେ ସେ ଆସିଥିଲେ । କଟକର ବାଖରାବାଦଠାରେ 'ଭାରତୀ ମନ୍ଦିର' ବୋଲି ଗୋଟିଏ ପାଠାଗାର ଓ ଆଲୋଚନାଚକ୍ର ସ୍ଥାପନ କରାଯାଇଥିଲା । ସେଠାରେ ଭାରତର ବିଭିନ୍ନ ଅଞ୍ଚଳରୁ ଖବର କାଗଜ ଓ ସାମୟିକ ପତ୍ରିକାମାନ ରଖାଯାଇଥିଲା । ସେ ନିୟମିତ ଭାବରେ ସେଠାକୁ ଯାଇ ପଢ଼ୁ ଥିଲେ ଓ ଆଲୋଚନାରେ ଯୋଗ ଦେଉଥିଲେ । ଜାଲିଆନାବାଗ ହତ୍ୟାକାଣ୍ଡ ପରେ ମହାତ୍ମାଗାନ୍ଧୀ ବ୍ରିଟିଶ ଶାସନ ସହିତ ଅସହଯୋଗ ଆନ୍ଦୋଳନ ପାଇଁ ଦେଶବାସୀଙ୍କୁ ପ୍ରସ୍ତୁତ କରୁଥାନ୍ତି । ୧୯୨୦ ମସିହାରେ କଲିକତାଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ ଅଧିବେଶନରେ ଏହି ଅସହଯୋଗ ଆନ୍ଦୋଳନର ସେ ସୂଚନା ଦେଇଥିଲେ । ଅନ୍ୟାନ୍ୟ କଂଗ୍ରେସ ପ୍ରତିନିଧିଙ୍କ ସଙ୍ଗେ ମହତାବବାବୁ ଏହି ଅଧିବେଶନରେ ଯୋଗ ଦେଇଥିଲେ । ସେତେବେଳେ ମହାତ୍ମାଗାନ୍ଧୀ କଲେଜ ଛାତ୍ରମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ ଆହ୍ୱାନ କଲେ । ଏହାପରେ ଯୁବକ ମହତାବଙ୍କର ପଢ଼ାରେ ମନ ଲାଗିଲା ନାହିଁ । ୧୯୨୧ ରେ ବି.ଏ. ପରୀକ୍ଷା ଦେବାକୁ ଅଳ୍ପ ଦିନ ଥିଲା ବେଳେ ସେ ରେଭେନ୍ସା କଲେଜରୁ ପଢ଼ା ଛାଡ଼ି ଦେଇଥିଲେ ।

କଲେଜ ପଢ଼ା ଛାଡ଼ିବା ପରେ ମହତାବବାବୁ ପୁରାପୁରି ସାଧାରଣ ଜୀବନରେ ପ୍ରବେଶ କଲେ । ଘର ଛାଡ଼ିଲେ, ଗାର୍ହସ୍ଥ ଜୀବନକୁ ଜଳାଞ୍ଜଳି ଦେଇ ମହାତ୍ମାଗାନ୍ଧୀଙ୍କ ନୀତି ଓ ଆଦର୍ଶ ଅନୁସରଣରେ ସରଳ ଜୀବନ ଯାପନ କରି ସ୍ୱାଧୀନତା ସଂଗ୍ରାମର କାର୍ଯ୍ୟକ୍ରମରେ ଲାଗିଲେ । ୧୯୨୧ ରେ ମହାତ୍ମାଗାନ୍ଧୀ ଓଡ଼ିଶା ଗସ୍ତରେ ଆସି ଭଦ୍ରକ, କଟକ, ପୁରୀ ଓ ବ୍ରହ୍ମପୁର ପରିଦର୍ଶନ କରିଥିଲେ । ମହତାବବାବୁ ଏହି ଗସ୍ତରେ ତାଙ୍କ ସହିତ ରହିଥିଲେ । ଭଦ୍ରକଠାରେ ଗାନ୍ଧିଜୀଙ୍କ ରହିବା ଓ ସଭା ଆୟୋଜନ କରିବାର ଦାୟିତ୍ୱ ତାଙ୍କ ଉପରେ ପଡ଼ିଥିଲା । ଗାନ୍ଧିଜୀ ଶେଷରେ ଯେଉଁ ଉପଦେଶଟି ଦେଇଥିଲେ ତାକୁ ସେ ଜୀବନ ସାରା ମନେ ରଖିଥିଲେ । ଗାନ୍ଧିଜୀ କର୍ମୀଙ୍କ ସଭାରେ କହିଥିଲେ, ''ଅନେକ ଗୁଡ଼ିଏ ବିଷୟ ଭାବ ନାହିଁ । ଗୋଟିଏ କଥା ଭାବ ଓ ତାକୁ କାର୍ଯ୍ୟରେ ପରିଣତ କର ।'' ଏହି ସମୟରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଗଢ଼ା ହୋଇ ବିଭିନ୍ନ କଂଗ୍ରେସ କର୍ମୀଙ୍କୁ ଭିନ୍ନ ଭିନ୍ନ ଜିଲ୍ଲାର ଦାୟିତ୍ୱ ଦିଆଗଲା । ବାଲେଶ୍ୱର ଜିଲ୍ଲାର ଦାୟିତ୍ୱ ସେ ଗ୍ରହଣ କରିଥିଲେ । ବାଲେଶ୍ୱରର ପରମିଟ୍ କୋଠିଠାରେ ୧୯୨୧ ଅପ୍ରେଲ ୧୩ ତାରିଖରେ ଅନୁଷ୍ଠିତ ସଭାରେ ସେ ପ୍ରଥମେ ବକ୍ତୃତା ଦେଇଥିଲେ । ରାଓଲାଟ ଆଇନର ପ୍ରତିବାଦରେ ମହାତ୍ମାଗାନ୍ଧୀ ପ୍ରଥମେ ସେଦିନ ସତ୍ୟାଗ୍ରହ ଘୋଷଣା କରିଥାନ୍ତି । ଏହାପରେ ସମସ୍ତ ବାଲେଶ୍ୱର

ଜିଲା ବୁଲି ସେ କଂଗ୍ରେସ ସଂଗଠନରେ ମନୋନିବେଶ କଲେ । ସେ ସେତେବେଳେ ଘୋଷଣା କରିଥିଲେ - " ମୋ ଜମିଦାରୀରେ ଆଇନ ଅନୁସାରେ ମୁଁ ମାଲିକ । ଯଦି ତିଳକ ପାଣ୍ଠିରେ କୋଟିଏ ଟଙ୍କା ନ ହୋଇ ପାରିବ, ତାହେଲେ ମୁଁ ତାକୁ ତିଳକ ପାଣ୍ଠିକୁ ଦେଇଦେବି ।"

ସେ ଜିଲ୍ଲାର ଚାରିଆଡ଼େ ବୁଲି କଂଗ୍ରେସ ସଭ୍ୟ ସଂଗ୍ରହ କଲେ । ତିଳକ ପାଣ୍ଠି ପାଇଁ ଅର୍ଥ ସଂଗ୍ରହ କଲେ ଓ ଅରଟ ପ୍ରଚାରରେ ଲାଗିଲେ । ସେତେବେଳେ ଚାରିଆଡ଼େ ପାଣିର ଅଭାବ, ଖାଇବା ଓ ରହିବାର ଠିକ୍ ନଥାଏ । ସବୁ ଅସୁବିଧା ଭିତରେ ସେ କଂଗ୍ରେସର ବାର୍ତ୍ତା ପ୍ରଚାର କରି ଚାଲି ଥିଲେ । ଘର ଘର ବୁଲି ତାଙ୍କ ନେତୃତ୍ୱରେ ପ୍ରଚାର ଚାଲିଥିଲା । ଜାତୀୟ ସଂଗୀତ ଗାନ କରିବା ପାଇଁ ଓ କୀର୍ତ୍ତନ କରିଆରେ ପ୍ରଚାର ପାଇଁ ଦଳମାନ ଗଠନ କରାଯାଇଥିଲା । ସେତେବେଳେ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ଉନ୍ମାଦନାମୟୀ ଜାତୀୟ ସଂଗୀତ ପୁରପଲ୍ଲୀରେ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲା । ସେପ୍ଟେମ୍ବର ମାସରେ ବିଦେଶୀ ବସ୍ତ୍ର ବର୍ଜନ ଉପରେ ଜୋର ଦିଆ ଯିବା ବେଳେ ଯୁବକ ମହତାବଙ୍କ ନେତୃତ୍ୱରେ ବାଲେଶ୍ୱର ଜିଲ୍ଲା ଭିତରକୁ ଅନ୍ତତଃ ଛ ମାସ ପର୍ଯ୍ୟନ୍ତ ବିଲାତି ଲୁଗା ପଶି ପାରିନଥିଲା । ପ୍ରତ୍ୟେକ ରେଲଷ୍ଟେସନରେ କଂଗ୍ରେସ କର୍ମୀମାନେ ପିକେଟିଂ କରିଥିଲେ । ସେତେବେଳେ ବାଲେଶ୍ୱର ଜିଲ୍ଲାରେ ଅନେକ ସ୍ଥାନରେ କଂଗ୍ରେସ ପକ୍ଷରୁ ଗ୍ରାମର ବିବାଦ ସମାଧାନ ପାଇଁ ଗ୍ରାମ ପଞ୍ଚାୟତମାନ ସ୍ଥାପନ କରାଯାଇଥିଲା ଓ ଏହି ନିଷ୍ପତ୍ତିରେ ଅସନ୍ତୁଷ୍ଟ ହେଲେ ଜିଲା ସ୍ତରରେ ଅପିଲ ପାଇଁ ଜିଲାସ୍ତରରେ ଗୋଟିଏ ପଞ୍ଚାୟତ ଗଠିତ ହୋଇଥିଲା ଓ ଏହାର ମୁଖ୍ୟ ଥିଲେ ନିଜେ ମହତାବବାବୁ ।

୧୯୨୨ ମସିହାରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟ ଚାଲି ଥିବା ବେଳେ କଟକ, ବାଲେଶ୍ୱର ତଥା ଅନ୍ୟ ସ୍ଥାନରେ ହଠାତ୍ ନିଆଁ ଲାଗି ଘରପୋଡ଼ି ବ୍ୟାପିଲା । ଏଥିରେ ଲୋକେ ଆତଙ୍କିତ ହୋଇ ପଡ଼ିଥିଲେ । ଲୋକେ ରାତି ଅନିଦ୍ରା ହୋଇ ବସି ରହୁଥିଲେ । ଏସବୁ ପୋଲିସ କରୁଛି ଏବଂ କଂଗ୍ରେସକୁ ବଦନାମ କରିବା ପାଇଁ ଏହା କରାଯାଉଛି ବୋଲି ଲୋକେ ସନ୍ଦେହ କରୁଥିଲେ । ମହତାବବାବୁ ସେତେବେଳର ଜିଲ୍ଲା କଲେକ୍ଟର ଓ ପୋଲିସ ଏସ.ପି.ଙ୍କ ସହିତ ଆଲୋଚନା କରି ଘରପୋଡ଼ି ବନ୍ଦ କରିବା ପାଇଁ ପଦକ୍ଷେପ ନେଇଥିଲେ । ଏହି ସମୟରେ କନିକାର ପ୍ରଜାମାନଙ୍କ ଉପରେ କନିକା ରାଜା ବହୁ ପ୍ରକାର କର ଆଦାୟ କରୁ ଥିବାରୁ ଓ ନିଜେ ନୂଆ ବନ୍ଦୋବସ୍ତ କରିବା ପାଇଁ ଜିଦ୍ ଧରିବାରୁ ଲୋକେ ତା ବିରୁଦ୍ଧରେ ତୀବ୍ର ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନ ଯୋଗୁଁ ରାଜାଙ୍କ ପୋଲିସ ଲୋକଙ୍କ ଉପରେ ଅମାନୁଷିକ ଜୁଲମ ଓ ଅତ୍ୟାଚାର କରିଥିଲେ । ସେତେବେଳେ ମହତାବବାବୁ ପୋଲିସ କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନା କରି ଏହି ଜୁଲମ ଓ ଅତ୍ୟାଚାର ବନ୍ଦ କରିବା ପାଇଁ ଉଦ୍ୟମ କରିଥିଲେ । କଂଗ୍ରେସ ଅନୁଷ୍ଠାନର ସଭାପତି ଉତ୍କଳମଣି ଗୋପବନ୍ଧୁ ଦାସ ଓ ସଂପାଦକ ଭାଗୀରଥି ମହାପାତ୍ର କନିକା ଅତ୍ୟାଚାର ବିଷୟରେ ଅନୁସନ୍ଧାନ କରିବାକୁ ଯାଇ ଭଦ୍ରକ ଷ୍ଟେସନ ପାଖରେ ସଭା କରିଥିଲେ । ଏହି ସଭା ପରେ ଗୋପବନ୍ଧୁ ଓ ଭାଗୀରଥି ବାବୁଙ୍କୁ ସରକାର ଗିରଫ କଲେ ଓ ସେମାନେ କାରାବରଣ କଲେ । ମହତାବବାବୁ ଓ ସ୍ୱାଧୀନତା ସଂଗ୍ରାମୀ ନିରଞ୍ଜନ ପଟ୍ଟନାୟକ ଲକ୍ଷ୍ନୌ ଯାଇ ସେତେବେଳର ତୁଙ୍ଗ କଂଗ୍ରେସ ନେତା ମଦନମୋହନ ମାଲବ୍ୟଙ୍କୁ କନିକା ଅତ୍ୟାଚାର କଥା ଜଣାଇ ଦେଇଥିଲେ । ତାଙ୍କର ରାଜଦ୍ରୋହମୂଳକ ଲେଖା ଓ ବକ୍ତୃତା ପାଇଁ ମହତାବବାବୁ ଗିରଫ ହୋଇ ପୁଣି କାରାବରଣ କରିଥିଲେ ।

କଟକରେ ଥିବାବେଳେ ମହତାବ ବାବୁ ୧୯୨୩ ରେ ପ୍ରଜାତନ୍ତ୍ର ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ସେଠାରୁ ସେ ପ୍ରଜାତନ୍ତ୍ର ବାଲେଶ୍ୱରକୁ ଉଠାଇ ଆଣି ସ୍ୱତନ୍ତ୍ର ପ୍ରେସ ସ୍ଥାପନ କରି ସେଠାରୁ ପ୍ରକାଶ କଲେ । ଏହି ପତ୍ରିକାଟି ସାହାଯ୍ୟରେ ସେ କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରାଇଥିଲେ । ଏହା ଫଳରେ କର୍ମୀମାନଙ୍କ ଭିତରେ ଉତ୍ସାହ ଖେଳି ଯାଇଥିଲା । ବାଲେଶ୍ୱରରେ "ସ୍ୱରାଜ୍ୟ ମନ୍ଦିର" ପ୍ରତିଷ୍ଠା କରି ସେଥିରେ ସୂତାକଟା ଓ ଲୁଗାବୁଣା ସେ ଲୋକଙ୍କୁ ଶିଖାଉଥିଲେ । ସେତେବେଳେ ବହୁ ଆର୍ଥିକ ଅଭାବ ଭିତରେ ସେ ଏସବୁ କାର୍ଯ୍ୟ କରୁଥିଲେ । ୧୯୨୩ ବେଳକୁ ଜେଲରେ ଥାଇ ମଧ୍ୟ ଜେଲ ଭିତରୁ ଲୁଚାଇ ପ୍ରଜାତନ୍ତ୍ର ପାଇଁ ଲେଖା ପଠାଉଥିଲେ । ଜେଲରୁ ଖଲାସ ହେବା ପରେ କଂଗ୍ରେସ ସ୍ୱାୟତ୍ତ ଶାସନ ଅନୁଷ୍ଠାନରେ ଯୋଗ ଦେବା ପାଇଁ ନିଷ୍ପତ୍ତି କଲେ । ଏହି ନିଷ୍ପତ୍ତି ଅନୁସାରେ ସେ ବାଲେଶ୍ୱର ଜିଲ୍ଲାବୋର୍ଡ଼ ଚେୟାରମେନ ନିର୍ବାଚିତ ହୋଇଥିଲେ । ଜିଲ୍ଲାବୋର୍ଡ଼ ଚେୟାରମେନ ଭାବରେ ସେ ସମଗ୍ର ଜିଲ୍ଲାରେ ପ୍ରାଥମିକ ଶିକ୍ଷାର ପ୍ରସାର, ପାନୀୟ ଜଳ ଯୋଗାଇବା ତଥା ପରିମଳ ବ୍ୟବସ୍ଥାରେ ସେ ମନୋନିବେଶ କରିଥିଲେ । ଏଥିପାଇଁ ଦିନକୁ ୧୬/୧୭ ଘଣ୍ଟା ପରିଶ୍ରମ କରୁଥିଲେ । ସେହି ସମୟରେ ସେ ମଧ୍ୟ ଭଦ୍ରକ ନିର୍ବାଚନ ମଣ୍ଡଳିରୁ ବିହାର-ଓଡ଼ିଶା ବ୍ୟବସ୍ଥା ପରିଷଦକୁ ନିର୍ବାଚିତ ହୋଇଥିଲେ । ୧୯୨୭ ମସିହାରେ ବାଲେଶ୍ୱରରେ ପ୍ରବଳ ବନ୍ୟା ହେଲା । ସେ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସାହାଯ୍ୟ କାର୍ଯ୍ୟରେ ଲାଗିଥିଲେ ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଦେଶରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ଭାରତର ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା ଛଡ଼ା ଏପ୍ରିଲ ମାସରେ ଲବଣ ସତ୍ୟାଗ୍ରହ ଯେତେବେଳେ ଗାନ୍ଧିଜୀ ଘୋଷଣା କଲେ, ହରେକୃଷ୍ଣ ମହତାବ ଅତ୍ୟନ୍ତ ଉତ୍ସାହର ସହିତ ବାଲେଶ୍ୱର ଉପକୂଳ ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ସଂଗଠନରେ ଲାଗିଥିଲେ । ଏହି ସତ୍ୟାଗ୍ରହରେ ଓଡ଼ିଶାର ଚାରିଆଡ଼ୁ ସତ୍ୟାଗ୍ରହୀମାନେ ଆସି ଲୁଣମାରି କାରାବରଣ କରିଥିଲେ । ଶହ ଶହ ସଂଖ୍ୟାରେ ନାରୀକର୍ମୀ ଏଥିରେ ଯୋଗଦେଇଥିଲେ । ଏହି ସମୟରେ ସେ 'ପ୍ରଜାତନ୍ତ୍ର'କୁ ଦୈନିକ ପତ୍ରିକା ଆକାରରେ ପ୍ରକାଶ କରି ଲୋକଙ୍କ ନିକଟରେ ସତ୍ୟାଗ୍ରହ ବାର୍ତ୍ତା ପହଞ୍ଚାଉଥିଲେ । ଏଥିପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । କ୍ରମଶଃ ବାଲେଶ୍ୱରର ସମଗ୍ର ଉପକୂଳ, କୁଜଙ୍ଗ ତଥା ପୁରୀ ଓ ବ୍ରହ୍ମପୁର ସମୁଦ୍ର ଉପକୂଳରେ ଲୁଣମରା ଚାଲିଥିଲା । ସମଗ୍ର ଦେଶରେ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଲବଣ ସତ୍ୟାଗ୍ରହ ପରେ ଚୌକିଦାରିଟିକସ ବନ୍ଦ ଆନ୍ଦୋଳନ ଚାଲିଲା ଓ ଶ୍ରୀଜଙ୍ଗରେ ପୋଲିସ ଅତ୍ୟାଚାର ବିରୁଦ୍ଧରେ ଆଇନ ଅମାନ୍ୟ ଚାଲିଥିଲା । ଏପ୍ରିଲ ୧୬ ତାରିଖରେ ମହତାବବାବୁ ଗିରଫ ହୋଇ ଏକବର୍ଷ କାରାଦଣ୍ଡ

ଯୋଗ କରିଥିଲେ । ସେତେବେଳକୁ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୁଭଦ୍ରା ମହତାବ ଓ ତାଙ୍କ ଭଉଣୀ ମଇନା ବିବି ଦୁଇଥର କାରାବରଣ କରି ସାରିଥିଲେ । ଜେଲରେ ଥିବା ସମୟରେ ସେ ବହୁ ଜାତୀୟ କବିତା ଓ ଗୋଟିଏ ନାଟକ ଲେଖିଥିଲେ ଓ ପରେ ତାହା ''ବେଢ଼ିର ଝନ ଝନ'' ଓ ''ନିଗଡ଼ ନିସ୍ୱନ'' ନାମରେ ପ୍ରକାଶିତ ହୋଇଥିଲା ।

୧୯୩୧ ମସିହାରେ ମହତାବବାବୁ ଜେଲରୁ ଖଲାସ ହୋଇ ଆସିବା ପରେ ୧୯୩୨ ମସିହାରେ କଂଗ୍ରେସର ବାର୍ଷିକ ଅଧିବେଶନ ଓଡ଼ିଶାରେ ଅନୁଷ୍ଠିତ ହେବ ବୋଲି ନିଷ୍ପତ୍ତି କରାଗଲା । ଏହି ଉଦ୍ଦେଶ୍ୟରେ ଯେଉଁ ଅଭ୍ୟର୍ଥନା ସମିତି ଗଠିତ ହେଲା; ସେଥିରେ ମହତାବବାବୁ ସ୍ୱେଚ୍ଛାସେବକ ବାହିନୀର ଅଧ୍ୟକ୍ଷ ନିଯୁକ୍ତ ହେଲେ । ଓଡ଼ିଶାବାସୀଙ୍କ ଭିତରେ କଂଗ୍ରେସ ଅଧିବେଶନ ପାଇଁ ଉତ୍ସାହ ସୃଷ୍ଟି ହୋଇଥିଲା । ସେହି ସମୟରେ ସେ ବାଲେଶ୍ୱରଠାରେ ''ଗାନ୍ଧୀକର୍ମ ମନ୍ଦିର'' ସ୍ଥାପନ କରି କର୍ମୀମାନଙ୍କୁ ଖଦି କାମରେ ତାଲିମ ଦେବା ପାଇଁ ବ୍ୟବସ୍ଥା କରିଥିଲେ । ଶ୍ରୀଜଙ୍ଗ ବନ୍ଦୀମାନଙ୍କୁ ଖଲାସ କରିବା ପାଇଁ ସେ ସେତେବେଳେ ଉଦ୍ୟମ କରିଥିଲେ । ମହାତ୍ମାଗାନ୍ଧୀ ଦ୍ୱିତୀୟ ଗୋଲଟେବୁଲ ବୈଠକରୁ ନିରାଶ ହୋଇ ଫେରିବା ପରେ ପୁଣି ଅମାନ୍ୟ ଆନ୍ଦୋଳନ ଚାଲିଲା ଓ ଅନ୍ୟ କର୍ମୀଙ୍କ ସହିତ ମହତାବବାବୁ ଗିରଫ ହୋଇ ହଜାରୀବାଗ ଜେଲରେ ଛମାସ ରହିଥିଲେ । ତାଙ୍କ ପରେ ତାଙ୍କ ସ୍ତ୍ରୀ ସୁଭଦ୍ରା ଦେବୀ ମଧ୍ୟ ଗିରଫ ହୋଇ ସେହି ଜେଲରେ ଆସି ପହଞ୍ଚିଥିଲେ । ଜେଲ ଭିତରେ ସେ ତାଙ୍କ ପିତାଙ୍କ ମୃତ୍ୟୁ ସମ୍ବାଦ ପାଇଥିଲେ ।

ଛମାସ ପରେ ଜେଲରୁ ଖଲାସ ହୋଇ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟରେ ନିଷ୍ଠାର ସହିତ ଲାଗିଲେ । ଅସ୍ପୃଶ୍ୟତା ଓ ଜାତିଭେଦ ଉଚ୍ଛେଦର ଦୃଷ୍ଟାନ୍ତ ଦେଖାଇବା ପାଇଁ ନିଜେ ତାଙ୍କ ପଇତାକୁ କାଢ଼ି ପୋପାଡ଼ି ଦେଇଥିଲେ । ତାଙ୍କ ଘର ମନ୍ଦିରରେ ହରିଜନ ପ୍ରବେଶ କରାଇ ଥିଲେ ଓ ଘରେ ହରିଜନ ଚାକର ରଖିଥିଲେ । ସେ ଅଗରପଡ଼ାଠାରେ ରଚନାତ୍ମକ କାମର ପ୍ରସାର ନିମନ୍ତେ କର୍ମ ମନ୍ଦିର ସ୍ଥାପନକରି ଖଦିକାମ ଚାଲୁ କରିଥିଲେ । ସେତିକିବେଳେ ସେ 'ପ୍ରଜାତନ୍ତ୍ର' ବନ୍ଦ କରି ଦେବାକୁ ବାଧ୍ୟ ହେଲେ । ୧୯୩୭ ପର୍ଯ୍ୟନ୍ତ ସେ କର୍ମ ମନ୍ଦିର କାର୍ଯ୍ୟରେ ମନୋନିବେଶ କରିଥିଲେ । ସାହି ସାହି ବୁଲି ଲୋକଙ୍କୁ ସୂତାକଟା ଶିଖାଇବା, ଗ୍ରାମ ସଫେଇ ଓ ହରିଜନଙ୍କ ଭିତରେ କାମ କରିଥିଲେ । ଅଗରପଡ଼ାରେ ଗୋଟିଏ ଚିକିତ୍ସାଳୟ ଖୋଲାଇଥିଲେ । ୧୯୩୪ ମସିହାରେ ମହାତ୍ମାଗାନ୍ଧୀ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ହରିଜନ ପଦଯାତ୍ରା କଲା ବେଳେ ସେ ତାଙ୍କ ସାଙ୍ଗରେ ରହିଥିଲେ । ଭଦ୍ରକଠାରେ ଗାନ୍ଧିଜୀ ତାଙ୍କ ଘରେ ରହିଥିଲେ ଓ ସେଠାରେ ଗାନ୍ଧିଜୀଙ୍କ ସଭାର ବ୍ୟବସ୍ଥା ସେ କରାଇ ଥିଲେ । ୧୯୩୪ ମସିହାରେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାରେ ଯେଉଁ କୃଷକ ଆନ୍ଦୋଳନ ଆରମ୍ଭ ହେଲା, ସେଥିରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ ଓ ବିଭିନ୍ନ ଅଞ୍ଚଳରେ କୃଷକ ସମାବେଶରେ ସେ ସଭାପତି ହୋଇଥିଲେ । ତାଙ୍କ ପ୍ରଣୀତ 'ଦଶବର୍ଷର ଓଡ଼ିଶା' ଏହି ସମୟରେ ପ୍ରକାଶିତ ହୋଇଥିଲା ।

୧୯୩୭ ମସିହାରେ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ୧୯୩୭ - ୩୮ ମସିହାରେ ଜନନାୟକ ମହତାବ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହୋଇଥିଲେ । ତାଙ୍କ ପ୍ରତିଷ୍ଠିତ କର୍ମମନ୍ଦିରକୁ କେନ୍ଦ୍ରକରି ସେ ସମାଜ ସଂସ୍କାର ପାଇଁ ସେତେବେଳେ ତାଙ୍କ ପରିକଳ୍ପନାର କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ତାଙ୍କ ପ୍ରଣୀତ ''ନୂତନଧର୍ମ'' ଉପନ୍ୟାସରେ ସେ ତାହା ବର୍ଣ୍ଣନା କରିଥିଲେ । ସେହି ବର୍ଷ ପୂର୍ବତନ ଗଡ଼ଜାତ ଢେଙ୍କାନାଳ, ତାଳଚେର, ରଣପୁର ଓ ନୀଳଗିରିରେ ପ୍ରଜାମଣ୍ଡଳ କରିଆରେ ରାଜୁଡ଼ା ଶାସନରେ ପ୍ରଜାଙ୍କ ଉପରେ ଜୁଲମ, ଅତ୍ୟାଚାର ଓ ବେଆଇନ କର ଟିକସ ଧାର୍ଯ୍ୟ ବିରୁଦ୍ଧରେ ଆନ୍ଦୋଳନ ତୀବ୍ର ଆକାର ଧାରଣ କଲା ଏବଂ ସେ ଏହି ଆନ୍ଦୋଳନ ସହିତ ସକ୍ରିୟ ଭାବରେ ସଂପୃକ୍ତ ହେଲେ । ସେ ରାଜା ଓ ପ୍ରଜାଙ୍କ ଭିତରେ ପ୍ରଥମେ ଆପୋଷ ମିଳାମିଶା କରି ଶାନ୍ତି ପ୍ରତିଷ୍ଠା କରିବାକୁ ଚାହିଁଥିଲେ ଓ ଏ ସଂପର୍କରେ ଗାନ୍ଧିଜୀଙ୍କ ସହିତ ପରାମର୍ଶ କରୁଥିଲେ ମାତ୍ର ସେ ପ୍ରଜା ଆନ୍ଦୋଳନକୁ ଭଣ୍ଡୁର କରୁଛନ୍ତି ବୋଲି କେତେକ ପ୍ରଜାମଣ୍ଡଳ ନେତା ତାଙ୍କ ବିରୁଦ୍ଧରେ ଅଭିଯୋଗ କରୁଥିଲେ । ୧୯୩୮ ରେ ସେ ବର୍ଷର ନିର୍ବାଚିତ କଂଗ୍ରେସ ସଭାପତି ନେତାଜୀ ସୁଭାଷ ବୋଷ ମହତାବବାବୁଙ୍କୁ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ମନୋନୀତ କରିଥିଲେ । ସେ ଥିଲେ କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ଓଡ଼ିଶାର ସର୍ବପ୍ରଥମ ମନୋନୀତ ସଭ୍ୟ । ସେବର୍ଷ ତାଙ୍କ ଅଧ୍ୟକ୍ଷତାରେ ଗଡ଼ଜାତ ଅନୁସନ୍ଧାନ କମିଟି ନିଯୁକ୍ତ ହେଲା । ୧୯୩୯ ମସିହାରେ ଏହି କମିଟି ରିପୋର୍ଟ ଦେଲେ । କମିଟି ତାଙ୍କ ରିପୋର୍ଟରେ ଗଡ଼ଜାତମାନଙ୍କରେ ରାଜୁଡ଼ା ଶାସନରେ ପ୍ରଜାଙ୍କ ଉପରେ ଯେଉଁ ଅମାନୁଷିକ ଅତ୍ୟାଚାର ହେଉଛି, ତାହା ବର୍ଣ୍ଣନା କରି ଏହି ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶ୍ରଣ ପାଇଁ ସୁପାରିଶ କରିଥିଲେ ।

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ପରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ଜାତୀୟ କଂଗ୍ରେସ ପକ୍ଷରୁ ୧୯୪୦ ରେ ଯୁଦ୍ଧ ବିରୁଦ୍ଧରେ ଧ୍ୱନି ଦେଇ ଯେଉଁ ବ୍ୟକ୍ତିଗତ ବା ଧାଣୀ ସତ୍ୟାଗ୍ରହ ହେଲା, ସେଥିରେ ଯୋଗ ଦେଇ ମହତାବବାବୁ ରେମୁଣା ଠାରେ ଏକ ସଭାର ଆୟୋଜନ କରିଥିଲେ । ସେଠାରୁ ଗିରଫ ହୋଇ ବ୍ରହ୍ମପୁର ଜେଲରେ ଏକବର୍ଷ ରହିଥିଲେ । ଶେଷରେ ବମ୍ବେଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଯୋଗ ଦେଲେ ଓ ସେଠାରେ ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେବାପରେ କଂଗ୍ରେସର ତୁଙ୍ଗ ନେତାମାନଙ୍କ ସହିତ ଗିରଫ ହୋଇ ଅହମଦ ନଗର ଫୋର୍ଟ ଜେଲରେ ତିନିବର୍ଷ ପର୍ଯ୍ୟନ୍ତ ଅଟକବନ୍ଦୀ ହୋଇ ରହିଥିଲେ । ଏହି ଜେଲରେ ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ ପ୍ରମୁଖଙ୍କ ସହିତ ସେ ରହିଥିଲେ ।

୧୯୪୫ ମସିହା ଅଗଷ୍ଟ ମାସରେ ସେ ଅହମଦ ନଗର ଫୋର୍ଟ ଜେଲରୁ ଖଲାସ ହୋଇ ଆସିଲେ । ତାପରେ ୧୯୪୬ ମସିହାରେ ଓଡ଼ିଶାରେ ନିର୍ବାଚନ ହେଲା ଓ ସେ ଅପ୍ରେଲ ମାସରେ ଓଡ଼ିଶାର

ପ୍ରଧାନମନ୍ତ୍ରୀ ରୂପେ ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ ବୋଲି କୁହାଯାଉଥିଲା । ଜନନାୟକ ମହତାବ ୧୯୫୦ ମଇ ମାସ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟ ଭିତରେ ଗଡ଼ଜାତଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ, ହୀରାକୁଦ ବନ୍ଧର ଭିତ୍ତି ସ୍ଥାପନ ଓ ଭୁବନେଶ୍ୱରଠାରେ ରାଜଧାନୀ ନିର୍ମାଣ ପାଇଁ ନିଷ୍ପତ୍ତି ହୋଇ କାର୍ଯ୍ୟ ଆରମ୍ଭ ହୋଇଥିଲା । ଓଡ଼ିଶା ପାଇଁ ଏହି ତିନୋଟି ଅତ୍ୟନ୍ତ ଉଲ୍ଲେଖନୀୟ କାର୍ଯ୍ୟରେ ତାଙ୍କର ଅବଦାନ ଓଡ଼ିଶା ଇତିହାସରେ ଚିର ସ୍ମରଣୀୟ ହୋଇ ରହିବ । ବହୁ ବାଧାବିଘ୍ନ ଓ ସମାଲୋଚନା ଭିତରେ ସେ ଏହି ପରିକଳ୍ପନାଗୁଡ଼ିକୁ କାର୍ଯ୍ୟକାରୀ କରିଥିଲେ ।

ଡ଼ଃ ମହତାବ ୧୯୫୦ ରୁ ୧୯୫୨ ପର୍ଯ୍ୟନ୍ତ କେନ୍ଦ୍ର ସରକାରଙ୍କ ଶିଳ୍ପମନ୍ତ୍ରୀ ଥିଲେ, ୧୯୫୨ ରୁ ୧୯୫୪ ପର୍ଯ୍ୟନ୍ତ କେନ୍ଦ୍ର କଂଗ୍ରେସ ପାର୍ଲିଆମେଣ୍ଟାରୀ ଦଳର ସେକ୍ରେଟେରୀ ଜେନେରାଲ, ୧୯୫୫-୫୬ ରେ ବମ୍ବେ ରାଜ୍ୟପାଳ ଥିଲେ ଓ ତା ପରେ ୧୯୫୬ ଶେଷ ଭାଗରୁ ୧୯୬୦ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ୧୯୬୧ ରୁ ୧୯୬୭ ପର୍ଯ୍ୟନ୍ତ ଲୋକସଭା ସଦସ୍ୟ ଥିଲେ । ୧୯୬୭ ରେ ଜନ କଂଗ୍ରେସ ଦଳର ନେତୃତ୍ୱ, ୧୯୬୭ ନିର୍ବାଚନରେ ଭୁବନେଶ୍ୱର ଓ ବାସୁଦେବପୁରରୁ ଓ ୧୯୭୨ ଓ ୧୯୭୪ ନିର୍ବାଚନରେ ଭୁବନେଶ୍ୱର ନିର୍ବାଚନମଣ୍ଡଳିରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୭୬ରେ ଜରୁରୀ କାଳୀନ ଅବସ୍ଥାର ବିରୋଧ କରି ୧୮ ମାସ କାରାବରଣ କରିଥିଲେ ।

୧୯୪୭ ମସିହାରେ ଡ଼ଃ ମହତାବ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ କରି ''ଦୈନିକ ପ୍ରଜାତନ୍ତ୍ର' ରେ ଦୈନିକ ଇଂରେଜୀ Eastern Times ପତ୍ରିକା, ମାସିକ ପତ୍ରିକା ଝଙ୍କାର' ପ୍ରକାଶ କରିଥିଲେ । ସେ ଜଣେ ବିଶିଷ୍ଟ ଐତିହାସିକ ଓ ସାହିତ୍ୟିକ ଥିଲେ । ଜାତୀୟ କବିତା ଓ ଜାତୀୟ ଉପନ୍ୟାସ ଛଡ଼ା ସେ ପ୍ରଥମେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ପ୍ରଣୟନ କରିଛନ୍ତି । ସେ ''ସାଧନାର ପଥେ'' ନାମରେ ତାଙ୍କ ଆତ୍ମଜୀବନୀ ଲେଖିଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ସେ ପ୍ରତିବର୍ଷ ବିଷୁବ ସଂକ୍ରାନ୍ତି ଦିନ ଏକ ସାହିତ୍ୟିକ ମିଳନ ଉତ୍ସବ ଆୟୋଜନ କରି ଓଡ଼ିଶାର କୃତୀ ସାହିତ୍ୟିକମାନଙ୍କୁ ପୁରସ୍କୃତ କରି ଆସୁଥିଲେ । ୧୯୫୦ ରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କର ସାହିତ୍ୟିକ ଓ ସାମାଜିକ ସେବା ନିମନ୍ତେ ତାଙ୍କୁ ଡକ୍ଟରେଟ ଉପାଧିରେ ଭୂଷିତ କରିଥିଲେ । ପ୍ରଜାତନ୍ତ୍ରରେ ତାଙ୍କ ଲିଖିତ ''ଗାଁ ମଜଲିସ'' ଲେଖାପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲେ । ଡ଼ଃ ହରେକୃଷ୍ଣ ମହତାବ ୧୯୮୭ ଜାନୁଆରୀ ୨ ତାରିଖ ଦିନ ଓଡ଼ିଶାବାସୀଙ୍କୁ ଛାଡ଼ି ଚାଲିଯାଇଥିଲେ ।

ଡ଼ଃ ହରେକୃଷ୍ଣ ମହତାବ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ତାଙ୍କ ଦୀର୍ଘ କର୍ମମୟ ଜୀବନକାଳ ଭିତରେ ଓଡ଼ିଶାର ରାଜନୈତିକ, ସାମାଜିକ-ତଥା ସାଂସ୍କୃତିକ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଥିଲେ । ସମସ୍ତ ପ୍ରାଚୁର୍ଯ୍ୟ ଓ ଆଭିଜାତ୍ୟକୁ ତ୍ୟାଗକରି ସେ ଯେପରି ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ଦେଇଥିଲେ, ସ୍ୱାଧୀନତା ପରେ ସେହିପରି ଆଧୁନିକ ଓଡ଼ିଶା ନିର୍ମାଣରେ ସେ ତାଙ୍କର ପ୍ରଖର ବୁଦ୍ଧି, ପ୍ରତିଭା ଓ କର୍ମନିଷ୍ଠାକୁ ବିନିଯୋଗ କରିଥିଲେ । ଓଡ଼ିଶା ଇତିହାସରେ ସ୍ୱାଧୀନତା ସଂଗ୍ରାମୀ ଜନନାୟକ ହରେକୃଷ୍ଣ ମହତାବ ଚିର ସ୍ମରଣୀୟ ହୋଇ ରହିବେ ।

୧୧୩, ବାପୁଜୀ ନଗର
ଭୁବନେଶ୍ୱର - ୯

ଏକମନେ ଏକପ୍ରାଣେ ଆସ ଭାଇରେ,
ଏକତାଠୁଁ ବଳି ଆଉ ବଳ ନାହିଁ ରେ ।
ଏକତାରା ପ୍ରାଣ ଭଲ ନୁହେ କାହିଁ ରେ,
ଏକସାଥେ ମିଳି କର୍ମ କର ଯାଇ ରେ ।
ହାତ-ଧରାଧରି ହୋଇ ଆସ ଧାଇଁ ରେ,
ଆତ୍ମବଳି ଦେବା ଜନହିତ ପାଇଁ ରେ ।
ମିଳନରେ ଏକା ସର୍ବ ସିଦ୍ଧି ଥାଇ ରେ,
ଶକ୍ତି ଦିଅରି ପ୍ରଭୁ ଜଗସାଇଁ ରେ ।

କାନ୍ତକବି ଲକ୍ଷ୍ମୀକାନ୍ତ

***ଜନ୍ମ ଶତବାର୍ଷିକୀ ଉପଲକ୍ଷେ***

# ନିରଞ୍ଜନ ପଟ୍ଟନାୟକ: ଏକ ଆଦର୍ଶ ବ୍ୟକ୍ତିତ୍ୱ

*ଶ୍ରୀ ମାଗୁଣୀ ଦାଶ*



ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାକୁ କଂଗ୍ରେସ ରୂପ ଗଙ୍ଗାକୁ ଆଣିଥିଲେ । ସେହିପରି ନିରଞ୍ଜନ ପଟ୍ଟନାୟକ ଗଞ୍ଜାମରେ ପ୍ରଥମେ କଂଗ୍ରେସ ବାର୍ତ୍ତା ପ୍ରଚାର କରିଥିଲେ । ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ କ୍ରମେ ନିରଞ୍ଜନ ବାବୁ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଗ୍ରାମ ଗସ୍ତ କରି ଅସହଯୋଗ ଆନ୍ଦୋଳନର ନୂତନ ବାର୍ତ୍ତା, ବିଦେଶୀ ବସ୍ତ୍ର ବର୍ଜନ, ନିଶା ନିବାରଣ, ଅସ୍ପୃଶ୍ୟତା ଲୋପ, ଚରଖା ପ୍ରଚଳନ, ସୂତାକଟା ବ୍ୟାପକ ଭାବରେ ପ୍ରଚାର କରିବା ଫଳରେ ଇଂରେଜ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ି ଗିରଫ ହୋଇ ଜାହାଲୋର ଜେଲକୁ ପ୍ରେରିତ ହୋଇଥିଲେ । ଜେଲରୁ ଖଲାସ ହେବା ପରେ ସେ ଓଡ଼ିଶାରେ ଜାତୀୟ ଆନ୍ଦୋଳନରେ ନିଜକୁ ନିୟୋଜିତ କରିଥିଲେ । ୧୯୧୯ ମସିହାରେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଭଞ୍ଜନଗର ନିକଟ ଛେଦାଭୂମି ଗ୍ରାମର ଚକ୍ରପାଣି ପ୍ରଧାନଙ୍କ ସହିତ ମିଶି ଓଡ଼ିଆ ଜାତୀୟ ଆନ୍ଦୋଳନ ସମ୍ପର୍କରେ "ଦି ଓଡ଼ିଆ ମୁଭମେଣ୍ଟ" ନାମରେ ଗୋଟିଏ ଐତିହାସିକ ତଥ୍ୟମୂଳକ ଉପାଦେୟ ଇଂରାଜି ପୁସ୍ତକ ରଚନା କରିଥିଲେ । ପୁସ୍ତକର ରଚୟିତାଙ୍କ ନାମ "ଟୁ ବେଚୁଲେରସ୍ ଅଫ ଆର୍ଟସ" ବୋଲି ଉଲ୍ଲେଖ କରିଥିଲେ । ପୁସ୍ତକଟିର ପ୍ରକାଶ ଭାର ଉତ୍କଳ ଗୌରବ ମଧୁସୂଦନ ଦାସ ବହନ କରିଥିଲେ । ଆସ୍କାର ହରିହର ପଣ୍ଡାଙ୍କ ତତ୍ତ୍ୱାବଧାନରେ ବହିଟି ପ୍ରକାଶ ପାଇଥିଲା । ୧୯୧୬ ମସିହା ପର୍ଯ୍ୟନ୍ତ ଘଟିଥିବା ସମସ୍ତ ଘଟଣା ଏଥିରେ ସ୍ଥାନ ପାଇଛି । ଅଣ ଓଡ଼ିଆଙ୍କୁ ଓଡ଼ିଆଙ୍କର ଏକ ଶାସନାଧୀନ ହେବା ଦାବୀ ଜଣାଇବାରେ ଏହା ଏକ- ମାତ୍ର ପ୍ରାମାଣିକ ଗ୍ରନ୍ଥ । ଏହି ବହିଟି ପାଠ କରି ମହାତ୍ମା ଗାନ୍ଧୀ ବିଶେଷ ପ୍ରୀତ ହୋଇଥିଲେ । ମହାତ୍ମା ଗାନ୍ଧୀ ଯେତେବେଳେ ୧୯୨୧ ମସିହାରେ ଓଡ଼ିଶାକୁ ଆସିଥିଲେ, ନିରଞ୍ଜନ ବାବୁ ଉକ୍ତ ବହିର ପ୍ରଣେତା ବୋଲି ଜାଣିପାରି ତାଙ୍କୁ ଅଶେଷ ଧନ୍ୟବାଦ ଜଣାଇ ଥିଲେ । ନିରଞ୍ଜନ ବାବୁ ମହାତ୍ମା ଗାନ୍ଧୀଙ୍କୁ ଗଞ୍ଜାମକୁ ଆଣି ବ୍ରହ୍ମପୁର, ଆସ୍କା, ଗୋବରା, ଭଞ୍ଜନଗର ପ୍ରଭୃତି ସ୍ଥାନରେ ବିରାଟ ସଭାମାନ ଅନୁଷ୍ଠିତ କରାଇ ଥିଲେ । ମହାତ୍ମାଗାନ୍ଧୀ ଏସବୁ ସଭାରେ ଅସହଯୋଗ ବାର୍ତ୍ତା ପ୍ରଚାର କରିଥିଲେ । ୧୯୨୭ ମସିହାରେ ମହାତ୍ମାଗାନ୍ଧୀ ପୁନର୍ବାର ଗଞ୍ଜାମ ଆସି ଡ଼ିସେମ୍ବର ୫ ତାରିଖରେ ପ୍ରଥମେ ବ୍ରହ୍ମପୁରରେ ପଦାର୍ପଣ କରି ଥିଲେ । ଗାନ୍ଧିଜୀଙ୍କର ଏହି ଐତିହାସିକ ଖଦି ପ୍ରଚାର ଯାତ୍ରା ଉପଲକ୍ଷେ ନିରଞ୍ଜନ ବାବୁ "ଗାନ୍ଧୀ ସମାଚାର" ନାମରେ ଗୋଟିଏ ସମ୍ବାଦପତ୍ର ବ୍ରହ୍ମପୁରରୁ ପ୍ରକାଶ କରିଥିଲେ ଏବଂ ତାହାଥିଲା ଓଡ଼ିଆ ଭାଷାର ପ୍ରଥମ ଦୈନିକ ସମ୍ବାଦପତ୍ର । ନିରଞ୍ଜନ ବାବୁଙ୍କ ଅକ୍ଳାନ୍ତ ଉଦ୍ୟମରେ ଓଡ଼ିଶାର ଖଦି ଉତ୍ପାଦନରେ ବହୁତ ଉନ୍ନତି ହୋଇଥିଲା । ମହାତ୍ମାଗାନ୍ଧୀ ଓଡ଼ିଶା ଖଦି କାର୍ଯ୍ୟକ୍ରମରେ ଅତ୍ୟନ୍ତ ପ୍ରୀତ ହୋଇ ନିରଞ୍ଜନ ବାବୁଙ୍କ ନିଷ୍ଠାପର ଉଦ୍ୟମର ଭୂୟସୀ ପ୍ରଶଂସା କରିଥିଲେ ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀ ଲବଣ ସତ୍ୟାଗ୍ରହର ସୂତ୍ରପାତ କଲେ । ସେତେବେଳେ ନିରଞ୍ଜନ ବାବୁ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସଭାପତି ରୂପେ ଜିଲ୍ଲାରେ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇ ବ୍ରହ୍ମପୁରଠାରେ 'ପ୍ରଗତି' ଆଶ୍ରମ ନାମରେ ଗୋଟିଏ ଆଶ୍ରମ ସ୍ଥାପନ କରି ସତ୍ୟାଗ୍ରହୀମାନଙ୍କୁ ତାଲିମ୍ ଦେବା ସଙ୍ଗେ ସଙ୍ଗେ ସେଠାରୁ ଦଳଦଳ ସତ୍ୟାଗ୍ରହୀଙ୍କୁ ହୁମାଠାରେ ଲବଣ ଆଇନ୍ ଭଙ୍ଗକରି ଲୁଣ ମାରିବା ପାଇଁ ପଠାଉଥିଲେ । ନିରଞ୍ଜନ ବାବୁଙ୍କ ସହଧର୍ମିଣୀ କିଶୋରୀ ମଣି ଦେବୀ ପ୍ରଗତି ଆଶ୍ରମର ସମସ୍ତ ଦାୟିତ୍ୱ ବହନକରି କର୍ମୀମାନଙ୍କର ରହିବା, ଖାଇବା କଥା ତନ୍ନ ତନ୍ନ କରି ବୁଝୁଥିଲେ । ଗୋବରାର ବାଞ୍ଛାନିଧି ପଟ୍ଟନାୟକଙ୍କର ସହଧର୍ମିଣୀ କୁନ୍ଦଲତା ଦେବୀ ମଧ୍ୟ ପ୍ରଗତି ଆଶ୍ରମରେ ରହି କିଶୋରୀ ମଣି ଦେବୀଙ୍କୁ ସାହାଯ୍ୟ କରୁଥିଲେ । ଆସ୍କାର ନିରଞ୍ଜନ ପଟ୍ଟନାୟକ ପରିବାର ଓ ଗୋବରାର ବାଞ୍ଛାନିଧି ପଟ୍ଟନାୟକଙ୍କ ପରିବାର ଦୁଇଟି ଆଦର୍ଶ ପରିବାର । ସ୍ୱାଧୀନତା ସଂଗ୍ରାମକୁ ସେମାନଙ୍କର ଦାନ ଅତୁଳନୀୟ ।

ଲବଣ ସତ୍ୟାଗ୍ରହରେ ଯୋଗ ଦେବା ଫଳରେ ଗଞ୍ଜାମର ବିଶିଷ୍ଟ ନେତା ବିଶ୍ୱନାଥ ଦାଶ, ଶଶିଭୂଷଣ ରଥ, ଦିବାକର ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ବନମାଳି ମହାରଣା, ହରିହର ପଟ୍ଟନାୟକ, ଅନ୍ତର୍ଯ୍ୟାମୀ ପଣ୍ଡା, ନାରାୟଣ ପାତ୍ର, ଶ୍ରୀହର୍ଷ ମିଶ୍ର ପ୍ରମୁଖଙ୍କ ସହିତ ନିରଞ୍ଜନ ବାବୁ ଦ୍ୱିତୀୟ ବାର ଗିରଫ ହୋଇ ଜେଲକୁ ଯାଇଥିଲେ ।

୧୯୩୧ ମସିହାରେ ଜେଲରୁ ଖଲାସ ହେବା ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଲଣ୍ଡନରେ ଯେଉଁ ଗୋଲ୍ ଟେବୁଲ ବୈଠକ

ବସିଥିଲା, ସେଥିରେ ପାରଳାଖେମଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଯୋଗ ଦେଇଥିଲେ । ନିରଞ୍ଜନ ବାବୁ ଗୋଲଟେବୁଲ ବୈଠକରେ ଦାବୀ ଉପସ୍ଥାପନ ପାଇଁ ଏକ ଚିଠା ପ୍ରସ୍ତାବ ତିଆରି କରି ମହାରାଜାଙ୍କ ହସ୍ତରେ ଅର୍ପଣ କରିଥିଲେ । ତାଙ୍କ ରଚିତ "ଦି ଓଡ଼ିଆ ମୁଭମେଣ୍ଟ" ବହିଟି ଗୋଲ ଟେବୁଲ ବୈଠକରେ ଉପସ୍ଥାପିତ ହୋଇଥିଲା । ସେହି ବିଖ୍ୟାତ ବହିରୁ ତତ୍କାଳୀନ ବ୍ରିଟିଶ୍ ଶାସକମାନେ ଓ ସ୍ୱାଧୀନତା ସଂଗ୍ରାମର ସର୍ବ ଭାରତୀୟ ନେତୃବୃନ୍ଦ ଓଡ଼ିଶାର ଅବହେଳିତ ଓ ଅତ୍ୟାଚାରିତ ଅବସ୍ଥା ସମ୍ପର୍କରେ ବିସ୍ତୃତ ବିବରଣୀ ଜାଣିବା ସୁଯୋଗ ପାଇଥିଲେ । ନିଜେ କର୍ଜନ ସାହେବ ଉତ୍କଳୀୟମାନଙ୍କୁ ଆକ୍ଷେପ କରି କହିଥିଲେ, "ଓଡ଼ିଆମାନେ ଆନ୍ଦୋଳନ କରି ଜାଣନ୍ତି ନାହିଁ ।" ସେଦିନ ଏହି ବହିଟି ପଢ଼ିବା ପରେ ସେ ଓଠ କାମୁଡ଼ି କହି ପକାଇଥିଲେ, "ଓ ମାଇଁ ଗଡ୍" ।

ଏସବୁ ହେବା ଫଳରେ ସେଇବର୍ଷ ସେପ୍ଟେମ୍ବର ମାସରେ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଓଡ୍ନେଲ କମିଟି ଘୋଷିତ ହୋଇଥିଲା । ୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଏଥିପାଇଁ ନିରଞ୍ଜନ ବାବୁଙ୍କ ଅବଦାନ କିଛି କମ୍ ନ ଥିଲା ।

ନିରଞ୍ଜନ ବାବୁ ୧୮୯୬ ମସିହା ନଭେମ୍ବର ମାସ ୨୪ ତାରିଖରେ ଗଞ୍ଜାମ ଜିଲ୍ଲା ପୋଲସରା ନିକଟ ରୁଖାକଣା ଗ୍ରାମରେ ଏକ ମଧ୍ୟବିତ୍ତ ପରିବାରରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଦାମୋଦର ଦାସ (ପରେ ପଟ୍ଟନାୟକ) ଘଟଣା କ୍ରମେ ଆସ୍କା ଆସି ସପରିବାର ଅବସ୍ଥାନ କରୁଥିଲେ । ନିରଞ୍ଜନ ବାବୁ କୃତିତ୍ୱର ସହିତ ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଇନ ଶିକ୍ଷା ଲାଭ କରିଥିଲେ । ଜାତୀୟ କାର୍ଯ୍ୟରେ ତାଙ୍କର ସମସ୍ତ ସମୟ ଚାଲିଯିବାରୁ ସେ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇ ଆସ୍କାରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ଖୁବ୍ କମ୍ ସମୟ ମଧ୍ୟରେ ନିଜର ବୁଦ୍ଧି ବଳରେ ଜଣେ ନାମଜାଦା ଆଇନଜ୍ଞ ଭାବରେ ସୁଖ୍ୟାତି ଲାଭ କରିଥିଲେ । ଏଥିପାଇଁ ସେ ରାଜନୈତିକ କାର୍ଯ୍ୟକ୍ରମରୁ ସାମୟିକ ଅବସର ଗ୍ରହଣ କରିଥିଲେ । ତଥାପି ଗୋପବନ୍ଧୁଙ୍କ ଭାଷାରେ, " ଯେ ଦୀକ୍ଷାରେ ଥରେ କରିଛ ବିଶ୍ୱାସ, ନଛାଡ଼ ତା ଥିବା ଯାଏଁକି ନିଶ୍ୱାସ" ନୀତିରେ ୧୯୩୬ ମସିହାରେ ଯେଉଁ ପ୍ରଥମ ପ୍ରାଦେଶିକ ନିର୍ବାଚନ ହେଲା, ସେଥିରେ ସେ ନିଜେ ପ୍ରାର୍ଥୀ ହୋଇ ନଥିଲେ ମଧ୍ୟ କଂଗ୍ରେସ ପ୍ରାର୍ଥୀମାନଙ୍କ ପାଇଁ ଆପ୍ରାଣ ଉଦ୍ୟମରେ ସେମାନଙ୍କୁ ଜୟଯୁକ୍ତ କରେଇ ଥିଲେ । ତାଙ୍କର ଭାଷଣରେ ଲୋକେ ଉଦ୍‌ବୁଦ୍ଧ ହୋଇ କଂଗ୍ରେସ ପ୍ରତି ବିପୁଳ ସମର୍ଥନ ଜଣାଇ ଥିଲେ । ବିଶ୍ୱନାଥ ଦାଶ, ଗୋବିନ୍ଦ ପ୍ରଧାନ ପ୍ରଭୃତି ସ୍ୱନାମଧନ୍ୟ ନେତାମାନେ ନିର୍ବାଚନରେ ଜୟଯୁକ୍ତ ହୋଇ ବିଧାନ ସଭା ଗଠନ କରିଥିଲେ । ବିଶ୍ୱନାଥ ଦାଶ ଓଡ଼ିଶାର ପ୍ରଥମ ପ୍ରଧାନ- ମନ୍ତ୍ରୀ ଭାବରେ ମନ୍ତ୍ରୀମଣ୍ଡଳ ଗଠନ କଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।

୧୯୪୨ ମସିହାରେ ମହାତ୍ମାଗାନ୍ଧୀ ଭାରତ ଛାଡ଼ ଆନ୍ଦୋଳନ ରୂପ ଶେଷ ସଂଗ୍ରାମ ଆରମ୍ଭ କରିଥିଲେ । ଅଗଷ୍ଟ ୮ ତାରିଖ ଦିନ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ବସି ଗୁରୁତ୍ୱପୂର୍ଣ୍ଣ ଭାରତ ଛାଡ଼ ପ୍ରସ୍ତାବ ଗ୍ରହଣ କଲେ । ରାତି ପାହିଲା ବେଳକୁ ଭାରତର ସବୁ ଜଣାଶୁଣା କଂଗ୍ରେସ ନେତା ଓ କର୍ମୀଙ୍କୁ ଇଂରେଜ ସରକାର ଗିରଫ କରି ଜେଲକୁ ନେଇଗଲେ । ମହାତ୍ମାଗାନ୍ଧୀ ଜେଲକୁ ଯିବା ପୂର୍ବରୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସଂଦେଶ ଦେଇଗଲେ । "ଯେଉଁ ମାନେ ଜେଲ ବାହାରେ ରହିଛନ୍ତି, ସେମାନେ ନିଜକୁ ଜଣେ ଜଣେ ନେତା ବୋଲି ଭାବି ସବୁମତେ ଇଂରେଜ ସରକାରଙ୍କୁ ଅଚଳ କରିବା ପାଇଁ କାର୍ଯ୍ୟ କରିଯାଆନ୍ତୁ । ମହାତ୍ମାଗାନ୍ଧୀଙ୍କର ଶେଷ ମନ୍ତ୍ର ଥିଲା "କର ବା ମର" ।

ନିରଞ୍ଜନ ବାବୁ ଜଣେ ଅତି ଜଣା ଶୁଣା କଂଗ୍ରେସ ନେତା ହୋଇଥିଲେ ମଧ୍ୟ ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବେ ଜଡ଼ିତ ହୋଇ ପାରି ନ ଥିଲେ । ସେ ଆଗରୁ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇ ଓକିଲାତି ବ୍ୟବସାୟ କରି ପରିବାର ପ୍ରତି ପୋଷଣ କରୁଥିଲେ । କଂଗ୍ରେସ ଆନ୍ଦୋଳନ ପ୍ରତି ତାଙ୍କର ସମର୍ଥନ ଥିଲେ ମଧ୍ୟ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗ ଦେବା ପାଇଁ ତାଙ୍କୁ ପରିସ୍ଥିତି ସୁଯୋଗ ଦେଇ ନ ଥିଲା ।

ଆସ୍କାରେ ଥିବା କଂଗ୍ରେସ କର୍ମୀମାନେ ଏକ ଆନ୍ଦୋଳନାତ୍ମକ କାର୍ଯ୍ୟ କରି ମହାତ୍ମାଗାନ୍ଧୀଙ୍କ ଶେଷ ସଂଦେଶକୁ କାର୍ଯ୍ୟକାରୀ କରିବା ପାଇଁ ଛଟ ପଟ ହେଲେ । ନେତୃତ୍ୱ ଅଭାବରୁ କିଛି କରି ପାରୁ ନଥିଲେ । ନିରଞ୍ଜନ ବାବୁଙ୍କୁ କର୍ମୀମାନେ ସାକ୍ଷାତ କରି କାର୍ଯ୍ୟକ୍ରମ ସ୍ଥିର କଲେ । ନିରଞ୍ଜନ ବାବୁଙ୍କ ସର୍ବନିମ୍ନ କାର୍ଯ୍ୟକ୍ରମ ଗ୍ରହଣ କରି ମଦ ଦୋକାନ ଆଗରେ ପିକେଟିଂ, ପ୍ରଚାର ପତ୍ର ବଣ୍ଟନ, ଶୋଭାଯାତ୍ରା ଇତ୍ୟାଦି କରିବାକୁ ସ୍ଥିର ହେଲା । ଆଠ ଦିନ ଏହି ପରି ଚାଲିବା ପରେ କର୍ମୀମାନେ ଆନ୍ଦୋଳନକୁ ନୂଆ ମୋଡ଼ ଦେବା ପାଇଁ ସ୍ଥିର କଲେ । ଆସ୍କା ଠାରୁ ବ୍ରହ୍ମପୁର ରାସ୍ତାରେ ତାରକଟା, ଆସ୍କା ନିକଟ ଋଷିକୁଲ୍ୟା ନଦୀର ପୋଲକୁ ଡିନାମାଇଟ ସାହାଯ୍ୟରେ ଭାଙ୍ଗିବା ଓ ଲୋକଙ୍କୁ ଏକଜୁଟ କରି ଟ୍ରେଜରୀ ଲୁଟ କରି ଲୋକଙ୍କ ମଧ୍ୟରେ ବାଣ୍ଟି ଦେବା -ଏହି ତିନୋଟି କାର୍ଯ୍ୟକ୍ରମ ଗୋଟିଏ ଦିନରେ ଏକ ସମୟରେ କରାଯିବା ପାଇଁ ସ୍ଥିର ହେଲା । ସେଥିପାଇଁ ବ୍ରହ୍ମପୁର ଯାଇ ଗୋଟିଏ ଡିନାମାଇଟ ଅଣା ଗଲା । ଡିନାମାଇଟ ଖଞ୍ଜିବା ପାଇଁ ପୋଲର ଗୋଟିଏ ଖମ୍ବରେ ଗର୍ତ୍ତ କରାଗଲା । ଏଥିପାଇଁ ତିନି ଜଣ କର୍ମୀ ସଜାଗ ହୋଇ ରହିଲେ । ପୂର୍ବଦିନ ରାତ୍ରରେ ପୋଲିସ୍ କୌଣସି ସୂତ୍ରରୁ ଖବର ପାଇ ଆମ ଆଠ ଜଣଙ୍କୁ ଗିରଫ କରି ରସୁଲକୋଣ୍ଡା ଜେଲକୁ ନେଇଗଲେ । ତାରକଟା ପାଇଁ ଯେଉଁମାନେ ନିଯୁକ୍ତ ହୋଇଥିଲେ, ସେମାନେ ଆସ୍କାଠାରୁ ତିନି ମାଇଲ ପର୍ଯ୍ୟନ୍ତ ଟେଲିଗ୍ରାମ ତାର କାଟି ପକାଇ ଥିଲେ । ପରେ ସେମାନେ ମଧ୍ୟ ଗିରଫ ହୋଇ ଜେଲକୁ ଚାଲିଗଲେ । ଯେଉଁ ଅଞ୍ଚଳରେ ତାର କଟା ଯାଇଥିଲା, ସେହି ଅଞ୍ଚଳର ଗ୍ରାମମାନଙ୍କରେ ବାସ କରୁଥିବା ଲୋକଙ୍କ ଉପରେ ପିଟୁଣି ଟିକସ ବସାଯାଇ ଆଦାୟ କରାଯାଇଥିଲା । ଆମମାନଙ୍କ ମଧ୍ୟରୁ ଯେଉଁମାନେ ଅଦାଲତରେ ମକଦ୍ଦମା ଲଢ଼ିବା ପାଇଁ ସ୍ଥିର କଲେ, ସେମାନଙ୍କୁ ନିରଞ୍ଜନ ବାବୁ ଆଇନ ସହାୟତା ଦେଇ ସେମାନଙ୍କ ପାଇଁ ଅଦାଲତରେ ଲଢ଼ି ଖଲାସ କରାଇ ଦେଲେ । ଆମେ କେତେଜଣ ମିଆଦ ପୂରିବା ପର୍ଯ୍ୟନ୍ତ ରହିଲୁ ।

ନିରଞ୍ଜନ ବାବୁଙ୍କ ଅମୂଲ୍ୟ କର୍ମମୟ ଜୀବନ ୧୯୪୩ ମସିହା ଅଗଷ୍ଟ ୧୫ ତାରିଖରେ ଆକସ୍ମିକ ଭାବରେ ଅବସାନ ଘଟିଥିଲା ।

ସ୍ୱାଧୀନତା ସଂଗ୍ରାମୀ
ଭଞ୍ଜନଗର (ଗଞ୍ଜାମ)

—o—

# ବିପ୍ଳବୀ ଦେବାନ୍ କୃଷ୍ଣଚନ୍ଦ୍ର

ଶ୍ରୀ ହେମନ୍ତ ଦାଶ

ଓଡ଼ିଶାର ମୁକ୍ତି ସଂଗ୍ରାମ ଇତିହାସରେ ଦୁଇଜଣ ଦେୱାନ କୃଷ୍ଣଚନ୍ଦ୍ରଙ୍କ ନାମ ଦେଖିବାକୁ ମିଳେ, ଜଣେ ସଚ୍ଚା ଦେଶପ୍ରେମୀ, ଅନ୍ୟଜଣକ ଦେଶଦ୍ରୋହୀ । ଦେଶପ୍ରେମୀଙ୍କର ପ୍ରକୃତ ନାଁ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବରରାୟ । ଓଡ଼ିଶାମାଟିରେ ଜନ୍ମ ଗ୍ରହଣ କରି ମାତୃଭୂମି ଲାଗି ଜୀବନ ପଣ କରିଥିଲେ । କିନ୍ତୁ ଦେଶଦ୍ରୋହୀ ଦେୱାନ କୃଷ୍ଣଚନ୍ଦ୍ର ସିଂ ବଙ୍ଗଦେଶର ପାଇକପଡ଼ାରୁଆସି ପୁରୀ କଲେକ୍ଟରିଏଟରେ ଚାକିରୀ କରିଥିଲେ ଓ ଓଡ଼ିଶାର ମୁକ୍ତି ସଂଗ୍ରାମକୁ ଶିଥିଳ କରିବାଲାଗି ଇଂରେଜ ସରକାରଙ୍କୁ ସହାୟତା କରିଥିଲେ ।

୧୮୧୭ ମସିହା ପାଇକ ବିଦ୍ରୋହର ଅନ୍ୟତମ ବିପ୍ଳବୀ ବୀର ହେଲେ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ । ଖୋର୍ଦ୍ଧା ରାଜା ମୁକୁନ୍ଦଦେବଙ୍କ ସୁଦକ୍ଷ ଦେୱାନ୍ । ଓଡ଼ିଶାର ପ୍ରଖ୍ୟାତ ମୁକ୍ତିଯୋଦ୍ଧା ତଥା ବିସ୍ମୃତ ସ୍ୱାଧୀନତା ସଂଗ୍ରାମୀ । ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ରଙ୍କ ବନ୍ଧୁ । ସେତେବେଳେ ଖୋର୍ଦ୍ଧା ଥିଲା ସଙ୍କୁଚିତ ଓଡ଼ିଶାର ରାଜଧାନୀ । ଦେବାନ୍‌ଙ୍କ ବଂଶଧରମାନେ ଖୋର୍ଦ୍ଧାଠାରୁ କିଛି ଦୂରରେ ଥିବା ଛତ୍ରମାଗଡ଼ରେ ବାସ କରୁଥିଲେ । ବର୍ତ୍ତମାନ ତାଙ୍କ ବଂଶଧରମାନେ କୁରାଡ଼ମଲ୍ଲ ଗାଁରେ ରହୁଛନ୍ତି ।

କୃଷ୍ଣଚନ୍ଦ୍ର ଥିଲେ ବଳିଷ୍ଠ ବପୁବନ୍ତ ଯୋଦ୍ଧା ତଥା ସମର ବିଶାରଦ । ନିତିଦିନ ରାତି ତିନିଟାରୁ ଉଠି କୁସ୍ତି କସରତ କରୁଥିଲେ । ପ୍ରାତଃ ଭୋଜନପରେ ଘୋଡ଼ା ଚଢ଼ି ଖୋର୍ଦ୍ଧା ରାଜବାଟିକୁ ଆସୁଥିଲେ । ବକ୍ସିଜଗବନ୍ଧୁ ତଥା ରାଜା ମୁକୁନ୍ଦଦେବଙ୍କ ଗହଣରେ କାର୍ଯ୍ୟ ପରିଚାଳନା କରି ରାତିରେ ଘରକୁ ଫେରୁଥିଲେ । ୧୮୧୭ ମସିହାରେ ଘୁମୁସର ଅଞ୍ଚଳରୁ କେତେଜଣ ବିଦ୍ରୋହୀ କନ୍ଧ ବାଣପୁର ଆସି ସରକାରୀ ଟ୍ରେଜେରୀ ଲୁଣ୍ଠନ କରିଥିଲେ । ଏହା ପୂର୍ବରୁ ଇଂରେଜ ଶାସକଗୋଷ୍ଠୀର ହୀନ ଚକ୍ରାନ୍ତ ଯୋଗୁଁ ବକ୍ସି ଜଗବନ୍ଧୁ ସର୍ବସ୍ୱ ହରାଇ 'ଭିକ୍ଷାଂ ଦେହି'ର ଆଶ୍ରୟ ନେଇଥିଲେ । ସେ ବିଦ୍ରୋହର ସୁଯୋଗ ଅପେକ୍ଷାରେ ଥିଲେ । ବାଣପୁରର କନ୍ଧ ବିଦ୍ରୋହ ତାଙ୍କୁ ଅପୂର୍ବ ସୁଯୋଗ ଆଣିଦେଲା । ସେ ଖୋଲାଖୋଲି ଇଂରେଜ ଶକ୍ତି ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ଡାହାଣ ହାତ ହେଲେ ଦେବାନ୍ କୃଷ୍ଣଚନ୍ଦ୍ର । ତାଙ୍କ ଉପରେ ଦାୟିତ୍ୱ ରହିଲା "ଳଣାସ" ଅଞ୍ଚଳର ବିଦ୍ରୋହ ପରିଚାଳନା କରିବା । ପରାଧୀନ ଭାରତର ପ୍ରଥମ ରକ୍ତକ୍ଷୟକାରୀ ଗଣ ବିପ୍ଳବର ସୂତ୍ରପାତ ହୋଇଥିଲା ୧୮୦୪ ମସିହାରେ ଏଇ ଲାଲମାଟି ଖୋର୍ଦ୍ଧା ଅଞ୍ଚଳରୁ ।

ଦେବାନ୍ କୃଷ୍ଣଚନ୍ଦ୍ର ଏକ ହଜାର ଦୁର୍ଦ୍ଧର୍ଷ ଓଡ଼ିଆପାଇକଙ୍କୁ ଧରି ହାଜର ହେଲେ ଦୋବନ୍ଧା ଠାରେ । ଇଂରେଜ ସେନାପତି ଫାଟ୍ରେଙ୍କ ସୈନ୍ୟ ସହିତ ମୁହାମୁହିଁ ହେଲା । ବିଦେଶୀଶକ୍ତି ହାତରେ ଥିଲା ନୂତନ ଶକ୍ତିଶାଳୀ ଆଗ୍ନେୟାସ୍ତ୍ର । ପାଇକମାନେ ପୁରୁଣା ଅସ୍ତ୍ର ଧରିଥିଲେ । ତେଣୁ ଦେବାନ୍ କୃଷ୍ଣଚନ୍ଦ୍ରଙ୍କ ପାଇକ ସେନାନୀ ରଣ କ୍ଷେତ୍ରରୁ ଛତ୍ରଭଙ୍ଗ ହେଲେ ।

ତା ପୂର୍ବରୁ ବକ୍ସି ଜଗବନ୍ଧୁ ବିଦେଶୀ ଶକ୍ତି ଆଖିରେ ଧୂଳି ଦେଇ ଆତ୍ମଗୋପନ କରିଥିଲେ । କୃଷ୍ଣଚନ୍ଦ୍ର ଭ୍ରମରବରରାୟ ମଧ୍ୟ ବକ୍ସିଙ୍କ ସହିତ ଏକତ୍ର ଆତ୍ମଗୋପନ କଲେ । କୃଷ୍ଣଚନ୍ଦ୍ର ନିଜ ଅଧୀନସ୍ଥ ସର୍ଦ୍ଦାରମାନଙ୍କୁ ଗୁପ୍ତରେ ଚିଠି ଲେଖୁଥିଲେ, "ମନୋବଳ ଦୃଢ଼ ରଖ, ବିଦ୍ରୋହ ଚାଲୁ ରଖ, ଅତ୍ୟାଚାରୀ ବ୍ରିଟିଶ ଶକ୍ତି ଏଦେଶରୁ ନିପାତ କର ।"

ଇତିମଧ୍ୟରେ ଆଠବର୍ଷ ବିତିଗଲା । ବକ୍ସି କିମ୍ବା ଦେୱାନଙ୍କ ପତ୍ତା ମିଳିଲା ନାହିଁ । ବ୍ରିଟିଶ ଶକ୍ତି ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ସରକାର କୃଷ୍ଣଚନ୍ଦ୍ରଙ୍କ ଜମିବାଡ଼ି ବାଜ୍ୟାପ୍ତ କଲେ, ତାଙ୍କ ପିଲାମାନଙ୍କୁ ହଇରାଣ କରାଗଲା । ତଥାପି କୃଷ୍ଣଚନ୍ଦ୍ର ଟଳିଲେ ନାହିଁ । ବକ୍ସିଙ୍କ ପାଖେ ପାଖେ ରହିଲେ । ଖୋର୍ଦ୍ଧାରେ ମେଜର ଫ୍ଲେଚର ସାମରିକ ଆଇନ ଜାରି କଲେ । ନିରୀହ ଜନସାଧାରଣଙ୍କୁ ଅକଥନୀୟ ଅତ୍ୟାଚାର କଲେ । ବିଦ୍ରୋହ ଦମନ ପାଇଁ ଜୋରଦାର ଧରପଗଡ଼ ହେଲା । ଅନେକ ବିଦ୍ରୋହୀ ଧରାପଡ଼ି ଫାଶୀ ପାଇଲେ । ଅନେକଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା, କିନ୍ତୁ ବକ୍ସି କିମ୍ବା ଦେୱାନଙ୍କୁ ଧରିବା କଷ୍ଟକର ଥିଲା ।

ବହୁ ଘଟଣାଘଟା ପରେ ୧୮୨୬ ମେ ୨୭ ତାରିଖ ଦିନ ବକ୍ସି ଜଗବନ୍ଧୁ ଇଂରେଜ ଶକ୍ତି ପାଖରେ ଆତ୍ମସମର୍ପଣ କଲେ । କ୍ରାନ୍ତିକାରୀ ଦେୱାନ କୃଷ୍ଣଚନ୍ଦ୍ରଙ୍କ ମନୋବଳ ଭାଙ୍ଗିପଡ଼ିଲା । ସେ ପୋଲିସ ହାତରେ ଧରାଦେବା କଥା ଚିନ୍ତା କଲେ । ବିପ୍ଳବୀ ପୁରୁଷଙ୍କୁ ଧରିବାରେ ହଳଦିଆ-ଗଡ଼ର ଶ୍ୟାମସୁନ୍ଦର ଭଞ୍ଜ, ଖୋର୍ଦ୍ଧାର ଅତ୍ୟାଚାରୀ ଦାରୋଗା ହେମ ପ୍ରସାଦ ରାୟ,-ଶେଖ ସାଦିକ୍ ଅଲ୍ଲି ଓ ରାଘବ ପଟ୍ଟନାୟକ ସାହାଯ୍ୟ କରିଥିଲେ । ସେଥିପାଇଁ ପ୍ରତ୍ୟେକଙ୍କୁ ବ୍ରିଟିଶ ସରକାର ଟ୫୦୦/- ପୁରସ୍କାର ଦେଇଥିଲେ ।

ବିଦ୍ରୋହୀ ଦେବାନ୍ କୃଷ୍ଣଚନ୍ଦ୍ର ୧୮୨୨ ଜାନୁଆରୀ ମାସରେ ଧରାପଡ଼ିଲେ । ଇଂରେଜ ସରକାର ତାଙ୍କୁ ମାସିକ ଟ ୧୦୦ ଭତ୍ତା ଦେଉଥିଲେ । ତାଙ୍କ ପରିବାରର ଉପଯୁକ୍ତ ଦାୟାଦଙ୍କୁ ରାଜଦରବାରରେ ଚାକିରୀ ଦେବାର ବ୍ୟବସ୍ଥା କରିଥିଲେ ।

ସାଇ ନିଳୟ
ସରାଟଶାସନ, ଟଣାହଟା, ଖୋର୍ଦ୍ଧା ୭୫୨ ୧୦୨

# କନିକା - ବିପ୍ଳବ ଓ ବିପ୍ଳବୀ ଚକ୍ରଧର

ଇଂ. ଅରୁଣ କୁମାର ପଣ୍ଡା

୨୦ଂଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ କନିକାରେ ସ୍ୱେଚ୍ଛାଚାରୀ ରାଜା ବିରୁଦ୍ଧରେ ଯେଉଁ ପ୍ରଜା-ଆନ୍ଦୋଳନ ମୁଣ୍ଡ ଟେକିଥିଲା, ତାହା ହିଁ 'କନିକା-ବିପ୍ଳବ' ନାମରେ ପରିଚିତ । ଏହି ବିପ୍ଳବ କେବଳ କନିକାରେ ନୁହେଁ, ସାରା ଓଡ଼ିଶା ତଥା ଭାରତର ମଧ୍ୟ ଦୃଷ୍ଟି ଆକର୍ଷଣ କରିଥିଲା । ଏହି ଆନ୍ଦୋଳନ ବା ବିପ୍ଳବ, ଅନ୍ୟ ବିପ୍ଳବଠାରୁ ନିଜର ସ୍ୱତନ୍ତ୍ରତା ଦାବୀ କରିବାର କାରଣ ଏହି ଯେ ସାରା ଭାରତରେ ଇଂରେଜ ବିରୁଦ୍ଧରେ ସଂଗ୍ରାମ ଚାଲିଥିବା ବେଳେ 'କନିକା-ବିପ୍ଳବ' ସ୍ଥାନୀୟ ରାଜଶକ୍ତି ତଥା ବ୍ରିଟିଶ ଶକ୍ତି ଭଳି ଦୁଇଟି ପ୍ରଚଣ୍ଡ ଶକ୍ତିକୁ ବିରୋଧ କରୁଥିଲା । ଇଂରେଜ ସରକାରଙ୍କର ଗୋଲାମ ସାଜିଥିବା କନିକା-ରାଜା ଓ ରାଜକର୍ମଚାରୀଙ୍କର ନିର୍ମମ ଦମନଲୀଳାରେ ଉତ୍ପୀଡ଼ିତ ଜନତା ତାହାର ପ୍ରତିବାଦ ସ୍ୱରୂପ ସଂଘବଦ୍ଧ ହୋଇ ନିଜର ଦାବୀ ହାସଲ ପାଇଁ ଆଗଭର ହୋଇଥିଲେ । ଫଳରେ ରୂପ ଲାଭ କରିଥିଲା ଗଣ-ଆନ୍ଦୋଳନ । ହଜାର ହଜାର ନିଷ୍ପେଷିତ ନିର୍ଯ୍ୟାତିତ କନିକାବାସୀଙ୍କର ଆର୍ତ୍ତ ଚିତ୍କାର ମଧ୍ୟରୁ ଏହି ବିପ୍ଳବର ଜନ୍ମ । ଏହି କନିକା ବିପ୍ଳବର କର୍ଣ୍ଣଧାର ଥିଲେ କନିକାର ପ୍ରଜାନେତା ବିପ୍ଳବୀ ବୀର ଚକ୍ରଧର ବେହେରା । ତାଙ୍କର ବଳିଷ୍ଠ ନେତୃତ୍ୱରେ ଏହି ବିପ୍ଳବ ଆଶ୍ଚର୍ଯ୍ୟଜନକ ସଫଳତା ହାସଲ କରି ରାଜଶକ୍ତିର ସମୂଳେ ଉଚ୍ଛେଦ ସାଧନ କରିଥିଲା ।

"କନିକା-ବିପ୍ଳବ'ର କାରଣ ପ୍ରତି ପର୍ଯ୍ୟାଲୋଚନା କଲେ ପ୍ରଥମତଃ ଆମ ଆଗକୁ ଆସନ୍ତି ଅତ୍ୟାଚାରୀ ରାଜା । ପର ରକ୍ତ ଶୋଷଣ-କାରୀ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ କନିକାରେ ସିଂହାସନ ଆରୋହଣ କରିବା ସଙ୍ଗେ ସଙ୍ଗେ ପ୍ରଜାମାନଙ୍କ ଉପରେ ଶୋଷଣ ଆରମ୍ଭ କରିଦେଇଥିଲେ । ସେ ଇଂରେଜ ସରକାରଙ୍କୁ ୨୨ ହଜାର ଟଙ୍କାର ବାର୍ଷିକ ପେଷ୍ କିସ୍ ଦେଇ ଖାତରଜମା କରୁଥିଲେ । ତାଙ୍କରି ଦ୍ୱାରା ପରୋକ୍ଷରେ ଇଂରେଜ ସରକାର କନିକାରେ ପ୍ରଭାବ ବିସ୍ତାର କରିଥିଲେ । ଫଳରେ କନିକା ବକ୍ଷରେ ଚାଲିଥିଲା ନାନା ପ୍ରକାର ଅମାନୁଷିକ ଅତ୍ୟାଚାର । ସମୁଦ୍ରର ଲହଡ଼ି ପରି ଏହା କନିକାର କୋଣେ ଅନୁକୋଣେ ପ୍ରଭାବିତ ହୋଇ, ତା'ର ବିଭତ୍ସତାରେ ପ୍ରଜାମାନଙ୍କୁ କରୁଥିଲା ଅଣନିଃଶ୍ୱାସୀ । ରାଜା ରାଜେନ୍ଦ୍ର ନାରାୟଣ ସବୁବେଳେ ବିଳାସବ୍ୟସନରେ ବୁଡ଼ି ରହି ଅଯଥାରେ ଅର୍ଥ ଖର୍ଚ୍ଚ କରୁଥିଲେ । ଫଳରେ ରାଜକୋଷ ଶୂନ୍ୟ ହୋଇଗଲା । ସେ ଲୋକମାନଙ୍କର ଭଲ-ମନ୍ଦ ପ୍ରତି ଦୃଷ୍ଟି ଦେଲେ ନାହିଁ, ପ୍ରଜାମାନଙ୍କ ଉପରେ ଲଦି ଦିଆଗଲା ମାଛ କର, ଗଛ କର, ମହୁକର, ଚମଡ଼ା କର, ଅଣିରା ବାଛୁରୀ ଖାସୁକଲେ କର, ବିବାହ କରି ନବବଧୂ ଆଣିଲେ ମଧୁଶଯ୍ୟା କର, ମାନସିକ ରଖି ପିଲାର ମସ୍ତକ ମୁଣ୍ଡନ କଲେ କର ଆଦି ୬୪ ପ୍ରକାର ଅବାଞ୍ଛିତ କର । କେହି ଗରିବ ପ୍ରଜା ତାହା ଦେବାକୁ ଅସାମର୍ଥ୍ୟ ପ୍ରକାଶ କଲେ, ସେ ରାଜକର୍ମଚାରୀଙ୍କର ନାଲି ଆଖିର ଶିକାର ହେଉଥିଲା । ସେମାନେ ପ୍ରଜାମାନଙ୍କୁ ନିର୍ଘୁମ ପ୍ରହାର କରି ଜୋର ଜବରଦସ୍ତ ଖଜଣା ଆଦାୟ କରୁଥିଲେ । ପ୍ରଜାମାନେ ରାଜାଙ୍କ ନିକଟରେ ଆପତ୍ତି କଲେ ଓଲଟା ଫଳ ଭୋଗ କରିବାକୁ ବାଧ୍ୟ ହେଉଥିଲେ ।

ତା ଛଡ଼ା ରାଜ୍ୟର ସମସ୍ତ ଉତ୍କୃଷ୍ଟ ଜିନିଷ ଉପରେ ରାଜାଙ୍କର ଏକଚାଟିଆ ଅଧିକାର ଥିଲା । ରାଜାଙ୍କର କର୍ମଚାରୀମାନେ ପ୍ରଜାମାନଙ୍କୁ ଭୟ ଦେଖାଇ ପୋଖରୀରୁ ମାଛ, ବାଡ଼ି ବଗିଚାରୁ ଫଳ ଓ ଫସଲମାନ ନେଇ ରାଜାଙ୍କୁ ଭେଟି ଦେଉଥିଲେ । ରାଜା ଏହା ପାଇ କର୍ମଚାରୀଙ୍କୁ ତାରିଫ କରିବା ବେଳେ ନିର୍ଯ୍ୟାତିତ ପ୍ରଜା ନିଜ ଗୃହରେ ନୀରବ ଅଶ୍ରୁସଂପାତ କରୁଥିଲେ । ଆହୁରି ମଧ୍ୟ ରାଜ୍ୟର ସୁନ୍ଦରୀ ଝିଅ-ବୋହୂମାନଙ୍କ ଉପରେ ରାଜାଙ୍କର କାମ ଦୃଷ୍ଟି ନିବଦ୍ଧ ଥିଲା । ସେ ସେମାନଙ୍କୁ ଜବରଦସ୍ତ ରାଜପ୍ରସାଦକୁ ଡ଼କାଇ ନେଇ ଉପଭୋଗ କରୁଥିଲେ । ଝିଅ ବୋହୂମାନେ ରାଜାଙ୍କର ଆଢୁଆଳରେ ରହିବା ପାଇଁ ଚିତା କୁଟାଇ ନିଜକୁ ଅସୁନ୍ଦରୀ ଭାବେ ପ୍ରତିପାଦିତ କରିବାକୁ ପଶ୍ଚାତପଦ ହେଉ ନଥିଲେ ।

ଜମିବାଡ଼ିର ଦଖଲ ସ୍ୱତ୍ୱ ଉପରେ ରାଜାଙ୍କର ଥିଲା ସଂପୂର୍ଣ୍ଣ ଅଧିକାର । କୃଷି ବିନିମୟରେ ରାଜସ୍ୱଦାନ ହିଁ ପ୍ରଜାମାନଙ୍କର ଥିଲା ଏକମାତ୍ର ଭରସା । ଜମି ବାଡ଼ିର ଦଖଲ ସ୍ୱତ୍ୱ ନିମିତ୍ତ ଅମଲାମାନଙ୍କୁ ଲାଞ୍ଚ ଦେଇ ସନ୍ତୁଷ୍ଟ କରିବା ଥିଲା ପ୍ରଜାମାନଙ୍କର ପ୍ରଧାନ ଦାୟିତ୍ୱ । ଏହା ସହିତ ପ୍ରଜାମାନଙ୍କୁ ରାଜଶକ୍ତି ତରଫରୁ ବେଠୀ ଖଟିବା ପାଇଁ ବାଧ୍ୟ କରାଯାଉଥିଲା ।

୧୯୧୮ ମସିହାର କଥା । କନିକାରେ ଦୁର୍ଭିକ୍ଷ ପଡ଼ିଥିବାରୁ ପ୍ରଜାମାନେ ଖାଦ୍ୟାଭାବଜନିତ ଦୁଃଖରେ ମ୍ରିୟମାଣ ହୋଇଥାନ୍ତି । ମାତ୍ର ରାଜା ସେମାନଙ୍କର ଅଭାବ ପ୍ରତି କୌଣସି କର୍ଣ୍ଣପାତ ନ କରି ପୂର୍ବ ପ୍ରଚଳ କରଜ ଧାନ ଆଦାୟ କରି ଚାଲିଲେ । ନିରନ୍ନ ପ୍ରଜାଗଣ କରଜ ପରିଶୋଧ

ଥିବା କରିବେ କିପରି ? ତେଣୁ ସେମାନେ ରାଜାଙ୍କର ନିର୍ମମ ଚାବୁକ୍ ମାଡ଼ର ଶିକାର ହେଲେ ।

ସେତେବେଳେ ରାଜା ରାଜ୍ୟରେ କୌଣସି ଜନହିତକର କାର୍ଯ୍ୟ କରୁନଥିଲେ । କନିକାର ଏତେ ବଡ଼ ଅଞ୍ଚଳରେ କୌଣସି ଭଲ ରାସ୍ତା ବା ବଡ଼ ସ୍କୁଲ ନଥିଲା । ମୋଟାମୋଟି ଭାବରେ କହିବାକୁ ଗଲେ କନିକାରେ ସେ ସମୟରେ ଅନ୍ଧାରୀ ଶାସନ ଚାଲିଥିଲା ।

ଏତେ ସବୁ ନିର୍ଯ୍ୟାତନା ଓ ଅବିଚାର ସତ୍ତ୍ୱେ ବି କନିକାର ପ୍ରଜାକୁଳ ଥିଲେ ନୀରବ ନିଶ୍ଚଳ । ପ୍ରତିବାଦ କରିବାର ଶକ୍ତି ସେମାନଙ୍କର ଲୋପ ପାଇ ଯାଇଥିଲା । ମାତ୍ର ସେମିତି ଏକ ପରିସ୍ଥିତି ମଧ୍ୟରେ, ମୂକ ପ୍ରଜାଙ୍କ କଣ୍ଠରେ ଭାଷା ଭରିଦେବା ପାଇଁ, ନିଷ୍ପେଷିତ ଜାତିକୁ ଜାଗ୍ରତ କରିବା ପାଇଁ ଆଗଭର ହୋଇଥିଲେ ଜଣେ ଯୁବକ । ସେ ହେଉଛନ୍ତି କନିକାର ମୁକୁଟ ବିହୀନ ସମ୍ରାଟ ବିପ୍ଳବୀ ବୀର ଚକ୍ରଧର ବେହେରା । ତାଙ୍କୁ କନିକା ବିପ୍ଳବର ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୮୯୪ ମସିହା ଜୁଲାଇ ୧୬ ତାରିଖରେ ଆକପଡ଼ା ଗ୍ରାମରେ ତାଙ୍କର ଜନ୍ମ । କନିକାର ସେ ପ୍ରଥମ ମ୍ୟାଟ୍ରିକ୍ୟୁଲେଟ । ଏହି ଯୁବକ କନିକା ରାଜ ଦରବାରରେ ହିସାବ ରକ୍ଷକ ରୂପେ ଚାକିରୀ ଜୀବନ ଆରମ୍ଭ କରିଥିଲେ ମଧ୍ୟ କନିକା ରାଜାଙ୍କର ଅନୀତି, ଅତ୍ୟାଚାର ତାଙ୍କୁ ଏତେ ପ୍ରଭାବିତ କଲା ଯେ ସେ ଚାକିରୀର ମୋହ ଛିନ୍ନ କରି କନିକା-ବିପ୍ଳବର ସୂତ୍ରପାତ କଲେ । ହଜାର ହଜାର ପ୍ରଜାଙ୍କୁ ଏକଜୁଟ୍ କରି ରାଜଶକ୍ତିର ସ୍ୱେଚ୍ଛାଚାରିତାକୁ ମାନି ନ ନେବା ପାଇଁ ସେ କମର ଭିଡ଼ି ପଦାକୁ ବାହାରି ଆସିଲେ । କନିକାର ପ୍ରଜାଙ୍କ ପାଇଁ ସେ ସାଜିଲେ ବିପ୍ଳବୀ ।

ଅବଶ୍ୟ ଏହା ପୂର୍ବରୁ ୧୯୨୧ ମସିହାରେ ରାମଦାସ ବାବାଜୀ, ଯଦୁମଣି ମଙ୍ଗରାଜ, ଅଟଳ ବିହାରୀ ଆଚାର୍ଯ୍ୟ ଓ ଭାଗିରଥୀ ମହାପାତ୍ର ପ୍ରମୁଖ କଂଗ୍ରେସ ନେତାମାନେ କେତେକ ଲୋକଙ୍କୁ ଏକଜୁଟ କରି ରାଜ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ ରାଜ ପ୍ରାସାଦ ନିକଟରେ ଏକ ସଭା କରିଥିଲେ । ଏହା ଥିଲା କନିକା ଇତିହାସର ପ୍ରଥମ ଖୋଲାଖୋଲି ବିପ୍ଳବ । ମାତ୍ର ଏହା ସେତେ ଫଳପ୍ରଦ ହୋଇନଥିଲା । ତା' ଛଡ଼ା ରାଜାଙ୍କ ପରାମର୍ଶରେ ମହାନ୍ ନେତା ରାମ ଦାସଙ୍କୁ ଗିରଫ କରାଯାଇଥିଲା । ଫଳରେ ଆନ୍ଦୋଳନ ଫିକା ପଡ଼ିଗଲା । ଠିକ୍ ଏତିକିବେଳେ ଚକ୍ରଧର ବେହେରା ଆସି ଗିରଫର ପ୍ରତିବାଦ କରି ଆନ୍ଦୋଳନକୁ ପୁନର୍ଜୀବିତ କରିଥିଲେ ଓ ତାଙ୍କର ଜାମିନଦାର ହୋଇଥିଲେ ।

୧୯୨୨ ମସିହା ଜାନୁୟାରୀ ମାସରେ ସାଥୀ ସନ୍ଥଚରଣ ବେହେରା, ଭଗବାନ୍ ଦୀକ୍ଷିତ, ବନମାଳି ନାୟକ, ଗୟାଧର ସାମଲ, କୈଳାସ ସାମଲ, ମଣି ଜେନା, କୃଷ୍ଣ ପରିଡ଼ା, ଇନ୍ଦ୍ରମଣି ଦାସ, ନିଧି ତିଆଡ଼ି, ବାସୁଦେବ ତରାଇ ପ୍ରଭୃତିଙ୍କ ସହଯୋଗରେ ଚକ୍ରଧରବାବୁଙ୍କ ସଭାପତିତ୍ୱରେ ମେଘା ନୂଆ ଗାଁ ଦୋଳ ମଣ୍ଡପରେ ଏକ ବୈଠକ ବସି ଆରମ୍ଭ ହୋଇଥିଲା କର୍ମୀ ସଂଗ୍ରହ ଅଭିଯାନ । ସହଯୋଗିତା କଲେ ହଜାର ହଜାର ପ୍ରଜା । ବାରିଆଡ଼େ ଆନ୍ଦୋଳନର ନିଆଁ ଜଳି ଉଠିଲା । ଏହା ଏତେ ବଡ଼ ଆକାର ଧାରଣ କଲା ଯେ ରାଜା ପ୍ରମାଦ ଗଣିଲେ । ତେଣୁ ସେ ପ୍ରଜାମେଳିକୁ ଧୂଳିସାତ କରିଦେବା ପାଇଁ ବିଦ୍ରୋହୀ ନେତା ଚକ୍ରଧର ବେହେରା ଓ ଭଗବାନ୍ ଦୀକ୍ଷିତଙ୍କୁ ମେ' ୨୯ ତାରିଖରେ ଘଣ୍ଟେଶ୍ୱର କଚେରୀକୁ ଡ଼କାଇ ପ୍ରବଳ ମାଡ଼ ଦେଇଥିଲେ ।

ମାତ୍ର ଏଥିରେ ବିଚଳିତ ହୋଇ ନଥିଲେ ବିପ୍ଳବୀ ଚକ୍ରଧର । ସେ ସମସ୍ତ ପ୍ରଜାଙ୍କର ଆଶୀର୍ବାଦକୁ ମଥାରେ ଧାରଣ କରି ଆଗେଇ ଚାଲିଥିଲେ ନିଜର କର୍ତ୍ତବ୍ୟ ପଥରେ ।

୧୯୨୨ ମସିହାରେ ବିପ୍ଳବୀ କବି ଆନନ୍ଦ ଚନ୍ଦ୍ର ଜେନାଙ୍କ ଲେଖନୀରୁ ଆତ୍ମପ୍ରକାଶ କଲା 'ଦୁଃଖିନୀ-କନିକା' ପୁସ୍ତକ । ସେହି ବିପ୍ଳବାତ୍ମକ ପୁସ୍ତକର ପ୍ରଚାର ଫଳରେ ଲୋକମାନଙ୍କ ମଧ୍ୟରେ ବୈପ୍ଳବିକ ଚେତନାର ଜାଗ୍ରତ ହେଲା । ତା ଛଡ଼ା ୧୯୨୨ ମସିହା ଏପ୍ରିଲ ୨୩ ତାରିଖରେ ପତ୍ରପୁର ଘାଟଠାରେ ପୋଲିସ୍ ଗୁଳି ଚୋଟରେ ପ୍ରାଣବଳି ଦେଲେ ବାସୁ ସେଠୀ ଓ ବିଶ୍ୱନି ମହୁଆଳ । ସେ ଦୁହେଁ ହେଲେ କନିକା ମାଟିର ପ୍ରଥମ ଶହୀଦ । ଏଇ ପରି ରାଜାଙ୍କର ଅମାନୁଷିକତା ଲୋକଙ୍କ ଆଗରେ ଦିନକୁ ଦିନ ସ୍ପଷ୍ଟ ହୋଇ ଯିବାରୁ ବିପ୍ଳବର ପରିସର ବୃଦ୍ଧି ପାଇବାକୁ ଲାଗିଲା । ତେଣୁ ବିପ୍ଳବୀ ଚକ୍ରଧରଙ୍କ ନେତୃତ୍ୱରେ ମାତି ଉଠିଲେ ହଜାର ହଜାର ପ୍ରଜା । ସେମାନଙ୍କର ପ୍ରତିବାଦର ହୁଙ୍କାରରେ ଥରି ଉଠିଲା କନିକାର ଛାତି । ବ୍ୟତିବ୍ୟସ୍ତ ହୋଇ ଉଠିଲେ ସ୍ୱେଚ୍ଛାଚାରୀ ରାଜା ।

ଚକ୍ରଧରଙ୍କର ବିପ୍ଳବ-ଯଜ୍ଞକୁ ଘୃତ ଢ଼ାଳି ଯେଉଁ କେତେକ ମହାପୁରୁଷ ଆହୁତି ତେଜୋଦୀପ୍ତ କଲେ, ସେମାନଙ୍କ ମଧ୍ୟରେ ଡ଼ଃ ହରେକୃଷ୍ଣ ମହତାବ, ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ, ଯଦୁମଣି ମଙ୍ଗରାଜ, ଆଚାର୍ଯ୍ୟ ହରିହର, ବିପ୍ଳବୀ କବି ବାଞ୍ଛାନିଧି ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଶ୍ୱନାଥ ଦାସ ଆଦି ଉଲ୍ଲେଖଯୋଗ୍ୟ । ଚକ୍ରଧରଙ୍କ ସହପାଠୀ ଡ଼ଃ ମହତାବ ତାଙ୍କ ସହିତ ମିଶି ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଉତ୍କଳମଣି କନିକାକୁ ଆସି ରାଜାଙ୍କର ପାଶବିକତାକୁ ବେଶ ଉପଲବ୍ଧି କରିଥିଲେ । ଏହା କବିତା ରୂପ ପାଇଥିଲା, ତାଙ୍କ 'ବନ୍ଦୀର ଆତ୍ମକଥା'ରେ ।

ବିପ୍ଳବୀ ଚକ୍ରଧରଙ୍କର ଅନ୍ତରଙ୍ଗ ସହକର୍ମୀ ଏ ସନ୍ଥ ଚରଣ ବେହେରା ରାଜାଙ୍କ ଗୁଣ୍ଡାମାନଙ୍କ ଆକ୍ରମଣର ଶିକାର ହୋଇ ଚିକିତ୍ସା ପାଇଁ ବମ୍ବେ ଯାଇଥିଲେ । ତାଙ୍କ ଠାରୁ ମହାତ୍ମା ଗାନ୍ଧୀ, ରାଜଗୋପାଳାଚାରୀ ଓ ଚିତ୍ତ ରଂଜନ ଦାସ କନିକା-ବିପ୍ଳବ ସମ୍ବନ୍ଧରେ ଅବଗତ ହେଲେ । ଜାତୀୟ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ କନିକାର ଅତ୍ୟାଚାର ଆଲୋଚିତ ହୋଇ ଏହାର ପ୍ରତିକାର ପ୍ରସ୍ତାବ ଗୃହୀତ ହୋଇଥିଲା । ୧୯୨୭ ମସିହାରେ ମହାତ୍ମାଗାନ୍ଧୀ ଓଡ଼ିଶା ଆସିଲା ବେଳେ ମହେଇ ନଦୀରେ ପଞ୍ଚୁଟିକ୍ରି ପର୍ଯ୍ୟନ୍ତ ଜଳଯାନରେ ଯାତ୍ରା କରି ଆସିଥିଲେ ଓ କନିକା - ବିପ୍ଳବର ନେତା ଚକ୍ରଧର ଓ ତାଙ୍କ ସହକର୍ମୀଙ୍କ ଠାରୁ କନିକାବାସୀଙ୍କ ଦୁଃଖ ଦୁର୍ଦ୍ଦଶା ଶୁଣି ଅହିଂସା ମାର୍ଗରେ ଅତ୍ୟାଚାରର ମୁକାବିଲା କରିବା ପାଇଁ ପରାମର୍ଶ ଦେଇଥିଲେ ।

୧୯୩୦ ମସିହା ଜୁନ ୨୯ ତାରିଖରେ ଚୌକିଦାରୀ ଅର୍ଡ଼ିନାନସ୍ ଭଙ୍ଗ କରିବା ଅଭିଯୋଗରେ ତାଙ୍କୁ ଗିରଫ କରାଗଲା ଓ ସେ ବାଲେଶ୍ୱର ଜେଲରେ ବନ୍ଦୀ ଜୀବନ ଯାପନ କଲେ । ସେଇଠି ହିଁ ରଚିତ ହୋଇଥିଲା 'ବନ୍ଦୀର ବିଳାପ' ପୁସ୍ତକ ।

ତାଙ୍କର ବିପ୍ଲବ ବେଳକୁ ବେଳ ଯେତେ ବ୍ୟାପକ ଆକାର ଧାରଣ କରୁଥାଏ, ରାଜାଙ୍କର କୋପଦୃଷ୍ଟି ସେତେ ପରିମାଣରେ ଚକ୍ରଧରଙ୍କ ଉପରେ ନିବଦ୍ଧ ହେଉଥାଏ । ସେ ତାଙ୍କୁ ଗୁଣ୍ଡା ଲଗାଇ ବିଭିନ୍ନ ସମୟରେ ମାରିବା ପାଇଁ ଯୋଜନା କରିଛନ୍ତି । ମାତ୍ର ଚକ୍ରଧରଙ୍କର ପ୍ରତ୍ୟୁତ୍ପନ୍ନମତିତା ଓ ନ୍ୟାୟପରାୟଣତା ଆଗରେ ତାହା ହାର ମାନିଛି । ଚକ୍ରଧର ରାଜାଙ୍କର ଆକ୍ରମଣରୁ ରକ୍ଷା ପାଇବା ପାଇଁ ନାନା ପ୍ରକାର ଅଭିନୟର ଅବତାରଣା କରିଛନ୍ତି । କେତେବେଳେ ଶଙ୍ଖା ଶାଢ଼ୀ ପିନ୍ଧି ବଧୂବେଶ ହୋଇ ରାଜକର୍ମଚାରୀଙ୍କ ଆଖିରେ ଧୂଳିଦେଇଛନ୍ତି ତ, କେତେବେଳେ ବାଲେଶ୍ୱରରେ ପାନ ଦୋକାନ କରି ଜୀବିକା ନିର୍ବାହ କରିଛନ୍ତି । ତାଙ୍କ ପାଇଁ ନିଆଁ ପାଣି ବନ୍ଦ ହୋଇଯାଇଛି । ଏମିତିକି ଦିନେ ରାଜାଙ୍କର ଅତର୍କିତ ଆକ୍ରମଣରେ ଲୁଚି ପଳାଇ ଯାଉଥିଲା ବେଳେ ନିଜର ଶିଶୁପୁତ୍ରକୁ ମଧ୍ୟ ବଳି ଦେଇଛନ୍ତି । କି ତ୍ୟାଗ ! କେଡ଼େ କର୍ତ୍ତବ୍ୟନିଷ୍ଠ !

ଶେଷରେ କନିକାବାସୀଙ୍କ ଭାଗ୍ୟାକାଶରୁ ଅପସରି ଗଲା ଦୁଃଖ, ଦୈନ୍ୟର ବାଦଲ । ଚକ୍ରଧରଙ୍କର ଉଦ୍ୟମ ଫଳରେ ୧୯୨୨ ମସିହାରେ କନିକାରେ ଆରମ୍ଭ ହେଲା ସରକାରୀ ବନ୍ଦୋବସ୍ତ ଓ ୧୯୩୦ ମସିହାରେ ଏହା ସମାପ୍ତ ହୋଇସାବ୍ୟସ୍ତ କଲା ଦଖଲ ଜମି ଉପରେ ପ୍ରଜାଙ୍କର ସ୍ୱତ୍ୱ । ରାଜଶକ୍ତି ପରାଜୟ ଗ୍ଲାନିରେ ହେଲେ ମ୍ରିୟମାଣ । ତାଙ୍କର ବିଷ ଦନ୍ତର ମୂଳୋତ୍ପାଟନ ହେଲା । ପ୍ରଜାମେଳି ଓ ଆନ୍ଦୋଳନର ବହ୍ନିଶିଖା ମଧ୍ୟରେ ସମାଧି ଲଭିଲା ବେଠୀ ବେଗାରୀ ଓ ଅନେକ ଅବାଞ୍ଛିତ କର । ଶାନ୍ତିରେ ନିଶ୍ୱାସ ମାରିଲେ ଝିଅ ଓ ବୋହୂ ।

'କନିକା-ବିପ୍ଳବ'କୁ ସାକାର ରୂପ ଦେବାରେ କନିକାର ଯୋଗ୍ୟତମ ସନ୍ତାନ ବିପ୍ଳବୀ ଚକ୍ରଧରଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଭଗୀରଥର ପ୍ରତିଜ୍ଞା ଓ ଚାଣକ୍ୟଙ୍କର ନୀତି ନେଇ କ୍ରୁର ରାଜଶକ୍ତି ଆଗରେ ଏ ମାଟି ମା'ର ଦାବୀ ଉପସ୍ଥାପନ କରିଥିଲେ । ଯଦିଓ ୧୯୬୩ ମସିହା ଜାନୁଆରୀ ପହିଲାରେ ତାଙ୍କ ଜୀବନର ଦୀପଶିଖା ଲିଭିଯାଇଛି, ତଥାପି ସେ ଆମ ନିକଟରେ ଅମର ହୋଇ ରହିଛନ୍ତି ।

ଗ୍ରା/ପୋ : ତୋଟପଡ଼ା
ଥା - ଘଣ୍ଟେଶ୍ୱର
ଜି : ଭଦ୍ରକ - ୭୫୬ ୧୨୯

—0—

କହ କହ କେଉଁ ଜାତି ପାଇଛି ମୁକତି
କରି ଝୁରି ହାରି ଗୁହାରୀ,
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରୀ ।
ଯେବେ ବାଘ ମୁହେଁ ପଡ଼େ ଶିକାର
ମିନତିରେ ପାଏ କି ସେ ଉଧାର
ଛାଡ଼ିକି ଦିଏ କେବେ ଧୀବର ଜାଲରୁ
ନଗଲେ ମୀନ ଆପେ ବାହାରି
ଦେଖ ଆଇରିସ୍, ଚାଇନା, ଜାପାନ
ଆମେରିକା, ଆଫଗାନ ପଠାନ
ପରାଣପାତ ହେଲେ ମୁକତି ଜୀବନ - ମରଣ ନ ବିଚାରି
(ଆଜି) ଅଭିମନ୍ୟୁପରି ଘେରି ଚଉଦିଗୁଁ ଜନନୀ କୁମାରୀ
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ
ଚକ୍ରଟି କରିଦେବ ପାରି ।

ଜାତୀୟ କବି ବାଞ୍ଛାନିଧି ମହାନ୍ତି

# ସଂଗ୍ରାମୀ ନିର୍ମଳ ଓ ଆମ୍‌କୋ -ସିମ୍‌କୋ

ଡ଼ଃ ବ୍ରଜମୋହନ ମହାନ୍ତି

ମହାତ୍ମାଗାନ୍ଧୀଙ୍କ ଯାଦୁକାରୀ ସ୍ପର୍ଶରେ ସ୍ୱାଧୀନତା ସଂଗ୍ରାମର ମୋଡ଼ ସମଗ୍ର ଭାରତରେ ଏକ ଭିନ୍ନ ମୋଡ଼ ନେଇଥିଲା । ସତେ ଯେମିତି ପ୍ରଳୟ ଅଗ୍ନିଶିଖା ଜଳିଉଠିଥିଲା ପୁରପଲ୍ଲୀ, ସହରବଜାର ଏପରିକି ନିଭିଛ ଅରଣ୍ୟ ଅଞ୍ଚଳରେ ମଧ୍ୟ । ସଂଗ୍ରାମୀମାନେ ପରିବେଶ ଓ ପରିସ୍ଥିତିର ମୁକାବିଲା କରି ସ୍ୱର ଉତ୍ତୋଳନ କରିଥିଲେ । ସ୍ଥାନ ବିଶେଷରେ ସେମାନେ ତୀବ୍ର ପ୍ରତିବାଦ କରି ଡ଼େଇଁ ପଡୁଥିଲେ ଗର୍ଜନମୁଖୀ ବନ୍ଧୁକ ସମ୍ମୁଖକୁ । ପାପଡ଼ାହାଣ୍ଡି, କାଇପଦ୍ରା, କଳାମାଟିଆ, ଇରମ, ଇଞ୍ଚୁଡ଼ି ଏବଂ ପାହାଡ଼ ଘେରା ସୁନ୍ଦରଗଡ଼ ଜିଲ୍ଲାର ଆମ୍‌କୋ-ସିମ୍‌କୋ ଅଞ୍ଚଳର କାହାଣୀ ଶୁଣିଲେ ରକ୍ତ ତାତି ଉଠେ । ମନ ଆପେ ଆପେ କହେ- ସ୍ୱାଧୀନତା ଆମର ଜନ୍ମଗତ ଅଧିକାର ।

ବୀରମିତ୍ରପୁର ଠାରୁ ମାତ୍ର କିଛି ଦୂର ପରେ ରାଏବଗା ନିକଟବର୍ତ୍ତୀ ଛୋଟିଆ ପଲ୍ଲୀଗାଁ ଆମ୍‌କୋ-ସିମ୍‌କୋ । ଅରଣ୍ୟ ଘେରା ପରିବେଶ । ବିହାରକୁ ଲାଗି ଓଡ଼ିଶାର ସୀମାନ୍ତବର୍ତ୍ତୀ ଗ୍ରାମ । ପାଖକୁ ଲାଗି ମୋଗଟୋଲି, ଚଣାବାହାଲ, କୁସୁମବାହାଲ ଏବଂ ମହୁଲ ଟୋଲି ଇତ୍ୟାଦି । ଗ୍ରାମର ଅଧିବାସୀ ମୁଖ୍ୟତଃ ଆଦିବାସୀ ମୁଣ୍ଡା ପରିବାରର । ସୂର୍ଯ୍ୟାସ୍ତ ପରେ ହାଣ୍ଡିଆ ପିଇ ନାଚିବା ଏବଂ ଗାଇବାରେ ଏମାନଙ୍କର ଆନନ୍ଦ । କିନ୍ତୁ ଇଂରେଜ ଶାସନ ଓ ଗଡ଼ଜାତି ଅତ୍ୟାଚାର ଏ ଅଞ୍ଚଳରେ ମଧ୍ୟ ଭୟଙ୍କର ଅବସ୍ଥା ସୃଷ୍ଟିକରିଥିଲା । ମନଇଚ୍ଛା କର ଆଦାୟ, ବେଠି, ଗୋଟି ଏବଂ ଯେଉଁ ଜଙ୍ଗଲରେ ଆଦିବାସୀମାନେ ନିଜର ଜୀବିକାର୍ଜନ କରୁଥିଲେ ସେହି ଜଙ୍ଗଲରୁ ସେମାନଙ୍କୁ ବଞ୍ଚିତ କରିବା ବ୍ୟତିବ୍ୟସ୍ତ କରୁଥିଲା ପ୍ରଜାମାନଙ୍କୁ । ଏ ପ୍ରକାର ଅତ୍ୟାଚାରର ମୁକାବିଲା କରି ସୃଷ୍ଟି ହୋଇଥିଲା ପାଇକ ବିଦ୍ରୋହ, ସିପାହୀ ବିଦ୍ରୋହ, ବୀର ସୁରେନ୍ଦ୍ର ସାଏ, ବିର୍ସାମୁଣ୍ଡା ଏବଂ ବକ୍ସିଜଗବନ୍ଧୁଙ୍କ ବିଦ୍ରୋହ । ସେହିପରି ଏକ ବିଦ୍ରୋହର କାହାଣୀ ଆମ୍‌କୋ-ସିମ୍‌କୋର କାହାଣୀ ।

ସୁନ୍ଦରଗଡ଼ ଗଡ଼ଜାତର ଅଧୀନସ୍ଥ ଆମକୋସିମ୍‌କୋ, ମୋଗଟୋଲି, ଚଣାବାହାଲ, କୁସୁମବାହାଲ, ମହୁଲ ଟୋଲି ଏବଂ ରାଏବଗା ଇତ୍ୟାଦି ଗ୍ରାମର ପ୍ରଜାମାନଙ୍କ ଉପରେ ବସାଗଲା କର । ଜଙ୍ଗଲ ଜାତ ଦ୍ରବ୍ୟ ଉପରେ କଟକଣା କରାଗଲା । ପ୍ରତିବାଦ କଲେ ଶୁଣିବାକୁ କେହି ନାହିଁ । ପ୍ରଜାମାନେ କେଉଁଠୁ ଆଣି କର ପଇଠ କରିବେ ? ଏଣେ ପୁଣି ଆଦେଶ-କର ନ ଦେଲେ, ଆଇନ୍ ଅମାନ୍ୟ କଲେ କଠୋର ଦଣ୍ଡ ଦିଆଯିବ । ଏପରି ଅବସ୍ଥା ଦେଖି ବିଦ୍ରୋହ୍ କରି ଉଠିଲେ ନିର୍ମଳ ମୁଣ୍ଡା । ଆଖ ପାଖ ଲୋକମାନଙ୍କୁ ଡ଼କାଇ ପଠାଇଲେ ସେ । ଏକାଠି ହେଲେ ମୁଣ୍ଡିଆ ତଳେ । ସିଦ୍ଧାନ୍ତ ନେଲେ ସମସ୍ତେ ସେମାନେ ଏକଜୁଟ୍ ହୋଇ ଆପତ୍ତି କରିବେ । ଜଙ୍ଗଲରେ ଚଳିବାପାଇଁ ହୁକମ ମାଗିବେ । ତାହାହିଁ କଲେ । ଆବେଦନ ପତ୍ର ଗଲା । କିନ୍ତୁ ଫଳ କିଛି ହେଲା ନାହିଁ । ଉତ୍ତର ମିଳିଲା ଯଦି କିଛି କରିବାର ଅଛି ତେବେ ସମ୍ବଲପୁରରେ ଥିବା ପଲିଟିକାଲ୍ ଏଜେଣ୍ଟଙ୍କୁ ଦରଖାସ୍ତ ଦିଅ । ସେହି ପରାମର୍ଶ ଅନୁସାରେ ପଲିଟିକାଲ ଏଜେଣ୍ଟଙ୍କୁ ଦରଖାସ୍ତ ଦିଆଗଲା । କିନ୍ତୁ ଉତ୍ତର ଆସିଲା, ତୁମର ଦାବୀ ପୂରଣ କରାଯାଇ ପାରିବ ନାହିଁ । ଶେଷରେ ବଜ୍ର କଣ୍ଠରେ ଶପଥ ନେଲେ ନିର୍ମଳ ମୁଣ୍ଡା- ଆମେ ଜଙ୍ଗଲ ଆଇନ୍ ମାନିବା ନାହିଁ, ବେଠି ଖଟିବା ନାହିଁ, ଗୋଟି ଖଟିବା ନାହିଁ, ବିଦ୍ରୋହ କରିବା ଗଡ଼ଜାତ ଶାସନ ଏବଂ ଇଂରେଜ ସରକାରଙ୍କ ବିରୁଦ୍ଧରେ ।

ଏ ଥିଲା ୧୯୩୬ ମସିହାର ଘଟଣା । ସେତେବେଳକୁ ସ୍ୱାଧୀନତା ସଂଗ୍ରାମ ଚୂଡ଼ାନ୍ତରେ ପହଞ୍ଚିଥିଲା । ଲବଣ ସତ୍ୟାଗ୍ରହ ଏକ ନୂତନ ଉଦ୍ଦୀପନା ଭରି ଦେଇଥିଲା ସଂଗ୍ରାମୀମାନଙ୍କ ପ୍ରାଣରେ । ଏହି ସଂଗ୍ରାମର କାହାଣୀ ଉଦ୍‌ବୁଦ୍ଧ କରିଥିଲା ନିର୍ମଳ ମୁଣ୍ଡାଙ୍କୁ । ବେଳେବେଳେ ବିଭିନ୍ନ ସ୍ଥାନକୁ ଯାତ୍ରା କରି ସେ ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ବିଭିନ୍ନ ସମ୍ବାଦ ସଂଗ୍ରହ କରୁଥିଲେ ଓ ଏକଜୁଟ୍ କରୁଥିଲେ ସ୍ଥାନୀୟ ଅଧିବାସୀମାନଙ୍କୁ ଚରମ ପରୀକ୍ଷାର ସମ୍ମୁଖୀନ ହେବା ପାଇଁ । ତାଙ୍କର ସଙ୍କେତ ଥିଲା ନାଗରା ବାଦ୍ୟ । ପ୍ରତ୍ୟେକ ଗାଁର ମୁଣ୍ଡରେ ଗଛ ଉପରେ ଜଣେ ନାଗରା ଧରି ବସି ରହେ । ଯଦି କେହି ପୋଲିସ୍ କିମ୍ବା ସେନାବାହିନୀର ବ୍ୟକ୍ତି ଆସିବାର ଦେଖାଯାଏ ତେବେ ସଙ୍ଗେ ସଙ୍ଗେ ନାଗରା ବାଜି ଉଠେ । ଅଚାନକ ଆରମ୍ଭ ହୋଇଯାଏ ପୋଲିସ ଉପରେ ଆକ୍ରମଣ କିମ୍ବା ଗାଁ ଛାଡ଼ି ପଳାଇ ଯାଆନ୍ତି ବିଦ୍ରୋହୀ । ଧୀରେ ଧୀରେ ପ୍ରବଳ ହେଲା ଏହି ପ୍ରଜାମେଳି । ଗାଙ୍ଗପୁର ଗଡ଼ରୁ ଖବର ଗଲା ପଲିଟିକାଲ ଏଜେଣ୍ଟଙ୍କ ନିକଟକୁ ଅବସ୍ଥା ସମ୍ଭାଳିବା ପାଇଁ ।

ପଲିଟିକାଲ ଏଜେଣ୍ଟ କୌଶଳ ନିର୍ଦ୍ଧାରଣ କଲେ ଏ ପ୍ରଜାମେଳିକୁ ଦମନ କରିବା ପାଇଁ । ଚିଠି ଆସିଲା ନିର୍ମଳ ମୁଣ୍ଡାଙ୍କ ନିକଟକୁ- ଗାଙ୍ଗପୁର ରାଜପରିବାରର ପ୍ରତିନିଧି, ପଲିଟିକାଲ ଏଜେଣ୍ଟଙ୍କ ପ୍ରତିନିଧି ଓ ପୋଲିସ ବାହିନୀ ଆମ୍‌କୋ-ସିମ୍‌କୋରେ ପହଞ୍ଚିବେ ୧୯୩୯ ମସିହା ଏପ୍ରିଲ ମାସ ତା ୨୫ ରିଖ ଅପରାହ୍ନରେ । ସେଦିନ ସମସ୍ତେ ଉପସ୍ଥିତ ରୁହ, ସବୁର ବିଚାର କରାଯିବ । ନିର୍ମଳ ମୁଣ୍ଡା ଏ ପ୍ରସ୍ତାବକୁ

ଗ୍ରହଣ କଲେ, କିନ୍ତୁ ଗୋପନରେ ଖବର ଦେଲେ ଭାଇ ଜୋହାନ୍, ମାନିଆ, ଏବଂ ମଙ୍ଗଲ ପ୍ରଭୃତିଙ୍କୁ, ତଣାବାହାଲ, ମୋଗଲଟୋଲି, କୁସୁମବାହାଲ, ମହୁଲ ଟୋଲି ଓ ରାଏବ ଗାଁଲୋକମାନେ ଧନୁ, ତୀର ଓ ଠେଙ୍ଗା ଧରି ଗୋପନରେ ରହିବାପାଇଁ, ଯେମିତି ବିପଦ ପଡ଼ିଲେ ମୁକାବିଲା କରିହେବ ଏବଂ ନିଜର ପ୍ରତିରକ୍ଷା କରିହେବ । ସେହି ଅନୁସାରେ ପ୍ରାୟ ପ୍ରସ୍ତୁତ ରହିଲେ ୫୦୦ରୁ ଅଧିକ ଲୋକ ।

ଠିକ୍ ଦିନ ଗୋଟାଏ ବେଳକୁ ଆମ୍‌କୋ-ସିମ୍‌କୋ ନିକଟ ପଡ଼ିଆ ଭରପୂର । ଏତିକିବେଳେ ଗାଡ଼ି ଦିଶିଲା, ଅତି ଆନନ୍ଦରେ ନାଚି ଉଠିଲେ । ବୋଧହୁଏ ଆସିଗଲେ ସମସ୍ତେ ଆଲୋଚନା ପାଇଁ । କିନ୍ତୁ ଗାଡ଼ିରୁ ଓହ୍ଲାଇବା ବେଳକୁ ଦେଖାଗଲା ଇଂରେଜ ଫୌଜ ଏବଂ ବୀରମିତ୍ରପୁରର ପୋଲିସ୍ ବାହିନୀ । ନିର୍ମଳ, ଜୋହାନ୍, ମାନିଆ, ଏବଂ ମଙ୍ଗଲଙ୍କ ମୁହଁ ଫିକା ପଡ଼ିଗଲା । ଗୋଟିଏ ଛୋଟିଆ କୁଆଁଣିଆ ଘରେ ବସିରହିଥିଲେ ନିର୍ମଳ । ଶେଷରେ ଆସିଲେ ଇଂରେଜ ହାକିମ । ସାଲ୍ୟୁଟ ଦେଲେ ପୋଲିସ ଏବଂ ଇଂରେଜ ଫୌଜମାନେ । ହେଲେ ହାକିମ କୌଣସି କଥା ଶୁଣିବା ଅବସ୍ଥାରେ ନଥିଲେ । ସେ ଚିତ୍କାର କଲେ ଘନଘନ- ତୁମର ନେତା ନିର୍ମଳମୁଣ୍ଡା କାହିଁ ? ନିରୁତ୍ତର ସମସ୍ତେ । ଏଥର ସାହେବ ନିଜ ହଣ୍ଟରରେ ପିଟିବାକୁ ଲାଗିଲେ କେତେଜଣଙ୍କୁ । ସୃଷ୍ଟିହେଲା ଏକ ଅଦ୍ଭୁତ ପରିସ୍ଥିତି । ଏକାଧିକ ଲୋକ ପାଟିକରି କହିଉଠିଲେ - ମୁଁ ନିର୍ମଳ ମୁଣ୍ଡା । ହାକିମଙ୍କ ରାଗ ଆହୁରି ପଞ୍ଚମକୁ ଉଠିଲା । ଭାବିଲେ ସେ ନିଶ୍ଚୟ ଏ କୁଆଁଣିଆଘରେ ଅଛି ନିର୍ମଳମୁଣ୍ଡା । ରାଗରେ ଭିତରକୁ ପଶିଯାଇ ଯାଉ ତାଙ୍କୁ ଜେହି ଠେଙ୍ଗାରେ ପିଟିଦେଲା । ଆଉ ଅପେକ୍ଷା ନ କରି ସେ ପୋଲିସବନ୍ଧୁକର ବାୟୋନେଟ ମୁନରେ ଫୁଟାଇଦେଲେ ତିନି ଚାରିଜଣଙ୍କ ପେଟ । ଚିତ୍କାର କରି ଭୂଇଁ ଉପରେ ଗଡ଼ିଗଲେ ସେମାନେ । ଆଉ ସ୍ଥିର ରହିଲା ନାହିଁ ଜନ ସମୁଦ୍ର । ସତେ ଅବା ବନ୍ଧ ଭାଙ୍ଗିଗଲା । ନିର୍ମଳ ମୁଣ୍ଡାକି ଜୟ-ଶବ୍ଦରେ ପ୍ରକମ୍ପିତ ହେଲା ଚତୁର୍ଦ୍ଦିଗ । ଚାଲିଲା ଧନୁତୀର ବର୍ଷା ଏବଂ ଠେଙ୍ଗାପ୍ରହାର । ଏଣେ ହୁକୁମ ଦେଲେ ସାହେବ-ଗୁଳିକର ।

ଫୁଟିଲା ଗୁଳି-ଗୁଡୁମ୍ ଗୁଡୁମ୍ । ଅନ୍ଧାର ଘୋଟି ଆସିଥିଲା । ପଳାଇ ଯିବାକୁ ବାଟ ନାହିଁ । ଆମକୋ-ସିମ୍‌କୋର ମୁଣ୍ଡିଆ ଉପରେ ନିନାଦିତ ହେଉଥିଲା ଆକୁଳ ଚିତ୍କାର ।

ସଂଗ୍ରାମ ମୁହଁରେ ଢଳି ପଡ଼ିଲେ ୪୦ ଜଣ ସଂଗ୍ରାମୀ । ଆହତ ହେଲେ ପ୍ରାୟ ୮୨ ଜଣ ବିପ୍ଳବୀ । ରକ୍ତସ୍ରୋତ ବହି ଚାଲିଲା । ପଡ଼ିଆ ଉପରେ ଆମକୋ-ସିମକୋକୁ ଏକ ପବିତ୍ର ସଂଗ୍ରାମ ତୀର୍ଥରେ ପରିଣତ କରି । ଏହି ସଂଗ୍ରାମ ଶେଷରେ ବନ୍ଦୀ ହୋଇଥିଲେ ନିର୍ମଳ ମୁଣ୍ଡା । ଜେଲକୁ ଗଲାବେଳେ ସେ ୭ ବର୍ଷର ପୁଅ ଉଦୟ ଏବଂ ପତ୍ନୀ ମରିଅମକୁ କହିଥିଲେ - କାନ୍ଦନାହିଁ । ମୁଁ ଦେଶ ପାଇଁ ଯୁଦ୍ଧ କରୁଛି, ମୋର ବିଜୟ ସୁନିଶ୍ଚିତ ।

ନିର୍ମଳଙ୍କ ଉକ୍ତି ସତ୍ୟରେ ପରିଣତ ହେଲା । ଭାରତ ସ୍ୱାଧୀନ ହେଲା ୧୯୪୭ ମସିହା ଅଗଷ୍ଟମାସ ତା ୧୫ ତାରିଖରେ । ନିର୍ମଳଙ୍କୁ କିନ୍ତୁ ଭୁଲିନାହିଁ ଆମକୋ -ସିମ୍‌କୋ ପାହାଡ଼ । ଓଡ଼ିଶାର ସୀମାନ୍ତ ଆଦିବାସୀ ପଲ୍ଲୀରେ ତାଙ୍କର ଜନ୍ମ ହୋଇଥିଲା, ୧୮୯୩ ମସିହାରେ । ପିତା ମୋରା ମୁଣ୍ଡା ଥିଲେ ଧର୍ମ ପରାୟଣ ଶାନ୍ତ ଏବଂ ସ୍ନେହଶୀଳ ମଣିଷ । ମା' ଗୋମୀ ଥିଲେ ସ୍ନେହୀ ଓ ପରୋପକାରୀ । ପିଲାଦିନେ ନିର୍ମଳ ଜଙ୍ଗଲ ବଣପାହାଡ଼ରେ ବୁଲି ଦିନ କାଟୁଥିଲେ । ମୋରାଙ୍କ ବଡ଼ ପୁଅ ମ୍ୟାଥ୍ୟୁସ୍ ରାଞ୍ଚିରେ ରହୁଥିଲେ । ତେଣୁ ନିର୍ମଳଙ୍କୁ ପଠାଗଲା, ରାଞ୍ଚି ମିଶନ ସ୍କୁଲରେ ପଢ଼ିବା ପାଇଁ । ଏହି ସ୍କୁଲରେ ପାଠ ପଢୁଥିବା ସମୟରେ ସାହସିକତା ଦେଖାଉଥିଲେ ନିର୍ମଳ । ତାଙ୍କ ସାହସିକତା ଦେଖି ଶିକ୍ଷକମାନେ ପରାମର୍ଶ ଦେଲେ ସେନା ବାହିନୀରେ ଯୋଗ ଦେବା ପାଇଁ । ଏହି ପରାମର୍ଶରେ ଉତ୍ସାହିତ ହୋଇ ୧୯୧୪ ମସିହାରେ ନିର୍ମଳ ଯୋଗ ଦେଇଥିଲେ ସେନା ବାହିନୀରେ । ସେନାବାହିନୀରେ ଥିଲାବେଳେ ତାଙ୍କୁ ପ୍ରଥମ ମହାସମରରେ ଜଣେ ସାହସୀ ସୈନିକଭାବେ କାର୍ଯ୍ୟ କରିବାକୁ ହୋଇଥିଲା । ପାଣି ଜାହାଜରେ ଫ୍ରାନ୍ସର ଉପକୂଳ ଏବଂ ଅନ୍ୟାନ୍ୟ ଦେଶକୁ ମଧ୍ୟ ଯାତ୍ରା କରିଥିଲେ ନିର୍ମଳ । ଏହି ସେନାବାହିନୀରୁ ଅବ୍ୟାହତ ନେଇ ସେ ଗାଁକୁ ପ୍ରତ୍ୟାବର୍ତ୍ତନ କଲେ ୧୯୨୦ ମସିହାରେ । ଏହି ଗାଁରେ ପଢ଼ୋଶୀ ଆଦିବାସୀ ପିଲାମାନଙ୍କୁ ପାଠ ପଢ଼ାଇଲେ ଓ ଚାଷବାସ କରି ଦିନ କଟାଇଲେ । ସେ ଥିଲେ ଜଣେ ବୀର ସୈନିକ, ପ୍ରବୀଣ ଶିକ୍ଷକ, ସଫଳଚାଷୀ, ସଂସାରୀ ଏବଂ ପରଦୁଃଖରେ ଦୁଃଖୀ ସ୍ୱେଚ୍ଛାସେବୀ ସ୍ୱାଧୀନତା ସଂଗ୍ରାମୀ ।

କିଛିଦିନ ଗାଁରେ ରହିବାପରେ ସେ ସ୍ୱଚକ୍ଷୁରେ ଦେଖିଥିଲେ ଗାଁ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା । କର ଭାରରେ ପ୍ରପୀଡ଼ିତ ଗ୍ରାମବାସୀ, ତାଙ୍କ ଦାରିଦ୍ର୍ୟ, ଜଙ୍ଗଲକୁ ଉପଯୋଗ ନ କରିବା ପରେ ତା' ଉପରେ ନିର୍ଭର କରି ଚଳୁଥିବା ଲୋକଙ୍କ ଅବସ୍ଥା ଏବଂ ସର୍ବୋପରି ଗଡ଼ଜାତ ଶାସକ ଏବଂ ଇଂରେଜମାନଙ୍କ ଅତ୍ୟାଚାର ତାଙ୍କୁ ବ୍ୟଥିତ ଓ ବିବ୍ରତ କରିଦେଇଥିଲା । ସେଥିପାଇଁ ସେ ମନସ୍ଥ କରିଥିଲେ ମେଳିକରି ଗଡ଼ଜାତ ଶାସକ ଓ ଇଂରେଜ ସରକାର ବିରୁଦ୍ଧରେ ବିପ୍ଳବ କରିବେ । ତାଙ୍କ ସ୍ୱର ସାର୍ଥକ ହୋଇଥିଲା । ଆମ୍‌କୋ-ସିମକୋ ଅଞ୍ଚଳରେ ସେ ଜାଳି ଦେଇଥିଲେ ବିପ୍ଳବର ଅଗ୍ନି । ଗାଙ୍ଗପୁର ଗଡ଼ଜାତର ଏ ପ୍ରଜାମେଳି ଇତିହାସର ଏକ ସ୍ମରଣୀୟ ଘଟଣା । ୧୯୩୯ ମସିହା ଏପ୍ରିଲ ପଚିଶ ତାରିଖର ସେହି ଦୁର୍ଘଟଣା ଦ୍ୱିତୀୟ ଜାଲିଆନାୱାଲାବାଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାଲିଆନାୱାଲାବାଗ ବ୍ୟତୀତ ସ୍ୱାଧୀନତା ସଂଗ୍ରାମକରି ଗୋଟିଏ ଦିନରେ ଏତେ ଜଣ ସଂଗ୍ରାମୀ ମୃତ୍ୟୁବରଣ କରିବା ପ୍ରାୟ ଅନ୍ୟ କେଉଁଠି ଘଟିନାହିଁ । ଆଦିବାସୀ ସଂଗ୍ରାମୀମାନଙ୍କର ତ୍ୟାଗ ଏବଂ ଦେଶପାଇଁ ଆତ୍ମବଳି ଏକ ନାହିଁ ନଥିବା ଦୃଷ୍ଟାନ୍ତ ସୃଷ୍ଟି କରିଛି ସମଗ୍ର ଭାରତବର୍ଷରେ ।

ସେହି ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ ନିର୍ମଳମୁଣ୍ଡା ପରବର୍ତ୍ତୀ ସମୟରେ ଓଡ଼ିଶା ବିଧାନସଭାକୁ ମଧ୍ୟ କିଛିଦିନ ପାଇଁ ପ୍ରତିନିଧି ରୂପେ ନିର୍ବାଚିତ ହୋଇଥିଲେ । ତାଙ୍କର ଦେହାନ୍ତ ହୋଇଥିଲା ୧୯୭୩ ମସିହା ଜାନୁଆରୀ ଦୁଇ ତାରିଖରେ । ଆଜିମଧ୍ୟ ଆମକୋ-ସିମକୋର ପାହାଡ଼ ମୁଣ୍ଡିଆ ତଳେ ଶହୀଦମାନଙ୍କ ଉଦ୍ଦେଶ୍ୟରେ ସ୍ଥାପିତ ସ୍ମୃତି ସ୍ତମ୍ଭକୁ ଦେଖିଲେ ମୁଣ୍ଡ ତଳକୁ ନଇଁ ଆସେ । ପାଟିରୁ ବାହାରି ପଡ଼େ- ଧନ୍ୟ ନିର୍ମଳ ମୁଣ୍ଡା- ଧନ୍ୟ ତୁମ ଦେଶାତ୍ମବୋଧର ଚରମ ନିଷ୍ଠା ।

ସୁଜାତା ଭଞ୍ଜ
କଳିଙ୍ଗଲେନ୍, ମହତାବ ରୋଡ଼
କଟକ - ୭୫୩୦୧୨

# ଅନୁଭୂତିରୁ କିଛି

ଶ୍ରୀ ପର୍ଶୁରାମ ପଟ୍ଟନାୟକ

ମୁଁ ଜଣେ ସ୍ୱାଧୀନତା ସଂଗ୍ରାମୀ । ୧୯୩୦ ମସିହା ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲି । ସେ ସମୟରେ ନିଶା ନିବାରଣ ପାଇଁ ମହାମାନବ ମହାତ୍ମାଗାନ୍ଧିଜୀଙ୍କ ଡ଼ାକରାରେ ଆନ୍ଦୋଳନ ଚାଲିଥିଲା । ସେଇ ଆନ୍ଦୋଳନରେ ସାମିଲ ହୋଇ ମୁଁ ବୋଲଗଡ଼, ଖୋର୍ଦ୍ଧା, ଜଟଣୀ, କୁଡ଼ିଆରୀ ଆଦି ସ୍ଥାନରେ ରହି ମଦ, ଗଞ୍ଜେଇ, ଅଫିମ ଦୋକାନରେ ପିକେଟିଂ କରିଥିଲି । ସେ ସମୟରେ ବ୍ରିଟିଶ ପୁଲିସ ଭୟରେ କୌଣସି ଲୋକ ସତ୍ୟାଗ୍ରହୀମାନଙ୍କୁ ନିଜ ବାରଣ୍ଡାରେ ସ୍ଥାନ ଦେଉ ନଥିଲେ । ତେଣୁ ସତ୍ୟାଗ୍ରହୀମାନେ ଗଛ ମୂଳରେ ରୋଷେଇ କରି ଖାଉଥିଲେ ଏବଂ ଆନ୍ଦୋଳନକୁ ତେଜି ରଖୁଥିଲେ । ବଳକା ଖାଦ୍ୟ ଗଛରେ ଶିକା ବାନ୍ଧି ରଖି ଦେଉଥିଲୁ । କିନ୍ତୁ ସମୟେ ସମୟରେ ପୋଲିସ ଆସି ସେସବୁକୁ ବାଡ଼େଇ ଭାଙ୍ଗି ଦେଉଥିଲେ । ପୋଲିସର ଅତ୍ୟାଚାର ଓ ଜୁଲୁମ ବଡ଼ ଅସହ୍ୟ ଥିଲା । ସତ୍ୟାଗ୍ରହୀମାନଙ୍କୁ ଥାନାକୁ ନେଇଯାଇ ରାତିକୁ ଛାଡୁଥିଲେ । ସତ୍ୟାଗ୍ରହୀମାନେ ବୋଲଗଡ଼ କଦମ୍ବଗଛ, ଖୋର୍ଦ୍ଧାର ପଲଟଣ ପଡ଼ିଆ, ସରସ୍ୱତୀ ମନ୍ଦିର ଚଟାଣ ପ୍ରଭୃତି ସ୍ଥାନରେ ଖୋଲା ଆକାଶତଳେ କୁହୁଡ଼ି କାକରରେ ରହି କାର୍ଯ୍ୟ କରୁଥିଲେ । ଜଟଣୀ ନିକଟସ୍ଥ କୁଡ଼ିଆରୀ ଗ୍ରାମର ଲୋକମାନେ ଆମକୁ ସାହାଯ୍ୟ କରନ୍ତି । ଏକଦା ନିର୍ଜନ ରାତି ସମୟରେ ଜଟଣୀ ପୁଲିସ ଉକ୍ତ ଗ୍ରାମର ଚୌକିଦାରଙ୍କୁ ଧରି ଗ୍ରାମର ଯେଉଁ କୂଅରୁ ଗ୍ରାମବାସୀ ପାଣି ଖାଉଥିଲେ ସେ କୂଅ ଚାରିପଟେ ଓ କୂଅ ମଧ୍ୟରେ ଗୋରୁ ହାଡ଼ ପକାଇଲେ, ସତ୍ୟାଗ୍ରହୀମାନଙ୍କୁ ସେଠାରୁ ତଡ଼ିବା ପାଇଁ । କୂଅର ପାଣି ଆମେ ଗ୍ରାମବାସୀଙ୍କ ସହ ମିଶି ସଫା କରିଥିଲୁ । ଏଇ ସବୁ ସତ୍ୟାଗ୍ରହୀ ଶିବିର ପରିଚାଳନା କରୁଥିଲେ ପ୍ରଚାରକ ଅନନ୍ତ ମିଶ୍ର ।

୧୯୩୨ ମସିହାରେ ପୁରୀଠାରେ ଜାତୀୟ କଂଗ୍ରେସ ଅଧିବେଶନ ହୋଇଥିଲା । ଅଭ୍ୟର୍ଥନା କମିଟିର ଅଫିସ ପୁରୀର ମରିଚି-କୋଟ କୋଠାରେ ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଏହାର ଚେୟାରମ୍ୟାନ ଥିଲେ । ଡକ୍ଟର ହରେକୃଷ୍ଣ ମହତାବ ସେବାଦଳ ସ୍ୱେଚ୍ଛାସେବକ ବାହିନୀର ମୁଖ୍ୟ ଅଧ୍ୟକ୍ଷ ଥିଲେ । ଆଚାର୍ଯ୍ୟ ହରିହର ଦାସ, ପୁରୀର ଜଗନ୍ନାଥ ମିଶ୍ର, ଗାନ୍ଧୀବାଦୀ ନେତା ଗୋପବନ୍ଧୁ ଚୌଧୁରୀ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ଗଞ୍ଜାମର ଉମାଚରଣ ପଟ୍ଟନାୟକ, ଦିବାକର ପଟ୍ଟନାୟକ, ସରଳା ଦେବୀ ଓ ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଉକ୍ତ କମିଟିରେ ଥିଲେ । ସେ ସମୟରେ ପୁରୀ-କଟକରେ ଦୁଇଟି ଯାଗାରେ ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦିଆଯାଉଥିଲା । ପୁରୀରେ ତାଲିମ ପାଉଥିବା ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ, ବିନୋଦ କାନୁନଗୋ, ପ୍ରାଣନାଥ ପଟ୍ଟନାୟକ, ସର୍ଦ୍ଦାର ରତିକୃଷ୍ଣ ସ୍ୱାଇଁ ଆଦି ଓଡ଼ିଶାର ପ୍ରାୟ ୫୦ ରୁ ଉର୍ଦ୍ଧ୍ୱ ସ୍ୱେଚ୍ଛାସେବକ ବାହିନୀରେ ଯୋଗ ଦେଇଥିଲେ । ଉକ୍ତ କ୍ୟାମ୍ପରେ ମୁଁ ମଧ୍ୟ ଯୋଗ ଦେଇଥିଲି । ସେତେବେଳେ ରାଜନୀତି, ଅର୍ଥନୀତି, ଲାଠି ଖେଳ, ଆସନ, ନମସ୍କାର, ରାସ୍ତା ସଫେଇ, ଗ୍ରାମ ସଫେଇ ଆଦି ଶିକ୍ଷା ଦେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଶିକ୍ଷାର୍ଥୀ ଏ ସବୁ କାର୍ଯ୍ୟ କରୁଥିଲେ । ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ପରିଚାଳିତ ପୁରୀର ଅଭ୍ୟର୍ଥନା ସମିତିରେ ଯୋଗ ଦେଲି । ପୁରୀ ବଳିଆପଣ୍ଡାରେ ହେବାକୁ ଥିବା ଅଧିବେଶନର କାର୍ଯ୍ୟ ଆମକୁ କରିବାକୁ ପଡ଼ିଥିଲା ।

୧୯୩୧ ମସିହାରେ ଗାନ୍ଧିଜୀ ବିଲାତ ଗୋଲଟେବୁଲ ବୈଠକକୁ ଯାଇଥିଲେ । ସେଠିକାର ଆଲୋଚନାରେ କିଛି ସୁଫଳ ନମିଳିବାରୁ ଗାନ୍ଧିଜୀ ଭାରତ ଫେରିଆସି ବମ୍ବେରେ ପହଞ୍ଚିଲେ ୧୯୩୨ ଜାନୁଆରୀ ମାସରେ । ସେ ଭାରତରେ ପହଞ୍ଚିବା ପରେ ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହେଲେ । କଂଗ୍ରେସକୁ ବେଆଇନ ଘୋଷିତ କଲେ ସରକାର । ଅନେକ ନେତାଙ୍କୁ ବନ୍ଦୀଶାଳାକୁ ପଠାଇଲେ । ଓଡ଼ିଶାର ନେତା ଓ କର୍ମୀମାନେ ମଧ୍ୟ ସେ ସମୟରେ ବନ୍ଦୀ ହୋଇ ଜେଲକୁ ଗଲେ ।

ପୁରୀରେ ସତ୍ୟାଗ୍ରହ କାର୍ଯ୍ୟ ଚାଲୁ ରଖିବା ପାଇଁ ୰ପ୍ରାଣନାଥ ପଟ୍ଟନାୟକ, ୰ମୋହନ ଦାସ, ୰ ରତିକୃଷ୍ଣ ସ୍ୱାଇଁ, ୰ ଗଙ୍ଗାଧର ମିଶ୍ର ଓ ଏହି ଲେଖକ ଆତ୍ମଗୋପନ କରି ରହୁଥିଲେ । ଏହି ସମୟରେ ୰ ଗଙ୍ଗାଧର ମିଶ୍ର ଓ ଲେଖକ ନିଜେ ମରଣକୁ ଭୟ ନକରି ପୁରୀ କଲେକ୍ଟରିଏଟ ଅଫିସ ଖୁଣ୍ଟରେ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ । ସେଠାରେ ପ୍ରହରୀରତ ପୋଲିସ ଆଖିରେ ଧୂଳି ଦେଇ ଆମେ ଖସି ଯାଇଥିଲୁ । ଦିନେ ରାତ୍ରିରେ ଗୋଟିଏ ଷଣ୍ଢ ସେଠାରେ ଆସି ଶୋଇଲା । ତାକୁ ଘାସ ଖାଇବାକୁ ଦେଇ ତାର କମଳକୁ ଆଉଁସି ଶିଂଘ ଦୁଇଟିରେ ଲେଖକ ନିଜେ ଦୁଇଟି ତ୍ରିରଙ୍ଗା ପତାକା ବାନ୍ଧି ଦେଲେ । ସକାଳ ହେବାରୁ ଷଣ୍ଢକୁ ସେଠାରୁ ତଡ଼ି ଦେଲେ । ଷଣ୍ଢ ସିଙ୍ଗରେ ତ୍ରିରଙ୍ଗା ପତାକା ଧରି ସହର ସାରା ଦୌଡ଼ିଲା । ଟାଉନ ଥାନା ଆଡ଼କୁ ଯିବାରୁ ପୁଲିସ ପତାକା ଫିଟାଇବାକୁ ଯିବାରୁ ସେ ଧରା ଦେଲାନହିଁ । ପଣ୍ଡାପିଲା ଦୂର ଦୂରରେ ତାଳିଆ କହି ଷଣ୍ଢକୁ ହୁରୁଡ଼ଉଥାନ୍ତି । ଆମେ ଦେଉଳ ଭିତରେ ଗଙ୍ଗାଧର ମିଶ୍ର ଓ ମୁଁ ଥାଇ ଏ ଦୃଶ୍ୟ ଦେଖୁଥାଉଁ । ଷଣ୍ଢ ପଳାଉଥାଏ, ପୁଲିସ ଗୋଡ଼ାଉ ଥାଆନ୍ତି । ଦେଉଳ ଆମପାଇଁ ନିରାପଦ ଯାଗା । ଏଠାରୁ କାହାକୁ ଗିରଫ କରାଯାଏ ନାହିଁ । ଏ ଘଟଣା କଟକର ରାୟଗୁରୁବାବୁ ତାଙ୍କ ଅଗ୍ନିପଥ ବହିରେ ଲେଖିଛନ୍ତି । ସେହି

ସମୟରେ ସ୍ୱର୍ଗୀୟ ପ୍ରାଣନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ବିଦେଶୀ ଜିନିଷ ବର୍ଜ୍ଜନ ଆନ୍ଦୋଳନ ଚାଲିଥାଏ । ସରକାର ଗତିକୃଷ୍ଣ ସ୍ୱାଇଁଙ୍କ ସମେତ ଅନ୍ୟ କେତେଜଣ ସତ୍ୟାଗ୍ରହୀ ପୁରୀ ବଡ଼ଦାଣ୍ଡର ବଡ଼ ଲୁଗା ବ୍ୟବସାୟୀ କାନୁରାମଙ୍କୁ ଭେଟି ତାଙ୍କୁ ବିଦେଶୀ ଲୁଗା ବିକ୍ରି ନ କରିବାକୁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ପ୍ରକାରାନ୍ତରେ ଧମକ ମଧ୍ୟ ଦେଲେ । "ବହୁ ସତ୍ୟାଗ୍ରହୀ ଆସୁଛନ୍ତି ବନ୍ଦ କରିବାକୁ । ତୁମର ବଦନାମ ହେବ ।" ବିଦେଶୀ ଲୁଗାର ବିକ୍ରୀ ବନ୍ଦ କରିଦେବେ ବୋଲି ପ୍ରତିଶ୍ରୁତି ଦେଇ ଆମକୁ ଗୋଟିଏ ଲେଖା ଦେଲେ । ଏହା ପରେ ପରେ ଦୁଇଜଣ ପୁଲିସବାଲା ଆସି ଦୁଇଜଣଙ୍କୁ ଗିରଫ କରି କୋର୍ଟକୁ ପଠାଇ ଦେଲେ । ସେଦିନ ତାଙ୍କର ବିଚାର ହେଲା । କାନୁରାମଙ୍କ ଲେଖା ଦେଖାଇବାରେ ଏମାନେ ନିର୍ଦ୍ଦୋଷରେ ଖଲାସ ହେଲେ । ଫଳରେ ପୁରୀରେ ଆଉ ଅଧିକ ସମୟ ରହି ଆନ୍ଦୋଳନ ପରିଚାଳନା କରିବା ସମ୍ଭବପର ହେଲାନାହିଁ । ତତ୍ ପରବର୍ତ୍ତୀ କାଳରେ ଆମେ ପାଟଣା କ୍ୟାମ୍ପ ଜେଲରୁ ଖଲାସ ହୋଇ ବଳରାମ ପାଇକରାୟ ଓ ମୁଁ ଗ୍ରାମକୁ ଆସିଥିଲୁ । ୰ ପ୍ରାଣନାଥବାବୁ ଆମକୁ ଡ଼କାଇ କହିଲେ, ଏଠାରେ ଆନ୍ଦୋଳନ ହେବ ନାହିଁ, ଆମେ ମନସ୍ଥ କରିଛୁ ଖୋର୍ଦ୍ଧାରେ ଆନ୍ଦୋଳନ ଚଳାଇବା ପାଇଁ । ସେଠାରେ ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ, ତାପଙ୍ଗ ଦଳବେହେରା ପାଇକମାନଙ୍କୁ ନେଇ ବ୍ରିଟିଶ ବିରୁଦ୍ଧରେ ବାରମ୍ବାର ସଂଗ୍ରାମ କରିଥିଲେ । ସେଠାରେ ଆନ୍ଦୋଳନ ପାଇଁ ସଂଗଠନ କଲେ ସତ୍ୟାଗ୍ରହୀମାନେ ଯୋଗ ଦେବେ, ତେଣୁ ଆମେ ସମସ୍ତେ ପୁରୀରୁ ତେଲଙ୍ଗ ପର୍ଯ୍ୟନ୍ତ ଗାଡ଼ିରେ ଆସିଲୁ । ସେଠାରୁ ଚାଲି ଚାଲି ଦୟାନଦୀ ପାର ହୋଇ ରାସ୍ତାରେ ଗୋଟିଏ ଛୋଟ ଗ୍ରାମ ବରପଦାରେ ରାତ୍ରି ଯାପନ କଲୁ । ସେଠାରେ ଦେଢ଼ଦିନ ଉପବାସରେ ରହିବାପରେ ସେଠିକାର ଜଣେ ବଦାନ୍ୟବ୍ୟକ୍ତି ଆମକୁ କିଛି ଚୁଡ଼ା, ଗୁଡ଼, ଲଙ୍କା, ଲୁଣ ଖାଇବା ପାଇଁ ଦେଇ କହିଲେ, ଏଠାରେ କୌଣସି ଚିହ୍ନ ରଖିବେ ନାହିଁ; ନଚେତ୍ ମୋ ଅବସ୍ଥା ଶୋଚନୀୟ ହେବ । ତାଙ୍କ କଥାମାନି ଆମେ କାର୍ଯ୍ୟକଲୁ । ତତ୍ପରେ ଆମ ସହ ଆଉ ଛଅଜଣ ଯୋଗ ଦେଲେ ଖୋର୍ଦ୍ଧା ପଟରୁ । ଆମେ ସେଠାରୁ ଚାଲି ଚାଲି ଆସିଲୁ । ଦକ୍ଷିଣକୁ ଯିବା ରେଳ ଲାଇନ ପାଖରେ ଗୋଟିଏ ଟାରେଶ୍ୱର ଦେବଙ୍କ ମନ୍ଦିର ଥିଲା । ପାଖରେ କରଁଆ ଗଛ । ସେଇ ସିମେଣ୍ଟ ଚଟାଣରେ ଆମେ ରହିଲୁ । କଟଣୀରୁ ଆଟିକା ମାଟିର ବର୍ତ୍ତନ କିଣିଲୁ । ବାହାରୁ କିଛି ରୋଷେଇ ସାମଗ୍ରୀକିଣି ରୋଷେଇ କରି ଖାଉ । ଯେଉଁଦିନ କିଛି ନମିଳେ ବାରି ଲଙ୍କା ଲୁଣ ଦେଇ ଖାଉ । ତାପରେ ଆମ ସଂଖ୍ୟା ୨୫ କୁ ବୃଦ୍ଧି ପାଇଲା । ଦିନେ ରାତିରେ ବିଦେଶୀ ଲୁଗା ବ୍ୟବସାୟୀ ମହମ୍ମଦଙ୍କ ଦୋକାନକୁ ଗଲୁ, ତାଙ୍କୁ ଅନୁରୋଧ କରିବା ପାଇଁ ଲୁଗା ବିକ୍ରି ବନ୍ଦ କରିବା ପାଇଁ । ୰ ପ୍ରାଣନାଥ ବାବୁ, ଗତିବାବୁ, ଲେଖକ ଆମେ ଯେଉଁ ରାସ୍ତାରେ ଗଲୁ ସେହି ରାସ୍ତାରେ ସରକାରଙ୍କର ଅସ୍ତ୍ରାଗାର ଥିବାର ଆମକୁ ଜଣାନଥିଲା । ସେଠାରେ ଥିବା କଲୁଆଳୀ ପୁଲିସ ଆମକୁ ବନ୍ଧୁକ ଦେଖାଇ କହିଲେ, Who Come here ପ୍ରାଣନାଥ ବାବୁ ଜାଣିଥିବାରୁ କହିଲେ, ବନ୍ଧୁ ଆମେ ଉପରକୁ ହାତ ଉଠାଇ ଗଲୁ । ସେ ଛାଡ଼ିଦେଲେ । କହିଲେ, ଏପଟେ ଆଉ ଆସିବ ନାହିଁ । ଏହିସମୟରେ ପ୍ରାଣନାଥ ବାବୁଙ୍କର ଅଭିଜ୍ଞତା ନଥିଲେ ତିନି ଜଣଙ୍କର ଜୀବନ ଯାଇଥାଆନ୍ତା । ଗୋଦାମକୁ ଗଲୁ । ମହାଜନ ମନା କଲା । କହିଲା - ଏଠାରୁ ଯାଅ, ନଚେତ ପୁଲିସକୁ ଡାକି ଦେବି । ତେଣୁ ଫେରି ଆସିଲୁ । ତା ପରେ ଆମେ ଦୁଇ ଭାଗରେ ବିଭକ୍ତ ହେଲୁ । ଗୋଟିଏ ଦଳ ପ୍ରାଣନାଥ ବାବୁଙ୍କ ନେତୃତ୍ୱରେ ବିଦେଶୀ ଲୁଗା ପୋଡ଼ି ଖୋର୍ଦ୍ଧା ଜେଲକୁ ଗଲୁ । ସେଠାରୁ ପୁରୀ ଜେଲ, ବିହାର ପାଟଣା ଜେଲ ମଧ୍ୟ ଗଲୁ । ଜେଲରେ କତା ବାଟେଇବା, ପାଟଣା କ୍ୟାମ୍ପ ଜେଲରେ ଖଣି କାମ କରିବାକୁ ହେଉଥିଲା । ସେଠାରେ ଲୁହା ବଟିରେ ଆମକୁ ଖାଇବାକୁ ଦେଉଥିଲେ । ହାତ ନଥିବା କୁର୍ତ୍ତା ଓ ଜଙ୍ଘିଆ ପିନ୍ଧିବାକୁ । ଓଡ଼ିଶାର ବନ୍ଦୀମାନେ ରହୁଥିବା ସ୍ଥାନ ଥିଲା ଟିଣ କାନ୍ଥ ଓ ଉପର ଛାତ ଟିଣ ଚଦର । ଶୀତ ଦିନେ ଭୀଷଣ ଶୀତ ଓ ଖରାଦିନେ ଭୀଷଣ ଗରମ ।

ମୋ ସଂଗ୍ରାମୀ ଜୀବନରେ ଗାନ୍ଧିଜୀଙ୍କ ସହ ମୋର ତିନି ଥର ଦେଖା ହୋଇଛି । ୧୯୨୭ ରେ ସେ ବୋଲଗଡ଼ ସୂତାକଟା ଦେଖିବାକୁ ଆସିଥିଲେ । ଡ଼ାକବଙ୍ଗଳାରେ ରହିଥିଲେ । ବୋଲଗଡ଼ରେ ସମବେତ ବିରାଟ ଜନ ସମାବେଶରେ ଭାଷଣ ଦେଇଥିଲେ । ସେ କହିଲେ, "ଅରଟର ତାକୁଡ଼ି ମୁନରେ ସୂତାଖିଅରେ ସ୍ୱରାଜ ଝୁଲୁଛି ।" ସୂତାକାଟିବାକୁ ସମସ୍ତଙ୍କୁ ଉତ୍ସାହିତ କରିଥିଲେ ।

୧୯୩୪ ମସିହାରେ ହରିଜନ ଆନ୍ଦୋଳନ ପାଇଁ ଗାନ୍ଧିଜୀ ପୁରୀ ଆସିଥିବା ଅବସରରେ ସାକ୍ଷାତ ହୋଇଥିଲା । ମାତୃ ପ୍ରତିମ ରମାଦେବୀ ଗାନ୍ଧିଜୀଙ୍କ ପାଇଁ ବାଇଗଣ ସିଝାଇ ରୋଷେଇ କରୁଥିଲେ । ମୁଁ ପଚାରିଲି ବାଇଗଣ ସିଝା କଅଣ ହେବ । ସେ କହିଲେ, ଗାନ୍ଧିଜୀ ମନାକଲେ ବାହାରୁ ଆସିଥିବା ଫଳ ଖାଇବେନି ବୋଲି । ଏ ଘଟଣା ସ୍ମରଣୀୟ । ଏହା ପୂର୍ବରୁ ପୁରୀ ପଣ୍ଡା, ପଡ଼ିଆରି, ମଠ ମହନ୍ତ ମନ୍ଦିରରେ ହରିଜନ ଭର୍ତ୍ତି କରାଇବେ ନାହିଁ ବୋଲି ଘଣ୍ଟ ମାର୍ଦ୍ଦଳ ବଜାଇ ଟାଉନ ସାରା ପ୍ରଚାର କଲେ । ଦେଶଦ୍ରୋହୀ, ଧର୍ମଦ୍ରୋହୀ, ଜାତିଦ୍ରୋହୀ ଗାନ୍ଧୀ ଫେରିଯାଅ । ଗାନ୍ଧିଜୀ ମନ୍ଦିର ସମ୍ମୁଖରେ ଏକ ସଭାକଲେ । କହିଲେ, ମୁଁ ଆସିନାହିଁ ଜୋର ଜବରଦସ୍ତ ମନ୍ଦିରରେ ହରିଜନ ଭର୍ତ୍ତି କରିବା ପାଇଁ । ଲୋକମାନଙ୍କୁ ବୁଝାଇବା ମୋର କାର୍ଯ୍ୟ । ତା ପରଦିନ ପୁରୀଠାରୁ ଗାନ୍ଧିଜୀଙ୍କର ପଦଯାତ୍ରା ଆରମ୍ଭ ହେଲା । ହରେକୃଷ୍ଣପୁର, ଦାମୋଦରପୁର, ସାକ୍ଷୀଗୋପାଳ, ଦାଣ୍ଡମୁକୁନ୍ଦପୁର ପିପିଲି, ବାଲିଅନ୍ତା ଦେଇ କଟକ କାଠଯୋଡ଼ି ନଦୀ ବାଲିରେ ସଭାହେଲା । ହଜାର ହଜାର ଲୋକ ସମାଗମ ହୋଇଥିଲେ । କଟକର ବିହାରୀଲାଲ ପଣ୍ଡିତ କେତେକ ଲୋକଙ୍କୁ ଧରି କଳାପତାକା ଦେଖାଇବା ପାଇଁ ଆସିଥିଲେ । ଲୋକେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ କିନ୍ତୁ ମହାତ୍ମାଜୀ ନିବେଦନ କରିଥିଲେ ସେମାନଙ୍କୁ କେହି ଦୁର୍ବ୍ୟବହାର ନକରିବା ପାଇଁ । ମହାତ୍ମାଗାନ୍ଧୀ ଯିବା ରାସ୍ତାରେ ନିର୍ବିକାର ଭାବରେ କୁଷ୍ଠରୋଗୀମାନଙ୍କର ସେବା କରିବାର ମଧ୍ୟ ମୁଁ ଦେଖିଛି । ସେ ଯେଉଁଠାରେ ରହୁଥିଲେ, ସେ ସ୍ଥାନ ସବୁ ନିଜେ ଝାଡୁ ଧରି ପରିଷ୍କାର କରନ୍ତି ।

ଚଳିତ ବର୍ଷ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରାଯାଉଛି । ଗାନ୍ଧିଜୀଙ୍କ ରାମରାଜ୍ୟ ସ୍ୱପ୍ନ ସଫଳ ହେଲା ନାହିଁ, ଦେଶରେ ଧନୀ-ଦରିଦ୍ରର ତାରତମ୍ୟ ରହିଗଲା । ଆଜିର ଯୁବ ସମାଜ, ଛାତ୍ରଛାତ୍ରୀ, ବୁଦ୍ଧିଜୀବୀ, ଶିକ୍ଷାବିତମାନେ ଦେଶକୁ ନୂଆ କରି ଗଢ଼ିବାକୁ ଆଗଭର ହେଲେ ସୁବର୍ଣ୍ଣ ଜୟନ୍ତୀର ମହତ୍ତ୍ୱ ରହିବ ।

ଗ୍ରାମ ଓ ପୋଷ୍ଟ : -ମାଣିକଗୋଡ଼ା
ଜିଲ୍ଲା - ଖୋର୍ଦ୍ଧା

# ଲବଣ ସତ୍ୟାଗ୍ରହରୁ ଜ୍ଞାନମଣ୍ଡଳ

*ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା*



୧୯୩୦ ମସିହାର ଲବଣ-ସତ୍ୟାଗ୍ରହ ଯୁଗ । କାଠଯୋଡ଼ି କୂଳ ଚୌଧୁରୀ କୋଠିରେ ସତ୍ୟାଗ୍ରହ ଶିବିର ହୋଇଥାଏ । ଓଡ଼ିଶାର ଚାରିଆଡୁ ସତ୍ୟାଗ୍ରହୀମାନେ ଆସି ଜୁଟ ହେଉଥାନ୍ତି । ପାଠୁଆ ଅପାଠୁଆ, ପିଲାବୁଢ଼ା, ଶିକ୍ଷକ ଛାତ୍ରଙ୍କର ଗୋଟିଏ ମିଳିତ ଆଖଡ଼ା । ଉଣେଇଶ ଶହ ତିରିଶ ମସିହା ଅପ୍ରେଲ ମାସ ଦଶ ତାରିଖ ଦିନ ରେଭେନ୍‌ସା କଲିଜିଏଟ ସ୍କୁଲର ଜଣେ ଛାତ୍ର ସେହି ଆଖଡ଼ାକୁ ଆସିଲେ । ତାଙ୍କ ମାମୁଁ କଟକରେ ଜଣାଶୁଣା ଅଧ୍ୟାପକ । ଭଣଜା ଆଖଡ଼ାରେ ପଶିଛି ଶୁଣି ତାଙ୍କୁ ଧରି ନେଇ ଘରେ ଅଟକ କରି ରଖିଲେ । ଭଣଜା ନଛୋଡ଼ବନ୍ଧା । ଅନ୍ନଜଳ ନ ଛୁଇଁ ସେ ଏକାଜିଦ୍ ଧରି ବସିଲେ - ଆଖଡ଼ାକୁ ଫେରିଯିବେ । ଆଖର ଭଣଜା ଜିତିଲେ ।

ରମାଦେବୀ ଥିଲେ ସେ ଆଖଡ଼ାର ଅନ୍ୟତମ ମୁରବୀ । ସେ ସେହି ଛାତ୍ରଙ୍କୁ ନିମଚଉଡ଼ି ଛକ 'ସମାଜ' ଆଖଡ଼ାକୁ ନେଇ ଯାଇ ପୂଜ୍ୟପାଦ ରାଧାନାଥ ବାବୁଙ୍କ ନିକଟରେ ପହଞ୍ଚାଇ ତାଙ୍କୁ କହିଲେ, ଏ ପିଲାଟି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭଣଜା ବିନୋଦ । ପାଠପଢ଼ା ଛାଡ଼ି ସତ୍ୟାଗ୍ରହରେ ଯୋଗ ଦେଇଛି । ଯା କଥା ଆପଣଙ୍କୁ ଲାଗିଲା । ଦୁର୍ବଳୀ ମାଆର ଏକୋଇରବଳା ବିଶିକେଶନ ବିନୋଦ କାନୁନଗୋ ସତ୍ୟାଗ୍ରହ ଶିବିରରେ ରହିଲେ । ମାତ୍ର କଉଁଛ ଦୂରେ ଥାଇ ତା ଅଣ୍ଡା ସାଉଁଟିଲା ପରି ପୂଜ୍ୟ ରାଧାନାଥ ବାବୁଙ୍କ ନଜର ତାଙ୍କ ଉପରେ ରହିଲା ।

ସେକାଳଟା ସଭା ଶୋଭାଯାତ୍ରାର ମୌସମ୍ । ପ୍ରାୟ ତିନିଦିନ ଜହରବାଲିରେ ସଭା ହେଉଥାଏ । ଆଜି ସରଳା ଦେବୀ ଗିରଫ ହେଲେ, ସଭା ହେବ । ଆଜି ସାର୍ ସାମୁଏଲ ହୋର୍‌ଙ୍କ ବକ୍ତୃତାର ଜବାବ ଦେବାକୁ ହେବ, ସଭା ହେବ । ଆଜି 'ସ୍ୱଚ୍ଛଦର୍ପଣ'ରେ ଇଂରେଜ ସ୍ତୁତି ବାହାରିଛି, ତାକୁ କାଟିଦେବାକୁ ସଭା ହେବ । ଏହିପରି ସଭା ଶୋଭାଯାତ୍ରାର ମୌସମରେ ଲୋକଙ୍କ ମନକୁ ଛୁଇଁଲା ପରି ବକ୍ତୃତା ଲୋଡ଼ା । ପ୍ରଖ୍ୟାତ ବକ୍ତା ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ ପ୍ରମୁଖ ତ ବନ୍ଦୀଶାଳାରେ, ଉପାୟ ? ପୂଜ୍ୟ ରାଧାନାଥ ରଥ ବକ୍ତୃତାର ବିଷୟବସ୍ତୁ ଡାକିବେ, ବିନୋଦ କାନୁନଗୋ ଲେଖିବେ । ସଭାରେ ତାକୁ ବାଗେଇ କରି ବକ୍ତୃତା ଦେବେ ବିନୋଦ କାନୁନଗୋ । ଗୋଟିଏ କିଶୋର ବାଳକ ମୁହଁରୁ ସେ ତଥ୍ୟ ପୂର୍ଣ୍ଣ ଯୁକ୍ତିଯୁକ୍ତ ବକ୍ତୃତା ଶୁଣି ଶ୍ରୋତା ଭାବବିହ୍ୱଳ ହୋଇ ଯାଉଥିଲେ । ଏହିପରି ଭାବରେ ଏ ପଟେ ଅଧ୍ୟାପକ ଆର୍ତ୍ତବଲ୍ଲଭ୍ ମହାନ୍ତି, ସେ ପଟେ ପୂଜ୍ୟ ରାଧାନାଥ ବାବୁ - ଦୁଇଟି ଇଞ୍ଜିନ ସଂଯୋଗରେ ବିନୋଦ ବାବୁଙ୍କ ଭାଷାଜ୍ଞାନ ବୋଝଣ୍ଡ ହୋଇଗଲା । ପୁଣି ଆମ ଓଡ଼ିଆରେ ଯାହାକୁ କହନ୍ତି 'ଖୁରୀ ଖାଇବା' ସେହି ଖୁରୀଖିଆ, ନକଲିଆ ଗୁଣଟି ବିନୋଦ ବାବୁଙ୍କଠାରେ ଷୋଳଅଣା ଥିବାରୁ ଓଡ଼ିଆ ଭାଷାକୁ ସେ ତାଙ୍କ ନିଜସ୍ୱ ଶୈଳୀ ଦ୍ୱାରା ସମୃଦ୍ଧ କଲେ ।

୧୯୩୦ ରେ ବିନୋଦ ବାବୁ ପାଟନା କ୍ୟାମ୍ପ ଜେଲରେ ରହିଲେ । ସେଠାରେ ବିଭିନ୍ନ ପ୍ରଦେଶର ବ୍ୟକ୍ତିତ୍ୱସମ୍ପନ୍ନ ବନ୍ଦୀଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବା ଫଳରେ ବିନୋଦ ବାବୁ ନିଜର ସ୍ୱଧର୍ମକୁ ଜାଣି ପାରିଲେ । ୧୯୩୦,୩୨,୪୨ରେ ସେ ଯେତେଥର ବନ୍ଦୀ ହୋଇଛନ୍ତି; ଡାକ୍ତର, କବିରାଜ, ଅର୍ଥଶାସ୍ତ୍ରୀଙ୍କ ସାହଚର୍ଯ୍ୟରେ ପ୍ରଭୂତ ଜ୍ଞାନ ଅର୍ଜନ କରିଛନ୍ତି । ତାଙ୍କର ସହବନ୍ଦୀ ସଚ୍ଚିଦାନନ୍ଦ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଶରତଚନ୍ଦ୍ର ମହାରଣା ପ୍ରମୁଖ ହେଉଛନ୍ତି ସେ ଜ୍ଞାନ-ସାଧନାର ପ୍ରତ୍ୟକ୍ଷଦର୍ଶୀ ।

୧୯୩୪ରେ ମହାତ୍ମା ଗାନ୍ଧି ପୁରୀ ଠାରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା କଲେ । ବିନୋଦ କାନୁନଗୋ ଓ ମନମୋହନ ଚୌଧୁରୀ ଯୋଡ଼ି ବଳଦ ପରି ସେ ପଦଯାତ୍ରାରେ ରହିଲେ । ବିନୋଦ ବାବୁ ହୋଇଥା'ନ୍ତି 'ସମାଜ'ର ସମ୍ବାଦଦାତା, ମନମୋହନ ଚୌଧୁରୀ ଗାନ୍ଧିଜୀଙ୍କ ବକ୍ତୃତା ଟିପିବାକୁ ଷ୍ଟେନୋଗ୍ରାଫର ଓ ଫଟୋଗ୍ରାଫର । ପ୍ରତିଦିନ ପଦଯାତ୍ରାରେ ଘଟୁଥିବା ଘଟଣାର ସରସ ବର୍ଣ୍ଣନା 'ସମାଜ'କୁ ପଠେଇ ପଠେଇ ବିନୋଦ ବାବୁ ଜଣେ ଦକ୍ଷ ସାମ୍ବାଦିକ ପାଲଟିଗଲେ ।

ପଦଯାତ୍ରା ସରିଲା । ସେତେବେଳକୁ ସ୍ୱାଧୀନତା-ଆନ୍ଦୋଳନ ଧିମେଇ ଆସିଥାଏ । ଆନ୍ଦୋଳନକାରୀଙ୍କ ମନରେ ନାନା ଚିନ୍ତା ଦେଖା

ଦେଉଥାଏ । ଗାନ୍ଧିଜୀ ଉତ୍ତରରେ ସେମାନଙ୍କୁ କହିଲେ -ତମେ ସବୁ ଗ୍ରାମାଞ୍ଚଳକୁ ଚାଲିଯାଅ ।କେହି ଜଣେ ପଚାରିଲେ - ଗାଁରେ ଆମେ କ'ଣ କରିବୁ ? ଜବାବରେ ଗାନ୍ଧିଜୀ ଗୋଟିଏ କାହାଣୀ ଶୁଣେଇଲେ -

''ବଣରେ ପଲେ ମେଣ୍ଢା ଥିଲେ ।ସିଂହ ମଧ୍ୟ ଥିଲେ ।ଦିନେ ଗୋଟିଏ ପୂର୍ଣ୍ଣଗର୍ଭା ସିଂହୀ ମେଣ୍ଢା ଶିକାର କରିବାକୁ ସେ ମେଣ୍ଢାପଲ ଉପରକୁ କୁଦା ମାରିଲାବେଳେ ଗୋଟିଏ ସନ୍ତାନ ପ୍ରସବ କରି ପକାଇଲା । ସିଂହୀ ତ ମେଣ୍ଢାଟିଏ ଧରି ନେଇଗଲା । ତା ଛୁଆଟି ମେଣ୍ଢାପଲରେ ରହିଗଲା । ମେଣ୍ଢାଙ୍କ ସାଙ୍ଗରେ ରହି ସେ ମେଣ୍ଢା-ଚଳଣି ଶିଖିଲା । ବିଲୁଆଟାଏ ହେଟାଟାଏ ଦେଖିଲେ ସେ ମେଣ୍ଢାଙ୍କ ପରି ଛାନିଆ ହେଲା । ଦିନେ ଆଉ ଗୋଟିଏ ସିଂହ ସେହି ମେଣ୍ଢାପଲକୁ ଆକ୍ରମଣ କଲାବେଳେ ଦେଖିଲା ଯେ ସିଂହଛୁଆଟାଏ ତାକୁ ଦେଖି ମେଣ୍ଢାପଲ ସାଙ୍ଗରେ ପଳାଉଛି । ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ମେଣ୍ଢା ଶିକାର ଛାଡ଼ି ସେ ସିଂହଛୁଆର କାନକୁ କାମୁଡ଼ି ଧରି ତାକୁ ଗୋଟିଏ ଝରଣା ପାଖକୁ ନେଇଗଲା । ସେଠାରେ ସେ ପାଣିରେ ଦୁହିଁଙ୍କ ପ୍ରତିବିମ୍ବ ଦେଖାଇ କହିଲା - ଦେଖ ! ତୁ ଯେଉଁ ସିଂହ ମୁଁ ସେଇ ସିଂହ । ସିଂହ ଛୁଆଟି ମେଣ୍ଢାପଲକୁ ନ ଫେରି ସିଂହ ସାଙ୍ଗରେ ଚାଲିଗଲା ।'' ଗପଟି କହି ସାରି ଗାନ୍ଧିଜୀ କହିଲେ - ଭାରତବାସୀ ହେଉଛନ୍ତି ସିଂହ । ସେମାନେ ମେଣ୍ଢାପରି ଆଚରଣ କରୁଛନ୍ତି । ତୁମେ ତାଙ୍କ ମଧ୍ୟରେ ରହି ସିଂହ ପରି ଆଚରଣ କରି ତାଙ୍କ ଭିତରେ ଶୋଇ ପଡ଼ିଥିବା ସିଂହର ନିଦ ଭଙ୍ଗାଇବ ।

ଅନେକ କର୍ମୀ ଗ୍ରାମାଞ୍ଚଳକୁ ଚାଲିଗଲେ । ବିନୋଦବାବୁ ମଧ୍ୟ ପୁସ୍ତକଗତ ଜ୍ଞାନାର୍ଜନର ମୋହ ଛାଡ଼ି ଅନୁଭବ ଲବ୍ଧ ଜ୍ଞାନ ହାସଲ କରିବାକୁ ବରୀ ଅଞ୍ଚଳକୁ ଗଲେ । ସେଠାରେ ସେ ସୁପ୍ତସିଂହଙ୍କ ନିଦ ଭଙ୍ଗେଇବାକୁ ତାଙ୍କ ସାଙ୍ଗରେ ମିଶି ବାଲିଆପାଳ ହାଟରୁ ପରିବା ଭାର କାନ୍ଧେଇ କରି ଆଣିଲେ, ଗାଁ ସଡ଼କ ଦୁଇପଟର ମଳମୂତ୍ର ସଫାକଲେ, କ୍ଷେତରା ବୋଉର ଧର୍ମପୁଅ ହୋଇ କ୍ଷେତ୍ରବାସୀ ଜେନା ଘରେ ଖିଆପିଆ କଲେ । ନୈଶ ବିଦ୍ୟାଳୟରେ ନିରକ୍ଷର ବିଲମୂଲିଆ ବୁଝି ପାରିବା ଭଳି ଭାଷାରେ ଅର୍ଥନୀତି, ରାଜନୀତି, ଗାନ୍ଧିନୀତିର ସରଳତମ ବ୍ୟାଖ୍ୟା କଲେ । ଫଳ ଫଳିଲା । କାଶୀ, ଅକ୍ରୁର, ରାଧୁ, ବଛି, ବଇଁଶୀ- କେତେ ପିଲା 'ଭାରତ ଛାଡ଼' ଆନ୍ଦୋଳନରେ ଝାସ ଦେଲେ ।

୧୯୪୪ ରେ କାରାମୁକ୍ତ ହେବା ପରେ ଗାନ୍ଧିଜୀ କର୍ମୀମାନଙ୍କୁ କହିଲେ - ସ୍ୱରାଜ୍ୟ ଅତିଶୀଘ୍ର ଆସୁଛି କିନ୍ତୁ ତାହା ମୋ ପରିକଳ୍ପିତ ସ୍ୱରାଜ୍ୟ ନୁହେଁ । ସେଥିପାଇଁ ସ୍ୱରାଜ୍ୟ ପରେ ଯେତେବେଳେ ଧନୀକ ଗୋଷ୍ଠୀ, ସୈନ୍ୟବଳ ଓ ଶାସକମାନେ ଏକଯୁଟ ହୋଇ ଜନସାଧାରଣଙ୍କୁ ପେଷିବେ, ସେତେବେଳେ ତାହାର ମୁକାବିଲା କରିବା ପାଇଁ, ଜନସାଧାରଣଙ୍କୁ ଅହିଂସାତ୍ମକ ଉପାୟରେ ପ୍ରସ୍ତୁତ କରାଇବା ପାଇଁ ମୋର ସାତଲକ୍ଷ ଗାଁରେ ସାତଲକ୍ଷ ଯୁବକ ଲୋଡ଼ା । ବିନୋଦ ବାବୁ ମଲ୍ଲୀପୁରରେ ରହି ଗ୍ରାମସଙ୍ଗଠନରେ ଲାଗିଲେ, ଗ୍ରାମସେବକ ପତ୍ରିକାର ସମ୍ପାଦକ ହେଲେ ।

'ଗୀତା' କହୁଛନ୍ତି -

'ସର୍ବଂ କର୍ମାଖିଳଂ ପାର୍ଥ
ଜ୍ଞାନେ ପରିସମାପ୍ୟତେ' ।

ତଦନୁସାରେ ଶେଷକୁ ସୃଷ୍ଟି ହେଲା ଜ୍ଞାନମଣ୍ଡଳ । ଜ୍ଞାନ କ'ଣ କି ? ଆତ୍ମା ଅମର ଏବଂ ସମସ୍ତଙ୍କ ମଧ୍ୟରେ ଏକ ଆତ୍ମା ରହିଛି ଏୟା ତ । ସର୍ବଭୂତର କଲ୍ୟାଣ ପାଇଁ ବିନୋଦ ବାବୁ 'ଜ୍ଞାନମଣ୍ଡଳ' ରଚନା କଲେ । - ଆତ୍ମା ତ ଅମର । ବିନୋଦ ବାବୁଙ୍କର ମୃତ୍ୟୁ କାହିଁ ? ଜ୍ଞାନମଣ୍ଡଳ ମାଧ୍ୟମରେ ସେ ଓଡ଼ିଶାବାସୀଙ୍କ ମଧ୍ୟରେ ସଞ୍ଜୀବିତ ।

''ତତ୍ର କଃ ମୋହଃ କଃ ଶୋକଃ
ଏକତ୍ୱଂ ଅନୁପଶ୍ୟତଃ'' ।

ଥୋରିଆ ସାହି
କଟକ - ୭୫୩୦୦୧

—o—

# ଗାନ୍ଧୀବାଦୀ- ଶୁକ୍ରବେହେରା

ଶ୍ରୀ ମୁରଲୀଧର ବେହେରା

ବିଣ ଜଙ୍ଗଲ ଘେରା ନିପଟ ମଫସଲ ଭାଲିଆଡ଼ିହ ଗ୍ରାମଟି ବୋଧହୁଏ ଭାଲିଆ ଗଛ ବହୁଳ ଜାଗାରେ ଏକଦା ପ୍ରତିଷ୍ଠିତ ହୋଇଥିଲା । ନୟାଗଡ଼ କାଣ୍ଡମାଳ ଅଞ୍ଚଳର ରାସ୍ତାଘାଟ ବିହୀନ ଏଇ ଛୋଟିଆ ଗାଁରେ ୧୯୦୩ ମସିହା କାର୍ତ୍ତିକମାସ ଶୁକ୍ରବାର ଗଉଡ଼ ଘରେ ଶୁକ୍ରବେହେରାଙ୍କର ଜନ୍ମ । ଗଡ଼ଜାତର ଅନ୍ଧାରୀ ମୁଲକ । ଶିକ୍ଷା ସଂସ୍କୃତିର ବହୁ ଦୂରରେ । କେହି କେହି ଲୋକ ତାଙ୍କ ପିଲାଙ୍କୁ ଚାଟଶାଳୀରେ ସାଧାରଣ ଲେଖାପଢ଼ା ଶିଖାଇ ଦେଇ ପାଠପଢ଼ାରେ ଡ଼ୋରି ବାନ୍ଧନ୍ତି । ଚାଟଶାଳୀ ପାଠ ଶେଷ କରି ଶୁକୁରିଆ ବାପାଙ୍କୁ ସାହାଯ୍ୟ କରିବାକୁ ଲାଗିପଡ଼ିଲେ । ଜଙ୍ଗଲରେ କପା, ହରଡ଼, ମାଣ୍ଡିଆ କୁହୁଡ଼ି ଜଗିବାପାଇଁ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଯାଆନ୍ତି । ବେଳେ ବେଳେ ବାପାଙ୍କ ସହିତ ଜଙ୍ଗଲରେ ଗାଈ ଜଗିବା ପାଳି ପଡ଼େ । କ୍ରମେ ଗାଁ କାମ, ଘର କାମ କରିବାରେ ଆଖି ପଶିଗଲା । ସମସ୍ତେ ତାଙ୍କୁ ଆଦର କରନ୍ତି, କାରଣ ସେ କାହାର ବୋଲ ହେଳନ୍ତି ନାହିଁ । ସବୁ କାମରେ ଆଗୁଆ । ୧୭ ବର୍ଷ ବୟସରେ ଗୁଣ୍ଡାର ଦେଈ ସହିତ ବାହାଘର ହେଲା । ଠିକ୍ ତା ପରବର୍ଷ ବାପା ଲୋକନାଥ ବେହେରା ହଇଜାରେ ପ୍ରାଣତ୍ୟାଗ କଲେ । ୫୦ ଜଣ ଲୋକ ସେବର୍ଷ ହଇଜାରେ ମଲେ । ତା ପରବର୍ଷ ୩୦ ଜଣ ଲୋକ ବସନ୍ତରେ ନିଦଗଲେ । ଭୟରେ ତାଟି କବାଟ ପଡ଼ିଯାଉଥାଏ । ଡାକ୍ତରୀ ଚିକିତ୍ସା ନଥାଏ, ଛେନାପଣା ଦେଲେ ପ୍ରତିକାର ଶେଷ । ସାଙ୍ଗମାନଙ୍କୁ ମେଳାଇ ଗ୍ରାମ ସଫା, ରୋଗୀସେବା କରିବାରେ ଶୁକୁରୀ ଲାଗି ପଡ଼ିଲେ । ପୂର୍ବାପେକ୍ଷା ଗାଁର କୋଠକାମ ବେଶ ସୁରୁଖୁରୁରେ ହୋଇ ପାରିଲା । ସେ ନିଜେ ମେଲେରିଆରେ ପଡ଼ିଲେ । ପ୍ରତିକାର ବିଶେଷ କିଛି ବାହାରି ନଥାଏ । ଅନେକ ରୋଗୀ ଚିକିତ୍ସା ଅଭାବରେ ମରନ୍ତି । ୩/୪ ମାସ ଜ୍ୱରରେ ସଢ଼ି ସେ କର୍ତ୍ତବ୍ୟ କରିବାରେ ହେଳା କରନ୍ତି ନାହିଁ । ଘରର ସବୁ ଦାୟିତ୍ୱ ସାଙ୍ଗକୁ ଗାଁର ସଙ୍ଘାତ ବାପା ଚାଲିଯିବା ପରେ ତାଙ୍କର ଚାଷ ବ୍ୟବସାୟ ସବୁ ବୁଝିଲେ । ବିଶ୍ରାମ ତାଙ୍କୁ ଦେବ କିଏ ? ନିକଟବର୍ତ୍ତୀ ମାଳର କନ୍ଧମାନେ ବାପାଙ୍କ ଠାରୁ ନେଇ ଥିବା ଧାନ ଆଦାୟ କରିବାକୁ ଗଲେ । ବାଟରେ କାଗଝର ଝରଣା ପାଣି ଗୋଟିଏ ପଥର ଦେଇ ୨୦/୨୫ ହାତ ତଳକୁ ଖସୁଥିବା ଦେଖି ସେ ଖୁସି ହେଲେ । ଉପରୁ ଖସୁଥିବା ପାଣିକୁ ମୁଣ୍ଡ ଦେଖାଇ ଘଣ୍ଟାଏ ବସିଲେ । ବେଶ୍ ଆରାମ୍ ଲାଗୁଥିଲା ଏବଂ ସେଥିରେ ଜର ମଧ୍ୟ ଛାଡ଼ିଗଲା । ତାଙ୍କ ଗାଁ ଗହୀର ଉପର ମୁଣ୍ଡରେ ବହି ଯାଉଥିବା ଏହି ଝରଣାରେ ମାଟି ବନ୍ଧ ପକାଇ ବର୍ଷସାରା ଗହୀରକୁ ପାଣି ଯୋଗାଇଲା । ନୟାଗଡ଼ରେ ସେତେବେଳେ ଏହା ଏକ ଅଭିନବ ଉଦ୍ୟମ । ଲୋକେ ଖାଲି ପ୍ରଶଂସା କଲେ ନାହିଁ, ତାଙ୍କୁ ନେତା ମାନିନେଲେ ।

ଓଡ଼ଗାଁର ନରସିଂହ ନନ୍ଦ ଓ ନାରାୟଣ ଉପାଧ୍ୟାୟ ଦୁଇଜଣ ଯୁବକ ତାଙ୍କ ଗାଁକୁ ଆସି ଗାନ୍ଧିଜୀ ଓ ସ୍ୱାଧୀନତା ଆନ୍ଦୋଳନ ସମ୍ପର୍କରେ ଲୋକମାନଙ୍କୁ ବୁଝାଇଲେ ଏବଂ ଏହି ଉଦ୍ଦେଶ୍ୟରେ ଭାଦ୍ରବ ପୂର୍ଣ୍ଣମୀ ଭାଗବତ ଜନ୍ମ ଉତ୍ସବରେ ଯୋଗ ଦେବା ପାଇଁ ନିବେଦନ କଲେ । ସେହିଦିନଠାରୁ ଗାନ୍ଧିଜୀଙ୍କ ଆନ୍ଦୋଳନ ପ୍ରତି ଯୁବକ ଶୁକୁରିଆଙ୍କର ଆଗ୍ରହ ଜନ୍ମିଲା । ସେ ଓଡ଼ଗାଁ ଭାଗବତ ଘରେ ଉପସ୍ଥିତ ହେଲେ । ପ୍ରଜାମଣ୍ଡଳ ଆନ୍ଦୋଳନ ପାଇଁ ପ୍ରସ୍ତାବ ନିଆଗଲା । ଏହି ସଭାରେ ହଜାରେ ଲୋକ ଉପସ୍ଥିତ ଥିଲେ । ବାଞ୍ଛାନିଧି ସେନାପତିଙ୍କ ସଭାପତିତ୍ୱରେ ସଭା ଚାଲିଲା । ୧୭ଟି ଦାବି ପତ୍ର ନୟାଗଡ଼ ରାଜାଙ୍କୁ ଦିଆଗଲା । ୧୧ ଜଣିଆ ସଭ୍ୟ ବିଶିଷ୍ଟ କମିଟ୍ ପ୍ରଜାମଣ୍ଡଳର ଦାୟିତ୍ୱ ନେଲେ । ସେଥିରେ ଶୁକ୍ର ବେହେରା ଜଣେ ସଭ୍ୟ ରହିଲେ । ଥାନା କମିଟମାନ ଗଢ଼ାଗଲା, ଗୋଡ଼ିପଦା ଥାନା ଅଞ୍ଚଳରୁ ଶ୍ରୀଧର ଦାସ, ଉଦୟନାଥ ପୃଷ୍ଟି, ପାଣୁ ସାହୁ, ପାଣୁ ମହାପାତ୍ର, ଜହ୍ନୁମିଶ୍ର, ଲିଙ୍ଗରାଜ ପ୍ରଧାନ ତାଙ୍କ ସହିତ ଯୋଗ ଦେଇଥିଲେ । ଏପରି ଠିକ୍‌ରୂପେ ଆନ୍ଦୋଳନ ଚାଲିଲା ।

ଜଙ୍ଗଲରେ ଗାଈ ଚରାଇଲେ ଗୋରୁ ପ୍ରତି ଚାରିଅଣା ଚାରଣଫିସ ପଡୁଥିଲା । ବନ କର ଦେଉଥିବା ପ୍ରଜା ପୁଣି ଚାରଣ ଫିସ ଦେବା ଅନ୍ୟାୟର ପ୍ରତିବାଦ ହେଲା । ଜଣେ ପାନରା ଠିକାନେଇ ପାନ ଦର ବଢ଼ାଇବାରୁ ଆନ୍ଦୋଳନ ହେଲା । କେତେକ ପାନ ଖାଇବା ଛାଡ଼ିଦେଲେ । ରାଜା ଉକ୍ତ ଦୁଇଟି ଦାବୀକୁ ଗ୍ରହଣ କରିନେଲେ । ଫଳରେ ପ୍ରଜାମଣ୍ଡଳ ଆନ୍ଦୋଳନ ସକ୍ରିୟ ହୋଇ ଉଠିଲା । ଆନ୍ଦୋଳନର ନେତାମାନଙ୍କୁ ଜେଲ ଦଣ୍ଡ ଦିଆଗଲା । ଏ ସମୟରେ ଆନ୍ଦୋଳନକୁ ବଞ୍ଚାଇ ରଖିବାକୁ ନାରାୟଣ ନନ୍ଦ ଶୁକ୍ରବେହେରାଙ୍କୁ ଓଡ଼ଗାଁ ଡ଼କାଇଲେ । ପୁଲିସର ସତର୍କ ଦୃଷ୍ଟି ତାଙ୍କ ଉପରେ ଥାଏ । ରାତିରେ ଲୁଚି ଲୁଚି ଜଙ୍ଗଲ ଭିତରେ ତାଙ୍କ ଗାଁରୁ ଓଡ଼ଗାଁ ଯାଇ ଆନ୍ଦୋଳନ ବିଷୟରେ ଆଲୋଚନା କରୁଥିଲେ । ଦିନରେ ଜଙ୍ଗଲରେ । ରାତିରେ ନିର୍ଜନ ବେଳେ ଗାଁର କଥା ଶୁଣା କେହି ଥିଲେ ତାଙ୍କଘରେ ମାତ୍ର ଗୋଟିଏ ବଖ ଖାଇ ଆନ୍ଦୋଳନ ବାର୍ତ୍ତା ଶୁଣାଇ ପୁଣି ସକାଳ ପୂର୍ବରୁ ଜଙ୍ଗଲରେ ଲୁଚି ରହିବା ତାଙ୍କର କାମ । କେବେ

ବେଳେ ପୁଲିସ୍ ହାତରେ ଧରା ହୋଇ ପୁଣି ନିଜଗାଁକୁ ଯାଆନ୍ତି । ଥରେ ଓଡ଼ଗାଁ ପୋଖରୀରେ ସକାଳୁ ଗାଧୋଉଥିବା ବେଳେ ପୁଲିସ୍ ଓଦା ଲୁଗାରେ ଧରି ନେଇ ଥାନାରେ ରଖିଲେ । ସନ୍ଧ୍ୟାବେଳକୁ ଚଲାଇ ଚଲାଇ ଓଡ଼ିପଡ଼ା ଥାନାରେ କନେଷ୍ଟବଳମାନେ ଛାଡ଼ିଦେଲେ । ଦାରୋଗା ରାତିରେ ବର୍ଷା ହେଉଥିବା ସୁଯୋଗ ନେଇ ଆନ୍ଦୋଳନକୁ ଛାଡ଼ିବାକୁ ପ୍ରବର୍ଗାଇ ମନା କରିବାରୁ ନିଷ୍ଠୁର ମାଡ଼ ଦେଲେ । ଚେତାଶୂନ୍ୟ ହେଲେ ଗଡ଼ୋଇରେ ରଖା ହୋଇଥିବା ମଳ ଓ ମୂତ୍ର ପିଇବାକୁ ଦିଅନ୍ତି । ଶେଷକୁ ଚେତା ନ ଫେରିବାରୁ ମୃତ ମନେ କରି କନେଷ୍ଟବଳମାନେ ଟେକି ନେଇ ତାଙ୍କ ଗାଁ ରାସ୍ତା କଡ଼ରେ ଶୁଆଇ ଦେଇ ଆଆନ୍ତି । ଗାଁରୁ କେତେକ ଲୋକ ପୁଣି ଟେକି ନେଇ ଘରକୁ ଗଲେ । ରାଜାକୁ ଏହା ଜଣାଇବା ଉଦ୍ଦେଶ୍ୟରେ ଖଟରେ ଶୁଆଇ ନୟାଗଡ଼ ନେଲେ । ରାଜା ଓଲଟା ବିଚାର କଲେ । ଜେଲ ଦଣ୍ଡ ହେଲା । ଏବେକାର ରାଜନୈତିକ ବନ୍ଦୀଙ୍କ ପରି କୌଣସି ସୁବିଧା ସେତେବେଳେ ଦିଆଯାଉନଥିଲା । ଚୋର, ଖୁନୀ ଆସାମୀଙ୍କ ସହିତ ରଖାଯାଉଥିଲା । ମାଣ୍ଡୁସଜ ଏବଂ ବେତ୍ରାଘାତ କରାଯାଉଥିଲା । ଦେଢ଼ବର୍ଷ ଜେଲରେ ସଡ଼ିବା ପରେ ୧୦୦ ଟଙ୍କା ଜୋରିମାନା ଟଙ୍କା ଗାଈ ଗୋରୁ ବାସନ ନିଲାମ କରି ନେବା ପରେ ଖଲାସ କଲେ । ଘରେ ସ୍ତ୍ରୀ ଗୁଞ୍ଜର ଦେଈ ତାଙ୍କର ପ୍ରଥମ ଝିଅ ସାବିତ୍ରୀକୁ ଧରି ଦିନେ ଖାଇଲେ ଆରଦିନ ଉପବାସ ରହି ଥାଆନ୍ତି, ଏ ସବୁ ଘଟଣା ନାରାୟଣ ନନ୍ଦ ଗାନ୍ଧିଜୀ ଏବଂ ଅନ୍ୟାନ୍ୟ ରାଜନୈତିକ ନେତାମାନଙ୍କୁ ଜଣାଇଲେ । ସାରଙ୍ଗଧର ଦାସ ଅନୁସନ୍ଧାନରେ ଆସି ଗାନ୍ଧିଜୀଙ୍କୁ ଜଣାଇଲେ । ପଲିଟିକାଲ ଏଜେଣ୍ଟ ମଧ୍ୟ ଅନୁସନ୍ଧାନ କରିଆସିଥିଲେ । ଏହାପରେ ପ୍ରଜାମାନେ ନାଗରିକ ଅଧିକାର ପାଇଲେ । ପ୍ରଜାମାନଙ୍କ ଉପରୁ ବେଠୀ ରାଜା ଉଠାଇ ଦେଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତ ସରକାରଙ୍କର ଯୋଗଦାନକୁ ଗାନ୍ଧିଜୀ ତଥା କଂଗ୍ରେସ ଗ୍ରହଣ କରିନଥିଲେ । ବାହାଡ଼ାଝୋଲା ଠାରେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିରେ ଗାନ୍ଧିଜୀଙ୍କୁ ସମର୍ଥନ କରାଗଲା । ସଭାରୁ ଫେରିଲାବେଳେ ଶୁକ୍ର ବେହେରା, ଶ୍ରୀଧର ଦାସ ଆଦି କର୍ମୀମାନେ ପଥପ୍ରାନ୍ତ ସଭା କରି ଲୋକମାନଙ୍କୁ ବୁଝାଇଲେ । ପୋଲିସଠାରୁ ଲୋକଙ୍କର ଭୟ ଛୁଟିଲା । ୧୯୪୨ ଅଗଷ୍ଟ ଆନ୍ଦୋଳନକୁ ସକ୍ରିୟ କରାଗଲା । କେତେକ କର୍ମୀ ହିଂସ୍ର ହୋଇ ନୂଆଗାଁ ଥାନା ପୋଡ଼ିଲେ । ପୋଲିସ ଗୁଳିରେ ଦଶି ହାବୁଆ ଶହୀଦ ହେଲେ । ୧୯୪୨ ମସିହା ଅକ୍ଟୋବର ୧୦ ତାରିଖକୁ ନୟାଗଡ଼ରେ ଶହୀଦ ଦିବସରୂପେ ପାଳନ କରାଗଲା ।

୧୯୪୫ ମସିହା ମଧ୍ୟରେ ସମସ୍ତ ରାଜନୈତିକ କର୍ମୀ ବନ୍ଦୀରୁ ମୁକ୍ତ ହେଲେ । ପ୍ରତି ଗ୍ରାମରେ ଯୁବକ ସଂଘ ଗଢ଼ି ଗ୍ରାମ ସଫେଇ, ରାସ୍ତାଘାଟ ମରାମତି, କର୍ମଚାରୀଙ୍କର ଅତ୍ୟାଚାର ବିରୋଧ କରାଗଲା । ଗାଁକୁ ଗାଁ ବୁଲି ସଭାକରି ଲୋକମାନଙ୍କୁ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ସେ ବୁଝାଉଥିଲେ । ସ୍ତ୍ରୀମାନେ ଯୋଗଦେବାକୁ ପଛାଉଥିଲେ । ବେହେରାଙ୍କର ସ୍ତ୍ରୀ ଗୁଞ୍ଜର ଦେଈ ଏପରି ସଭାରେ ଯୋଗଦାନ କରିବାରୁ ଅନ୍ୟମାନେ ସଭାରେ ଯୋଗଦେଲେ । ଗୁଞ୍ଜର ଦେଈ ଅଶିକ୍ଷିତା ମାତ୍ର କର୍ତ୍ତବ୍ୟ ପରାୟଣା, ଅତିଥି ପରାୟଣା ହୋଇଥିବାରୁ ସ୍ୱାମୀଙ୍କର ସଂଗ୍ରାମୀ ଜୀବନର ସାଥୀ ହୋଇପାରିଥିଲେ ।

ଗଞ୍ଜାମର ବିଶିଷ୍ଟ ନେତା ଗୋବିନ୍ଦ ପ୍ରଧାନଙ୍କ ଆହ୍ୱାନରେ ୧୯୪୫ ମସିହାରେ ଶୁକ୍ର ବେହେରା, ଶ୍ରୀଧର ଦାଶ, ବାସୁଦେବା ଆଦି ୨୦ ଜଣ କର୍ମୀ ଯୋଗ ଦେଇଥିଲେ । ବାସୁଦେବା କମ୍ୟୁନିଷ୍ଟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ପଡ଼ିଥିଲେ ।

ଗଡ଼ଜାତର ପ୍ରଜାମଣ୍ଡଳ ଆନ୍ଦୋଳନ ସହିତ ମୋଗଲ ବନ୍ଦୀର କଂଗ୍ରେସ ଆନ୍ଦୋଳନର ଯୋଗାଯୋଗ ସମ୍ପର୍କ ବୃଦ୍ଧି ପାଇଲା । ମାଣିକ- ଗୋଡ଼ାର ପର୍ଶୁରାମ ପଟ୍ଟନାୟକ, ମୁସ୍ତାଫା ଖାଁ କଂଗ୍ରେସ ଆନ୍ଦୋଳନ ତଥ୍ୟ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ଦେଉଥିଲେ । ସେପଟୁ ଗଞ୍ଜାମର କୁମ୍ଭାପଡ଼ା ଗ୍ରାମବାସୀ ବହୁ ସାହାଯ୍ୟ ଦେଉଥିଲେ ।

ଓଡ଼ିଶାର ସମସ୍ତ ଗଡ଼ଜାତ ଅଞ୍ଚଳରେ ପ୍ରଜାମଣ୍ଡଳ ଗଠିତ ହୋଇ ପରସ୍ପର ଯୋଗାଯୋଗ ସ୍ଥାପନ କରାଯାଉଥାଏ । ୧୯୪୬ ମସିହାରେ ଓଡ଼ିଶାର ସମସ୍ତ ଗଡ଼ଜାତ ଅଞ୍ଚଳର କର୍ମୀମାନଙ୍କୁ ନେଇ ଏକ ସମ୍ମିଳନୀ କରାଯାଇଥିଲା । ଚାଉଳ, ଡାଲି, ପରିବା, ଅସ୍ଥାୟୀ ଘର ପାଇଁ ଚାଟି ପଟି କାଠ ବାଉଁଶ ଲୋକଙ୍କଠାରୁ ସଂଗ୍ରହ କରାଗଲା । ଆଦିବାସୀ ଭାଇମାନେ ଖାଲି ଚାଟି ପଟି କାଠ ବାଉଁଶ ଯୋଗାଇଲେ । ୫୦ ହଜାର ଲୋକଙ୍କର ସମାଗମ ଲକ୍ଷ୍ୟରେ ଖାଇବା ରହିବା ସଭା ମଣ୍ଡପ ଘର ତିଆରି ହେଲା । ଠିକ୍ ପୂର୍ବଦିନ ଘୂର୍ଣ୍ଣିବାତ୍ୟାରେ ସବୁଘର ଭାଙ୍ଗିଗଲା । ସେହିଦିନ ରାତାରାତି ପଡ଼ୋଶୀ ଗ୍ରାମବାସୀ ମେଳ ହୋଇ ସମସ୍ତ ଘର କରିଦେଲେ । ଲୋକଙ୍କର ଅଭୂତ ପୂର୍ବ ସହଯୋଗ ସଭାଟିକୁ ସାଫଲ୍ୟ ମଣ୍ଡିତ କଲା । ଅତିଥିମାନଙ୍କୁ ପାଛୋଟି ନେବା ପାଇଁ ଶରଣକୂଳ ଓ ଇଟାମାଟିରେ କର୍ମୀମାନେ ଓ ବଳଦ ଗାଡ଼ି ସଜ ହୋଇ ରହିଥାଏ । ଗାଡ଼ି ମଟରର ସୁବିଧା ନଥାଏ । ଚାଲି ଚାଲି ସଭାସ୍ଥଳକୁ ଯିବାକୁ ପଡୁଥିଲା । ବିଶିଷ୍ଟ ଅତିଥି ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ତାଙ୍କ ସହ ଧର୍ମିଣୀ ମାଳତୀ ଚୌଧୁରୀ, ହରେକୃଷ୍ଣ ମହତାବ, ପବିତ୍ର ମୋହନ ପ୍ରଧାନ, ରାଧାନାଥ ରଥ, ସାରଙ୍ଗଧର ଦାଶ, ସୁବାହୁ ସିଂହ, ରାମରାମ ରଘୁନାଥ ସିଂହ ପ୍ରମୁଖ ଯୋଗ ଦେଇଥିଲେ । ଅତିଥିମାନଙ୍କର ସତ୍କାର ଦାୟିତ୍ୱ ଶୁକ୍ରବେହେରାଙ୍କ ଉପରେ । ସେ ସୁଚାରୁ ରୂପେ ତୁଲାଇ ଥିଲେ । ତିନି ଦିନ ଧରି ଚାଲିଥିବା ସମ୍ମିଳନୀରେ ଢେଙ୍କାନାଳର ସୁବାହୁ ସିଂହ ସଭାପତି ହୋଇଥିଲେ । ମାଳତୀ ଚୌଧୁରୀ ସଂଗ୍ରାମୀମାନଙ୍କର ପିଲାମାନଙ୍କୁ ନେଇ ଅନୁଗୁଳ ଆଶ୍ରମରେ ପଢ଼ାଇବାର ବ୍ୟବସ୍ଥା କଲେ । ଶୁକ୍ରବେହେରାଙ୍କର ବଡ଼ଝିଅ ସାବିତ୍ରୀକୁ ଅନୁଗୁଳରେ ପଢ଼ାଇବାକୁ ନେଇଥିଲେ ।

୧୯୪୭ ମସିହାରେ ଦେଶ ସ୍ୱାଧୀନ ହେବାରୁ ରାଜା ପ୍ରଜାମଣ୍ଡଳକୁ ଦାୟିତ୍ୱମୂଳକ ଶାସନ ହସ୍ତାନ୍ତର କଲେ । ରାଜାଙ୍କ ଶାଳ ଭାଇ ବୃନ୍ଦାବନ ଚନ୍ଦ୍ର ସିଂହ ମୁଖ୍ୟମନ୍ତ୍ରୀ, ବାଞ୍ଛାନିଧି ସେନାପତି ରାଜସ୍ୱ ଓ ଶ୍ରୀଧର ଦାଶ ଶିକ୍ଷା, ସ୍ୱାସ୍ଥ୍ୟ ମନ୍ତ୍ରୀ ହୋଇଥିଲେ । ଲକ୍ଷ୍ମଣ ମହାରଣା ସଭାପତି ଓ ଶୁକ୍ର ବେହେରା ଉପସଭାପତି ରହିଲେ । ଗ୍ରାମ୍ୟ କମିଟି ଗଠନ କରାଇ ଗ୍ରାମର ମକଦ୍ଦମା ନିଷ୍ପତ୍ତି ହେଲା । କୋର୍ଟ କଚେରୀକୁ ଲୋକଙ୍କୁ ଯିବାକୁ ପଡ଼ିଲା ନାହିଁ । ଲୋକମାନେ ଶାନ୍ତିରେ ରହିଲେ ।

୧୯୪୮ ପ୍ରାରମ୍ଭରେ ଗଡ଼ଜାତ ମିଶ୍ରଣକୁ ସମସ୍ତେ ସ୍ୱାଗତ ମନେ କଲେ । ପ୍ରାଦେଶିକ ଶାସନରେ ଭାଗନେବାପାଇଁ ଶ୍ରୀଧର ଦାଶଙ୍କୁ ପଠାଗଲା । ନୟାଗଡ଼, ରଣପୁର, ଖଣ୍ଡପଡ଼ା, ଦଶପଲ୍ଲା ପୁରୀ ଜିଲ୍ଲାର ଅଂଶ ବିଶେଷ ହେଲା । ପ୍ରାଦେଶିକ ତଥା ଜିଲ୍ଲା କଂଗ୍ରେସ କମିଟିରେ ଶୁକ୍ର ବେହେରା ସଭ୍ୟ ହେଲେ । ମାତ୍ର ରଚନାତ୍ମକ କର୍ମରେ ମନୋନିବେଶ କରି ଦଳୀୟ ସଂଗଠନରୁ ଅବ୍ୟାହିତ ନେଲେ । ମାଳତୀ ଦେବୀଙ୍କର ଆଶ୍ରମ କାର୍ଯ୍ୟକ୍ରମ ଶୁକ୍ର ବେହେରାଙ୍କୁ ଆକୃଷ୍ଟ କରିଥିଲା । ସେ ଦର୍ପନାରାୟଣପୁର ନିକଟସ୍ଥ ୩୯ ଏକର ଏକ ଜଙ୍ଗଲ ଜମିକୁ ନୟାଗଡ଼ର ରାଜାଙ୍କ ଭାଇଠାରୁ କିଣି ଆଶ୍ରମ କରିବା ଲକ୍ଷ୍ୟରେ ନିଜ ଗାଁ ଭାଇଆଡ଼ିହି ଛାଡ଼ିଥିଲେ । ତା ସାଙ୍ଗକୁ ଏକ କୋଠ ଚାଷ ସମିତି ସ୍ଥାପନ ପାଇଁ ସେହି ଜାଗାରେ ୧୮୭ ଏକର ଜମି ଲିଜ୍ ପଟ୍ଟା ଆଣିଲେ । ଭୂମିହୀନ ଲୋକଙ୍କୁ ଥଇଥାନ କରି ଘରଡ଼ିହ, ଚାଷପାଇଁ ସେ ଯୋଗାଇଲେ । କୋଠଚାଷ ମାଧ୍ୟମରେ ଲୋକଙ୍କୁ ଲୁଣ, ଲୁହା, କିରୋସିନୀ ବ୍ୟତୀତ ସମସ୍ତ ସାମଗ୍ରୀ ଯୋଗାଇବା ପାଇଁ ଯୋଜନା କଲେ । ଜଙ୍ଗଲ ସଫା କରି ଚାଷଜମିରେ ପରିଣତ କରାଗଲା । କୋବି, ଟମାଟୋ, ଆଳୁ, ନୂତନ ପନିପରିବା, ଫଳ ଚାଷ କରାଗଲା । ଏକ ନୂତନ ଲୋକ ବସତି ଦେଖାଦେଲା ଭେଟ ପଡ଼ିଆରେ । ତା ନାଁ ହେଲା ବାପୁଜୀ ନଗର । ଗୋପବନ୍ଧୁ କୋଠ ଚାଷ ସମିତି, ଘଣି ସୋସାଇଟି, ଗ୍ରେନ ଗୋଲା, ଗ୍ରାମମଙ୍ଗଳ କେନ୍ଦ୍ର ସ୍ଥାପିତ ହେଲା । ପ୍ରାଥମିକ ସ୍କୁଲରୁ ଆରମ୍ଭ କରି ପର୍ଯ୍ୟାୟକ୍ରମେ କଲେଜ ପର୍ଯ୍ୟନ୍ତ ଶୁକ୍ରବେହେରାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରତିଷ୍ଠା ଲାଭକଲା । ଡ଼ାକ୍ତରଖାନା, ପଶୁ ଡ଼ାକ୍ତରଖାନା, ଡ଼ାକଘର, ନାରୀମଙ୍ଗଳ କେନ୍ଦ୍ର, ଯୁବକ ସଂଘ ଆଦି ସାଧାରଣ ଅନୁଷ୍ଠାନ ଗଢ଼ି ଉଠିଲା । ନଦୀବନ୍ଧ ଯୋଜନା, ପୁଷ୍କରିଣୀ, କୂଅ, ରାସ୍ତାଘାଟର ଉନ୍ନତି ହେଲା । ବେହେରାଙ୍କ ପ୍ରଚେଷ୍ଟାରେ ପ୍ରଥମ ବ୍ଲକ ଦର୍ପନାରାୟଣପୁରରେ ପ୍ରତିଷ୍ଠିତ ହୋଇ ଗ୍ରାମାଞ୍ଚଳର ଉନ୍ନତି ହେଲା । ଉପରମୁଣ୍ଡରେ ଦୁଇଟି ନଦୀ ବନ୍ଧ ଯୋଜନା ପ୍ରସ୍ତୁତ ହେବାରୁ ସବୁଦିନ ପାଇଁ କୃଷି କ୍ଷେତ୍ରରେ ଜଳ ଯୋଗାଣ ବ୍ୟବସ୍ଥା ହୋଇ ପାରିଲା । ଏହି ବନ୍ଧ ଯୋଜନା କାର୍ଯ୍ୟକାରୀ କରିବାରେ ତାଙ୍କର ପରମ ବନ୍ଧୁ ପଦ୍ମଚରଣ ସାମନ୍ତସିଂହାର ବହୁ ସାହାଯ୍ୟ କରିଥିଲେ । ବର୍ତ୍ତମାନ ଏ ଅଞ୍ଚଳବାସୀ ଅର୍ଥକରୀ ଫସଲ କରି ଆର୍ଥିକ ଅବସ୍ଥା ଉନ୍ନତ କରିପାରିଛନ୍ତି । ଏହି ଗ୍ରାମ ତଥା ଅଞ୍ଚଳ ନେଇ ପୁରୀ ଜଗନ୍ନାଥ ରାସ୍ତା ଯାଇ ଥିବାରୁ ଗମନାଗମନ ଓ ପରିବହନ ବ୍ୟବସ୍ଥା ସୁରୁଖୁରରେ ହେଉଛି । ନିଜ ପୈତୃକ ସମ୍ପତ୍ତି ବିକ୍ରି କରି ସେ ଲବ୍ଧ ଧନକୁ ଅନୁଷ୍ଠାନର ଉନ୍ନତିରେ ବିନିଯୋଗ କରିଥିଲେ । ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ଅନୁଦାନ ସଂଗ୍ରହ କରି ସେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଲଗାଇଛନ୍ତି । ନିଜ କିମ୍ବା ପରିବାର ଚିନ୍ତା ତାଙ୍କୁ ବାନ୍ଧି ରଖିନଥିଲା । ଭଗ୍ନ ସ୍ୱାସ୍ଥ୍ୟ ନେଇ ପରିଣତ ବୟସରେ ମଧ୍ୟ ସେ ସାଧାରଣ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରୁଥିଲେ । କୃଷି, ଗୋସେବା ଓ ଅତିଥି ସେବାରେ ସେ ଯଥେଷ୍ଟ ନିଷ୍ଠା ଦେଖାଉଥିଲେ । ସେ ଜଣେ ଆଦର୍ଶ କୃଷକ । ସେ କହନ୍ତି, ଜଣେ ଲୋକ ପଥର ଚକଡ଼ାରେ ଫସଲ କରି ୧୦ ପ୍ରାଣୀ କୁଟୁମ୍ବ ପୋଷିପାରିବେ । ଏ ଭଳି ବିରଳ ଗାନ୍ଧୀବାଦୀଙ୍କ ଆଦର୍ଶ ସମାଜରେ ପ୍ରେରଣାର ଉତ୍ସ ହୋଇ ରହିବ ।

ଅଧ୍ୟକ୍ଷ, ଶୁକ୍ର ବେହେରା ଫାଉଣ୍ଡେସନ
ଟ୍ରଷ୍ଟ - ଦର୍ପନାରାୟଣପୁର
ନୟାଗଡ଼

---

ଚାଁଇରେ ଜାତୀୟ ବାହିନୀ, — ଚାଲ ଚାଲ ଚାଲ,
ଜନ୍ମଭୂମିର ଡାକ ପଡ଼ିଲାଣି, — ଚାଲ ଚାଲ ଚାଲ,
ସ୍ୱଦେଶୀ - ମୁକ୍ତି ତୋହର ଧର୍ମ,
ଶାନ୍ତି-ସମର ତୋହର କର୍ମ,
ସତ୍ୟ, ସାହସ ବର୍ମ ତୋହର — ଚାଲ ଚାଲ ଚାଲ ।
ଚାଲ ଚାଲ ଭାଇ ହୋଇ ଆଗଭର,
ପଛେ ଚାହିଁବାକୁ ନାହିଁ ଅବସର,
ଜୀବନମରଣ ସମରକ୍ଷେତ୍ରେ — ଚାଲ ଚାଲ ଚାଲ

**କାନ୍ତକବି ଲକ୍ଷ୍ମୀକାନ୍ତ**

# ସଂଗ୍ରାମୀ ବିଶ୍ୱନାଥ ପଟ୍ଟନାୟକ

ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର

୮୧ ବର୍ଷ ବୟସ୍କ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଗଞ୍ଜାମ ଜିଲ୍ଲା ଦିଗପହଣ୍ଡି ଠାରୁ ପ୍ରାୟ ୧୪ କିଲୋମିଟର ଦୂର କୁମରଡ଼ା ଗ୍ରାମରେ ୧୯୧୬ ମସିହା ନଭେମ୍ବର ୧୧ ତାରିଖରେ ଜନ୍ମ ହୋଇଥିଲେ । ଆଧ୍ୟାତ୍ମିକତା ଓ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସେ ୧୯୩୩ ମସିହାରେ ତତ୍କାଳୀନ ଏନ୍‌ଟ୍ରାନ୍ସ୍ ଥାର୍ଡ଼ ଫର୍ମ ପାଶ୍ କରି ପୁରୀକୁ ଆସି ଆଚାର୍ଯ୍ୟ ହରିହରଙ୍କୁ ସାକ୍ଷାତ୍ କଲେ । ତା'ପରେ ସାଧୁ ସନ୍ନ୍ୟାସୀମାନଙ୍କ ସହ ଉତ୍ତର ଭାରତ ପରିକ୍ରମା କରି ପ୍ରୟାଗ କୁମ୍ଭମେଳାରେ ରହି ପୁଣି ଗଞ୍ଜାମ ଫେରି ଆସିଲେ । ସେହି ଦିନୁ ସେ କଂଗ୍ରେସ କର୍ମୀ ଓ ସନ୍ନ୍ୟାସୀ ଭାବେ ରହିବାକୁ ସ୍ଥିର କରି ଖଦୀବସ୍ତ୍ର ପ୍ରସାର କାର୍ଯ୍ୟରେ ଲାଗିଲେ । ୧୯୩୭ ମସିହାରେ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ମହାଶୟ ଓ ରମାଦେବୀଙ୍କ ସହ ଗାନ୍ଧୀ ସେବା ସଂଘ ବୈଠକ ପ୍ରସ୍ତୁତି କାର୍ଯ୍ୟ ପାଇଁ ଗଞ୍ଜାମ ଜିଲ୍ଲାରେ ଗସ୍ତ କଲେ । ୧୯୩୮ ମାର୍ଚ୍ଚ ମାସରେ ପୁରୀ ଜିଲ୍ଲା ଡ଼େଲାଙ୍ଗ ବେରୋବୋଇ ଠାରେ ମହାତ୍ମାଗାନ୍ଧୀ ଓ ଭାରତର ଅନ୍ୟାନ୍ୟ ରଚନାତ୍ମକ କର୍ମୀମାନେ ଯେଉଁ ଅଖିଳ ଭାରତ ସମ୍ମିଳନୀ କରିଥିଲେ, ସେହି ସମ୍ମିଳନୀରେ ବିଶ୍ୱନାଥ ସ୍ୱେଚ୍ଛାସେବକ ଭାବେ କାର୍ଯ୍ୟ କଲେ । ତା' ପରେ ବରୀ ଆଶ୍ରମରେ ତାଲିମ୍ ନେଇ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ତାଳଚେର ପ୍ରଜାମଣ୍ଡଳ କର୍ମୀମାନଙ୍କୁ ସାହାଯ୍ୟ କରିବା କାମରେ ରହିଲେ । ଶ୍ରୀଯୁକ୍ତ ନାରାୟଣ ବୀରବର ସାମନ୍ତଙ୍କ ନେତୃତ୍ୱରେ ରାହାମାରୁ ପାରାଦ୍ୱୀପ ମଧ୍ୟରେ ସୂତାକଟା ପ୍ରଶିକ୍ଷଣ କ୍ୟାମ୍ପ ଚଳାଇଲେ । ତା' ପରେ ଗୋପବନ୍ଧୁ ଚୌଧୁରୀ ବିଶ୍ୱନାଥଙ୍କୁ ଗୁଣପୁର ବଂଶଧାରା ନଦୀ ଉପତ୍ୟକାରେ କପାଚାଷ, ସୂତାକଟା ଓ ଖଦୀବୁଣା କାର୍ଯ୍ୟ ପ୍ରସାର କରିବାକୁ ପରାମର୍ଶ ଦେଲେ । ସେହିଦିନ ଠାରୁ ବିଶ୍ୱନାଥ ୩୦ ବର୍ଷକାଳ କୋରାପୁଟ ଆଦିବାସୀମାନଙ୍କ ସହ ଏକାତ୍ମ ହୋଇ ରହିଗଲେ ।

ଭାରତବର୍ଷର ସବୁଠାରୁ ପଛୁଆ ଅଞ୍ଚଳ ଆଦିବାସୀ ଅଧ୍ୟୁଷିତ ଦକ୍ଷିଣ, କୋରାପୁଟ ବ୍ରିଟିଶ ସରକାର ଓ ସେମାନେ କ୍ଷମତା ଦେଇଥିବା ରାଜା ଜମିଦାରମାନଙ୍କ ଦ୍ୱାରା ଶାସିତ ହେଉଥିଲା । ବୁଢ଼ିଆଣୀ ଜାଲ ବିଛାଇଲା ପରି ଶୋଷଣକାରୀ ଦଳ ଆଦିବାସୀମାନଙ୍କ ଠାରୁ ଲୁଣ୍ଠନ କରିନେବାର ଏକମାତ୍ର ଉଦ୍ଦେଶ୍ୟ ରଖିଥାନ୍ତି । ଜୟପୁର ରାଜା ବା ଜମିଦାର ଖଜଣା ଅସୁଲ କରନ୍ତି । ବ୍ରିଟିଶ୍ ସରକାର ଆଇନ ଶୃଙ୍ଖଳା ରକ୍ଷା କରନ୍ତି । କିନ୍ତୁ ପ୍ରାଦେଶିକ ନିର୍ବାଚନରେ ଭାରତୀୟ ଜାତୀୟ କଂଗ୍ରେସ ସଂଖ୍ୟା ଗରିଷ୍ଠତା ହାସଲ କରିଥିବାରୁ କୋରାପୁଟର କଂଗ୍ରେସ ନେତା ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଓ ରାଧା ମୋହନ ସାହୁଙ୍କ ନେତୃତ୍ୱରେ ଏହି ପ୍ରତିବାଦ ଆରମ୍ଭ ହୋଇଥାଏ । କୋରାପୁଟ ଆଦିବାସୀର ବିଜ୍ଞାନ ଭିତ୍ତିକ ଆଧୁନିକ ସମାଜ ପ୍ରତି ଏକ ଅହେତୁକ ଭୟ । ଜମିଦାର ଓ ବ୍ରିଟିଶ୍ ସରକାରଙ୍କ ଉପରିସ୍ଥ କର୍ମଚାରୀମାନଙ୍କୁ ଲାଞ୍ଚ ଦେଇ ତଳିଆ କର୍ମଚାରୀମାନେ ଗରୀବ ଆଦିବାସୀଙ୍କୁ ଶୋଷଣ କରିବା ପାଇଁ ବେଠି ଓ ଭେଟି ନାମକ ଦୁଇଟି ଶୋଷଣକାରୀ ଅସ୍ତ୍ର ଖଞ୍ଜିଥିଲେ । ସମଗ୍ର ଓଡ଼ିଶାର ୬ ଭାଗରୁ ୧ ଭାଗ ବିଶିଷ୍ଟ କୋରାପୁଟ ଜିଲ୍ଲା । ସ୍ୱାଧୀନତା ସଂଗ୍ରାମ ପାଇଁ କର୍ମୀ ତାଲିମ୍ ଶିବିର ପ୍ରଥମେ ଏ ଜିଲ୍ଲାରେ ଜୟପୁର ପାଖ ନୂଆପୁଟରେ ୧୯୩୮ ରେ ଆରମ୍ଭ ହେଲା । ଗୋତି ଶ୍ରମିକ ପ୍ରଥା ବିରୁଦ୍ଧରେ ଆନ୍ଦୋଳନ, ମଦ ବ୍ୟବସାୟୀମାନଙ୍କ ଶୋଷଣ ବିରୁଦ୍ଧରେ ସଂଗ୍ରାମ ଓ ବ୍ରିଟିଶ କର୍ମଚାରୀମାନଙ୍କ ଅନ୍ୟାୟ କାର୍ଯ୍ୟର ବିରୋଧ ପାଇଁ ତାଲିମ୍ ଦିଆଗଲା ।

ବିଶ୍ୱନାଥ ପଟ୍ଟନାୟକ ଆଦିବାସୀମାନଙ୍କ ଗହଣରେ ରହିବେ ବୋଲି କୌଣସି ସହରରେ ନ ରହି ଗୁଣପୁରରୁ ୧୦ କିଲୋମିଟର ଦୂର କୁଦେନ୍ଦ୍ରୀ ଗ୍ରାମରେ ନିଜର ଆଶ୍ରମ ପ୍ରତିଷ୍ଠା କଲେ । ଆଦିବାସୀମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରହିବାକୁ ଶିକ୍ଷା ଦେଲେ । ସବୁଦିନ ପ୍ରତ୍ୟୁଷରୁ ବାଲ୍‌ଟି ଓ ଝୋଟିଆ ଖଣ୍ଡିଏ ଧରି ଗାଁ ଚାରିପଟରୁ ମଣିଷ ଓ ଘୁଷୁରି ମଳ ସଫାକରି ଦୂରରେ ଗୋଟିଏ ଗାତରେ ନେଇ ପୋପାଡ଼ିଲେ ।

କୁଦେନ୍ଦ୍ରୀ ଗ୍ରାମର ଆଦିବାସୀ ମୁଖିଆଙ୍କ ଝିଅକୁ ବରୀରେ କର୍ମୀ ତାଲିମ୍ ପାଇଁ ପଠାଇଲେ । ବିଶ୍ୱନାଥ ଭାବୁଥିଲେ ଯଦି ବ୍ରିଟିଶ ବିରୁଦ୍ଧରେ ଆନ୍ଦୋଳନ ହୁଏ ଏବଂ ତାଙ୍କୁ ଗିରଫ କରାଯାଏ ତେବେ ଯଥେଷ୍ଟ ଆଦିବାସୀ ତାଲିମ ପ୍ରାପ୍ତ କର୍ମୀ ନଥିଲେ ସ୍ୱାଧୀନତା ସଂଗ୍ରାମ ଦୀର୍ଘଦିନ ଧରି ଚାଲିପାରିବ ନାହିଁ । ବାସ୍ତବରେ ୧୯୪୨ ଅଗଷ୍ଟ ବିପ୍ଳବରେ କେବଳ କୁଦେନ୍ଦ୍ରି ଗ୍ରାମରୁ ୫୬ ଜଣ ଆଦିବାସୀ ମହିଳା ଓ ପୁରୁଷ ଜେଲ ଗଲେ । ବିଶ୍ୱନାଥ ସୋରା ଓ ଆଦିବାସୀମାନଙ୍କ ଭାଷା ବୁଝିବାକୁ ଚେଷ୍ଟା କରି ସଫଳ ହେଲେ । ସବୁ ଶୋଷଣକାରୀ ଲୋକଙ୍କ ବିରୋଧ କରିବାକୁ ଆଦିବାସୀମାନଙ୍କୁ ବୁଝାଇଲେ । ବିଶ୍ୱନାଥ ବ୍ରିଟିଶ୍ ଶାସକ ଓ ଜୟପୁର

ଜମିଦାରଙ୍କ କର୍ମଚାରୀମାନଙ୍କୁ କହନ୍ତି, ''ଏ ଖବର ରାଜା ଘରକୁ ଜଣାଇ ଦିଅ ଯେ, ଆମେ ଭେଟି ବନ୍ଦ କରିଦେଇଛୁ''। ଆଦିବାସୀମାନେ ବିଶ୍ୱନାଥଙ୍କ ଉପରେ ସଂପୂର୍ଣ୍ଣ ବିଶ୍ୱାସ ରଖିଲେ। ସବୁ ସମସ୍ୟାର ସମାଧାନ ପାଇଁ ବିଶ୍ୱନାଥ ଗୋଟିଏ ସୂତ୍ର ସ୍ଥିର କଲେ ଯେ, ଆଦିବାସୀଙ୍କୁ ଶିକ୍ଷିତ କରିବି। ତେଣୁ କୁଜେନ୍ଦ୍ରୀରେ ସନ୍ଧ୍ୟାବେଳେ ଛୋଟ ପୁଅ ଝିଅମାନଙ୍କୁ ପ୍ରାର୍ଥନା ଶିଖାଇଲେ ଓ କିଛି କିଛି ପଢ଼ାଗଲେ। ଯେଉଁମାନେ ମଇଁଷି ଚରାଇବାକୁ ଯାନ୍ତି, ସେଇ ପିଲାମାନେ ମୁଣ୍ଡରେ ଲଗାଇଥିବା ଟୋପିରେ ବା ପତ୍ର ଝାମରେ କାଗଜଟିଏ ଲେଖି ଖୋସି ଦିଅନ୍ତି ଓ କହନ୍ତି ''ଯା ତୁ ପୋଡ଼ ଚରାଉଥିବୁ, ଯେତେବେଳେ ମନ ଆଉ ସମୟ ହେବ, ସେତେବେଳେ ଦି ଅକ୍ଷର ପଢ଼ିବୁ।'' ବିଶ୍ୱନାଥ ସୂତାକଟା ପାଇଁ ଉନ୍ନତ ଧରଣର ଧରଟ ଆଦିବାସୀମାନଙ୍କୁ ଯୋଗାଇଲେ। ଗୁଣପୁରର ପ୍ରହ୍ଲାଦ ପାଣିଗ୍ରାହୀ ଏ କାର୍ଯ୍ୟରେ ତାଙ୍କୁ ଉତ୍ସାହିତ କରୁଥାନ୍ତି। ବିଶ୍ୱନାଥ ଗୁଡ଼ାରି, ରାମନାଗୁଡ଼ା, ବିଷମ କଟକ, ରାୟଗଡ଼ାର କୈଳାସପୁର ବା କୈଳାସ କୋଟା ଅଞ୍ଚଳର ଆଦିବାସୀ ପଡ଼ାମାନଙ୍କରେ ସନ୍ଧ୍ୟାରେ ସଭା କରନ୍ତି। ଦିନେ ଦିନେ ୬୦ ରୁ ୭୦ କିଲୋମିଟର ବାଟ ଜଙ୍ଗଲ ଭିତରେ ଚାଲି ଚାଲି ଆଦିବାସୀମାନଙ୍କୁ ସାକ୍ଷାତ କରନ୍ତି। ସେତେବେଳେ ସେ ଭାବୁଥିଲେ ଶୋଷିତ ଆଦିବାସୀମାନଙ୍କୁ ଅର୍ଥନୈତିକ ନ୍ୟାୟ ଦେବାପାଇଁ ଆନ୍ଦୋଳନର ମଧ୍ୟ ପ୍ରୟୋଜନ ଅଛି। ଯେଉଁ କର୍ମୀ ରଚନାତ୍ମକ କାର୍ଯ୍ୟ କରିବ ସେ ମଧ୍ୟ ଆବଶ୍ୟକ ବେଳେ ଆନ୍ଦୋଳନ କରିବ। ଦେଶ ସ୍ୱାଧୀନ ହେଲେ ଆଦିବାସୀମାନେ ଭଲରେ ରହିବେ। ଜୟପୁର ରାଜା ବ୍ରିଟିଶ୍ ସରକାରଙ୍କର ଏଜେଣ୍ଟ। ବ୍ରିଟିଶ୍ ସରକାର ଚାଲିଗଲେ, ଆଦିବାସୀମାନଙ୍କୁ କେହି ଠକି ପାରିବେ ନାହିଁ। ବିଶ୍ୱନାଥ ଆଦିବାସୀମାନଙ୍କୁ ବୁଝାଇଦେଲେ ଯେ, କର୍ମୀ ହେଲେ ବିପଦ ପଡ଼ିବ, ଦରକାର ହେଲେ ପୋଲିସ୍ ବାନ୍ଧିନେବ, ଜେଲ ଯିବାକୁ ପଡ଼ିବ। ବିଶ୍ୱନାଥ କହନ୍ତି, '' ମୁଁ ପୁଅ ଝିଅଙ୍କୁ ପତାକା ଗୀତ ଶିଖାଏ ଓ ପତାକା ଉତ୍ତୋଳନ ତଥା ଅବତରଣ କରିବା ଶିଖାଏ।'' କଲେକ୍ଟର କୋରାପୁଟରୁ ଗୁଣୁପୁର ଗସ୍ତରେ ଆସିଥିଲେ। ସେ କୁଜେନ୍ଦ୍ରୀ ଆସି ଦେଖିଲେ ଗୋଟିଏ ଲମ୍ବା ବାଉଁଶ ଅଗରେ ତ୍ରିରଙ୍ଗ ପତାକା ଉଡୁଛି। ପଚାରିଲେ, କିଏ ପତାକା ଉଡ଼ାଉଛି, ଶୀଘ୍ର ପତାକା ଓହ୍ଲାଇ ଦିଅ। ସେ କଥା ଗାଁ ଲୋକେ ମାନିଲେ ନାହିଁ। ପ୍ରାୟ ୨୦ ଜଣ ଆଦିବାସୀ ଝିଅ ଓ ସ୍ତ୍ରୀ ଲୋକ ପତାକା ଖୁଣ୍ଟ ଚାରିପଟେ ଘେରିଗଲେ। ହାତକୁ ହାତ ଛନ୍ଦି ଗୋଟିଏ ବୃତ୍ତ କରିଦେଲେ। କଲେକ୍ଟର ଉପରକୁ କିଛି ପ୍ରତିକ୍ରିୟା ଜଣାଇଲେ ନାହିଁ। ଉଚ୍ଚ ପ୍ରାଥମିକ ସ୍କୁଲରେ ଘଣ୍ଟାଏ ଖଣ୍ଡେ ବସିଲେ। ତା'ପରେ ଗୁଣପୁର ଫେରିଗଲେ।

୧୯୪୨ ମସିହା ବେଳକୁ ଜୟପୁରରର ନନ୍ଦ ପରିବାର ସଂଗ୍ରାମୀମାନଙ୍କ ପାଇଁ ବହୁ ପଇସା ଖର୍ଚ୍ଚ କରୁଥିଲେ। ଦିବ୍ୟସିଂହ, ଭାଗିରଥୀ ଓ ହରିବନ୍ଧୁ ଇତ୍ୟାଦି ଏହି ପରିବାରର ପାଞ୍ଚଭାଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ। ନନ୍ଦପୁରର ଭଗବାନ୍ ଖେମୁଣ୍ଡ, ଉମରକୋଟର ବଳୀ ପୂଜାରୀ, ମାତିଲିର ଲକ୍ଷ୍ମଣ ନାୟକଙ୍କର ଆଦିବାସୀମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିଲା। ମହମ୍ମଦ ବାଜୀ, ଲକ୍ଷ୍ମୀଚନ୍ଦ୍ର ଦାସ, ଦାମୋଦର ସାମନ୍ତରାୟ ଓ ଜଗନ୍ନାଥ ତ୍ରିପାଠୀ ଇତ୍ୟାଦି ଯୁବନେତା ମଧ୍ୟ କାର୍ଯ୍ୟ କରୁଥିଲେ।

ବିଶ୍ୱାସରାୟ ଅଗଷ୍ଟ ବିପ୍ଳବରେ ବମ୍ବେ କଂଗ୍ରେସ ଯାଇଥିଲେ। ସେଠାରୁ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ଚିଠି ପଠାଇଲେ। ୧୩ ତାରିଖ ଦିନ କୁଜେନ୍ଦ୍ରୀରେ କାର୍ବନ ପେପର ପକାଇ ପାମ୍ଫଲେଟ୍ ଲେଖାଗଲା। ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ ମୁତାବକ ବିଶ୍ୱନାଥଙ୍କର ଏହି ଆଜ୍ଞାପତ୍ର ଆଦିବାସୀମାନେ ନେଇ ଗ୍ରାମକୁ ଗ୍ରାମ ଚାଲିଲେ। ବିଶ୍ୱନାଥଙ୍କ ନେତୃତ୍ୱରେ କୁଜେନ୍ଦ୍ରୀରୁ ଶୋଭାଯାତ୍ରା ବାହାରିଲା। ପ୍ରାୟ ୫୦ ଜଣ ସ୍ତ୍ରୀ ଲୋକ ଓ ୨୦୦ ଜଣ ପୁରୁଷ ଲୋକ ଏ ଯାତ୍ରାରେ ଥିଲେ। ବାଟରେ ଲାଛପା, ଗୁଲୁମୁଣ୍ଡା, ପଣସ ପୁଟୋ ଓ ବିକ୍ରମପୁର ଗାଁଆବାଟେ ଶୋଭାଯାତ୍ରା ଗଲା। ସେ ଗାଁଆରୁ ମଧ୍ୟ ଆଦିବାସୀଲୋକେ ଶୋଭାଯାତ୍ରାରେ ଯୋଗଦେଲେ ଓ ବିରୋଧୀ ଧ୍ୱନିଦେଇ ହାତରେ ତ୍ରିରଙ୍ଗ ପତାକା ଧରି ଗୁଣପୁର ଚାଲିଲେ। ଘରୁ ସେମାନେ ବିଦାୟ ନେଇ ଜେଲ ଯିବା ପାଇଁ ପ୍ରସ୍ତୁତ ହୋଇ ଆସିଥାଆନ୍ତି।

ବଂଶଧରା ନଦୀରେ ଡଙ୍ଗାବାଲା ପ୍ରଥମେ ପାର କରିବ ନାହିଁ ବୋଲି କହି ଶେଷରେ ଗୁଣପୁରକୁ ଏ ଶୋଭାଯାତ୍ରାକାରୀମାନଙ୍କୁ ଡଙ୍ଗାରେ ପାରି କଲା। ସେଠାରେ ପ୍ରାୟ ଦେଢ଼ହଜାର ଲୋକ ଶୋଭାଯାତ୍ରାରେ ଯୋଗଦେଲେ। କୃଷ୍ଣଚନ୍ଦ୍ର ବକ୍ସିପାତ୍ର ସ୍କୁଲ ଛାତ୍ର ଆନ୍ଦୋଳନକାରୀଙ୍କ ନେତୃତ୍ୱ ନେଲେ। ମାତ୍ର ପୋଲିସ ସେଦିନ ଲୋକଙ୍କୁ ଗିରଫ କଲାନାହିଁ। ଘଉଡ଼ାଇ ଦେଲା। କର୍ମୀମାନେ ବାମୁଣୀ ହାଟ, ଖିଲାପଦର, ଦମ୍ପସରା ଓ ପାଖ ଗାଆଁ ଗୁଡ଼ିକରେ ଶୋଭାଯାତ୍ରା ଓ ସଭା କଲେ। ସେମାନେ ୫ ଦିନ ପରେ କୁଜେନ୍ଦ୍ରୀରେ ପହଞ୍ଚିଲେ। ପୋଲିସ୍ ବିଶ୍ୱନାଥ ଓ କୁଜେନ୍ଦ୍ରୀ ଗ୍ରାମର ଅନେକ ଆଦିବାସୀଙ୍କୁ ଆସି ଥାନାକୁ ଡ଼ାକିନେଲେ। ସମସ୍ତଙ୍କୁ ଥାନାରେ ଅଟକ ରଖାଗଲା। ଦୁଇତିନି ଦିନ ପରେ ବିଚାର ହୋଇ ୬ ମାସ ଲେଖାଏଁ ଜେଲ ଆଦେଶ ହେଲା।

ତା'ପରେ କୁଜେନ୍ଦ୍ରୀ ଗାଆଁର ୧୮ ଜଣ ସ୍ତ୍ରୀ ଲୋକଙ୍କୁ ଗିରଫ କରାଗଲା। କୁଜେନ୍ଦ୍ରୀ, ନାରାୟଣଗୁଡ଼ା ଓ ଗୁଲୁମୁଣ୍ଡା ଗାଆଁରୁ ୧୨ ଜଣ ପୁରୁଷ ଲୋକଙ୍କୁ ମଧ୍ୟ ଗିରଫ କରାଗଲା। ସେତେବେଳେ ଜଣାଗଲା ଯେ ବିଶ୍ୱନାଥଙ୍କ କାର୍ଯ୍ୟକଳାପ ପାଖ ଆଖ ଅଞ୍ଚଳରେ ଆଦିବାସୀଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି।

ବିଶ୍ୱନାଥଙ୍କ କେଶ୍ ବିଚାର ହେବା ବେଳକୁ ସେ ଗୁଣୁପୁର ସବ୍‌ଜେଲରେ ଥିଲେ। ଜେଲ ଭୋଗିବାକୁ ଆଦେଶ ବାହାରିବା ପରେ ତାଙ୍କୁ କୋରାପୁଟ ପଠାଗଲା। ହାତ କଡ଼ି ପକାଇ ତାଙ୍କୁ ଓ ତାଙ୍କର ସହକର୍ମୀମାନଙ୍କୁ ହଳ ହଳ କରି ବସରେ ବାନ୍ଧି ନେଲେ ରାୟଗଡ଼ା ଯାଏ। ସେଠାରୁ ସେମାନେ ରାତିଟିଏ ଚାଲିଇ ଟ୍ରକରେ ବୁହା ହେଲେ କୋରାପୁଟ। ପୋଲିସ୍ ସେମାନଙ୍କୁ କୋରାପୁଟ ଥାନା ବାରଣ୍ଡାରେ ବସାଇଦେଲେ ସନ୍ଧ୍ୟାରୁ ସକାଳ ଯାଏ। ହାତକଡ଼ା ଫିଟାଗଲା ନାହିଁ। ଏପରିକି ଖଦ୍ୟ

ପରିସ୍ରା କରିବା ପାଇଁ ମଧ୍ୟ ହାତ ଖୋଲାଗଲା ନାହିଁ । ସେ ରାତି ପାହିଲା, ସେମାନେ କୋରାପୁଟ ଜେଲକୁ ନିଆଗଲେ ।

ବିଶ୍ୱନାଥ ଜେଲରେ କୋରାପୁଟର ବିଭିନ୍ନ ଅଞ୍ଚଳର ଲୋକଙ୍କୁ ଭେଟିଲେ । ସେଠାରେ ପ୍ରାୟ ୬୦୦ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇଥିବା ଲୋକ ଥିଲେ । ନବରଙ୍ଗପୁର, ବୈପାରୀଗୁଡ଼ା, ଜୟପୁର ଓ ନନ୍ଦପୁର ଅଞ୍ଚଳର ଲୋକ ବେଶୀ, ଗୁଣୁପୁରର ଲୋକ କମ୍ । ଯେଉଁମାନେ ଦୁଇମାସରୁ କମ୍ ସଜା ପାଇଥାଆନ୍ତି, ସେମାନେ ସ୍ଥାନୀୟ ସବଜେଲରେ ରହନ୍ତି । ତା' ଛଡ଼ା ଗୁଣୁପୁରର କର୍ମୀମାନେ ରିମାଣ୍ଡରେ ବେଶୀଦିନ ରହିଲେ । କୋରାପୁଟ ଜେଲରେ ଯେଉଁମାନେ ବିଶ୍ୱନାଥଙ୍କ ସହ ପରିଚିତ ହେଲେ, ସେମାନଙ୍କ ମଧ୍ୟରୁ ଲକ୍ଷ୍ମଣ ନାୟକଙ୍କ ପରାମର୍ଶଦାତା ବନ୍ଧୁ ନୀଳକଣ୍ଠ ପାତ୍ର, ନନ୍ଦ ପରିବାରର ୪ ଭାଇ ଓ ଭଗବାନ ଖେମୁଣ୍ଡୁ ଇତ୍ୟାଦି ପ୍ରଧାନ । ଜେଲରେ କିଛିଦିନ ସମସ୍ତେ ଏକାଠି ରହିବା ପରେ ବିଶ୍ୱନାଥଙ୍କୁ ଏକ ୩ ଜଣିଆ ସେଲକୁ ସ୍ଥାନାନ୍ତର କରାଗଲା । ସରକାର କ'ଣ ନିର୍ଦ୍ଦେଶ ଦେଲେ କେଜାଣି, ଆହୁରି କିଛିଦିନ ପରେ ସେହି ୩ ଜଣିଆ ସେଲ ମଝିରେ ଛଟାପାଚିରୀ ଦିଆଯାଇ ଛୋଟ ଛୋଟ କରି ଦିଆଗଲା ଓ ପ୍ରତ୍ୟେକ ସେଲରେ ଜଣେ ଜଣେ ବନ୍ଦୀ ରହିଲେ । ୬ ମାସ ଜେଲରେ କାଟି ବିଶ୍ୱନାଥ କୁଳେନ୍ଦ୍ରୀ ଫେରିଲେ ।

ତା ପରେ ପୁଣି ଆନ୍ଦୋଳନ କରି ଦ୍ୱିତୀୟଥର ଜେଲ ଗଲେ ଓ ୧୯୪୫ ମସିହା ଦ୍ୱିତୀୟାର୍ଦ୍ଧରେ ଜେଲରୁ ଖଲାସ ହେଲେ । ସେହିଦିନଠାରୁ ସେ ଆଜିପର୍ଯ୍ୟନ୍ତ ଆଦିବାସୀମାନଙ୍କୁ ଶିକ୍ଷିତ କରିବାକୁ ଓ ଶୋଷଣ ବିରୁଦ୍ଧରେ ଲଢ଼ିବାକୁ ପ୍ରେରଣା ଦେଇ ଆସୁଛନ୍ତି । ପ୍ରତ୍ୟୁଷ ଚାରିଘଣ୍ଟାରୁ ଉଠି ସେ ସନ୍ଧ୍ୟା ଯାଏଁ କୋରାପୁଟ ଓ କନ୍ଧମାଳ ଜିଲ୍ଲାର ଆଦିବାସୀମାନଙ୍କ ସହ କାର୍ଯ୍ୟ କରନ୍ତି । ବର୍ତ୍ତମାନ ତାଙ୍କର ବାଲିଗୁଡ଼ା ସହରରେ ଆଶ୍ରମ ରହିଅଛି ।

ତଳ ତେଲେଙ୍ଗା ବଜାର
ପୋ- ଉପର ତେଲେଙ୍ଗା ବଜାର
ଜି- କଟକ - ୭୫୩୦୦୯

—0—

# ଅମର ଶହୀଦ୍ ଲକ୍ଷ୍ମଣ ଭାଇ

ଶ୍ରୀ ସନ୍ତୋଷ କୁମାର ଦାସ

''ଫାଶୀ ଖୁଣ୍ଟରେ ଝୁଲୁଛି ମୁଁ ଆଜି
ଭାରତ ମାତାର ମୁକ୍ତି ପାଇଁ
ସ୍ୱପ୍ନ ଦେଖୁଛି ସ୍ୱାଧୀନ ହେବ
ପବିତ୍ର ଭାରତ ଭୂଇଁ ।
ଇନ୍ କିଲାବ, ଜିନ୍ଦାବାଦ
ବନ୍ଦେ ମାତରଂ ଧ୍ୱନି ଦେଇ
ହସି ହସି ତୁମେ ପ୍ରାଣବଳୀ ଦେଇ
ହେ ବୀର ପୁରୁଷ ! ଲକ୍ଷ୍ମଣ ଭାଇ ।

ମଣିଷ ମରୁଛି ନିତି ଦିନ ଏଠି
କୀର୍ତ୍ତି ଯାହାର ଲିଭିଯାଏ
ତୁମର କିର୍ତ୍ତି ଅମ୍ଳାନ ରହିଛି
ଇତିହାସ ତବ ସଂଗୀତ ଗାଏ ।
ତବ ସ୍ତୁପ ଆଜ ତୀର୍ଥ ହୋଇଛି
ମୁକ୍ତିର ସଂଗୀତ ସଦା ଗାଉଛି

ଅମର ଶହୀଦ୍ ହୋଇଗଲ ତୁମେ
ଚିର ନମସ୍ୟ ଲକ୍ଷ୍ମଣ ଭାଇ ।

ପଚାଶ ବର୍ଷର ସ୍ୱାଧୀନ ଭାରତ
ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ
ଏ ଦେଶ ତୁମକୁ ସ୍ମରଣ କରୁଛି
ଘେନ ଭକ୍ତି ଫୁଲ ଲକ୍ଷ୍ମଣ ଭାଇ ,
ମୁକ୍ତିର ମଶାଲ ଅଲିଭା ଜଳୁଛି
ତବ ପ୍ରତିମୂର୍ତ୍ତି ସୁନ୍ଦର ଦିଶୁଛି
ଚିର ଜ୍ୟୋତିଷ୍ମାନ ଚିର ମହୀୟାନ
ଭାରତ ତୁମକୁ ଭୁଲିବ ନାହିଁ ।

କବି ନିବାସ
ଏମ.ଆଇ.ଜି - ୮/୧୩
ଚନ୍ଦ୍ରଶେଖରପୁର

# ଶ୍ରୀ ଅରବିନ୍ଦ ଓ ଭାରତର ସ୍ୱାଧୀନତା

*ଶ୍ରୀ କାଳନ୍ଦୀ ଚରଣ ସେନାପତି*

ଶ୍ରୀ ଅରବିନ୍ଦ ବହୁବିଧ ପ୍ରତିଭାର ଅଧିକାରୀ ଥିଲେ । ସେ ଥିଲେ ଏକାଧାରରେ ଜଣେ ବିପ୍ଳବୀ, ସମାଜତତ୍ତ୍ୱବିତ୍, କବି, ମନୀଷୀ ଓ ଯୋଗୀ । ଜୀବନର ପ୍ରଥମ ପର୍ଯ୍ୟାୟରେ ଭାରତ ମୁକ୍ତି ସଂଗ୍ରାମରେ ସେ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ବିଶ୍ୱଜନ ମୁକ୍ତି ନିମିତ୍ତ ଆଧ୍ୟାତ୍ମିକ ସାଧନାରେ ମନୋନିବେଶ କରିଥିଲେ । ଶ୍ରୀ ଅରବିନ୍ଦଙ୍କ ଅନନ୍ୟ ପ୍ରତିଭାରେ ମୁଗ୍ଧ ହୋଇ ବ୍ରହ୍ମ ବାନ୍ଧବ ଉପାଧ୍ୟାୟ କହିଥିଲେ-



"ଅମଳ-ଶୁଭ୍ର-ଅରବିନ୍ଦଙ୍କୁ ଦେଖିଛ କି ? ଭାରତ ମାନସ ସରୋବରର ପ୍ରସ୍ଫୁଟିତ ଶତଦଳ ! .... ଆମର ଏଇ ଅରବିନ୍ଦ ଜଗତ ଦୁର୍ଲଭ !... ଏପରି ଗୋଟିଏ ଋଷି ମଣିଷ - ଏପରି ବଜ୍ରଭଳି ବହ୍ନିଗର୍ଭ, ଆଉ କମଳ ପାଖୁଡ଼ା ସଦୃଶ କାନ୍ତ-କୋମଳ, ଏପରି ଜ୍ଞାନୀ, ଏପରି ଧ୍ୟାନ ସମାହିତ ମଣିଷ ତୁମେ ତ୍ରିଭୁବନରେ ଖୋଜି ପାଇବ ନାହିଁ ।"

ଆଜକୁ ୧୨୫ ବର୍ଷତଳେ ୧୮୭୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୧୫ ତାରିଖରେ ଶ୍ରୀ ଅରବିନ୍ଦଙ୍କ ଆବିର୍ଭାବ ଘଟିଥିଲା କଲିକତା ନଗରୀରେ । ତାଙ୍କର ପିତା ଡାକ୍ତର କୃଷ୍ଣଧନ ଘୋଷ ଥିଲେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ପରମ ଉପାସକ । ଶ୍ରୀ ଅରବିନ୍ଦ ପାଞ୍ଚ ବର୍ଷ ବୟସରେ ତାଙ୍କର ଦୁଇଭାଇଙ୍କ ସହିତ ଦାର୍ଜିଲିଂରେ ଲରେଟୋ କନ୍‌ଭେଣ୍ଟ ସ୍କୁଲରେ ଅଧ୍ୟୟନ କରିଥିଲେ । ଏହି ବିଦ୍ୟାଳୟଟି ଇଉରୋପୀୟ ପିଲାମାନଙ୍କର ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ଥିଲା । ୧୮୭୯ ଖ୍ରୀଷ୍ଟାବ୍ଦରେ ଡାକ୍ତର ଘୋଷ ତାଙ୍କ ପରିବାର ସହ ଇଂଲଣ୍ଡକୁ ଯାତ୍ରା କରିଥିଲେ । ସେଠାରେ ତାଙ୍କର ବଡ଼ ପୁଅ ବିନୟଭୂଷଣ ଓ ମନମୋହନଙ୍କୁ ମାଞ୍ଚେଷ୍ଟର ଗ୍ରାମାର ସ୍କୁଲରେ ନାମ ଲେଖାଇଥିଲେ । ଶ୍ରୀ ଅରବିନ୍ଦଙ୍କ ବୟସ ଅଳ୍ପ ଥିବାରୁ ସେ ଡ୍ରୁଏଟ୍ ଦମ୍ପତିଙ୍କ ଗୃହରେ ଶିକ୍ଷା ଲାଭ କରିଥିଲେ । ସେଠାରେ ଶ୍ରୀ ଅରବିନ୍ଦ ଲାଟିନ୍ ଭାଷା ଶିକ୍ଷା କରିବା ସହିତ ବାଇବେଲ୍, ସେକ୍ସପିଅର, ଶେଲି ଓ କିଟସଙ୍କର ଗ୍ରନ୍ଥ ଅଧ୍ୟୟନ କରିବା ପାଇଁ ସୁଯୋଗ ପାଇଥିଲେ । ୧୮୮୪ ଖ୍ରୀଷ୍ଟାବ୍ଦରେ ଶ୍ରୀ ଅରବିନ୍ଦ ଲଣ୍ଡନର ସେଣ୍ଟପଲସ୍ ସ୍କୁଲରେ ନାମ ଲେଖାଇଲେ । ସେଠାରେ ସେ ଗ୍ରୀକ୍ ଓ ଲାଟିନ ଭାଷାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ସେହି ସମୟରୁ ଇଂରାଜୀ ଭାଷାରେ ସେ କବିତା ଲେଖିବା ଆରମ୍ଭ କରିଥିଲେ । ସେଣ୍ଟପଲସ୍ ସ୍କୁଲରୁ ବୃତ୍ତି ପାଇ ସେ କେମ୍ବ୍ରିଜର କିଙ୍ଗସ୍ କଲେଜରେ ଅଧ୍ୟୟନ କଲେ । ଗ୍ରୀକ୍ ଓ ଲାଟିନ୍‌ରେ ପାଣ୍ଡିତ୍ୟ ଅର୍ଜନ କରି କେମ୍ବ୍ରିଜରେ ସମସ୍ତ ପୁରସ୍କାର ଲାଭ କରିବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ଟ୍ରାଇପସ୍ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ତାଙ୍କ ପିତାଙ୍କର ବିଶେଷ ଆଗ୍ରହ ଯୋଗୁଁ ଶ୍ରୀ ଅରବିନ୍ଦ ଇଣ୍ଡିୟାନ ସିଭିଲ ସର୍ଭିସ ପାଇଁ ପରୀକ୍ଷାର୍ଥୀ ହେଲେ । ୧୮୯୨ ମସିହାରେ ଆଇ. ସି. ଏସ. ର ଶେଷ ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇଥିଲେ । କିନ୍ତୁ ଏହି ଚାକିରି ପ୍ରତି ତାଙ୍କର ଆଗ୍ରହ ନଥିବାରୁ ସେ ସ୍ୱେଚ୍ଛାରେ ଅଶ୍ୱାରୋହଣ ପରୀକ୍ଷାରେ ଯୋଗ ଦେଲେ ନାହିଁ । ସ୍ୱଦେଶ ପ୍ରେମର ଭାବ ତାଙ୍କ ମଧ୍ୟରେ ପ୍ରବଳ ଭାବେ ଜାଗି ଉଠିଥିଲା । ଇଂରେଜମାନଙ୍କୁ ଭାରତରୁ ବିତାଡ଼ିତ କରିବା ପାଇଁ ଗୋଟିଏ ସିକ୍ରେଟ୍ ସୋସାଇଟି ସଂଗଠନ କଲେ ।

ବିଲାତରୁ ଶିକ୍ଷା ଶେଷ କରି ୧୮୯୩ ଖ୍ରୀଷ୍ଟାବ୍ଦରେ ଶ୍ରୀ ଅରବିନ୍ଦ ଭାରତ ପ୍ରତ୍ୟାବର୍ତ୍ତନ କଲେ । ଭାରତ ଜନନୀ ଶ୍ରୀ ଅରବିନ୍ଦଙ୍କୁ ଏକ ଗଭୀର ଆଧ୍ୟାତ୍ମିକ ଅନୁଭୂତି ପ୍ରଦାନ କରି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଏକ ମହତୀ ଶକ୍ତି ଶ୍ରୀ ଅରବିନ୍ଦଙ୍କ ମଧ୍ୟକୁ ଅବତରଣ କରିଥିଲା । ପରବର୍ତ୍ତୀ କାଳରେ ଏହି ଅନୁଭୂତିକୁ ସେ ତାଙ୍କର ଜଣେ ଶିଷ୍ୟଙ୍କ ପାଖକୁ ଲେଖିଥିଲେ -

"Since I set foot on the Indian soil on the Apollo Bunder in Bombay, I began to have spiritual experiences, but these were not divorced from this world but had an inner and infinite bearing on it, such as a feeling of the Infinite pervading material space and the Immanent inhabiting material objects and bodies. At the same time I found myself entering supraphysical world and planes with influences and an effect from them upon the material plane."

ଏହି ଅତିଭୌତିକ ଅନୁଭୂତି ଲାଭ କରି ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ତାଙ୍କର କୌଣସି ସନ୍ଦେହ ରହିଲା ନାହିଁ ।

ପ୍ରଥମେ ଶ୍ରୀ ଅରବିନ୍ଦ ବରୋଦା ରାଜ୍ୟ ସରକାରଙ୍କର ଶାସନ ବିଭାଗରେ କାର୍ଯ୍ୟ କରିଥିଲେ । ତତ୍‌ପରେ ବରୋଦା କଲେଜର ଇଂରାଜୀ ଅଧ୍ୟାପକ ରୂପେ କାର୍ଯ୍ୟକଲେ । ୧୯୦୪ ମସିହାରେ ସେ ବରୋଦା କଲେଜର ସହ-ଅଧ୍ୟକ୍ଷ ରୂପେ ଏବଂ ୧୯୦୫ ମସିହାରେ ଅସ୍ଥାୟୀ ଭାବେ କଲେଜର ଅଧ୍ୟକ୍ଷ ରୂପେ ନିଯୁକ୍ତ ହୋଇଥିଲେ । ଏଇବା ଶ୍ରୀ ଅରବିନ୍ଦ କର୍ଣ୍ଣାଲିରେ ଥିବା କାଳୀଙ୍କ ମନ୍ଦିର ପରିଦର୍ଶନ କରିବାକୁ ଯାଇଥିଲେ । ଯେତେବେଳେ କାଳୀଙ୍କର ବିଗ୍ରହ ଦର୍ଶନ କଲେ, ସେତେବେଳେ ମା'ଙ୍କର ଏକ ଅମର ଦିବ୍ୟ ଜୀବନ୍ତ ଉପସ୍ଥିତି ତାଙ୍କ ସମ୍ମୁଖରେ ଉଦ୍‌ଭାସିତ ହେବାର ଅନୁଭୂତି ଲାଭକଲେ । ୧୯୦୩ ମସିହାରେ କାଶ୍ମୀରର ଶଙ୍କରାଚାର୍ଯ୍ୟ ହିଲ୍ ପରିଭ୍ରମଣ ସମୟରେ ସେ ଶୂନ୍ୟ ବ୍ରହ୍ମର ଅନୁଭୂତି ଲାଭ କରିଥିଲେ ।

୧୯୦୪ ମସିହାରେ ଶ୍ରୀ ଅରବିନ୍ଦ ଶରୀର ବିଷ୍ଣାର ସହ ପୂର୍ଣ୍ଣଯୋଗର ସାଧନା ଆରମ୍ଭ କଲେ । ପ୍ରାଣାୟାମ ଓ ଅନ୍ୟାନ୍ୟ ଯୌଗିକ ସାଧନା ଦ୍ୱାରା ତାଙ୍କର ସ୍ମରଣ ଶକ୍ତି ପ୍ରଖର ହେଲା । ମାନସିକ ସାମର୍ଥ୍ୟର ବୃଦ୍ଧି ସହ ତାଙ୍କ ମସ୍ତିଷ୍କର ଚାରିପାଖରେ ଏକ ବୈଦ୍ୟୁତିକ ଶକ୍ତି ତରଙ୍ଗର ଉଦ୍‌ଭାସ ସେ ଅନୁଭବ କଲେ । ପୂର୍ବରୁ ସେ ଦିନକୁ ପାଞ୍ଚଧାଡ଼ିରୁ ଦଶଧାଡ଼ି ପର୍ଯ୍ୟନ୍ତ କବିତା ପଂ‌. ଲେଖୁଥିଲେ । କିନ୍ତୁ ପ୍ରାଣାୟାମ ପରେ ତିରିଶ ମିନିଟ୍ ମଧ୍ୟରେ ସେ ଦୁଇଶ. ଧାଡ଼ି କବିତା ଲେଖିବାକୁ ସମର୍ଥ ହୋଇଥିଲେ । ଯୋଗ ସାଧନା ଦ୍ୱାରା ଜ. ୍ୟକ ସୃଷ୍ଟି ପ୍ରତିଭାର ଉନ୍ମେଷ ଘଟିଥିଲା ବୋଲି ଶ୍ରୀ ଅରବିନ୍ଦ ୧୯୩୨ ସାଲ :ର ଏକ ପତ୍ରରେ ଲେଖିଛନ୍ତି ।

୧୯୦୫ ସାଲରେ ବଙ୍ଗ ବିଭାଗ ହେତୁ ବଙ୍ଗ ଦେଶରେ ପ୍ରବଳ ରାଜନୈତିକ ଆନ୍ଦୋଳନ ହୋଇଥିଲା । ସେତେବେଳେ ଲର୍ଡ଼ କର୍ଜନ ଭାରତର ବଡ଼ ଲାଟ ଥିଲେ । ଶ୍ରୀ ଅରବିନ୍ଦ ପ୍ରତ୍ୟକ୍ଷ ଭାବେ ରାଜନୀତି ମଧ୍ୟରେ ପ୍ରବେଶ କରିବାକୁ ଇଚ୍ଛା ପ୍ରକାଶ କଲେ ଓ ବଙ୍ଗ ବିଭାଗ ବିରୋଧୀ ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିବା ଜାତୀୟତାବାଦୀ କର୍ମୀମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ସୃଷ୍ଟି କରିଥିଲେ । ୧୯୦୬ ମସିହାରେ ବଙ୍ଗ ବିଭାଗ ବିରୋଧରେ ଅନୁଷ୍ଠିତ ବରିସାଲର ରାଜନୈତିକ ସମ୍ମିଳନୀରେ ଯୋଗଦେବା ପାଇଁ ବରୋଦା ରାଜସରକାରୀ କାର୍ଯ୍ୟରୁ ସେ ଛୁଟି ନେଇଥିଲେ । ବରୋଦା ରାଜ ସରକାରଙ୍କର ଚାକିରିରୁ ଇସ୍ତଫା ଦେଇ ୧୯୦୬ ମସିହା ଅଗଷ୍ଟ ୧୫ ତାରିଖରେ କଲିକତାର ଜାତୀୟ ମହାବିଦ୍ୟାଳୟର ଅଧ୍ୟକ୍ଷ ରୂପେ ନିଯୁକ୍ତ ହେଲେ । ବିପିନ ଚନ୍ଦ୍ର ପାଲଙ୍କ ଦ୍ୱାରା ପ୍ରକାଶିତ 'ବନ୍ଦେ ମାତରମ୍' ନାମକ ଇଂରାଜୀ ସାପ୍ତାହିକ ପତ୍ରିକାର ସଂପାଦନା ଦାୟିତ୍ୱ ଶ୍ରୀ ଅରବିନ୍ଦଙ୍କ ଉପରେ ନ୍ୟସ୍ତ ହେଲା । ବନ୍ଦେ ମାତରମ୍ ପତ୍ରିକାର ଉଦ୍ଦେଶ୍ୟ ଥିଲା, ଦେଶର କର୍ମୀମାନଙ୍କୁ ଅସହଯୋଗ ଆନ୍ଦୋଳନ, ନିଷ୍କ୍ରିୟ ପ୍ରତିରୋଧ, ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର ଓ ବିଦେଶୀ ଦ୍ରବ୍ୟ ବର୍ଜନ, ଜାତୀୟ ଶିକ୍ଷା ପଦ୍ଧତି ପ୍ରଚଳନ, ସରକାରୀ ଅଦାଲତର ସାହାଯ୍ୟ ବିନା ମକଦ୍ଦମାର ସାଲିସ କରିବା ଇତ୍ୟାଦି ବିଷୟରେ ଜ୍ଞାନଦାନ କରିବା ଓ ସେମାନଙ୍କୁ ଜାତୀୟ ଆନ୍ଦୋଳନର ଉପଯୁକ୍ତ କରି ତିଆରି କରିବା । ଏହାପରେ ଶ୍ରୀ ଅରବିନ୍ଦ ବଙ୍ଗ ଦେଶରେ ଜାତୀୟତାବୋଧ ଆନ୍ଦୋଳନର ପ୍ରଧାନ ପରିଚାଳକ ରୂପେ ଅଭ୍ୟର୍ଥିତ ହେଲେ । ଭାରତୀୟ ଜାତୀୟ କଂଗ୍ରେସର ଗୋଟିଏ ଜରୁରୀ ଅଧିବେଶନ ଏହି ସମୟରେ ଦାଦା ଭାଇ ନାଉରୋଜୀଙ୍କର ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା ।

ସର୍ବ ପ୍ରଥମେ ଏହି ଅଧିବେଶନରେ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଭାରତୀୟ ଜାତୀୟ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଭାରତର ପୂର୍ଣ୍ଣ ସ୍ୱାଧୀନତା ଲାଭ । ସେହି ସମୟରୁ ଭାରତର ସ୍ୱାଧୀନତା ଆନ୍ଦୋଳନ ତୀବ୍ର ବେଗରେ ଅଗ୍ରସର ହୋଇଥିଲା । ଭାରତର ବିଭିନ୍ନ ସ୍ଥାନରେ ପ୍ରବଳ ବିକ୍ଷୋଭ, ଅସ୍ଥିରତା ଓ ହିଂସାତ୍ମକ କାର୍ଯ୍ୟ ପ୍ରବଳ ରୂପ ଧାରଣ କଲା । ବନ୍ଦେ ମାତରମ୍‌ର ଲୋକପ୍ରିୟତା ଏପରି ବଢ଼ିଗଲା ଯେ ଷ୍ଟେଟ୍ସମ୍ୟାନର ତତ୍‌କାଳୀନ ସମ୍ପାଦକ ମିଷ୍ଟର ରାଟକ୍ଲିଫ୍ ମାଞ୍ଚେଷ୍ଟର ଗାର୍ଡ଼ିଅନ କାଗଜରେ ଲେଖିଥିଲେ ଯେ ଭାରତୀୟ ସାମ୍ବାଦିକତାର ଇତିହାସରେ ବନ୍ଦେ ମାତରମ୍‌ର ଆବିର୍ଭାବ ଏକ ଅଭୂତପୂର୍ବ ଘଟଣା । ଶ୍ରୀ ଅରବିନ୍ଦଙ୍କ ଶକ୍ତିଶାଳୀ ବୈପ୍ଳବିକ ଚିନ୍ତାଧାରାରେ ବନ୍ଦେ ମାତରମ୍ ପତ୍ରିକାର ପ୍ରତ୍ୟେକ ପୃଷ୍ଠା ହୋଇଥିଲା ସମୃଦ୍ଧ । ଦେଶବାସୀଙ୍କ ଉଦ୍ଦେଶ୍ୟରେ ଶ୍ରୀ ଅରବିନ୍ଦ ଆହ୍ୱାନ ଦେଇ କହିଥିଲେ -

''ଦେଶ ବା ନେଶନ୍ କ'ଣ ? ଆମମାନଙ୍କ ମାତୃଭୂମି କ'ଣ ? ତାହା କେବଳ ଖଣ୍ଡେ ଭୂମି ନୁହେଁ, ଭାଷାର ଏକ ଅଳଙ୍କାର ନୁହେଁ, ମନର କଳ୍ପନା ନୁହେଁ, ତାହା ଏକ ମହାଶକ୍ତି ।.....

ତେବେ ଆସ, ମା'ଙ୍କର ଡ଼ାକ ଶୁଣ । ସେ ଆମମାନଙ୍କର ଅନ୍ତରରେ ରହିଛନ୍ତି- ବର୍ତ୍ତମାନ ନିଜକୁ ପ୍ରକାଶ କରିବାକୁ ଉତ୍ସୁକ । ପୂଜା ଗ୍ରହଣ କରିବାକୁ ଉତ୍ସୁକ । ତେବେ ନିଷ୍କ୍ରିୟ, କାରଣ ଆମମାନଙ୍କ ଅନ୍ତରସ୍ଥ ଭଗବାନ୍ ତମଃ ଦ୍ୱାରା ଆବୃତ । ଏ ନିଷ୍କ୍ରିୟତା ଦ୍ୱାରା ମା' ନିଜେହିଁ ବିବ୍ରତ, ସେ ନିଜେହିଁ ଦୁଃଖିତ କାରଣ ତାଙ୍କର ସନ୍ତାନଗଣ ତାଙ୍କର ସାହାଯ୍ୟ ନିମିତ୍ତ ତାଙ୍କୁ ଡ଼ାକି ନାହାନ୍ତି । ତେବେ ତୁମେମାନେ ଯେଉଁମାନେ ଅନ୍ତରରେ ତାଙ୍କର ଆହ୍ୱାନ ଶୁଣିପାରିଛ, ତୁମର ଅହଂଗତ ପର୍ଦ୍ଦା ଖଣ୍ଡି ଦୂରକୁ ଫିଙ୍ଗି ଦିଅ, ଆଳସ୍ୟର କାରା-ପ୍ରାଚୀର ଚୂର୍ଣ୍ଣକର, ସ୍ୱତଃ ପ୍ରେରଣାବଶରେ- କାୟମନୋବାକ୍ୟରେ ଧନଦ୍ୱାରା, ଅର୍ଚ୍ଚନା ଦ୍ୱାରା, ପୂଜାଦ୍ୱାରା, ପ୍ରତ୍ୟେକ ନିଜ ନିଜର ସାମର୍ଥ୍ୟ ଅନୁସାରେ, ଯେ ଯେତିକି ପାରିବ, ସେତିକି ମା'ଙ୍କର ସେବା କର । ଦୂରକୁ ଅପସରି ଯାଅ ନାହିଁ ।''

୧୯୦୮ ମସିହା ମେ ମାସ ୨ ତାରିଖରେ ଶ୍ରୀ ଅରବିନ୍ଦଙ୍କ କଲିକତାସ୍ଥିତ ବାସଭବନକୁ କ୍ଷମତା ପତ୍ର ସହ ପୁଲିସ କର୍ମଚାରୀମାନେ ଚଢାଉ କଲେ । ବହୁ ବିପ୍ଳବୀ ରାଜନୈତିକ କର୍ମୀଙ୍କୁ ଗିରଫ କରାଗଲା । ଶ୍ରୀ ଅରବିନ୍ଦ ମେ ମାସ ୫ ତାରିଖରେ ତାଙ୍କ ଭାଇ ବାରୀନ୍ଦ୍ର ଓ ଅନ୍ୟାନ୍ୟ ସହକର୍ମୀଙ୍କ ସହ ଗିରଫ ହେଲେ ଓ ଆଲିପୁର ଜେଲରେ କାରାରୁଦ୍ଧ ହେଲେ ।

କାରାବାସ ସମୟରେ ଶ୍ରୀ ଅରବିନ୍ଦ ଶ୍ରୀମଦ୍‌ଭଗବଦ୍ ଗୀତାକୁ ବାରମ୍ବାର ଅଧ୍ୟୟନ କରିଥିଲେ । ଭଗବାନ୍ ଶ୍ରୀକୃଷ୍ଣଙ୍କ ସହ ଏକାତ୍ମତା ଲାଭ କରି ସର୍ବତ୍ର ବାସୁଦେବ ଦର୍ଶନର ଅଭିଜ୍ଞତା ଅର୍ଜନ କରିଥିଲେ । ପରବର୍ତ୍ତୀ ସମୟରେ ସେହି ଅନୁଭୂତିକୁ ସେ ତାଙ୍କର ପ୍ରସିଦ୍ଧ ଉତ୍ତରପଡ଼ା ଅଭିଭାଷଣରେ କହିଥିଲେ ।

ଆଲିପୁର ମକଦ୍ଦମା ଏକବର୍ଷ ଧରି ଚାଲିଥିଲା । ଶ୍ରୀ ଅରବିନ୍ଦଙ୍କ ସପକ୍ଷରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ମୋକଦ୍ଦମା ଲଢ଼ିଥିଲେ । ବିଚାରପତି ମିଷ୍ଟର ବିଚକ୍ରଫଟଙ୍କ ସମ୍ମୁଖରେ ବାରିଷ୍ଟର ଚିତ୍ତରଞ୍ଜନ ଦାସ ନିମ୍ନଲିଖିତ ସାରଗର୍ଭକ ବିବୃତି ପ୍ରଦାନ କରିଥିଲେ :

''ମୋର ଆବେଦନ ଏହି ଯେ ଆଜିର ଏହି ବାଦାନୁବାଦ ନିସ୍ତବ୍ଧ ହେବାର ବହୁକାଳ ପରେ, ଉପସ୍ଥିତ ବିକ୍ଷୋଭ ଓ ଆନ୍ଦୋଳନ କ୍ଷାନ୍ତ ହେବାର ବହୁକାଳ ପରେ, ଶ୍ରୀ ଅରବିନ୍ଦଙ୍କର ଦେହାବସାନର ଦୀର୍ଘଦିନ ଅନ୍ତେ, ଏହାଙ୍କୁ ଦେଶ ପ୍ରେମର କବିରୂପେ, ସ୍ୱଦେଶାନୁରାଗର ପୟଗମ୍ବର ରୂପେ ଏବଂ ମାନବଜାତିର ପରମ ପ୍ରେମିକ ରୂପେ ଜଗତ ଗଣ୍ୟ କରିବ । ତାଙ୍କର ମହାପ୍ରୟାଣର ବହୁକାଳ ପରେ ତାଙ୍କର ବାଣୀ କେବଳ ଭାରତବର୍ଷର ନୁହେଁ, କିନ୍ତୁ ସୁଦୂରବର୍ତ୍ତୀ ଦେଶ ଦେଶାନ୍ତରରେ ଧ୍ୱନିତ ଓ ପ୍ରତିଧ୍ୱନିତ ହେଉଥିବ । ସୁତରାଂ ମୁଁ କହେ ଯେ ଏହି ବ୍ୟକ୍ତି ଏହି ବିଚାରାଳୟ ସମ୍ମୁଖରେ ଦଣ୍ଡାୟମାନ ହୋଇ ନାହାନ୍ତି; ମାତ୍ର ସେ ଇତିହାସର ଉଚ୍ଚତମ ବିଚାରାଳୟ ସମକ୍ଷରେ ଦଣ୍ଡାୟମାନ ।''

ଶ୍ରୀ ଅରବିନ୍ଦଙ୍କ ନାମରେ ଯେଉଁ ପ୍ରତିରକ୍ଷା ପାଣ୍ଠି ଖୋଲା ଯାଇଥିଲା, ସେତେବେଳେ ଏକ ସମ୍ପାଦକୀୟରେ ଦୈନିକ ବସୁମତୀ ଲେଖିଥିଲେ -

''ଜାତୀୟତାର ମନ୍ତ୍ର ଦେଇ ସମଗ୍ର ଭାରତଜାତିକୁ ପ୍ରାଣବନ୍ତ କରିଛନ୍ତି ଅରବିନ୍ଦ । ଆକୁମାରୀ ହିମାଚଳ ତାଙ୍କ ବଜ୍ର ବାର୍ତ୍ତାରେ ପ୍ରତିଧ୍ୱନିତ । ହେ ଭାରତବାସୀ ! ତୁମ ପାଇଁ ସର୍ବସ୍ୱ ତ୍ୟାଗ କରିଛନ୍ତି ଏହି ଅତୁଳନୀୟ ମହାନ୍ ପୁରୁଷ । ତୁମ ପାଇଁ ସେ ସମସ୍ତ ସାଂସାରିକ ସୁଖ ଜଳାଞ୍ଜଳି ଦେଇଛନ୍ତି । ସେ ଗ୍ରହଣ କରିଛନ୍ତି ନିଷ୍କାମ କର୍ମର ତପସ୍ୟା, ତୁମକୁ ଦେଇଛନ୍ତି ଅପରାଜେୟ ମାତୃମନ୍ତ୍ର । ହେ ଭାରତବାସୀ ! ସେହି ସତ୍ୟଦ୍ରଷ୍ଟା, ତୁମର ମନ୍ତ୍ରଦାତା, ତୁମର ଆଧ୍ୟାତ୍ମିକ ଗୁରୁ ଅରବିନ୍ଦ ଆଜି ଅଭିଯୁକ୍ତ । ତୁମେ ଯଦି ଭାରତ ଜନନୀଙ୍କର ଯଥାର୍ଥ ସନ୍ତାନ ହୋଇଥିବ, ତେବେ ତୁମେ ମୁକ୍ତିଦାତାଙ୍କ ସହାୟତା ପାଇଁ ଆଜି ନିର୍ଭୟରେ ବାହାରି ଆସ ।''

ପରିଶେଷରେ ଶ୍ରୀ ଅରବିନ୍ଦ ନିର୍ଦ୍ଦୋଷ ସାବ୍ୟସ୍ତ ହେଲେ ଓ ୧୯୦୯ ସାଲରେ ଜେଲରୁ ମୁକ୍ତିଲାଭ କଲେ । ସେତେବେଳକୁ ବନ୍ଦେ ମାତରମ୍ ପତ୍ରିକାର ପ୍ରକାଶନ ବନ୍ଦ ହୋଇଯାଇଥିଲା । ଶ୍ରୀ ଅରବିନ୍ଦ ଇଂରାଜୀରେ 'କର୍ମଯୋଗୀନ୍' ଓ ବଙ୍ଗଳାରେ 'ଧର୍ମ' ନାମକ ଦୁଇଟି ସାପ୍ତାହିକ ପତ୍ରିକା ପ୍ରକାଶ କଲେ । ଉପନିଷଦ ଓ ଗୀତାର ସୁସ୍ପଷ୍ଟ ବ୍ୟାଖ୍ୟାମାନ 'କର୍ମଯୋଗୀନ' ପତ୍ରିକାରେ ପ୍ରକାଶ କରୁଥିଲେ ।

ଶ୍ରୀ ଅରବିନ୍ଦ ସ୍ପଷ୍ଟଭାବେ ଅନୁଭବ କଲେ ଯେ ଯଦି ଭାରତ ତାହାର ଯୁଗ ଯୁଗର ସଞ୍ଚିତ ଆଧ୍ୟାତ୍ମିକ ସମ୍ପଦକୁ ନଷ୍ଟ କରିଦିଏ, ତେବେ ତାହାର ଭାଗ୍ୟର ବିପର୍ଯ୍ୟୟ ଅବଶ୍ୟମ୍ଭାବୀ । ପୁନଶ୍ଚ ଯେତେବେଳେ ସମଗ୍ର ପୃଥିବୀ ଆଧ୍ୟାତ୍ମିକ ସହାୟତା ଓ ପରିତ୍ରାଣ ପାଇଁ ଭାରତର ଦ୍ୱାରସ୍ଥ, ସେତେବେଳେ ଭାରତର ଆଧ୍ୟାତ୍ମିକ ଗୌରବକୁ ସର୍ବାନ୍ତଃକରଣରେ ରକ୍ଷା କରିବାକୁ ହେବ ।

ସେ ଦିନେ ଖବର ପାଇଲେ ଯେ ତାଙ୍କୁ ଗିରଫ କରିବା ପାଇଁ ପୁଲିସ 'କର୍ମଯୋଗୀନ୍' କାର୍ଯ୍ୟାଳୟର ତଦନ୍ତ କରିବେ । ହଠାତ୍ ଚନ୍ଦନ ନଗରକୁ ଯିବା ପାଇଁ ଶ୍ରୀ ଅରବିନ୍ଦ ପ୍ରତ୍ୟାଦେଶ ପାଇଲେ । ସେ ନୌକା ଯୋଗେ ଦୁଇଜଣ ସହକର୍ମୀଙ୍କ ସହ ୧୯୧୦ ମସିହା ଫେବୃୟାରୀ ୧୪ ତାରିଖରେ ଚନ୍ଦନ ନଗରରେ ପହଞ୍ଚିଲେ । ସେଠାରେ ତାଙ୍କର ଉପସ୍ଥିତି ଗୁପ୍ତ ରଖାଯାଇଥିଲା । ସେ ତାଙ୍କର ଘନିଷ୍ଠ ବନ୍ଧୁ ମୋତିଲାଲ ରାୟଙ୍କ ଗୃହରେ ନିଭୃତରେ ବାସ କରୁଥିଲେ । ପୁନଶ୍ଚ ପଣ୍ଡିଚେରୀ ଯିବା ପାଇଁ ଶ୍ରୀ ଅରବିନ୍ଦ ଆନ୍ତର ଆଦେଶ ପାଇଥିଲେ । ଡୁପ୍ଲେ ଜାହାଜରେ ୧୯୧୦ ମସିହା ଅପ୍ରେଲ ପହିଲାଦିନ କଲିକତାରୁ ଯାତ୍ରାରମ୍ଭ କଲେ ଓ ଅପ୍ରେଲ ୪ ତାରିଖ ଦିନ ପଣ୍ଡିଚେରୀରେ ପହଞ୍ଚିଲେ । ପଣ୍ଡିଚେରୀର ପୂର୍ବତନ ନାମ ଥିଲା ବେଦପୁରୀ । ଏହା ମହର୍ଷି ଅଗସ୍ତିଙ୍କର ତପୋଭୂମି ଥିଲା । ଶ୍ରୀ ଅରବିନ୍ଦ ଏହି ଭୂମିରେ ତାଙ୍କର ଆଶ୍ରମ ନିର୍ମାଣ କରି ପୂର୍ଣ୍ଣଯୋଗ ସାଧନାରେ ନିମଗ୍ନ ହେଲେ ।

ଶ୍ରୀଅରବିନ୍ଦ ଥିଲେ ଚିର ବିପ୍ଳବୀ । ଆଧ୍ୟାତ୍ମିକ କ୍ଷେତ୍ରରେ ମଧ୍ୟ ସେ ନୂତନ ବିପ୍ଳବର ସୂତ୍ରପାତ କଲେ । ଯୁଗ ଯୁଗାନ୍ତରର ବନ୍ଧନ ଓ ଗତାନୁଗତିକ ପଦ୍ଧତିକୁ ଭଙ୍ଗକରି ଏକ ନୂତନ ପଥ ମାନବ ସମାଜ ନିକଟରେ ଉନ୍ମୋଚନ କଲେ । ଏକ ମହତୀ ବିଜ୍ଞାନମୟୀ ଶକ୍ତିର ଅବତରଣ କରାଇ ପାର୍ଥିବ ଚେତନାର ରୂପାନ୍ତର ପାଇଁ ମାର୍ଗ ଉନ୍ମୁକ୍ତ କରିଦେଲେ । ଏହି ସୃଜନୀ ଶକ୍ତିକୁ ଗ୍ରହଣ କରିବା ପାଇଁ ମାନବର ଆଧାର ପ୍ରସ୍ତୁତ ହେବା ଆବଶ୍ୟକ । ସେଥିପାଇଁ ସେ ତାଙ୍କ ବିଭିନ୍ନ ଗ୍ରନ୍ଥରେ ସାଧନା ପଦ୍ଧତି ଲିପିବଦ୍ଧ କଲେ । ପାଶ୍ଚାତ୍ୟ ଓ ପ୍ରାଚ୍ୟର ଜ୍ଞାନଦୀପ୍ତିକୁ ଶ୍ରୀ ଅରବିନ୍ଦ ତାଙ୍କ ଅନ୍ତର୍ଦୃଷ୍ଟି ଦ୍ୱାରା ଏକତ୍ର ସମନ୍ୱୟ କରି ଲେଖିଲେ 'ଦିବ୍ୟ ଜୀବନ' ଗ୍ରନ୍ଥ । ଏହି ଗ୍ରନ୍ଥ ମାନବ ସମାଜ ନିମନ୍ତେ ସୃଷ୍ଟିକର୍ତ୍ତାଙ୍କର ଦିବ୍ୟ ସନନ୍ଦ ସ୍ୱରୂପ । ପ୍ରାଚୀନ ଭାରତବର୍ଷର ଦିବ୍ୟଜ୍ଞାନକୁ ନୂତନ ଯୁଗର ଉପଯୋଗୀ କରି ଓ ନୂତନ ଆଧ୍ୟାତ୍ମିକ ସତ୍ୟରେ ଉଦ୍ଭାସିତ କରି ଏକ ଅତୁଳନୀୟ ସାହିତ୍ୟ ସମ୍ପଦ ଶ୍ରୀ ଅରବିନ୍ଦ ବିଶ୍ୱବାସୀଙ୍କ ହସ୍ତରେ ଅର୍ପଣ କରିଛନ୍ତି । ତାଙ୍କର ପ୍ରଧାନ

ରଚନାବଳି ଦିବ୍ୟ ଜୀବନ, ଯୋଗ ସମନ୍ୱୟ, ମାନବ ଯୁଗଚକ୍ର, ଭାରତୀୟ ସଂସ୍କୃତିର ଆଧାର, ଉପନିଷଦ, ବେଦ ରହସ୍ୟ, ଗୀତା ନିବନ୍ଧମାଳା, ଯୋଗ ପତ୍ରାବଳି ଓ ସାବିତ୍ରୀ ମହାକାବ୍ୟ ଅଧ୍ୟାତ୍ମ ପିପାସୁ ଓ ସାରସ୍ୱତ ସାଧକମାନଙ୍କ ପାଇଁ ଅନୁପମ ସମ୍ପଦ ।

ଋଷି ଦାରୁଭାଲା ତାଙ୍କର ପ୍ରବନ୍ଧ '' ଶ୍ରୀ ଅରବିନ୍ଦ ଲାଷ୍ଟ ଅଫ ଦି ଗ୍ରେଟ ଯୋଗୀଜ୍' ରେ ଲେଖିଥିଲେ -

''ଶ୍ରୀ ଅରବିନ୍ଦ ଏପରି କ୍ଲାସିକ୍ ହୋଇ ଉଠିଛନ୍ତି ଯେ ସମସ୍ତେ ତାଙ୍କର କଥା କହୁଛନ୍ତି; କିନ୍ତୁ ତାଙ୍କର ରଚିତ ଲେଖାଗୁଡ଼ିକୁ ଖୁବ୍ କମ୍ ଲୋକ ପଢ଼ନ୍ତି । ଅରବିନ୍ଦ ଶବ୍ଦଟିର ଅର୍ଥ ପଦ୍ମ । ତାଙ୍କର ଅନ୍ତରସ୍ଥ ପଦ୍ମଟି ଶତ ସହସ୍ର ପାଖୁଡ଼ା ନେଇ ସେହି ଉଚ୍ଚତର ଆଲୋକ ଆଡ଼କୁ ପ୍ରସ୍ଫୁଟିତ ହୋଇଥିଲି ।''

ଶ୍ରୀ ଅରବିନ୍ଦଙ୍କ ଜନ୍ମ ଦିବସରେ ଭାରତ ପୂର୍ଣ୍ଣ ସ୍ୱାଧୀନତା ଲାଭ କଲା । ତାଙ୍କ ଜୀବନ ବ୍ୟାପୀ ସ୍ୱପ୍ନର ସଫଳତା ସେ ତାଙ୍କ ସ୍ୱଚକ୍ଷୁରେ ଦେଖିଲେ । ୧୯୪୭ ମସିହା ଫେବୃୟାରୀ ମାସ ୨୦ ତାରିଖରେ ବ୍ରିଟିଶ ସରକାର ଘୋଷଣା କଲେ ଯେ ସେମାନେ ୧୯୪୮ ଜୁନ୍ ମାସ ପୂର୍ବରୁ ଭାରତର ଶାସନ କ୍ଷମତା ଭାରତବାସୀଙ୍କୁ ହସ୍ତାନ୍ତର କରିଦେବେ । କାହାର ଅଦୃଷ୍ଟ ଇଙ୍ଗିତ ଏହି ମୂଳ ପ୍ରସ୍ତାବରେ ହସ୍ତକ୍ଷେପ କରି ଭାରତ ସ୍ୱାଧୀନତାର ଏହି ନିର୍ଦ୍ଧାରିତ ସମୟକୁ ପରିବର୍ତ୍ତନ କରି ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖକୁ ଘୁଞ୍ଚାଇ ଆଣିଲା ? ଏହି ମହାନ୍ ଦିବସରେ ଶ୍ରୀ ଅରବିନ୍ଦ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଯେଉଁ ବାର୍ତ୍ତା ପ୍ରଦାନ କରିଥିଲେ, ତାହା ନିମ୍ନରେ ପ୍ରଦତ୍ତ ହେଲା :

''୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ ସ୍ୱାଧୀନ ଭାରତର ଜନ୍ମ ଦିବସ । ଏହି ଦିବସ ଭାରତବର୍ଷ ପାଇଁ ଏକ ପ୍ରାଚୀନ ଯୁଗର ଅବସାନ ଓ ଏକ ନବୀନ ଯୁଗର ଅଭ୍ୟୁତ୍ଥାନର ସୀମା ନିର୍ଦ୍ଧାରଣ କରିଛି । ଅଗଷ୍ଟ ୧୫ ତାରିଖ ମୋ ଜନ୍ମଦିନ । ସ୍ୱାଭାବିକ ଭାବେ ମୋ ପକ୍ଷରେ ଏହା ଆନନ୍ଦର ଦିନ । କାରଣ ଏହି ଦିନଟି ଅର୍ଜନ କରିଛି ଏକ ଗୁରୁତର ଅର୍ଥ । ଏଇ ଯୋଗାଯୋଗକୁ ମୁଁ ଏକ କାକତାଳିକ ଘଟଣା ବୋଲି ମନେ କରେ ନାହିଁ । ସ୍ୱାଧୀନ ଭାରତ ଏକ ବିଶାଳ ଭୂମିକା ଗ୍ରହଣ କରିବ । ଗୁରୁତ୍ୱପୂର୍ଣ୍ଣ ନେତୃତ୍ୱ ନେବ । ମୋର ସ୍ୱପ୍ନ ହେଲା, ଏକ ଅଖଣ୍ଡ ଓ ସ୍ୱାଧୀନ ଭାରତ ଆତ୍ମପ୍ରକାଶ କରିବ । ଭାରତ ଆଜି ସ୍ୱାଧୀନତା ପାଇଛି ସତ କିନ୍ତୁ ସେ ଅଖଣ୍ଡତା ଲାଭ କରିନାହିଁ । ଏ ବିଭାଜୀକରଣ ନିଶ୍ଚୟ ଦୂର ହେବ । ଯେ କୌଣସି ପନ୍ଥାରେ ହେଉ, ଏ ଦେଶ ବିଭାଗ ନିଶ୍ଚୟ ଲୋପ ପାଇବ ଓ ଐକ୍ୟ ପ୍ରତିଷ୍ଠା କରିବାକୁ ହେବ । କାରଣ ଭାରତର ଭବିଷ୍ୟତ ମହତ୍ତ୍ୱ ଲାଗି ଏହା ଏକାନ୍ତ ପ୍ରୟୋଜନ । ଅନ୍ୟ ଏକ ସ୍ୱପ୍ନ ହେଲା, ଏସିଆର ରାଷ୍ଟ୍ରମାନଙ୍କର ପୁନରୁତ୍ଥାନ ତଥା ସ୍ୱାଧୀନତା ଏବଂ ମାନବ ସଭ୍ୟତାର ବିକାଶରେ ମହାନ୍ ଏସିଆର ଅଂଶ ଗ୍ରହଣ । ଏସିଆ ଆଜି ଜାଗ୍ରତ । ମାନବ ସମାଜର ଐକ୍ୟ ବର୍ତ୍ତମାନ ପ୍ରସ୍ତୁତି ପଥରେ । ଏ କ୍ଷେତ୍ରରେ ମଧ୍ୟ ଭାରତ ଏକ ପ୍ରଧାନ ଅଂଶ ଗ୍ରହଣ କରିଛି । ଆଉ ଏକ ସ୍ୱପ୍ନ ହେଲା, ବିଶ୍ୱକୁ ଭାରତର ଆଧ୍ୟାତ୍ମିକ ଦାନ । ଇତି ମଧ୍ୟରେ ତାହା ଆରମ୍ଭ ହୋଇଯାଇଛି । ଇଉରୋପ ଓ ଆମେରିକାରେ ଭାରତର ଆଧ୍ୟାତ୍ମିକତା ଅଧିକରୁ ଅଧିକ ଭାବେ ପ୍ରବେଶ କରୁଛି । ଏହି ଗତିଧାରାର କ୍ରମଶଃ ପ୍ରସାର ହେଉଛି । ଏ ଯୁଗର ବିପର୍ଯ୍ୟୟ ଓ ଅଶାନ୍ତି ମଧ୍ୟରେ ଅଧିକରୁ ଅଧିକ ବ୍ୟକ୍ତି ଭାରତ ପ୍ରତି ଆଶା ଓ ଭରସା ସହ ଦୃଷ୍ଟିପାତ କରୁଛନ୍ତି । ସେମାନେ କେବଳ ତାର ଶାସ୍ତ୍ର ପ୍ରତି ନୁହେଁ, ବରଂ ତାହାର ଅନ୍ତରାତ୍ମିକ ଓ ଆଧ୍ୟାତ୍ମିକ ସାଧନାର ଆଶ୍ରୟ ଖୋଜୁଛନ୍ତି । ଆଜି ଭାରତର ଏହି ସ୍ୱାଧୀନତା ଦିବସକୁ ଏଇ ସବୁ ସୂଚନା ଦେଉଛି । ମୋର ଏଇ ଆଶାର ସାଫଲ୍ୟ ନିର୍ଭର କରୁଛି ନବ ଭାରତର ପଦକ୍ଷେପ ଉପରେ ।''

---

ଗ୍ରାମ - ବହଳପଡ଼ା
ପୋ.ଅ. - ବେଣ୍ଟକାର
ଜିଲ୍ଲା - କଟକ
ପିନ୍ - ୭୫୪ ୧୧୨

—0—

# ସ୍ୱାଧୀନତା-ଉତ୍ତର ଅର୍ଦ୍ଧଶତାବ୍ଦୀର ଅଭିଜ୍ଞତା

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର



ଶିହେବର୍ଷର ଅଧେ ଅର୍ଥାତ୍ ପଚାଶବର୍ଷ ଆଜି କାଳ ବକ୍ଷରେ ଲୀନ ହୋଇଗଲାଣି । ଇଂରେଜ ଶାସକମାନେ ଏ ଦେଶକୁ, ମାନେ ଭାରତକୁ ଛାଡ଼ି ଚାଲି ଯାଉଛନ୍ତି । ସେଦିନ ହଠାତ୍ ମୋର ମନେ ହେଲା ଆମେ ସ୍ୱାଧୀନ ହୋଇଗଲୁଣି ବୋଲି । ସେତେବେଳକୁ ମୋର ବୟସ ପ୍ରାୟ ୩୫ ଯାଏଁ ହୋଇଗଲାଣି । ଆନନ୍ଦରେ ମୋର ଛାତି ଫୁଲିଉଠିଥିଲା, ମନେପଡୁଛି ।

ମୁଁ ଜଣେ ସ୍ୱାଧୀନତା ସଂଗ୍ରାମୀ । ସେ ବର୍ଷ ଅଗଷ୍ଟ ପନ୍ଦର ତାରିଖ କଥା ମୋର ମନେପଡୁଛି । ଭଦ୍ରକ ସବ୍‌ଡ଼ିଭିଜନ ଠାରୁ ପ୍ରାୟ ଚଉଦ ମାଇଲ ଦୂର ପୀରହାଟ ଗ୍ରାମ । ଭଦ୍ରକ-ଚାନ୍ଦବାଲି ରାସ୍ତାକଡ଼ରେ ସେଇ ଗାଁଟି । ସେଠି ଗୋଟେ ସାଧାରଣ ସଭା ହେଲା । ଭାଷଣ ଦେବାପାଇଁ ମୋତେ ଲୋକେ ଡ଼ାକି ନେଲେ । ଭଦ୍ରକ ହାଇସ୍କୁଲରେ ଛାତ୍ରଥିଲା ବେଳେ ଜଣେ ଶିକ୍ଷକ, ଯିଏ ଆମକୁ ଇଂରାଜୀ ପଢ଼ାଉଥିଲେ - ତାଙ୍କ ନାମ ଗୋବିନ୍ଦ ଚନ୍ଦ୍ର ପାଣିଗ୍ରାହୀ । ତାଙ୍କରି ଡାକରାରେ ମୁଁ ଯାଇ ପହଞ୍ଚିଲି ସେଠି । ଲୋକଙ୍କର କି ଆନନ୍ଦ । ତାଙ୍କ ଆନନ୍ଦରୁ କିଛିଟା ନେଇ ମୁଁ ଫେରି ଆସିଲି ।

ତାହା ପରେ ପରେ ବାଲେଶ୍ୱର ଜିଲ୍ଲା ବୋର୍ଡ଼କୁ ମୁଁ ବିନା ନିର୍ବାଚନରେ ସଭ୍ୟ ହୋଇଗଲି, ଅର୍ଥାତ୍ ମୋ ବିରୋଧରେ କେହି ପ୍ରାର୍ଥୀପତ୍ର ଦାଖଲ କରିନଥିଲେ । ସମଗ୍ର ବାଲେଶ୍ୱର ଜିଲ୍ଲାର ଜିଲ୍ଲାବୋର୍ଡ଼ ନିର୍ବାଚନ ରେ କେହିହେଲେ କଂଗ୍ରେସ ବିରୋଧରେ ଠିଆ ହୋଇନଥିଲେ । ସେତେବେଳେ ମୁଁ ମଧ୍ୟ ଜଣେ କଂଗ୍ରେସର ଜାତୀୟ କଂଗ୍ରେସ ସଭ୍ୟ ଥିଲି । ମାତ୍ର ମୁଁ ଜଣେ ସ୍ୱାଧୀନ ଚିନ୍ତାଶୀଳ ବ୍ୟକ୍ତି ବୋଲି କି କ'ଣ ବାଲେଶ୍ୱର ଜିଲ୍ଲା କଂଗ୍ରେସର ବରିଷ୍ଠ ଅଧିକାରୀମାନେ ମୋତେ କଂଗ୍ରେସ ଅନୁଷ୍ଠାନରୁ ବାହାରେ ରଖିବାକୁ ଚେଷ୍ଟା କରୁଥିଲେ ।

ମୋର ମନେପଡୁଛି ନିଖିଳ ଭାରତ କଂଗ୍ରେସର ଅଧିବେଶନ ଜୟପୁରଠାରେ ଅନୁଷ୍ଠିତ ହେଉଥିବାବେଳେ, ସେଠାରେ ସଭ୍ୟଭାବେ ଯୋଗଦେବାପାଇଁ ମୋର ପ୍ରାର୍ଥୀପତ୍ର ନାକଚ କରିଦେଇଥିଲେ; ମୁଁ ଜଣେ ଖଦଡ଼ ପରିହିତ ବ୍ୟକ୍ତି ନୁହେଁ ବୋଲି ଦୋଷ ଦେଇ । ଆଜି ସେ ସମସ୍ତେ ଇହଧାମ ତ୍ୟାଗକରି ଚାଲିଗଲେଣି । ତେଣୁ ମୁଁ ସେମାନଙ୍କ ନାମ ଉଲ୍ଲେଖ କରିବା ଉଚିତ୍ ମନେ କରୁନାହିଁ । ଏହିପରି ନାନାଦି କାରଣରୁ ମୁଁ ଜିଲ୍ଲା ବୋର୍ଡ଼ ସଭ୍ୟପଦରୁ ଇସ୍ତଫା ଦେଇଥିଲି । ତାହାପରେ ପରେ କଂଗ୍ରେସ ଦଳରୁ ମଧ୍ୟ ଓହରି ଗଲି ।

କଂଗ୍ରେସ ନେତା ନେହେରୁ ଓ ପଟେଲଙ୍କ କାର୍ଯ୍ୟକଳାପରୁ ମୁଁ ସେହି ଅନୁଷ୍ଠାନ ପ୍ରତି ବୀତସ୍ପୃହ ହୋଇପଡ଼ିଲି । ସ୍ୱାଧୀନତା ପରେ ପରେ ନିଖିଳ ଭାରତ ଜାତୀୟ କଂଗ୍ରେସ ନାମଧରି ନିର୍ବାଚନ ଲଢ଼େଇରେ ସେମାନେ କେବଳ ଯେ ଅବତୀର୍ଣ୍ଣ ହେଲେ ତାହା ନୁହେଁ, କଂଗ୍ରେସ ନିର୍ଦ୍ଧାରିତ ଚରଖା ସମ୍ବଳିତ ଜାତୀୟ ପତାକାକୁ ମଧ୍ୟ ନିଜ ଦଳର ପତାକା ରୂପେ ଘୋଷଣା କରିଦେଲେ ।

ମହାତ୍ମାଗାନ୍ଧୀ ଭାରତର ସ୍ୱାଧୀନତା ପରେ ପରେ କହିଥିଲେ ଯେ, ସେ କଳିଯୁଗର ନିର୍ଦ୍ଧାରିତ ପରମାୟୁ ୧୨୦ ବର୍ଷ ବଂଚିବାକୁ ଚାହାନ୍ତି, ଦେଶର ସେବା କରିବା ପାଇଁ କିନ୍ତୁ ସ୍ୱାଧୀନତା ଲାଭର ଅଳ୍ପ କେତେ ମାସ ପରେ ଦେଶର ଅବସ୍ଥାକୁ ଲକ୍ଷ୍ୟ କରି ସେ ଯେତେବେଳେ କହିଦେଲେ ଯେ ସେ ଆଉ ବେଶୀଦିନ ବଂଚିବାକୁ ଚାହାନ୍ତି ନାହିଁ, ସେତେବେଳେ ଭାରତୀୟ ନେତାମାନଙ୍କ ପ୍ରତି ମୋର ଘୃଣାଭାବ ଜାତ ହେଲା । ତାହା ପରଠାରୁ ମୁଁ ନିଃସ୍ୱଭାବରେ ଭାରତୀୟ ଜାତୀୟ କଂଗ୍ରେସ ବିରୋଧରେ ନିର୍ବାଚନ ସଂଗ୍ରାମରେ ଅବତୀର୍ଣ୍ଣ ହେଲି, କିନ୍ତୁ ପ୍ରଥମ ନିର୍ବାଚନରେ ଯୁଗ୍ମନିର୍ବାଚନ ମଣ୍ଡଳୀଥିବାରୁ ମୁଁ କଂଗ୍ରେସ ବିରୋଧୀ ପ୍ରାର୍ଥୀରୂପେ ଯେଉଁ ନିର୍ବାଚନ ମଣ୍ଡଳୀକୁ ଲୋକସଭା ପାଇଁ ଛିଡ଼ା ହେଲି, ସେଥିରେ ସମଗ୍ର ବାଲେଶ୍ୱର ଜିଲ୍ଲାସହ ମୟୂରଭଞ୍ଜ ଜିଲ୍ଲାରୁ ଗୋଟିଏ ଓ କଟକ ଜିଲ୍ଲାରୁ ଗୋଟିଏ ବିଧାନସଭା ନିର୍ବାଚନ ମଣ୍ଡଳୀ ଅନ୍ତର୍ଭୁକ୍ତ ଥିଲା । ଚାଳିଶଦିନ ଭିତରେ ମୁଁ ଖଣ୍ଡିଏ ସାଇକେଲରେ ଚଢ଼ି ପ୍ରାୟ ସାତଟି ବିଧାନସଭା ନିର୍ବାଚନମଣ୍ଡଳୀରେ ବୁଲି ସଭାକରି ଲୋକଙ୍କୁ ବୁଝାଇବାକୁ ସମର୍ଥ ହୋଇଥିଲି । ସେଇ ସାତୋଟି ନିର୍ବାଚନ ମଣ୍ଡଳୀରୁ ମୁଁ କଂଗ୍ରେସ ପ୍ରାର୍ଥୀଙ୍କ ଠାରୁ ଅଧିକ ଭୋଟ ପାଇବାକୁ କ୍ଷମ ହୋଇଥିଲି । ମାତ୍ର ଯେଉଁ ସାତୋଟି ନିର୍ବାଚନମଣ୍ଡଳୀକୁ ସ୍ପର୍ଶ କରିପାରିନଥିଲି ସେଠାରେ ମୋର ଭୋଟ ଅତି କମ୍ ହେବାରୁ ମୁଁ ହାରିଗଲି । ଲୋକେ ଶୁଣିଲେ ଆଶ୍ଚର୍ଯ୍ୟବୋଧ କରିବେ, ପ୍ରାଚୀରପତ୍ର ଓ ପ୍ରଚାରପତ୍ର ଛଡ଼ା ମୋର ମୋଟ ଖର୍ଚ୍ଚ ହୋଇଥିଲା ୫୦୦ ଟଙ୍କା ମାତ୍ର ।

ଗୋଟିଏ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ବିରୋଧରେ କ୍ରମାନ୍ୱୟରେ ତିନିଥର ନିର୍ବାଚିତ ହେବାପରେ ଚତୁର୍ଥ ଥର ମୁଁ ପରାଜିତ ହୋଇଗଲି । ମୋର ଅମାନତ ଉଡ଼ିଗଲା ।

ପ୍ରଥମ ଥର ଓଡ଼ିଶା ବିଧାନସଭାର ଭଦ୍ରକ ନିର୍ବାଚନ ମଣ୍ଡଳୀରେ ପ୍ରାର୍ଥୀ ରୂପେ ମୁଁ ଠିଆ ହୋଇଥିଲା ବେଳେ ମୋର ଖର୍ଚ୍ଚ ହୋଇଥିଲା ମାତ୍ର ୪୫୦ ଟଙ୍କା, ଦ୍ୱିତୀୟଥର ପ୍ରାୟ ୧୦୦୦ ଟଙ୍କା ମାତ୍ର, ତୃତୀୟ ଥର ଜନକଂଗ୍ରେସର ଖର୍ଚ୍ଚ ହୋଇଥିଲା ପ୍ରାୟ ୫,୦୦୦ ଟଙ୍କା ।

ବର୍ତ୍ତମାନ ଗୋଟିଏ ଗୋଟିଏ ବିଧାନସଭା ନିର୍ବାଚନମଣ୍ଡଳୀରୁ ଠିଆ ହୋଇଥିବା ପ୍ରାର୍ଥୀମାନେ ଯାହା ଖର୍ଚ୍ଚ କରୁଛନ୍ତି, ତାହା ମୋ ପକ୍ଷରେ କହିବା କଠିନ । ଗୋଟିଏ ଗୋଟିଏ ପଂଚାୟତ ନିର୍ବାଚନରେ ପ୍ରାର୍ଥୀ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରୁଛନ୍ତି ବୋଲି ଶୁଣୁଛି । ବିଧାନସଭା ସଭ୍ୟ ହେବାପାଇଁ ଭୋଟରେ ଖର୍ଚ୍ଚ ହେବାର ଶୁଣାଯାଏ ଲକ୍ଷ ଲକ୍ଷ ଟଙ୍କା । ଗୋଟିଏ ଲୋକସଭା ନିର୍ବାଚନ ପାଇଁ ଯେତେ ଟଙ୍କା ଖର୍ଚ୍ଚ ହୁଏ ତାହା ଅନୁମାନ କରିବା ମୋ ପକ୍ଷେ କଠିନ ।

ଏ ଟଙ୍କା ସବୁ ଭାରତ ବାହାର ରାଷ୍ଟ୍ରମାନେ ଯୋଗାଉଦେଉଛନ୍ତି ବୋଲି ଭାରତର ଗୋଟିଏ ରାଜନୈତିକ ଦଳ ଏବେ ସ୍ୱୀକାର କରିଛନ୍ତି ।

ମୁଁ ଦେଶର କୌଣସି ରାଜନୀତିକ ଦଳର ନିରୂପିତ ଲକ୍ଷ୍ୟ ସହିତ ଏକମତ ନଥିଲି । ଓଡ଼ିଶାରେ କଂଗ୍ରେସ ଚ୍ୟୁତ ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କର ଡାକରାରେ ଯେତେବେଳେ ଜନକଂଗ୍ରେସ ଦଳ ଗଠନ କରାଗଲା, ସେତେବେଳେ ସେ ଦଳର ଲକ୍ଷ୍ୟ ସଂପୂର୍ଣ୍ଣ ଭାବରେ ମହାତ୍ମାଗାନ୍ଧୀଙ୍କ ନିର୍ଘୋଷିତ ମତକୁ ଭିତ୍ତିକରି ଘୋଷିତ ହେବା ହେତୁ ମୁଁ ସେ ଦଳରେ ଯୋଗଦେଲି । ନିର୍ବାଚନରେ ମୁଁ ଜୟ ଲାଭ କଲି ବିପୁଳ ଭୋଟରେ ।

ମାତ୍ର ଜନକଂଗ୍ରେସ ସହିତ ଯେଉଁ ସ୍ୱତନ୍ତ୍ର ଦଳ ସହମତ ହୋଇ ଏକତ୍ର ଭୋଟ ସଂଗ୍ରାମରେ କଂଗ୍ରେସ ବିରୋଧରେ ଲଢ଼ିଥିଲେ, ସେହି ଦୁଇ ଦଳଙ୍କର ସାଲିସ କ୍ରମେ ଭଦ୍ରକ ନିର୍ବାଚନ ମଣ୍ଡଳୀରେ ପରସ୍ପର ସହିତ ଲଢ଼ିବା ପାଇଁ ନିଷ୍ପତ୍ତି ନେଇଗଲେ । ସୁତରାଂ ମୋ ବିରୋଧରେ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ନିର୍ବାଚନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ପରାଜିତ ହେଲେ । ମାତ୍ର ନିର୍ବାଚନରେ ଜୟଲାଭ କଲାପରେ ଯେତେବେଳେ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମିଶି ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଯୋଗ୍ୟ ବିବେଚିତ ହେଲେ, ସେତେବେଳେ ସେମାନଙ୍କ ମଧ୍ୟରେ କିଏ କେଉଁ ବିଭାଗର ମନ୍ତ୍ରୀ ହେବ ପରାମର୍ଶ ଚାଲିଲା । ମୁଁ ନିର୍ବାଚନ ବେଳେ ଦୁର୍ଘଟଣାରେ ଆହତ ହୋଇ କଟକ ବଡ଼ ଡାକ୍ତରଖାନାରେ ପଡ଼ିଥାଏଁ । ମନ୍ତ୍ରୀମଣ୍ଡଳରେ ଯୋଗଦେବା କଥା ମୁଁ ଭାବି ମଧ୍ୟ ନଥିଲି । ବିଶେଷତଃ ସ୍ୱତନ୍ତ୍ରଦଳ ସହ ଏକତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରୁଥିବା ବେଳେ ସ୍ୱତନ୍ତ୍ରଦଳର ଘୋର ବିରୋଧୀ ମୋତେ ବା କାହିଁକି ଡାକରା ପଡ଼ିବ, ମନ୍ତ୍ରୀମଣ୍ଡଳରେ ଯୋଗ ଦେବାପାଇଁ ? ଏକଥା ମୋ ବିଚାରକୁ ଆସିନଥିଲା ।

କିନ୍ତୁ ଆସିଲା । ମୋତେ ମୋଟର ପଠାଇ ମହତାବ ବାବୁ ଡାକିନେଲେ ଭୁବନେଶ୍ୱରକୁ, ତାଙ୍କ ଏକାମ୍ରନିବାସକୁ ।

ସେଠି ଶୁଣିଲି ମହତାବ ବାବୁଙ୍କ ମୁହଁରୁ ବାହାରି ଆସିଲା ମୁଁ କଷ୍ଟକରି ଆସିଲି କାହିଁକି, ଆସିବା ଦରକାର ନଥିଲା । କାରଣ ସ୍ୱତନ୍ତ୍ରପାର୍ଟି ମୋତେ କୌଣସି ପଦବୀରେ ରଖିବାକୁ ଚାହୁଁନଥିଲେ । ପ୍ରଥମରେ ଆମ ଜନକଂଗ୍ରେସ ଦଳ ମୋତେ ବାଚସ୍ପତି ପଦପାଇଁ ମନୋନୟନ କରିଥିଲେ । କିନ୍ତୁ ସ୍ୱତନ୍ତ୍ରଦଳର ନେତା ଏଥିରେ ରାଜି ହେଲେନି । ତାହାର କାରଣ ସବୁବେଳେ ମୋର ନିରପେକ୍ଷ ମତ ତାଙ୍କୁ ଜଣାଥିଲା । ପରିଶେଷରେ ମୋତେ ଜଣେ ମନ୍ତ୍ରୀ କରାଇନେବା ପାଇଁ ରାଜିହୋଇଗଲେ ।

ତା' ପରେ ଅସମୟରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା । ମୁଁ ବି ମନ୍ତ୍ରୀପଦରୁ ବିଦା ହୋଇଗଲି । ତା'ପରେ ବି ନିର୍ବାଚନରେ ଲଢ଼ିଲି ଦେଇ ଭଦ୍ରକରୁ । ମୋର ମନେପଡ଼ୁଛି ସେତେବେଳେ ଭଦ୍ରକର ଜଣେ ବୁଢ଼ାଲୋକ ମୋତେ ନିଭୃତକୁ ଡାକିନେଇ କହିଲେ - "ଆପଣ ଜିତିବାର ଆଶା ଛାଡ଼ିଦିଅନ୍ତୁ । ଏବେ ଖାଲି ଟଙ୍କା ଉଡ଼ୁଛି । ଆପଣ ପାରିବେ ନାହିଁ, ଏତେ ଟଙ୍କା ଖର୍ଚ୍ଚ କରି । ମଣିଷର ଯୋଗ୍ୟତାକୁ ବିଚାର କରି ଭୋଟ ଦେବା କଥା ଆଉ ନାହିଁ । ଏବେ ଖାଲି ଟଙ୍କା ଟଙ୍କା, ଟଙ୍କା.... ।"

ତାହାହିଁ ହେଲା । 'ଯେଉଁ ଲୋକକୁ ମୁଁ ଜନକଂଗ୍ରେସରେ ଥିଲାବେଳେ ମୋର ସବୁଠାରୁ ବଡ଼ ସହାୟକ ବୋଲି ମନେକରୁଥିଲି ଏବଂ ଯାହା ପାଇଁ ଭଦ୍ରକର ଘରେ ଘରେ ବୁଲି ପଂଚାୟତ ସମିତିର ଚେୟାରମେନ ହେବାପାଇଁ ଭୋଟ ଭିକ୍ଷା କରି ଜୟୀ କରାଇଥିଲି, ସେହି କଂଗ୍ରେସ ପ୍ରାର୍ଥୀ ହୋଇ ମୋ ବିରୋଧରେ ଲଢ଼ିଲେ ଏବଂ ଜୟଯୁକ୍ତ ମଧ୍ୟ ହେଲେ । ମୋର ଡିପୋଜିଟ୍ ମଧ୍ୟ ଉଡ଼ିଗଲା ।

ଏଥାପରଠାରୁ ମୁଁ ଆଉ ନିର୍ବାଚନ ସଂଗ୍ରାମରେ ଅବତୀର୍ଣ୍ଣ ହେବାପାଇଁ ମନେକରିନାହିଁ । ମୋର ମନେପଡ଼ୁଛି, ବ୍ରିଟିଶ୍ ସରକାରବିରୋଧରେ ସଂଗ୍ରାମ ଚାଲିଥିଲା ବେଳେ ତତ୍‌କାଳୀନ ଆଇନ୍ ଅନୁଯାୟୀ ଯେଉଁ ସବୁ ନିର୍ବାଚନ ହେଉଥିଲା ସେଥିରେ ଲୋକେ କଂଗ୍ରେସ ବିରୋଧୀ ପ୍ରାର୍ଥୀମାନଙ୍କ ଠାରୁ ପଇସା ନେଇ କଂଗ୍ରେସ ପ୍ରାର୍ଥୀଙ୍କୁହିଁ ଭୋଟ ଦେଇ ଦେଉଥିଲେ । ଏବେତ ଲୋକେ ଦୁଇ ପକ୍ଷରୁ ପଇସା ନେଇ ଅଧିକ ଅର୍ଥ ଦାବୀ କରି ପ୍ରାର୍ଥୀଙ୍କୁ ଭୋଟ ଦେବାରେ ଲାଗିଲେଣି । ସ୍ୱାଧୀନତା ସଂଗ୍ରାମୀମାନେ ନିଜ ନିଜର ତ୍ୟାଗପାଇଁ ଲୋକମାନଙ୍କ ଠାରୁ ଯେଉଁ ଆଦର ପାଉଥିଲେ, ସେ ଯୋଗାଯୋଗ ଏବେ ସଂଗ୍ରାମୀମାନେ ହରାଇ ଦେଲେଣି । ପଚାଶ ବର୍ଷ ପୂର୍ବରୁ ଆମେ ଯେ ପରାଧୀନ ଥିଲୁ ସେକଥା ଏବର ସମାଜ ପ୍ରାୟତଃ ଭୁଲିଗଲାଣି ।

ତାହାଛଡ଼ା ଆମେ ଯେ ଏକ ସ୍ୱାଧୀନ ଦେଶର ଲୋକ, ଏ ବିଶ୍ୱାସ ମୋର ଆଉ ନାହିଁ । ଅର୍ଥନୈତିକ ସ୍ୱାଧୀନତା ଆମେ କ୍ରମେ କ୍ରମେ ହରେଇ ବସିଲୁଣି । ଯେଉଁ ରାଜନୀତିକ ସ୍ୱାଧୀନତା ଦେଇ ଇଂରେଜମାନେ ଏ ଦେଶକୁ ଛାଡ଼ି ଦେଇଥିଲେ, ତାଙ୍କରି ସଭ୍ୟତାକୁ ଆମେ କାବୁଡ଼ି ଧରି ସେଇ ସଭ୍ୟତାର ଗୋଲାମ ହୋଇ ବସିଲୁଣି ।

ଏବର ସବୁଠାରୁ ବିପଦ ହେଉଛି, ଆମ ଦେଶ ରାଜନୀତିକ ସ୍ୱାଧୀନତା ଲାଭ କରିଛି ସତ, କିନ୍ତୁ ଆର୍ଥିକ ଦୃଷ୍ଟିରୁ ଆମେ ପରଦେଶାଭିମୁଖୀ ହୋଇପଡ଼ିଛୁ । ଇଂରେଜମାନେ ଆମକୁ ସ୍ୱାଧୀନତା ଦେଲାବେଳେ, ଆମ ରାଜକୋଷକୁ ଏପରି ସୁସ୍ଥଭାବରେ ହସ୍ତାନ୍ତର କରିଥିଲେ ଯେ, ଆମ ଦେଶ ମହାତ୍ମାଗାନ୍ଧୀଙ୍କର ଅନୁରୋଧ କ୍ରମେ ପାକିସ୍ତାନର ହିଅଂଶକୁ ମଧ୍ୟ ଭରଣା କରିଥିଲେ । ଏବେ ତ ଆମେ ବିଦେଶ କୋଷାଧିକାରୀମାନଙ୍କର ବଶୀଭୂତ ହୋଇଗଲୁଣି ।

କାଠ ଜୁଟୀର,
ଭୁବନେଶ୍ୱର - ୧

# ଓଡ଼ିଶାରେ ଭାରତୀୟ ମୁକ୍ତି ଯୁଦ୍ଧର ଆଦ୍ୟ ଶଂଖନାଦ

ଡକ୍ଟର ସୁରେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ

ସ୍ୱାଧୀନତା ଏକ ପ୍ରବୃତ୍ତି । ରାଜନୀତିର ଭାଷାରେ ତାହା ଏକ ଅଧିକାର । ରୁଷୋ କହନ୍ତି ମଣିଷ ମୁକ୍ତ ହୋଇ ଜନ୍ମିଥାଏ । ତାକୁ ଶିକୁଳିରେ ବାନ୍ଧିବା ପାଇଁ ବହୁ ଲୋକ ନାନା ଭାବରେ ଆଗେଇ ଆସନ୍ତି । ଦେଶ ବା ମଣିଷ ସମାଜ ପକ୍ଷରେ ଠିକ ସେମିତି ଘଟେ । ସବୁ କାଳରେ ସବୁ ଦେଶରେ ମଣିଷମାନେ ଏଇ ସ୍ୱାଧୀନତାକୁ ନିରାପଦ ରଖିବାକୁ ବ୍ୟାକୁଳ ସଂଗ୍ରାମ କରିଥାନ୍ତି । ଇତିହାସର ପୃଷ୍ଠାରେ ପୃଷ୍ଠାରେ ମଣିଷର ଏଇ ମୁକ୍ତି ସଂଗ୍ରାମର ରକ୍ତ କାହାଣୀ ଲେଖାଅଛି । ଲେଖାଅଛି ସେଇପରି ଧନଲୋଭୀ, ମାଟିଲୋଭୀ ଆଉ କେତେକ ମଣିଷ-ବେଶୀ ଅମଣିଷମାନଙ୍କ ପ୍ରବଳ ତୃଷ୍ଣାର ଜହଡିକ ଅପଆଶାର ଅଙ୍କା ବଙ୍କା ବାଟର କଥା । ସେଇମାନେ ଦୁଃସାହସ ନାଁରେ ନିଜ ଦେଶକୁ ଛାଡ଼ି ଯାଇଛନ୍ତି କେଉଁ ଦୂର ଉପକୂଳକୁ । ଖୋଜିଛନ୍ତି କିଛି ଆନ । ବନ୍ଧୁତା । ବେପାର ବାଣିଜ୍ୟ । ନତୁବା ଆବିଷ୍କାର । ପରିଣତିରେ ଏସବୁର ଘୋଡ଼ଣି ଖୋଲି ଯାଇଚି । ଘୋଡ଼ଣି ତଳୁ "ଫଁ ଫଁ" ଶବ୍ଦକରି ଅସରନ୍ତି ତୃଷ୍ଣା ଓ ଲୋଭର ଡଁପଗୁଡ଼ା ବେ଼ରିଁ ପଡ଼ିଛନ୍ତି । ନୂଆ ମାଟିର ସମସ୍ତ ମଧୁର ମହକ ଲୁଟି କରିଛନ୍ତି, ସେମାନେ । ସେ ମାଟିକି କରିଛନ୍ତି ନୀରସ, ନୁଖୁରା । ସେ ମାଟିର ମଣିଷ ଶିଶୁର ମୁହଁରୁ ଚୋରେଇ ନେଇଛନ୍ତି ସମସ୍ତ ହସ, ଜୀଇଁବାର ଆଶା । ଏଭଳି ନିଷ୍ଠୁର ଅମଣିଷ କାମ କରିବାରେ ଖୁବ୍ ନାଁ କରିଛନ୍ତି ୟୁରୋପୀୟ ସଂପ୍ରଦାୟମାନେ । ସେମାନଙ୍କ ପ୍ରତାପରେ ଏସିଆ, ଆଫ୍ରିକା, ଉଭୟ ଆମେରିକା, ଅଷ୍ଟ୍ରେଲିଆର ସୁବର୍ଣ୍ଣ ଭୂମି ପୋଡ଼ିଚି । ହଜି ଯାଇଚି କେତେ ଜାତିର, ସଂସ୍କୃତିର ପରିଚୟ ।

**ଭାରତ ଆତ୍ମାର ବିଦ୍ରୋହ :**

ଏମିତି ଗୋଟେ ଅବସ୍ଥା ବି ଥିଲା ଦିନେ ଭାରତର । କେଉଁ ଏକ ମନ୍ଦ ବେଳରେ ସ୍ୱାଧୀନ ଭାରତ ହରେଇଲା ତା'ର ସ୍ୱାଧୀନତା । ସାତ ସମୁଦ୍ର ତେର ନଈ ସେପାରି ଟାପୁର ମୁଷ୍ଟିମେୟ ଅଧିବାସୀ ଇଂରେଜମାନେ ହେଲେ ଏଦେଶର ହର୍ତ୍ତା, କର୍ତ୍ତା, ଭାଗ୍ୟବିଧାତା । ଭାରତ ଆତ୍ମା ଏ ପରଦେଶ ଲୋଭ ବିରୋଧରେ ଟେକିଲା ପ୍ରତିବାଦ । ମୁଣ୍ଡ ଟେକିଲା ଅନେକ ଆଂଚଳିକ ତଥା ସାମୟିକ ବିଦ୍ରୋହ, ବିପ୍ଳବ । ଧୂର୍ତ୍ତ ବିଦେଶୀ ବଣିକ ଜାତି ବିଭିନ୍ନ କୌଶଳର ଜାଲ ବିଛେଇ ସେ ସମସ୍ତ ଚେଷ୍ଟାକୁ ଭଣ୍ଡୁର କରି ଦେଇଥିଲା ।

ଷୋଡ଼ଶ ଶତକରୁ ଊନବିଂଶ ଶତକ । ଚାଲିଲା ଏ ବାଘ ଛେଳି ଖେଳ । ଊନବିଂଶ ଶତକର ଶେଷାଂଶ । ଭାରତୀୟ ମହାଜାତି ଏକମୁଖି ହେଲା । ଜନ୍ମ ନେଲା ମୁକ୍ତିର ପ୍ରୟାସ । ଏ ପ୍ରୟାସ ରୂପ ନେଲା ମହାମୁକ୍ତିର ଯାତ୍ରାରେ । ଯାତ୍ରାକୁ ବିଘ୍ନିତ କରିବାର ହଜାର ପ୍ରପଂଚ ଖେଳିଥିଲା ଉପନିବେଶବାଦ । ବିକଳ ବିକୃତ କରିଛି ଇଚ୍ଛାକୁ । ତଥାପି ଖଣ୍ଡିତ ହେଲେ ବି ମହାଜାତି ଚିର ଇପ୍ସିତ ଆଜାଦି ତାର ପାଇଚି । ଗୋଟିଏ ଘର ଭାଙ୍ଗି ଅନେକ ଘର ହେଇଛି । ମାତ୍ର ମିଳିଚି ମୁକ୍ତି ।

ସେ ଏକ ଦୀର୍ଘ କାହାଣୀ : ଲୁହ, ଲହୁ, ବଳିଦାନର ।

**ଦୁର୍ଗତ ଓଡ଼ିଶା :**

ସେଇ ମହାନ୍ କାହାଣୀର ଆଦ୍ୟ ରୂପ କେମିତି ଥିଲା ? କେମିତି ଥିଲା ଓଡ଼ିଶା ବୋଲାଉଥିବା ମାଟିରେ ? ମନରେ ଉଙ୍କି ମାରେ ଅନେକ କୌତୂହଳ । ଅତୀତର ହଳଦିଆ, ଫଟା, ଚିରା ପୃଷ୍ଠା ଖୋଜି ବୁଲେ ସ୍ୱାଧୀନ ଓଡ଼ିଆ; ଯିଏ ୧୯୯୭ ରେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳୁଚି ।

ଓଡ଼ିଶାର ଦୁର୍ଭାଗ୍ୟ ଯେ ସ୍ୱାଧୀନତା ପାଇବାର ପ୍ରାୟ ଗୋଟେ ଦଶକ ପୂର୍ବଯାଏ ଏହାର ଐତିହାସିକ, ସାଂସ୍କୃତିକ ପରିଚୟ ହଜିଯାଇଥିଲା ରାଜନୀତିକ ଭୌଗୋଳିକ ନାସ୍ତିତ୍ୱରେ । ଐତିହାସିକ କଳିଙ୍ଗ ଉତ୍କଳର ପ୍ରଥିତାତ୍ମା ଛିନ୍ନ ବିଚ୍ଛିନ୍ନ ହୋଇ ବିଶୃଙ୍ଖଳା, ଅରାଜକତା, ଅସଂହତି, ହୀନମନ୍ୟତା, ନୈତିକ ଦୁର୍ବଳତା, ଭୀରୁତା, ମଂଦ ଭାଗ୍ୟର ଶିକାର ହୋଇ ବ୍ୟଥାତୁର ହାହାକାର କରୁଥାଏ । ୧୫୬୮ ରୁ ତା'ର ଯେଉଁ ପରିଚୟ ହଜିଗଲା, ୧୯୩୬ ରେ ତାହାର ସ୍ୱୀକୃତି ଓ ୧୯୪୮ ରେ ସ୍ୱୀକୃତିର କିଛି ଔଜ୍ଜ୍ୱଲ୍ୟ ପାଇଲା । ଆଜି ମଧ୍ୟ ମେଦିନୀପୁର, ସିଂହଭୂମି, ବସ୍ତର, ଜଇଂତର, ବୁଢ଼ାର ସିଂହ, ବିଜୟନଗରର ଅନେକ ଅଞ୍ଚଳର ଓଡ଼ିଆମାନେ ନିଜର ମାତୃଭୂମି ଓ ମାତୃଭାଷା ଠାରୁ ଅଲଗା ହୋଇ ପ୍ରବାସୀ ଜୀବନ ବିତାଉଛନ୍ତି । ସେମାନଙ୍କୁ ପଡ଼ୋଶୀ ପ୍ରଦେଶର ସରକାର ଓ ସମାଜ ଦ୍ୱିତୀୟ ଶ୍ରେଣୀର ନାଗରିକ ତ ନୁହେଁ; ଉଦବାସ୍ତୁ ମଣନ୍ତି । ସେଇ ତୁଲ୍ୟ ଜଦର୍ଯ ଜଦର୍ଥନା ଦିଅନ୍ତି । ଦୁଃଖର କଥା, ମୂଳ ଭୂଖଂଡ଼ର ଓଡ଼ିଆମାନେ ସେମାନଙ୍କ ଏଇ ପ୍ରବାସୀ ଭାଇମାନଙ୍କ ପ୍ରତି ଏକାନ୍ତ ନିଷ୍ଠୁର ଓ ସହାନୁଭୂତିବିହୀନ । ସେମାନଙ୍କ ଦୁର୍ଭାଗ୍ୟରେ ଏମାନେ ଭାଗୀ ନୁହନ୍ତି । ଏହାର ଓଡ଼ିଆ ଜାତିର

ଚାରିତ୍ରିକ ଦୁର୍ବଳତା । ଏମାନେ ଦେଶରେ, ପ୍ରବାସରେ, ବିଦେଶରେ ସବୁଠି ଆତ୍ମକେନ୍ଦ୍ରିକ ସ୍ୱାର୍ଥପର ଜୀବନ ବିତାନ୍ତି । ସୁସଂହତ, ସଂଘବଦ୍ଧ ଜୀବନ ଓଡ଼ିଆ ଜାତକରେ ନାହିଁ ବୋଧହୁଏ । ଏମାନେ ନନ୍ ଏଗ୍ରିଟେଟିଂ, ଉଚ୍ଚାଭିଳାଷୀ, ଅଳ୍ପ ସନ୍ତୁଷ୍ଟ । ତେଣୁ ଏମାନଙ୍କ ମଧ୍ୟରେ ଗୋଷ୍ଠୀବଦ୍ଧତା, ସଂଘୀୟ ସଂହତିର ଅଭାବ ଏବଂ ଏ ଅବସ୍ଥା ଲାଗି ରହିଲା ଓଡ଼ିଆ କପାଳରେ ତିନିଶ ବର୍ଷରୁ ଅଧିକ- ଯାହାର ଆଦ୍ୟ ଚିହ୍ନ ମିଳିଲା ୧୫୬୮ ରେ ।

## ସ୍ୱତନ୍ତ୍ର ଓଡ଼ିଶାର ଜନ୍ମ :

୧୯୩୬ ରେ ଅବିଭକ୍ତ କଟକ, ପୁରୀ, ଗଂଜାମ, କୋରାପୁଟ, ସମ୍ବଲପୁର (ଅନୁଗୁଳ ଥିଲା କଟକ ଜିଲ୍ଲାରେ) କୁ ନେଇ ଓଡ଼ିଶା ସ୍ୱତନ୍ତ୍ର ହେଲା । ଭାଷା ଭିତ୍ତିରେ ରାଜ୍ୟଗଠନ ରାଜନୀତିକ ପ୍ରୟାସ ଓଡ଼ିଆଙ୍କ ଅବଦାନ ଭାରତୀୟ ଚିନ୍ତାଧାରାରେ । ୧୯୩୬ ଆଗରୁ ଓଡ଼ିଶା ବଙ୍ଗଳା, ବିହାର, ମଧ୍ୟପ୍ରଦେଶ, ମାନ୍ଦ୍ରାଜର ଲାଂଜ ହୋଇ ରହିଥିଲା । ପରିଚୟ ହୀନ, ଗୃହହୀନ, ବାସ୍ତୁହରା, ଅପାଂକ୍ତେୟ । ଏମିତି ଦୁର୍ଗତିରେ ଓଡ଼ିଶାର ଜନ ଜୀବନରେ ଦେଖା ଦେଲେ ଦୀପପୁରୁଷ ଗୌରୀଶଙ୍କର । ଓଡ଼ିଶାର ସଂହତି, ବିଚ୍ଛିନ୍ନ ଉତ୍କଳର ଏକୀକରଣ, ଜାତୀୟତାର ଉତଥାନ, ଶିକ୍ଷା ପ୍ରସାର, ସମାଜସେବା, ନାରୀଶିକ୍ଷା, ସମାଜ ସଂସ୍କାର, ସାମ୍ବାଦିକତା, ନବ ସାହିତ୍ୟର ପ୍ରଚାର, ମାନକ ଓଡ଼ିଆ ଭାଷା ଓ ଲିପି ପ୍ରଚଳନ, ଓଡ଼ିଆଙ୍କ ସ୍ୱାଭିମାନ ପ୍ରତିଷ୍ଠା ଆଦି ଜାତୀୟ ନବଜାଗରଣର ସମସ୍ତ ଦିଗରେ ସେ ନେତୃତ୍ୱ ନେଲେ । 'ଉତ୍କଳ ଦୀପିକା' ପତ୍ରିକା ମାଧ୍ୟମରେ ସେ ସମଗ୍ର ଓଡ଼ିଶାରେ ନବଯୁଗର ମହାନ୍ ବାର୍ତ୍ତା ପ୍ରଚାର କରିଗଲେ ।

## ନବ ପର୍ବ ଜାତୀୟତା :

ଗୌରୀଶଙ୍କରଙ୍କ ଜୀବନକାଳ ୧୮୩୮ ରୁ ୧୯୧୭ ଯାଏ ପରିବ୍ୟାପ୍ତ । ଏଇ ସମୟ ଅବଧିରେ ଭାରତବର୍ଷରେ ବିରାଟ ପରିବର୍ତ୍ତନ ଚାଲିଥିଲା । ବଙ୍ଗଳା, ମାନ୍ଦ୍ରାଜ, ବମ୍ବେ, ପଞ୍ଜାବ ପ୍ରଭୃତି ଅଂଚଳରେ ବ୍ୟାପକ ସାମାଜିକ ଓ ରାଜନୀତିକ ଉତ୍ଥାନର ନବପର୍ବ ଲେଖାଯାଉଥାଏ । ଜାତିପ୍ରେମୀ, ମାନବବାଦୀ ଗୌରୀଶଙ୍କର ଜଣେ ମହାନ୍ ଦୂରଦ୍ରଷ୍ଟା ଜନନାୟକ । ଦିବ୍ୟଦୃଷ୍ଟିରେ ସେ ଜାତୀୟ ସ୍ତରର ଏ ସମସ୍ତ ପରିବର୍ତ୍ତନକୁ ଲକ୍ଷ୍ୟ କରୁଥିଲେ । ଆଉ ଦୀପିକା ମାଧ୍ୟମରେ ଏସବୁକୁ ଓଡ଼ିଆମାନଙ୍କ ଅବଧାନ ପାଇଁ ବ୍ୟକ୍ତ କରୁଥିଲେ ।

୧୮୭୦ ରେ ଗୌରୀଶଙ୍କର ଗଢ଼ିଲେ ଓଡ଼ିଶା ସୋସାଇଟୀ । ସେଇ ବର୍ଷ ବି ପ୍ରତିଷ୍ଠିତ ହେଲା ଭାରତବର୍ଷୀୟ ସଭା । ଗୌରୀଶଙ୍କର ତୁରନ୍ତ ପ୍ରସ୍ତାବ ଦେଲେ ଯେ ସୋସାଇଟୀ ଭାରତବର୍ଷୀୟ ସଭାର ଏକ ଶାଖା ଭାବେ କାମ କରିବ । ଠିକ୍ ବର୍ଷକ ଆଗରୁ ସେ ଉତ୍କଳ ଉଲ୍ଲାସିନୀ ସଭା ଗଢ଼ିଥିଲେ । ତାହା ଥିଲା ଏକ ସାଂସ୍କୃତିକ ଅନୁଷ୍ଠାନ । ମାତ୍ର ସୋସାଇଟୀ ଥିଲା ରାଜନୀତିକ ଚେତନା ଜାଗରଣ ପାଇଁ ଉଦ୍ଦିଷ୍ଟ । ଏହା ଭାରତବର୍ଷୀୟ ସଭାର ଏକ ଅଙ୍ଗ ଭାବେ କାମ କଲା ।

## ଉତ୍କଳ ସଭା ଓ ଜାତୀୟ କଂଗ୍ରେସ :

୧୮୮୨ ରେ ଓଡ଼ିଶା ସୋସାଇଟୀ ନାଁଟି ବଦଳି ଓଡ଼ିଶା ଅସୋସିଏସନ ବା ଉତ୍କଳ ସଭା ହେଲା । ଏଇ ସଭାରେ ପୂର୍ବୋକ୍ତ ଉତ୍କଳ ଉଲ୍ଲାସିନୀ ସଭା ମିଶିଗଲା । ଉତ୍କଳ ସଭା ସାରା ଓଡ଼ିଶାର ମୁଖପାତ୍ର ଓ ପ୍ରତିନିଧି ହୋଇଗଲା । ଉତ୍କଳ ସଭାରେ ଓଡ଼ିଶା (ପ୍ରାକୃତିକ ଓଡ଼ିଶା) ରେ ବିଭିନ୍ନ ସମସ୍ୟା ଆଲୋଚିତ ହେଉଥିଲା । ଗୌରୀଶଙ୍କରଙ୍କ ପ୍ରତିଷ୍ଠିତ, ସଂପାଦିତ, ପ୍ରକାଶିତ ଉତ୍କଳ ଦୀପିକା ପୃଷ୍ଠାରେ ଉତ୍କଳ ସଭା ତଥା ଭାରତବର୍ଷୀୟ ସଭାର ଆଲୋଚନାବଳୀ ବିସ୍ତୃତ ଭାବେ ସ୍ଥାନ ପାଉଥିଲା । ଫଳରେ ଦୀପିକା ମାଧ୍ୟମରେ ସମଗ୍ର ପ୍ରାକୃତିକ ଓଡ଼ିଶା ଏ ଉଭୟ ଅନୁଷ୍ଠାନର କାର୍ଯ୍ୟାବଳୀ ସଂପର୍କରେ ସମସ୍ତ ସମ୍ବାଦ ପାଉଥିଲା । ଜାତିକୁ ଏହାର ଦେଶପ୍ରେମମୂଳକ ଆଲୋଚନାବଳୀ ଉଦ୍ବୁଦ୍ଧିତ ଏବଂ ସଚେତନ କରୁଥିଲା ।

ଜାତୀୟ ମହାସମିତି ବା ଜାତୀୟ କଂଗ୍ରେସ ଜନ୍ମ ନିଏ ୧୮୮୫ ରେ । ଭାରତବର୍ଷର, ବିଭିନ୍ନ ପ୍ରାନ୍ତର ବହୁ ବିଶିଷ୍ଟ ବିଦ୍ୱାନ ହୁଅନ୍ତି ଏହାର ସଭ୍ୟ । ପ୍ରତିବର୍ଷ ଡିସେମ୍ବର ମାସରେ ଏହାର ଅଧିବେଶନ ବସୁଥାଏ ବିଭିନ୍ନ ବଡ଼ ସହରରେ । ସେଠିରେ ଦେଶ ପ୍ରଗତିର ବହୁ ବୌଦ୍ଧିକ ଆଲୋଚନା ହେଉଥାଏ । ସରକାରୀ ପ୍ରଶାସନର ଦୋଷତ୍ରୁଟି ସୁଧାରିବା ଲାଗି ନାନା ପ୍ରସ୍ତାବ ଓ ପରାମର୍ଶ ଦିଆ ହେଉଥାଏ । ଉତ୍କଳ ସଭା ସଙ୍ଗେ ସଙ୍ଗେ ଜାତୀୟ କଂଗ୍ରେସର ଏକ ଶାଖାଭାବେ କାମ କଲା । ଡ଼ଃ ହରେକୃଷ୍ଣ ମହତାବ ତାଙ୍କ ରଚିତ ଭାରତୀୟ ମୁକ୍ତି ସଂଗ୍ରାମ ଇତିହାସ ଇଂରେଜୀ ଗ୍ରନ୍ଥରେ ଲେଖନ୍ତି ଯେ ୩.୩.୧୮୬୬ ରେ ଏଇ ଐତିହାସିକ ନିଷ୍ପତ୍ତି ଫଳରେ ଏଇଦିନଠୁ ଓଡ଼ିଶା ଭୂଇଁରେ କଂଗ୍ରେସ ଆନୁଷ୍ଠାନିକ ଭାବେ କାର୍ଯ୍ୟାରମ୍ଭ କଲା - ଉତ୍କଳସଭା ମାଧ୍ୟମରେ, ଗୌରୀଶଙ୍କର ରାୟଙ୍କ ନେତୃତ୍ୱରେ । ମହାଭାରତୀୟ ସ୍ରୋତରେ ଓଡ଼ିଶା ଏମିତି ଭାବରେ ୧୮୭୦ ରୁ ମିଳିତ ହୋଇ କାମ କରି ଚାଲିଥିଲା ।

## ଓଡ଼ିଆଙ୍କ ସାମରିକ ବିଦ୍ରୋହ :

ଭାରତର ମୁକ୍ତି ସଂଗ୍ରାମର ଏଇ ପରୋକ୍ଷ ତଥା ପ୍ରତ୍ୟକ୍ଷ ଯୋଗଦାନ ଆଗରୁ ଆମେ ଓଡ଼ିଶାର ବିଭିନ୍ନ ସାମରିକ ବିଦ୍ରୋହ କଥା ଉଲ୍ଲେଖ ନକଲେ, ଆଲୋଚନା ପ୍ରତି ଅନ୍ୟାୟ କରାହେବ । ଭାରତବର୍ଷର ବହୁ ବିଦ୍ୱାନ ଓଡ଼ିଶାର ଏଇ ବିପ୍ଳବଗୁଡ଼ିକ ସଂପର୍କରେ କୌଣସି ଖବର ରଖି ନାହାନ୍ତି । ୧୮୧୭ ରେ ଓଡ଼ିଶାରେ ଏକ ମହାନ୍ ଜନବିପ୍ଳବ ହୋଇଥିଲା । ଏହାର ନେତା ବକ୍ସି ଜଗବନ୍ଧୁ ବିଦ୍ୟାଧର ୧୮୨୫ ରେ ଆତ୍ମ ସମର୍ପଣ କଲେ । ଏହାକୁ ଇଂରେଜମାନେ ପାଇକ ବିଦ୍ରୋହ ବୋଲି କହିଥାନ୍ତି । ଏହାଛଡ଼ା ୧୮୪୦ ରେ ମୁକୁନ୍ଦଦେବ, ଜୟକୃଷ୍ଣ ରାଜଗୁରୁଙ୍କ ବିଦ୍ରୋହ, ୧୮୧୬ ପାରଳାର ବିଶୋଇ ଆନ୍ଦୋଳନ, ୧୮୧୭ କନ୍ଧ ବିଦ୍ରୋହ, ୧୮୧୯ ଗଂଜାମ, ଘୁମୁସର, ମହୁରୀ ବିଦ୍ରୋହ (ଏହା ୧୮୩୬ ଯାଏ ଲାଗିଥିଲା), ୧୮୪୭ ଅନୁଗୁଳ ବିଦ୍ରୋହ, ୧୮୫୩ ସବରା

ବିଦ୍ରୋହ, ୧୮୫୬ ଭାରତୀ କୋହ୍ଲୁ ବିଦ୍ରୋହ, ୧୮୫୭ ସିପାହୀ ବିଦ୍ରୋହରେ ବୀର ସୁରେନ୍ଦ୍ର ସାଏଙ୍କ ସାମରିକ ଯୋଗଦାନ ତଥା ଚନ୍ଦନ ହଜୁରୀଙ୍କ ଅଂଶ ଗ୍ରହଣ ପ୍ରଭୃତି ଓଡ଼ିଶାର ତଥା ଓଡ଼ିଆ ଜାତିର ମୁକ୍ତି ତୃଷାର ଉଗ୍ର ସଂକେତ ବହନ କରିଥାଏ । ଏସବୁ ଉତ୍ତପ୍ତ ସମର ଊନବିଂଶ ଶତକର ପ୍ରଥମାର୍ଦ୍ଧର ।

ଊନବିଂଶ ଶତକର ଶେଷାର୍ଦ୍ଧରେ ଆମେ ଦେଖୁଁ ମୁକ୍ତି ସଂଗ୍ରାମୀ ଗୌରୀଶଙ୍କର ରାୟଙ୍କୁ, ଯିଏକି ଭାରତମୁକ୍ତିର ଭଗୀରଥ ଏ ଉତ୍କଳ ଭୂଇଁରେ । ଏ ଦିଗରେ ତାଙ୍କର କାର୍ଯ୍ୟ ଥିଲା ଦ୍ୱିବିଧ । ପ୍ରଥମତଃ ଓଡ଼ିଶାରେ ଏକତା ଆଣି ଏହାର ଜନଜୀବନକୁ ସଂସ୍କାରମୁଖୀ କରିଥିଲେ । ଜାତି ମଧ୍ୟରେ ଜାତୀୟ ଚେତନାର ମହାମନ୍ତ୍ର, ଭାରତୀୟତାର ଚେତନା ପ୍ରଚାର କରିଥିଲେ । ଏଇ ଜାତୀୟ ଭାବନା ଥିଲା ସୁଦୂରପ୍ରସାରୀ । ଓଡ଼ିଆ ଭାଷା ସୁରକ୍ଷା ସଂଗ୍ରାମରୁ ଏହାର ଆରମ୍ଭ ।

**ଜାତୀୟ ଭାବନା ଓ ସଂସ୍କାର :**

ସେ ଚାହୁଁଥିଲେ ଜାତୀୟ ବସ୍ତ୍ର ଶିଳ୍ପର ଉଦ୍ଧାର । ଓଡ଼ିଶା କାରିଗର, ବିଶେଷରେ ବସ୍ତ୍ର ଶିଳ୍ପୀଙ୍କ ଦୁର୍ଦ୍ଦଶାରେ ସେ ବିଷଣ୍ଣ ହୋଇ କହୁଥିଲେ : ସଚରାଚର ଲୋକେ ଜାଣନ୍ତି ଯେ ବିଲାତୀ ଲୁଗା ଆସିବାରୁ ଦେଶର ତନ୍ତିମାନେ ନିରୁପାୟ ହୋଇ ରହିଲେ (ଦୀପିକା ୨୦.୧୧.୧୮୭୫) ଇତ୍ୟାଦି । ସେହିପରି ଆଉଥରେ ଲେଖିଥିଲେ । ବାସ୍ତବରେ ବିଲାତୀ ଲୁଗାଠାରୁ ଦେଶୀୟ ଲୁଗା ଟାଣ ଏଥିରେ ସନ୍ଦେହ ନାହିଁ ଏବଂ ଦେଶୀ ଲୁଗାର ମୂଲ୍ୟ କିଛି ଅଧିକ ପଡ଼ିଲେ ସୁଦ୍ଧା ଦୀର୍ଘକାଳ ଭୋଗ ଦ୍ୱାରା ପୁଷିଯାଏ । ଦେଶୀୟ ଲୁଗାର ବ୍ୟବହାର ବଢ଼ିଲେ ଦେଶୀୟ ଲୁଗାବାଲା ଓ ତନ୍ତିମାନଙ୍କର ବ୍ୟବସାୟ ବୃଦ୍ଧି ହେବ । ଅନେକ ମୂଲିଆ ମଜୁର କାର୍ଯ୍ୟ ପାଇବେ ଓ ଦୁଃଖିନୀ ବିଧବାମାନେ ସୂତା କାଟି ମୁଠାଏ ଦାନା ପାଇବେ । ସ୍ୱଦେଶ ପ୍ରତି ଯାହାଙ୍କର ଟିକିଏ ଆସ୍ଥା ଅଛି ବିଲାତୀ ଲୁଗାର ବ୍ୟବହାର ତ୍ୟାଗ କରିବା ତାଙ୍କର ଉଚିତ୍ ଏକଥା ବୋଲିବା ବାହୁଲ୍ୟ (୦୪.୦୪.୧୮୯୬) ।'' ସ୍ୱଦେଶ ପ୍ରୀତିର ରୁଦ୍ର ହୁଙ୍କାରରେ ବିଧବାମାନଙ୍କ କର୍ମ ସଂସ୍ଥାନ ପ୍ରତି ସମ୍ବେଦନଶୀଳ ଗୌରୀଶଙ୍କର ଏମିତି ବହୁବାର ଜାତିକି ବହୁକଥା କହିଛନ୍ତି- ଯାହାକି ସ୍ୱଦେଶୀ ଆନ୍ଦୋଳନର ଅନେକ ଆଗରୁ ଓଡ଼ିଶାରେ ଘଟିଥିଲା ।

**ଦେଶୋନ୍ନତିର ଉପାୟ :**

'ଭାରତ ଉଦ୍ଧାର' ପାଇଁ ସେ ବହୁ ସମୟରେ ଚିନ୍ତିତ ରହୁଥିଲେ । ଦୀପିକାରେ ଏହାରି ଉପରେ ସେ ବେଶ୍ କିଛି ଆଲୋଚନା ଛାଡ଼ି ଯାଇଛନ୍ତି । ଦେଶୋନ୍ନତିର ଉପାୟ ଶୀର୍ଷକରେ ଥରେ ସେ ଲେଖିଥିଲେ, ବିଲାତୀ ଦ୍ରବ୍ୟର ଚାକଚକ୍ୟରେ ଆମ୍ଭେମାନେ ସମସ୍ତେ ଭୁଲିଅଛୁଁ ବିଦେଶୀୟ ଶ୍ରମଜାତ ଦ୍ରବ୍ୟ ଭାରି ଆଗ୍ରହ ସହିତ କ୍ରୟ କରି ବଡ଼ଲୋକ ପଣିଆ ଶିଖାଉଅଛୁଁ ମାତ୍ର ତଦ୍ଦ୍ୱାରା ଦେଶର ସର୍ବନାଶ ହେଉଅଛି ତହିଁ ପ୍ରତି ଦୃଷ୍ଟି ନାହିଁ । ଦେଶୀୟ ଶ୍ରମଜାତ ଦ୍ରବ୍ୟ ପ୍ରତି ଲୋକଙ୍କ ଅନୁରାଗ ବିନା ଏଥିରେ ଅନ୍ୟ ପ୍ରତିକାର ଦିଶୁନାହିଁ (ଦୀପିକା ୨୩.୦୮.୧୮୯୦) ।''

**ଜାତୀୟ ସଂହତି :**

ଏମିତି ଅଜସ୍ର ଦେଶପ୍ରେମମୂଳକ ଆଲୋଚନାର ମହାସ୍ରୋତ ସେ ବୁହାଉଥିଲେ ଦୀପିକାରେ । ସେଇ ପରିପ୍ରେକ୍ଷୀରେ ହିନ୍ଦୁ ମୁସଲମାନ ଏକତା କଥା ଆସୁଥିଲା । ଉଭୟଙ୍କୁ ସେ ଭାଇ ଭାଇ ଆଖ୍ୟା ଦେଉଥିଲେ ଏବଂ ଆନ୍ତଃ ଭାଷା, ଆନ୍ତଃ ଧର୍ମ ବିବାହର ପରାମର୍ଶ ଦେଉଥିଲେ । ୨୧.୦୧.୧୯୧୧ ରେ ଇଂରାଜି ଭାଷାରେ ସଂପାଦକୀୟ ଲେଖି ଭାରତର ଏକତା ପାଇଁ ଡକରା ଦେଉଥିଲେ The Love for Mother India -The holiest of lands on the face of the Earth was inculcated at every step. It is impossible to conceive of a Nationality without unity and true unity can never take root till isolated individualtiy of each component factor is emerged into on homogeneous whole". ସେ ତ ପୁଣି ଏକତା ଲାଗି ହିନ୍ଦୀ ଲିପିକୁ ସର୍ବଭାରତୀୟ ସ୍ତରରେ ଗ୍ରହଣ କରିବାକୁ ଯୁକ୍ତି କରୁଥିଲେ ।

**କଂଗ୍ରେସରେ ଯୋଗଦାନ ଓ ସଂଗଠନ :**

ଦ୍ୱିତୀୟ ପ୍ରକାର କାର୍ଯ୍ୟକ୍ରମ ଥିଲା, କଂଗ୍ରେସର ବିଭିନ୍ନ ଅଧିବେଶନରେ ଯୋଗଦେବା ଓ କଂଗ୍ରେସର ବାର୍ତ୍ତା ଓଡ଼ିଶାରେ ପ୍ରଚାର କରିବା । ଜାତୀୟ ମହାସ୍ରୋତରେ ଓଡ଼ିଆ ଅବଗାହନ କରୁ । ସର୍ବଭାରତୀୟତାରେ ଓଡ଼ିଆ ତା'ର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ କରୁ । ୧୮୯୦ ରେ କଲିକତା ଅଧିବେଶନ । ଓଡ଼ିଶାର ଖୁବ୍ ନିକଟବର୍ତ୍ତୀ । ''ଦେଶର ଗୌରବ ରକ୍ଷା କରିବା ଦେଶୀୟ ଲୋକଙ୍କ ହାତର କଥା ସେମାନେ ଯେବେ ତତ୍ପର ନହେବେ ତେବେ ବଡ଼ ଦୁଃଖର ବିଷୟ ହେବ । ପ୍ରତ୍ୟେକ ଗୃହସ୍ଥର ଅନେକ ପ୍ରୟୋଜନୀୟ ବ୍ୟୟ ମଧ୍ୟରେ ଜାତୀୟ ମହାସମିତିର ସାହାଯ୍ୟ କରିବା ଗୋଟିଏ ଅଟଇ ଏଥିରେ ତ୍ରୁଟିକରିବା କାହାରି ପକ୍ଷରେ ଭଲ ନୁହଇ (୦୪.୧୦.୧୮୯୦)। ଜାତୀୟ କଂଗ୍ରେସକୁ ପ୍ରତି ଘରେ ପରିଚିତ କରେଇବା ଲାଗି କି ପ୍ରଚେଷ୍ଟା । ପୁଣି କଂଗ୍ରେସ ଖର୍ଚ୍ଚକୁ ଗୃହସ୍ଥର ଏକ ପ୍ରୟୋଜନୀୟ ବ୍ୟୟ ଭାବେ ଗ୍ରହଣ କରିବାର ଆବେଦନ ମଧ୍ୟରେ କେତେ ଦେଶପ୍ରୀତିର ଗଭୀରତା !

୧୮୯୫ ରେ ପୁନା ଅଧିବେଶନ । ସେଥିରେ ଯୋଗଦେବାକୁ ପାରଳାଖେମୁଣ୍ଡିରୁ ପ୍ରତିନିଧି ପ୍ରସ୍ତୁତ ହେଲେ । କଟକର ଉତ୍କଳସଭା ବସିଲା । କେହି ବାହାରିଲେ ନି । କ୍ଷୁବ୍ଧ ଗୌରୀଶଙ୍କର ଲେଖିଥିଲେ -'' ପାରଳାଖେମୁଣ୍ଡିରୁ ୧୩ ଜଣ ପ୍ରତିନିଧି ବାହାରିବା ପ୍ରତ୍ୟକ୍ଷେ ଉତ୍କଳ ରାଜଧାନୀରୁ ଜଣେ ଅଗ୍ରସର ନ ହେବା ଆଶ୍ଚର୍ଯ୍ୟ ବିଷୟ ଅଟେ (୧୪.୧୨.୧୮୯୫) ।'' ୧୮୯୮ ବେଳକୁ ଓଡ଼ିଆମାନେ ବହୁ ନିଃସ୍ପୃହ ହୋଇ ପଡ଼ିଲେଣି । କଂଗ୍ରେସ ସହ ସଂପର୍କ ରଖିବାକୁ ଆଗ୍ରହ ନଥାଏ । ଏ ଅବସ୍ଥାରେ ଗୌରୀଶଙ୍କର ଗଭୀର ଭାବରେ ମର୍ମାହତ ହୋଇଥିଲେ । ଆନନ୍ଦର କଥା, କଲିକତା ଅଧିବେଶନ (୧୮୯୯ ରେ) ବାବୁ ମଧୁସୂଦନ

ଦାସଙ୍କୁ କଂଗ୍ରେସର ପ୍ରସ୍ତୁତି କମିଟିରେ ସଭ୍ୟଭାବେ ନିଆଗଲା । ୧୯୦୧ ଅଧିବେଶନରେ ବାଲେଶ୍ୱରରୁ ବାବୁ ଭଗବାନ ଚନ୍ଦ୍ର ଦାସ, ବାବୁ ନରେନ୍ଦ୍ର ନାରାୟଣ ରାୟ, ବାବୁ ହେମନ୍ତ ଦେ, ବାବୁ ଲଳିତ ମୋହନ ସରକାର, ବାବୁ ଶିବନାରାୟଣ ନାୟକ, ବାବୁ ଉପେନ୍ଦ୍ରନାଥ ରାୟ, ବାବୁ ବୀରେନ୍ଦ୍ର କୁମାର ମଣ୍ଡଳ, ବାବୁ ଲୋକନାଥ ସାମନ୍ତରାୟ, ବାବୁ ଗୋବିନ୍ଦ ଚନ୍ଦ୍ର ସରକାର, ବାବୁ ହରିଶ୍ଚନ୍ଦ୍ର ସରକାର ଓ ମୁନସି ମହମ୍ମଦ ଅବଦୁଲ ସତ୍ତାର ଏଥିରେ ଯୋଗଦେବାକୁ ନିର୍ବାଚିତ ହେଲେ । ସେଇପରି ଉତ୍କଳ ସଭାରୁ ମାନ୍ୟବର ଏମ ଏସ ଦାସ, ବାବୁ ଜାନକୀନାଥ ବସୁ, ବାବୁ ହରିଚରଣ ବାନୁର୍ଜୀ, ବାବୁ ବିଶ୍ୱନାଥ ସିଂହ, ବାବୁ ନିମାଇଚରଣ ମିତ୍ର, ବାବୁ ରାମଶଙ୍କର ରାୟ, ଇସୁଫ ଅହମ୍ମଦ ମୁଲାନା, ବାବୁ ଜଗମୋହନ ଲାଲା ମହାସମିତିରେ ଯୋଗଦେବାକୁ ଠିକ ହେଲା ।

୧୯୦୨ ରେ ଅହମଦାବାଦ ଅଧିବେଶନ । ବାବୁ ସୁରେନ୍ଦ୍ର ନାଥ ବାନାର୍ଜୀ ଥାଆନ୍ତି ସେଥିର ସଭାପତି । ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ପାଇଁ କଂଗ୍ରେସ ପ୍ରସ୍ତାବ ଗ୍ରହଣ କରିବାକୁ ଅରାଜି ହୁଏ । ମଧୁବାବୁଙ୍କ ସ୍ୱାଭିମାନକୁ ଏହା ଖୁବ୍ ବାଧେ । ସେ କଂଗ୍ରେସ ପ୍ରତି ଆଉ ଆଗ୍ରହୀ ହେଲେନି । ତା ଆଗରୁ ୧୯୦୧ ବେଳକୁ ବି ଏମିତି ଅବସ୍ଥା ସୃଷ୍ଟି ହୋଇଥାଏ । ତେଣୁ ଦୀପିକା ଲେଖିଥିଲେ, ''ଓଡ଼ିଶାରୁ ଅନ୍ତତଃ ଏ ନଗରରୁ ଗତ କେତେବର୍ଷ ହେଲା ପ୍ରତିନିଧି ଯିବାର ଦେଖାନାହିଁ ।'' ସେତେବେଳେ ବାଲେଶ୍ୱରରେ ନ୍ୟାସନାଲ ସୋସାଇଟୀ ନାମରେ ଏକ ଅନୁଷ୍ଠାନ କାମ କରୁଥାଏ । ତେବେ ଏବର୍ଷର କଲିକତା ଅଧିବେଶନରେ ବହୁ ପ୍ରତିନିଧି ଯୋଗ ଦେଇଥିଲେ ।

ଦୀପିକା କଂଗ୍ରେସକୁ ଜାତୀୟ ପ୍ରକାଶକ ମଣୁଥିଲେ । ତେଣୁ ଗୌରୀଶଙ୍କର ବିଭିନ୍ନ ଅଧିବେଶନରେ ଯୋଗ ଦେଉଥିଲେ । ୧୯୧୧ ରେ ସର୍ବଶ୍ରୀ ବନବିହାରୀ ପାଲିତ, ବିଶ୍ୱନାଥ କର, ଦୁର୍ଗା ପ୍ରସନ୍ନ ଦାସଗୁପ୍ତ, ଗୌରୀଶଙ୍କର ରାୟ, ରାଧାପ୍ରସାଦ ଭଗତ, ମୁନ୍ସି ଶେଖ ମହମ୍ମଦ ବକ୍ସ, ମିହିରଲାଲ ଯାଦବ କଂଗ୍ରେସ ଅଧିବେଶନରେ ଯୋଗଦେଲେ । ଏମାନଙ୍କ ମଧ୍ୟରେ ଗୌରୀଶଙ୍କର ଥିଲେ ପୁରୁଣା ଓ ବୟୋଜ୍ୟେଷ୍ଠ । ପୁରୁଣା ସାଥୀମାନେ ଏବେ କଂଗ୍ରେସ ପ୍ରତି ବିମୁଖ । କରାଚୀ ଅଧିବେଶନ ୧୯୧୩ ରେ । ବୃଦ୍ଧ ଗୌରୀଶଙ୍କର ସେତେଦୂରକୁ ବି ଗଲେ । ଲେଖିଲେ, '' ଯେଉଁଦିନ ଭାରତର ଲୋକେ ସସବ୍ୟସ୍ତ ହୋଇ କଂଗ୍ରେସ ଆଡ଼କୁ ଧାଇଁବେ ସେହିଦିନ ଭାରତର ଗୋଟିଏ ମହାଦିନ ହେବ (୧୦.୦୧.୧୯୧୪) ।'' ପୁଣି ୧୯୧୫ ମାନ୍ଦ୍ରାଜ ଅଧିବେଶନରେ ବି ସେ ଭାଗନେଲେ । କହିଥିଲେ ଯେ ଏଭଳି ପୁଣ୍ୟପୀଠରେ ଦେଶର ବହୁତ ଲୋକ ସମୁପସ୍ଥିତ ହୋଇ ମାତୃପୂଜାଦ୍ୱାରା ଆପଣା ଜୀବନକୁ ଧନ୍ୟ ଓ ଦେଶକୁ ଗୌରବାନ୍ୱିତ କରିବେ ।''

**ଶେଷକଥା :**

ଭାରତୀୟ ଜାତୀୟ କଂଗ୍ରେସର ଆହ୍ୱାନ ଓଡ଼ିଆଙ୍କୁ ଉଦ୍‌ବୋଧିତ ଓ ଉନ୍ମାଦିତ କରିଥିଲା । ଆଦ୍ୟ ଅବସ୍ଥାରେ ଗୌରୀଶଙ୍କରଙ୍କ ନେତୃତ୍ୱରେ ଓଡ଼ିଆମାନେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ବି ଦେଖାଇଥିଲେ । ମାତ୍ର ଓଡ଼ିଶାର ନିଜସ୍ୱ ସ୍ୱାର୍ଥ ପ୍ରତି କଂଗ୍ରେସ ଯେଉଁ ଅବହେଳା ଦେଖେଇଲା, ତାହା ଓଡ଼ିଆଙ୍କ ସ୍ୱାଭିମାନକୁ ଖୁବ୍ ବାଧିଲା । ଆଉ କଂଗ୍ରେସ ସହ ସଂପର୍କ ଶିଥିଳ ହେଲା । ଏସବୁ ସତ୍ତ୍ୱେ ଦୂରଦ୍ରଷ୍ଟା ଗୌରୀଶଙ୍କର ଓ କେତେକ ତରୁଣ କଂଗ୍ରେସକୁ ସେମତି ସମର୍ଥନ ଓ ସ୍ୱଦେଶ ପ୍ରୀତିର ବାର୍ତ୍ତା ପ୍ରଚାର ଓଡ଼ିଶାରେ ବଜାୟ ରଖିଥିଲେ । ୧୯୧୭ ରେ ଗୌରୀଶଙ୍କରଙ୍କ ତିରୋଧାନ ହେଲା । ଏତେବେଳକୁ ରାଜନୀତି କ୍ଷେତ୍ରରେ ଉତ୍କଳମଣି ଗୋପବନ୍ଧୁଙ୍କ ଆବିର୍ଭାବ ହୋଇ ସାରିଥାଏ । ସେ ହିଁ ଗୌରୀଶଙ୍କରଙ୍କ ଅସଲ ଦାୟାଦ ଭଳି ସଂବାଦ ସାହିତ୍ୟ, ପବ୍ଲିକ ଲାଇବ୍ରେରୀ, କଂଗ୍ରେସର ବାଣୀ ପ୍ରଚାର ପ୍ରଭୃତି ବିଭିନ୍ନ କାର୍ଯ୍ୟକ୍ରମକୁ ଜାତୀୟ ଜୀବନରେ କ୍ରିୟାଶୀଳ ରଖିଥିଲେ ।



ସହାୟତା : ଉତ୍କଳ ଦୀପିକାର ବିଭିନ୍ନ ସଂଖ୍ୟା
ଶତାବ୍ଦୀ ପୁରୁଷ : ଡ଼ଃ ଶୁରେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ
ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ : ସୁରେନ୍ଦ୍ର ନାଥ ପଟ୍ଟନାୟକ
ଓଡ଼ିଶା ଇତିହାସ : ଡ଼ଃ ହରେକୃଷ୍ଣ ମହତାବ

ସଭାପତି, ଓଡ଼ିଆ ଭାଷା ସଂଗ୍ରାମ ସମିତି
ସାମନ୍ତ ସାହି, କଟକ - ୭୫୩୦୦୧



OGP—MP—PTS (I & P.R.) 16—20,000—5-8-1997



ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସରକାରୀ ବାସଭବନରେ କେନ୍ଦ୍ର ଇସ୍ପାତ ଓ ଖଣି ମନ୍ତ୍ରୀ ଶ୍ରୀ ବିରେନ୍ଦ୍ର କୁମାର ବୈଶ୍ୟ ସାକ୍ଷାତ କରୁଛନ୍ତି




ଭୁବନେଶ୍ୱର ଗାର୍ଡେନ-ଇନ୍ ହୋଟେଲରେ ଅନୁଷ୍ଠିତ ରୋଟାରୀ କ୍ଲବର ପ୍ରତିଷ୍ଠା ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କ୍ଲବର ସମାଚାର ପୁସ୍ତିକା ଉନ୍ମୋଚନ କରୁଛନ୍ତି

VOL. LIV No. 1 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ରଥଯାତ୍ରା ଉତ୍ସବରେ ପୁରୀଠାରେ ତିନି ଠାକୁରଙ୍କ ପହଣ୍ଡି ଯାତ୍ରା




ଓଡ଼ିଶା ହାଇକୋର୍ଟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବକୁ ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଗୋପାଳ ରାମାନୁଜମ୍ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରୁଛନ୍ତି । ପାର୍ଶ୍ୱରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ଫୁକନ୍ ଉପସ୍ଥିତ ଅଛନ୍ତି

PRINTED AT ORISSA GOVERNMENT PRESS, CUTTACK-753010

